# ଶ୍ରୀଶ୍ରୀରାମକୃଷ୍ଣ କଥାମୃତ

## ଶ୍ରୀମ–କଥିତ

## ପ୍ରଥମ ଭାଗ

‘‘ତବ କଥାମୃତଂ ତପ୍ତଜୀବନଂ କବିଭିରୀଡ଼ିତଂ କଲ୍ମଷାପହମ୍ ।
ଶ୍ରବଣମଙ୍ଗଳଂ ଶ୍ରୀମଦାତତଂ ଭୁବି ଗୃଣନ୍ତି ୟେ ଭୂରିଦା ଜନାଃ ॥’’
—ଶ୍ରୀମଭାଗବତ, ଗୋପୀଗୀତା

ରାମକୃଷ୍ଣ ମଠ
ଭୁବନେଶ୍ୱର

ପ୍ରକାଶକ
ସ୍ୱାମୀ ଆତ୍ମପ୍ରଭାନନ୍ଦ
ଅଧ୍ୟକ୍ଷ, ରାମକୃଷ୍ଣ ମଠ
ବିବେକାନନ୍ଦ ମାର୍ଗ
ଭୁବନେଶ୍ୱର—୭୫୧ ୦୦୨
ଫୋନ୍ – (୦୬୭୪) ୨୪୩ ୨୦୨୮, ୨୪୩ ୦୦୫୯
Email : rkmbbsr@gmail.com



ତୃତୀୟ ସଂସ୍କରଣ : ୧୯୮୨
ଷଷ୍ଠ ପୁନର୍ମୁଦ୍ରଣ : ୧୨.୦୭.୨୦୧୪
ଗୁରୁପୂର୍ଣ୍ଣିମା
୧୦୦୦

ମୂଲ୍ୟ – ଟ. ୧୦୦.୦୦

ମୁଦ୍ରାକର :
ହିନ୍ଦୁସ୍ଥାନ ପ୍ରିଣ୍ଟିଙ୍ଗ୍ ଏଣ୍ଡ୍ ବାଇଣ୍ଡିଂ ୱାର୍କ୍ସ୍
ଏ/୪୮, ରାମେଶ୍ୱର ପାଟଣା
ଭୁବନେଶ୍ୱର—୭୫୧ ୦୦୨

***SRI SRI RAMAKRISHNA KATHAMRITA Vol. - I*** : Published by Ramakrishna Math, Vivekananda Marg, Bhubaneswar – 2; 3rd Edition, 6th Reprint on 12th July 2014; **Price : ₹. One Hundred only.**

## ଶ୍ରୀଶ୍ରୀମା'ଙ୍କର ଆଶୀର୍ବାଦ

ବାବାଜୀବନ

...ତାଙ୍କ ନିକଟରୁ ଯାହା ଶୁଣିଥିଲ, ସେହି କଥା ହିଁ ସତ୍ୟ । ଏଥିରେ ତୁମର କୌଣସି ଭୟ ନାହିଁ । ସେତେବେଳେ ସେ ହିଁ ତୁମ ନିକଟରେ ଏ ସମସ୍ତ କଥା ରଖିଥିଲେ; ଏବେ ପ୍ରୟୋଜନ ଅନୁସାରେ ସେ ପ୍ରକାଶ କରାଉଛନ୍ତି । ଏ ସମସ୍ତ କଥା ବ୍ୟକ୍ତ ନ କଲେ ଲୋକଙ୍କର ଚୈତନ୍ୟ ହେବ ନାହିଁ, ଜାଣିବ । ତୁମ ନିକଟରେ ତାଙ୍କର ଯେଉଁସବୁ କଥା ଅଛି, ତାହା ସମସ୍ତ ସତ୍ୟ । ମୁଁ ଦିନେ ତୁମ ମୁହଁରୁ ଶୁଣି ମୋର ବୋଧ ହେଲା ଯେ, ସେ ହିଁ ଏସମସ୍ତ କଥା କହୁଛନ୍ତି ।

—ଜୟରାମବାଟୀ, ୨୧ ଆଷାଢ଼, ୧୩୦୪

ମା, ଠାକୁରଙ୍କର ଜନ୍ମ-ମହୋତ୍ସବ ଉପସ୍ଥିତ । ଏହି ଆନନ୍ଦର ଦିନରେ ଆମମାନଙ୍କର ଏହି ନୈବେଦ୍ୟ ଗ୍ରହଣ କରନ୍ତୁ । ଶ୍ରୀଶ୍ରୀରାମକୃଷ୍ଣ କଥାମୃତ ଆମର ଏହି ନୂତନ ନୈବେଦ୍ୟ ।

୧ ଫାଲଗୁନ ୧୩୦୮ }
୧୯୦୨ ଖ୍ରୀଷ୍ଟାବ୍ଦ }

ଆଶୀର୍ବାଦାକାଙ୍କ୍ଷୀ
ଆପଣଙ୍କର ପ୍ରଣତ ଅକୃତୀ ସନ୍ତାନଗଣ

Thanks ! 100000 Master ! You have hit Ramakristo in the right point. Few alas, few understand him !!

NARENDRANATH

Antpore,[1] 26 March 1889.

My heart leaps in joy—and it is a wonder that I do not go mad when I find any body thoroughly launched into the midst of the doctrine which is to shower peace on Earth hereafter,

October 1897, c/o Lals Hansaraj, Rawlpindi

Dear M., Cest bon mon ami-Now you are doing just the thing. Come out man. No sleeping all life, Time is flying Bravo, that is the way.

Many many thanks for your publication. Only I am afraid it will not pay its way in a pamphlet form...Never mind—pay or no pay. Let it see the blaze of day-light. You will have many blessings on you and many more curses—but.

1. Antpore is a village in the Hughly district, the birthplace of Premananda. The Swamiji and many of his fellow disciples were at this time staying as guests at the house of Swami Premananda (Baburam).

'ଐସାହି ସଦା କାଲ୍ ବନ୍ତା ସାହେବ !' (That is always the way of the world, sir.) This is the time

VIVEKANANDA

Dehara Dun, 24th NoV. 1897

"My dear M., many thanks for your second leaflet. It is indeed wonderful. The move is quite original and never was the life of a great teacher brought before the public untarnished by the writer's mind as you are doing. The language also is beyond all praise-so fresh, so pointed and withal so plain and easy. I cannot express in adequate terms how I have enjoyed them. I am really in a transport when I read them. Strange, isn't ? Our Teacher and Lord was so original and each one of us will have to be original or nothing. I now understand why none of us attempted his life before. It has been reserved for you—this great work. He is with you evidently. With love and namaskar, yours in the Lord.

VIVEKANANDA

"P. S.—Socratic Dialogues are Plato all over. You are entirely hidden. Moreover, the dramatic part is infinitely beautiful. Everybody likes it, here or in the West."

VIVEKANANDA

**Srijut Girish Chandra Ghosh** in a letter dated 22nd March 1909 says—"If my humble opinion goes for anything I not only fully endorse the opinion of the great Swamy (Vivekananda), but add in a loud voice that Kathamrita has been my very existence during my protracted illness for the last three years. ...You deserve the gratitude of the whole human race to the end of days."

**Swami Ramakrishnananda** (Sasi Maharaj), Belur Math, then at the Madras Math, in a letter dated 27th October 1904 says—"You have left whole humanity in debt by publishing these invaluable pages fraught with the best wisdom of the greatest Avatar of God."

# ନିବେଦନ

ଭଗବାନ ଶ୍ରୀରାମକୃଷ୍ଣଦେବଙ୍କ କୃପାରୁ ତାଙ୍କର ମୁଖନିଃସୃତ ଭାଗବତୀ ବାଣୀ 'ଶ୍ରୀଶ୍ରୀରାମକୃଷ୍ଣ କଥାମୃତ' ପୁସ୍ତକର ପ୍ରଥମ ଭାଗର ତୃତୀୟ ସଂସ୍କରଣର ଷଷ୍ଠ ପୁନର୍ମୁଦ୍ରଣ ପ୍ରକାଶିତ ହେଲା । ସ୍ୱାମୀ ଭକ୍ତ୍ୟାନନ୍ଦ ଏହି ପୁସ୍ତକଟିକୁ ମୂଳ ବଙ୍ଗଳାରୁ ଓଡ଼ିଆ ଭାଷାରେ ଅନୁବାଦ କରି ଓଡ଼ିଶାବାସୀଙ୍କର ଯଥାର୍ଥ କଲ୍ୟାଣକାରୀ ହୋଇଛନ୍ତି ।

ଶ୍ରୀଶ୍ରୀରାମକୃଷ୍ଣ କଥାମୃତ ବର୍ତ୍ତମାନ ପୃଥିବୀର ପ୍ରାୟ ସମସ୍ତ ପ୍ରଧାନ ଭାଷାରେ ଅନୂଦିତ ହୋଇ ଅତ୍ୟନ୍ତ ଜନପ୍ରିୟ ଗ୍ରନ୍ଥରୂପେ ପରିଚିତ । ଓଡ଼ିଶାର ଜନସାଧାରଣ ଓ ଭକ୍ତମାନଙ୍କ ନିକଟରେ ଏହି ଭାଗଟି ବିଶେଷ ଆଦୃତ ହେବ ବୋଲି ଆମର ଦୃଢ଼ ବିଶ୍ୱାସ ।

ଏହି ସଂସ୍କରଣ ପ୍ରକାଶନରେ ଯେଉଁମାନେ ସହଯୋଗ କରିଛନ୍ତି, ସେମାନଙ୍କର ଉତ୍ତରୋତ୍ତର ଆଧ୍ୟାତ୍ମିକ ଉନ୍ନତି ପାଇଁ ଶ୍ରୀଭଗବାନଙ୍କ ନିକଟରେ ଆମେ ଆନ୍ତରିକ ପ୍ରାର୍ଥନା କରୁଛୁ ।

ସମସ୍ତଙ୍କର କଲ୍ୟାଣ ହେଉ—ଏହା ହିଁ ଭଗବାନଙ୍କ ନିକଟରେ ଆନ୍ତରିକ ପ୍ରାର୍ଥନା ।

ନାରାୟଣସ୍ମରଣମ୍

୧୨ ଜୁଲାଇ ୨୦୧୪ **ପ୍ରକାଶକ**

# ସୂଚୀପତ୍ର

# ଉପକ୍ରମଣିକା

## ଠାକୁର ଶ୍ରୀରାମକୃଷ୍ଣ କିଏ ?

### — ସଂକ୍ଷିପ୍ତ ଚରିତାମୃତ —

ଠାକୁରଙ୍କ ଜନ୍ମ—ପିତା କ୍ଷୁଦିରାମ ଓ ମାତା ଚନ୍ଦ୍ରମଣି—ପାଠଶାଳା—ରଘୁବୀରଙ୍କ ସେବା—ସାଧୁସଙ୍ଗ ଓ ପୁରାଣ ଶ୍ରବଣ—ଅଦ୍ଭୁତ ଜ୍ୟୋତି ଦର୍ଶନ—କଲିକତାକୁ ଆଗମନ ଓ ଦକ୍ଷିଣେଶ୍ୱର କାଳୀମନ୍ଦିରରେ ଅଦ୍ଭୁତ ଈଶ୍ୱରୀୟ ରୂପ ଦର୍ଶନ—ଠାକୁର ଉନ୍ମାଦବତ୍—କାଳୀମନ୍ଦିରରେ ସାଧୁସଙ୍ଗ—ତୋତାପୁରୀଙ୍କଠାରୁ ଠାକୁରଙ୍କ ବେଦାନ୍ତ ଶ୍ରବଣ—ତନ୍ତ୍ରୋକ୍ତ ଓ ପୁରାଣୋକ୍ତ ସାଧନା—ଠାକୁରଙ୍କର ଜଗନ୍ନାଥଙ୍କ ସହିତ କଥାବାର୍ତ୍ତା—ତୀର୍ଥ ଦର୍ଶନ—ଠାକୁରଙ୍କର ଅନ୍ତରଙ୍ଗ—ଠାକୁର ଓ ଭକ୍ତଗଣ—ଠାକୁର ଓ ବ୍ରାହ୍ମସମାଜ—ହିନ୍ଦୁ, ଖ୍ରୀଷ୍ଟାନ ଓ ମୁସଲମାନ ଇତ୍ୟାଦି ସର୍ବଧର୍ମ ସମନ୍ୱୟ—ଠାକୁରେ ଓ ସ୍ତ୍ରୀଲୋକ ଭକ୍ତ—ଭକ୍ତ-ପରିବାର ।

ଠାକୁର ଶ୍ରୀରାମକୃଷ୍ଣ ହୁଗୁଳି ଜିଲ୍ଲା ଅନ୍ତର୍ଗତ କାମାରପୁକୁର ଗ୍ରାମରେ ଜଣେ ସଦ୍‌ବ୍ରାହ୍ମଣଙ୍କ ଘରେ ଫାଲଗୁନ ଶୁକ୍ଳ ଦ୍ୱିତୀୟା ତିଥିରେ ଜନ୍ମଗ୍ରହଣ କରିଥିଲେ । ୧୭୫୭ ଶକାବ୍ଦ ୧୦ ଫାଲଗୁନ, ବୁଧବାର, ଉତ୍ତର ଭାଦ୍ରପଦ ନକ୍ଷତ୍ର, ଇଂରାଜୀ ୧୮ ଫେବୃଆରି, ୧୮୩୬ ଖ୍ରୀଷ୍ଟାବ୍ଦ । କାମାରପୁକୁର ଗ୍ରାମ ଜାହାନାବାଦ (ଆରାମବାଗ)ରୁ ୪ କ୍ରୋଶ ପଶ୍ଚିମରେ ଏବଂ ବର୍ଦ୍ଧମାନଠାରୁ ୧୨/୧୩ କ୍ରୋଶ ଦକ୍ଷିଣରେ ।

ଠାକୁରେ ମାନବଶରୀରରେ ୫୦ ବର୍ଷ କାଳ ଥିଲେ ।

ଠାକୁରଙ୍କ ପିତା କ୍ଷୁଦିରାମ ଚଟ୍ଟୋପାଧ୍ୟାୟ ଅତି ନିଷ୍ଠାବାନ୍ ଓ ପରମ ଭକ୍ତ ଥିଲେ । ଠାକୁରଙ୍କ ମା ଚନ୍ଦ୍ରମଣି ଦେବୀ ସରଳତା ଓ ଦୟାର ପ୍ରତିମୂର୍ତ୍ତି ଥିଲେ । ପୂର୍ବେ ସେମାନଙ୍କର ଦେରେ ନାମକ ଗ୍ରାମରେ ବାସ ଥିଲା । ସେହି ଗ୍ରାମ କାମାରପୁକୁରରୁ ଦେଢ଼ କ୍ରୋଶ ଦୂରରେ । ସେହି ଗ୍ରାମସ୍ଥ ଜମିଦାରଙ୍କର ସପକ୍ଷରେ ମକଦ୍ଦମାରେ କ୍ଷୁଦିରାମ ସାକ୍ଷ୍ୟ ଦେଇ ନ ଥିଲେ । ପରେ ସ୍ୱଜନ ସହିତ କାମାରପୁକୁରରେ ଆସି ବାସ କଲେ ।

ରାମକୃଷ୍ଣଙ୍କର ପିଲାଦିନର ଡାକ ନାମ ଥିଲା ଗଦାଧର । ପାଠଶାଳାରେ ସାମାନ୍ୟ ଲେଖାପଢ଼ା ଶିଖିବା ପରେ ଘରେ ରହି ରଘୁବୀରଙ୍କ ବିଗ୍ରହ ସେବା କରୁଥିଲେ । ନିଜେ ଫୁଲ ତୋଳିଆଣି ନିତି ପୂଜା କରୁଥିଲେ । ପାଠଶାଳାରେ ଶୁଭଙ୍କରୀ ଅଙ୍କ କଷ୍ଟ ବୋଧ ହେଉଥିଲା ।

ନିଜେ ଗୀତ ଗାଇପାରୁଥିଲେ—ସୁଲଳିତ କଣ୍ଠସ୍ୱର । ଯାତ୍ରା ଶୁଣି ପ୍ରାୟ ଅଧିକାଂଶ ଗୀତ ମୁଖସ୍ଥ କରି ନେଉଥିଲେ । ସେ ବାଲ୍ୟକାଳରେ ସଦାନନ୍ଦ ଥିଲେ ଓ ପଡ଼ାର ଆବାଳବୃଦ୍ଧବନିତା ସମସ୍ତେ ତାଙ୍କୁ ଭଲ ପାଉଥିଲେ ।

ଘର ପାଖରେ ଲାହାବାବୁଙ୍କ ଘର । ସେଠାରେ ଅତିଥିଶାଳା—ସର୍ବଦା ସାଧୁମାନଙ୍କ ଯାତାୟାତ ଥିଲା । ଗଦାଧର ସେଠାରେ ସାଧୁମାନଙ୍କ ସଙ୍ଗଲାଭ ଓ ସେବା କରୁଥିଲେ । କଥକମାନେ ଯେତେବେଳେ ପୁରାଣ ପାଠ କରୁଥିଲେ, ସେତେବେଳେ ସେ ନିବିଷ୍ଟମନରେ ସମସ୍ତ ଶୁଣୁଥିଲେ—ଏହିରୂପେ ରାମାୟଣ, ମହାଭାରତ, ଶ୍ରୀମଦ୍‌ଭାଗବତର ସମସ୍ତ କଥା ହୃଦୟଙ୍ଗମ କଲେ ।

ଘର ନିକଟବର୍ତ୍ତୀ ଗ୍ରାମ ଆନୁଡ଼ରେ ଦିନେ ପଡ଼ିଆ ବାଟେ ଯାଉଥିଲେ । ତାଙ୍କର ସେତେବେଳେ ୧୧ ବର୍ଷ ବୟସ । ଠାକୁର ନିଜ ମୁହଁରେ କହିଛନ୍ତି, ସେହି ସମୟରେ ହଠାତ୍ ସେ ଅଦ୍ଭୁତ ଜ୍ୟୋତିଦର୍ଶନ କରି ବାହ୍ୟଜ୍ଞାନଶୂନ୍ୟ ହେଲେ; ଲୋକେ କହିଲେ ମୂର୍ଚ୍ଛା; ଠାକୁରଙ୍କର ଭାବସମାଧି ହୋଇଥିଲା ।

କ୍ଷୁଦିରାମଙ୍କ ମୃତ୍ୟୁ ପରେ ଠାକୁର ଜ୍ୟେଷ୍ଠଭ୍ରାତାଙ୍କ ସହିତ କଲିକତା ଆସିଲେ । ସେତେବେଳେ ତାଙ୍କ ବୟସ ୧୭/୧୮ ହେବ; କଲିକତାରେ କିଛିଦିନ ନାଥର ଉଦ୍ୟାନରେ ଓ କିଛିଦିନ ଝାମାପୁକୁରସ୍ଥ ଗୋବିନ୍ଦ ଚାଟାର୍ଜିଙ୍କ ଘରେ ପୂଜା କରି ବୁଲୁଥିଲେ । ଏହି ସୂତ୍ରରେ ଝାମାପୁକୁରର ମିତ୍ର-ପରିବାରରେ କିଛିଦିନ ପୂଜା କରିଥିଲେ ।

ରାଣୀ ରାସମଣି କଲିକତାରୁ ଦୁଇ କ୍ରୋଶ ଦୂରରେ ଦକ୍ଷିଣେଶ୍ୱରରେ କାଳୀମନ୍ଦିର ସ୍ଥାପନ କଲେ । ୧୨୬୨ ସାଲ ଜ୍ୟେଷ୍ଠ ଅଠର ଗୁରୁବାର ସ୍ନାନଯାତ୍ରା ଦିନ (ଇଂରାଜୀ ୧୮୫୫ ଖ୍ରୀ:ଅ: ମେ ୩୧) ରାମକୃଷ୍ଣଙ୍କ ଜ୍ୟେଷ୍ଠଭ୍ରାତା ପଣ୍ଡିତ ରାମକୁମାର କାଳୀମନ୍ଦିରରେ ପ୍ରଥମ ପୂଜକ ନିଯୁକ୍ତ ହେଲେ । କିଛିଦିନ ପରେ ଶ୍ରୀରାମକୃଷ୍ଣ ଏହି ପୂଜା-କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ । ସେତେବେଳେ ତାଙ୍କର ବୟସ ୨୧/୨୨ ବର୍ଷ । ମଧ୍ୟମ ଭ୍ରାତା ରାମେଶ୍ୱର ମଧ୍ୟ ବେଳେ ବେଳେ କାଳୀ-ମନ୍ଦିରରେ ପୂଜା କରୁଥିଲେ । ରାମେଶ୍ୱରଙ୍କର ଦୁଇ ପୁତ୍ର ରାମଲାଲ ଓ ଶିବରାମ ଓ ଏକ କନ୍ୟା ଶ୍ରୀମତୀ ଲକ୍ଷ୍ମୀଦେବୀ ଥିଲେ ।[୧]

କିଛିଦିନ ପୂଜା କରୁ କରୁ ଠାକୁର ରାମକୃଷ୍ଣଙ୍କର ମନର ଅବସ୍ଥା ଅନ୍ୟ ପ୍ରକାର ହେଲା । ସର୍ବଦା ଅନ୍ୟମନସ୍କ ଥାଇ ସେ ପ୍ରତିମା ନିକଟରେ ବସିଥାଆନ୍ତି ।

ଆତ୍ମୀୟମାନେ ଏହି ସମୟରେ ତାଙ୍କର ବିବାହ ଦେଲେ—ଭାବିଲେ ବିବାହ କଲେ ହୁଏତ ଅବସ୍ଥାନ୍ତର ହୋଇପାରେ । କାମାରପୁକୁରରୁ ଦୁଇ କ୍ରୋଶ ଦୂରରେ ଜୟରାମବାଟୀ ଗ୍ରାମସ୍ଥ ରାମଚନ୍ଦ୍ର ମୁଖୋପାଧ୍ୟାୟଙ୍କ କନ୍ୟା ଶ୍ରୀଶ୍ରୀସାରଦାମଣି

୧. ଏହି ସମସ୍ତ କଥା ରାଣୀ ରାସମଣୀଙ୍କର ବିକ୍ରି-କବଲାରୁ ନିଆ ହୋଇଛି ।

ଦେବୀଙ୍କ ସଙ୍ଗେ ବିବାହ ହେଲା । ସେତେବେଳେ ଠାକୁରଙ୍କ ବୟସ ୨୩/୨୪ ଓ ଶ୍ରୀଶ୍ରୀମାଙ୍କ ବୟସ ୬ ବର୍ଷ ।

ବିବାହ ପରେ ଦକ୍ଷିଣେଶ୍ୱର କାଳୀମନ୍ଦିରକୁ ରାମକୃଷ୍ଣ ଫେରି ଆସିଲେ ଓ କିଛିଦିନ ପରେ ତାଙ୍କର ଏକାବେଳକେ ଅବସ୍ଥାନ୍ତର ହେଲା । କାଳୀବିଗ୍ରହ ପୂଜା କରୁ କରୁ ଅଦ୍ଭୁତ ଈଶ୍ୱରୀୟ ରୂପଦର୍ଶନ କରିବାକୁ ଲାଗିଲେ । ଆଳତି କରନ୍ତି, ଆଳତି ଆଉ ଶେଷ ହୁଏ ନାହିଁ । ପୂଜା କରି ବସନ୍ତି, ପୂଜା ଶେଷ ହୁଏ ନାହିଁ, ହୁଏତ ନିଜ ମୁଣ୍ଡରେ ଫୁଲ ଦେଉଥାନ୍ତି ।

ପୂଜା ଆଉ କରିପାରିଲେ ନାହିଁ—ଉନ୍ମାଦଗ୍ରସ୍ତ ପରି ବିଚରଣ କରିବାକୁ ଲାଗିଲେ । ରାଣୀ ରାସମଣିଙ୍କ ଜାମାତା ମଥୁର ତାଙ୍କୁ ମହାପୁରୁଷ ମନେକରି ସେବା କରିବାକୁ ଲାଗିଲେ ଓ ଅନ୍ୟ ବ୍ରାହ୍ମଣଙ୍କ ଦ୍ୱାରା ମା କାଳୀଙ୍କର ପୂଜାର ବନ୍ଦୋବସ୍ତ କରିଦେଲେ । ଠାକୁରଙ୍କର ଭଣଜା ହୃଦୟ ମୁଖୋପାଧ୍ୟାୟ ଉପରେ ମଥୁରବାବୁ ଏହି ପୂଜାର ଓ ଶ୍ରୀରାମକୃଷ୍ଣଙ୍କର ସେବାର ଭାର ଦେଲେ ।

ଠାକୁରେ ଆଉ ପୂଜା ବି କଲେ ନାହିଁ, ସଂସାର ବି କଲେ ନାହିଁ—ବିବାହ ନାମମାତ୍ର ହେଲା । ନିଶିଦିନ ମା' ମା' କରନ୍ତି । କେତେବେଳେ ଜଡ଼ବତ୍ କାଷ୍ଠପୁତ୍ତଳିକା ପରି ରହନ୍ତି ତ କେତେବେଳେ ଉନ୍ମାଦଗ୍ରସ୍ତବତ୍ ବିଚରଣ କରନ୍ତି । ସେ ବାଳକ ପରି କାମିନୀକାଞ୍ଚନାସକ୍ତ ବିଷୟୀମାନଙ୍କୁ ଦେଖି ଲୁଚୁଥିଲେ । ଈଶ୍ୱରୀୟ ଲୋକ ଓ ଈଶ୍ୱରୀୟ କଥା ଛଡ଼ା ଆଉ କିଛି ଭଲ ପାଉ ନ ଥିଲେ—ସର୍ବଦା ମା' ମା' !

କାଳୀମନ୍ଦିରରେ ସଦାବ୍ରତ ଥିଲା (ବର୍ତ୍ତମାନ ମଧ୍ୟ ଅଛି)—ସାଧୁ-ସନ୍ନ୍ୟାସୀମାନେ ସର୍ବଦା ଆସୁଥିଲେ । ତୋତାପୁରୀ ୧୧ ମାସ ରହି ଠାକୁରଙ୍କୁ ବେଦାନ୍ତ ଶୁଣାଇଥିଲେ—ଟିକିଏ ଶୁଣାଉ ଶୁଣାଉ ତୋତା ଦେଖିଲେ ଠାକୁରଙ୍କର ନିର୍ବିକଳ୍ପ ସମାଧି ହେଉଛି । ସମ୍ଭବତଃ ୧୮୬୬ ଖ୍ରୀ: ଅ: । ଜଣେ ବ୍ରାହ୍ମଣୀ କିଛିଦିନ ପୂର୍ବେ ଆସିଥାଆନ୍ତି । ସେ ଠାକୁରଙ୍କୁ ତନ୍ତ୍ରୋକ୍ତ ଅନେକ ସାଧନା କରାଇଲେ ଓ ଗୌରାଙ୍ଗ-ଜ୍ଞାନରେ ଶ୍ରୀଚରିତାମୃତ ଓ ଅନ୍ୟାନ୍ୟ ବୈଷ୍ଣବଗ୍ରନ୍ଥ ଶୁଣାଇଲେ । ତୋତାଙ୍କ ନିକଟରୁ ଠାକୁର ବେଦାନ୍ତ ଶ୍ରବଣ କରୁଛନ୍ତି ଦେଖି ବ୍ରାହ୍ମଣୀ ତାଙ୍କୁ ସାବଧାନ କରାଇ ଦେଇଥିଲେ ଓ କହୁଥିଲେ, "ବାବା, ବେଦାନ୍ତ ଶୁଣନା, ସେଥିରେ ଭାବଭକ୍ତିସବୁ ଚାଲିଯାଏ ।" ବୈଷ୍ଣବ ପଣ୍ଡିତ ବୈଷ୍ଣବଚରଣ ମଧ୍ୟ ସର୍ବଦା ଆସୁଥିଲେ । ସେ ଠାକୁରଙ୍କୁ କଲୁଟୋଲାର ଚୈତନ୍ୟ-ସଭାକୁ ନେଇଗଲେ । ଏହି ସଭାରେ ଠାକୁର ଶ୍ରୀରାମକୃଷ୍ଣ ଭାବାବିଷ୍ଟ ହୋଇ ଶ୍ରୀଚୈତନ୍ୟଦେବଙ୍କ ଆସନରେ ଉପବିଷ୍ଟ ହୋଇଥିଲେ । ବୈଷ୍ଣବଚରଣ ଚୈତନ୍ୟ-ସଭାର ସଭାପତି ଥିଲେ ।

ବୈଷ୍ଣବଚରଣ ମଥୁରଙ୍କୁ କହିଥିଲେ, 'ଏ ଉନ୍ମାଦ ସାମାନ୍ୟ ନୁହେଁ—ପ୍ରେମୋନ୍ମାଦ, ଏ ଈଶ୍ୱରଙ୍କ ପାଇଁ ପାଗଳ । ବ୍ରାହ୍ମଣୀ ଓ ବୈଷ୍ଣବଚରଣ ଦେଖିଲେ,

ଠାକୁରଙ୍କର ମହାଭାବାବସ୍ଥା । ଚୈତନ୍ୟଦେବଙ୍କ ପରି ତାଙ୍କର ମଧ୍ୟ କେତେବେଳେ ଅନ୍ତର୍ଦ୍ଦଶା (ସେତେବେଳେ ଜଡ଼ବତ୍ ସମାଧିସ୍ଥ) କେତେବେଳେ ଅର୍ଦ୍ଧବାହ୍ୟଦଶା, କେତେବେଳେ ବା ବାହ୍ୟଦଶା ।

ଠାକୁରେ ମା ମା କହି କାନ୍ଦୁଥିଲେ । ସର୍ବଦା ମା'ଙ୍କ ସଙ୍ଗେ କଥା କହୁଥିଲେ । ମା'ଙ୍କ ନିକଟରୁ ଉପଦେଶ ନେଉଥିଲେ । କହୁଥିଲେ, ''ମା, ତୋରି କଥା କେବଳ ଶୁଣିବି, ମୁଁ ଶାସ୍ତ୍ର ଜାଣେ ନାହିଁ କି ପଣ୍ଡିତ ଜାଣେ ନାହିଁ । ତୁ ବୁଝାଇବୁ ତେବେ ବିଶ୍ୱାସ କରିବି ।'' ଠାକୁରେ ଜାଣୁଥିଲେ ଓ କହୁଥିଲେ — ଯେ ପରଂବ୍ରହ୍ମ ଅଖଣ୍ଡ ସଚ୍ଚିଦାନନ୍ଦ, ସେ ହିଁ ମା । ତାଙ୍କ ଶ୍ରୀମୁଖର ଏହି କଥା ଶ୍ରୀଶ୍ରୀକଥାମୃତର ଅନେକ ସ୍ଥାନରେ ଅଛି ।

ଠାକୁରଙ୍କୁ ଜଗନ୍ମାତା କହିଥିଲେ, ''ତୁ ଆଉ ମୁଁ ଏକ । ତୁ ଭକ୍ତି ନେଇ ଥା — ଜୀବର ମଙ୍ଗଳ ପାଇଁ । ଭକ୍ତମାନେ ସମସ୍ତେ ଆସିବେ । ତୋତେ ସବୁବେଳେ କେବଳ ବିଷୟୀମାନଙ୍କୁ ଦେଖିବାକୁ ହେବ ନାହିଁ, ଅନେକ କାମନାଶୂନ୍ୟ ଶୁଦ୍ଧ ଭକ୍ତ ମଧ୍ୟ ଅଛନ୍ତି, ସେମାନେ ଆସିବେ ।'' ଠାକୁର-ମନ୍ଦିରରେ ସନ୍ଧ୍ୟା ଆଳତି ବେଳେ ଯେତେବେଳେ ଘଣ୍ଟା ବାଜୁଥିଲା, ସେତେବେଳେ ଶ୍ରୀରାମକୃଷ୍ଣ ନିଜ କୋଠରୀ ଉପରକୁ ଯାଇ ଉଚ୍ଚ ସ୍ୱରରେ ଡାକୁଥିଲେ, ''ହେ ଭକ୍ତଗଣ, ତୁମେମାନେ କେଉଁଠାରେ କିଏ ଅଛ ଶୀଘ୍ର ଚାଲିଆସ ।''

ମାତା ଚନ୍ଦ୍ରମଣିଦେବୀଙ୍କୁ ଠାକୁରେ ଜଗଜ୍ଜନନୀଙ୍କର ରୂପାନ୍ତର ବୋଲି ମଣୁଥିଲେ ଓ ସେହି ଭାବରେ ପୂଜା କରୁଥିଲେ । ଜ୍ୟେଷ୍ଠଭ୍ରାତା ରାମକୁମାରଙ୍କର ସ୍ୱର୍ଗଲାଭ ପରେ ମାତା ପୁତ୍ରଶୋକରେ ଅଧୀର ହୋଇପଡ଼ିଲେ; ତେଣୁ ତିନି ଚାରିବର୍ଷ ମଧ୍ୟରେ ତାଙ୍କୁ କାଳୀମନ୍ଦିରକୁ ଅଣାଇ ସେ ନିଜ ପାଖରେ ରଖିଥିଲେ ଓ ପ୍ରତ୍ୟକ୍ଷ ଦର୍ଶନ, ପଦଧୂଳି ଗ୍ରହଣ ଓ 'ମା, କେମିତି ଅଛ ?' ବୋଲି ପଚାରୁଥିଲେ ।

ଠାକୁରେ ଦୁଇଥର ତୀର୍ଥଯାତ୍ରା କରିଥିଲେ । ପ୍ରଥମ ଥର ନିଜ ମା'ଙ୍କୁ ସଙ୍ଗରେ ନେଇ ଯାଇଥିଲେ, ସଙ୍ଗରେ ଶ୍ରୀଯୁକ୍ତ ରାମ ଚାଟର୍ଜି ଓ ମଥୁରବାବୁଙ୍କର କେତେଜଣ ପୁତ୍ର । ସେତେବେଳେ ପ୍ରଥମ କରି କାଶୀକୁ ରେଳଗାଡ଼ି ଚାଲୁ ହୋଇଥାଏ । ସେତେବେଳେ ତାଙ୍କର ଦିବ୍ୟୋନ୍ମାଦ ନ ଥାଏ; କିନ୍ତୁ ଅହର୍ନିଶି ପ୍ରାୟ ସମାଧିସ୍ଥ ଓ ଭାବରେ ମତୁଆଲା । ଏଥର ବୈଦ୍ୟନାଥ ଦର୍ଶନ ପରେ କାଶୀଧାମ ଓ ପ୍ରୟାଗ ଦର୍ଶନ ହୋଇଥିଲା (୧୮୬୩ ଖ୍ରୀ: ଅ:) ।

ଦ୍ୱିତୀୟ ଥର ତୀର୍ଥଭ୍ରମଣ ଏହାର ପାଞ୍ଚବର୍ଷ ପରେ, ଇଂରାଜୀ ଜାନୁଆରୀ ୧୮୬୮ ଖ୍ରୀଷ୍ଟାବ୍ଦରେ — ମଥୁରବାବୁ ଓ ତାଙ୍କର ସ୍ତ୍ରୀ ଜଗଦମ୍ବା ଦାସୀଙ୍କ ସହିତ । ଭଣଜା ହୃଦୟ ଏଥର ତାଙ୍କର ସଙ୍ଗରେ ଥିଲେ । ଏ ଯାତ୍ରାରେ କାଶୀ, ପ୍ରୟାଗ ଓ ବୃନ୍ଦାବନ ଧାମ ଦର୍ଶନ କରିଥିଲେ । କାଶୀରେ ମଣିକର୍ଣ୍ଣିକାରେ ସମାଧିସ୍ଥ ହୋଇ ବିଶ୍ୱନାଥଙ୍କର ଗମ୍ଭୀର ଚିନ୍ମୟ ମୂର୍ତ୍ତି ଦର୍ଶନ କରିଥିଲେ — ସ୍ୱୟଂ ବିଶ୍ୱନାଥ

ଶବର କର୍ଣ୍ଣରେ ତାରକବ୍ରହ୍ମନାମ ଦେଉଛନ୍ତି । ଆଉ ମଧ୍ୟ ମୌନବ୍ରତଧାରୀ ତ୍ରୈଲଙ୍ଗସ୍ୱାମୀଙ୍କ ସହିତ କଥାବାର୍ତ୍ତା କରିଥିଲେ । ମଥୁରାର ଧ୍ରୁବ-ଘାଟରେ ବସୁଦେବଙ୍କ କୋଳରେ ଶ୍ରୀକୃଷ୍ଣ, ଶ୍ରୀବୃନ୍ଦାବନରେ ସନ୍ଧ୍ୟା ସମୟରେ ଫେରୁଥିବା ଗୋଷ୍ଠରେ ଶ୍ରୀକୃଷ୍ଣ ଧେନୁଗଣଙ୍କ ସହିତ ଯମୁନା ପାରହୋଇ ଆସୁଛନ୍ତି — ଇତ୍ୟାଦି ଲୀଳା ଭାବଚକ୍ଷୁରେ ଦର୍ଶନ କରିଥିଲେ; ନିଧୁବନରେ ରାଧାପ୍ରେମରେ ବିଭୋର ଗଙ୍ଗାମାତାଙ୍କ ସହିତ ପରିଚିତ ହୋଇ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ ।

ବ୍ରାହ୍ମନେତା କେଶବ ଚନ୍ଦ୍ର ସେନ୍ ଯେତେବେଳେ ବେଲଘରିଆ ଉଦ୍ୟାନରେ ଭକ୍ତଙ୍କ ସଙ୍ଗରେ ଈଶ୍ୱରଙ୍କର ଧ୍ୟାନଧାରଣା କରୁଥିଲେ, ସେତେବେଳେ ଶ୍ରୀରାମକୃଷ୍ଣ ତାଙ୍କର ଭଣଜା ହୃଦୟଙ୍କ ସହିତ ତାଙ୍କୁ ଦେଖିବାକୁ ଯାଇଥିଲେ (ଖ୍ରୀ:ଅ: ୧୮୭୫) । ବିଶ୍ୱନାଥ ଉପାଧ୍ୟାୟ, ନେପାଳର କାପ୍‌ଟେନ୍ ଏହି ସମୟରେ ଆସୁଥାନ୍ତି । ସିଁଥିର ଗୋପାଳ (ବୁଢ଼ାଗୋପାଳ) ଓ ମହେନ୍ଦ୍ର କବିରାଜ, କୃଷ୍ଣନଗରର କିଶୋରୀ ଓ ମହିମାଚରଣ ଏହି ସମୟରେ ଠାକୁରଙ୍କୁ ଦର୍ଶନ କରିଥିଲେ ।

ଠାକୁରଙ୍କର ଅନ୍ତରଙ୍ଗ ଭକ୍ତମାନେ ଇଂରାଜୀ ୧୮୭୯-୮୦ ଖ୍ରୀ: ଅ:ରୁ ଠାକୁରଙ୍କ ପାଖକୁ ଆସିବାକୁ ଲାଗିଲେ । ସେତେବେଳେ ଠାକୁରଙ୍କର ଉନ୍ମାଦ ଅବସ୍ଥା ପ୍ରାୟ ଚାଲିଯାଇଛି । ସେତେବେଳେ ଶାନ୍ତ, ସଦାନନ୍ଦ ବାଳକର ଅବସ୍ଥା, କିନ୍ତୁ ପ୍ରାୟ ସମାଧିସ୍ଥ — କେତେବେଳେ ଜଡ଼ସମାଧି — କେତେବେଳେ ଭାବସମାଧି । ସମାଧିଭଙ୍ଗ ପରେ ଭାବ-ରାଜ୍ୟରେ ବିଚରଣ କରୁଥାଆନ୍ତି । ଯେପରି ପାଞ୍ଚବର୍ଷର ପିଲା । ସର୍ବଦା ମା ମା !

ରାମ ଓ ମନମୋହନ ୧୮୭୯ ଖ୍ରୀ:ଅ:ର ଶେଷ ଭାଗରେ ଆସି ମିଳିତ ହେଲେ; କେଦାର ଓ ସୁରେନ୍ଦ୍ର ତାହା ପରେ ଆସିଲେ; ଚୁନି, ଲାଟୁ, ନିତ୍ୟଗୋପାଳ, ତାରକ ପରେ ଆସିଲେ । ୧୮୮୧ର ଶେଷ ଭାଗ ଓ ୧୮୮୨ର ପ୍ରାରମ୍ଭ ମଧ୍ୟରେ ନରେନ୍ଦ୍ର, ରାଖାଲ, ଭବନାଥ, ବାବୁରାମ, ବଳରାମ, ନିରଞ୍ଜନ, ମାଷ୍ଟର, ଯୋଗୀନ୍ ଆସି ପହଞ୍ଚିଲେ । ୧୮୮୩-୮୪ ଖ୍ରୀ:ଅ: ମଧ୍ୟରେ କିଶୋରୀ, ଅଧର, ନିତାଇ, ଛୋଟ ଗୋପାଳ, ବେଲଘରିଆର ତାରକ, ଶରତ୍, ଶଶୀ; ୧୮୮୪ ଖ୍ରୀ:ଅ: ମଧ୍ୟରେ ସାନ୍ୟାଲ, ଗଙ୍ଗାଧର, କାଳୀ, ଗିରିଶ, ଦେବେନ୍ଦ୍ର, ସାରଦା, କାଳୀପଦ, ଉପନ୍ଦ୍ରେ, ଦ୍ୱିଜ, ହରି; ୧୮୮୫ ମଧ୍ୟରେ ସୁବୋଧ, ଛୋଟ ନରେନ୍, ପଲ୍‌ଟୁ, ପୂର୍ଣ୍ଣ, ନାରାୟଣ, ତେଜଚନ୍ଦ୍ର ଓ ହରିପଦ ଆସିଲେ । ଏହିରୂପେ ହରମୋହନ, ଯଜ୍ଞେଶ୍ୱର, ହାଜରା, କ୍ଷୀରୋଦ, କୃଷ୍ଣନଗରର ଯୋଗୀନ, ମଣୀନ୍ଦ୍ର, ଭୂପତି, ଅକ୍ଷୟ, ନବଗୋପାଳ, ବେଲଘରିଆର ଗୋବିନ୍ଦ, ଆଶୁ, ଗିରୀନ୍ଦ୍ର, ଅତୁଳ, ଦୁର୍ଗାଚରଣ, ସୁରେଶ, ପ୍ରାଣକୃଷ୍ଣ, ନବାଇଚୈତନ୍ୟ, ହରିପ୍ରସନ୍ନ, ମହେନ୍ଦ୍ର (ମୁଖୋ), ପ୍ରିୟ (ମୁଖୋ), ସାଧୁ ପ୍ରିୟନାଥ (ମନ୍ମଥ), ବିନୋଦ, ତୁଳସୀ, ହରିଶ ମୁସ୍ତାଫୀ, ବଶାକ୍, କଥକ ଠାକୁର, ବାଲିର ଶଶୀ (ବହ୍ମଚାରୀ), ନିତ୍ୟଗୋପାଳ

(ଗୋସ୍ୱାମୀ), କୋନ୍ନଗରର ବିପିନ, ବିହାରୀ, ଧୀରେନ୍, ଗୋପାଳ (ହାଲଦାର) କ୍ରମେ ଆସି ପହଞ୍ଚିଲେ ।

ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, ଶଶଧର ପଣ୍ଡିତ, ଡାକ୍ତର ରାଜେନ୍ଦ୍ର ଓ ଡାକ୍ତର ସର୍କାର, ବଙ୍କିମ (ଚାଟାର୍ଜି), ଆମେରିକାର କୁକ୍ ସାହେବ, ଭକ୍ତ ଉଇଲିୟମ୍ସ, ମିସିର ସାହେବ, ମାଇକେଲ୍ ମଧୁସୂଦନ, କୃଷ୍ଣଦାସ ପାଲ, ପଣ୍ଡିତ ଦୀନବନ୍ଧୁ, ପଣ୍ଡିତ ଶ୍ୟାମାପଦ, ରାମନାରାୟଣ ଡାକ୍ତର, ଦୁର୍ଗାଚରଣ ଡାକ୍ତର, ରାଧିକା ଗୋସ୍ୱାମୀ, ଶିଶିର (ଘୋଷ), ନବୀନ (ମୁନ୍‌ସି), ନୀଳକଣ୍ଠ—ଏମାନେ ମଧ୍ୟ ଦର୍ଶନ କରିଥିଲେ । ଠାକୁରଙ୍କ ସହିତ ତ୍ରୈଲଙ୍ଗସ୍ୱାମୀଙ୍କର କାଶୀଧାମରେ ଓ ଗଙ୍ଗାମାତାଙ୍କର ଶ୍ରୀବୃନ୍ଦାବନରେ ସାକ୍ଷାତ୍ ହୋଇଥିଲା । ଗଙ୍ଗାମାତା ଠାକୁରଙ୍କୁ ଶ୍ରୀମତୀ ରାଧା-ଜ୍ଞାନରେ ଛାଡ଼ିବାକୁ ଚାହିଁ ନ ଥିଲେ ।

ଅନ୍ତରଙ୍ଗ ଭକ୍ତମାନେ ଆସିବା ଆଗରୁ କୃଷ୍ଣକିଶୋର, ମଥୁର, ଶମ୍ଭୁ ମଲ୍ଲିକ, ନାରାୟଣ ଶାସ୍ତ୍ରୀ, ଇଁଦେଶର ଗୌରୀ ପଣ୍ଡିତ, ଚନ୍ଦ୍ର ଓ ଅଚଳାନନ୍ଦ ସର୍ବଦା ଠାକୁରଙ୍କୁ ଦର୍ଶନ କରୁଥିଲେ । ବର୍ଦ୍ଧମାନର ସଭାପଣ୍ଡିତ ପଦ୍ମଲୋଚନ, ଆର୍ଯ୍ୟସମାଜର ଦୟାନନ୍ଦ—ଏମାନେ ମଧ୍ୟ ଦର୍ଶନ କରିଥିଲେ । ଠାକୁରଙ୍କ ଜନ୍ମଭୂମି କାମାରପୁକୁର, ସିଓଡ଼, ଶ୍ୟାମବଜାର ଇତ୍ୟାଦି ସ୍ଥାନର ଅନେକ ଭକ୍ତ ତାଙ୍କୁ ଦେଖିଥିଲେ ।

ବ୍ରାହ୍ମସମାଜର ଅନେକେ ଠାକୁରଙ୍କ ପାଖକୁ ସର୍ବଦା ଯାଉଥିଲେ । କେଶବ, ବିଜୟ, କାଳୀ (ବସୁ), ପ୍ରତାପ, ଶିବନାଥ, ଅମୃତ, ତ୍ରୈଲୋକ୍ୟ, କୃଷ୍ଣବିହାରୀ, ମଣିଲାଲ୍, ଉମେଶ, ହୀରାନନ୍ଦ, ଭବାନୀ, ନନ୍ଦଲାଲ ଓ ଅନ୍ୟାନ୍ୟ ଅନେକ ବ୍ରାହ୍ମଭକ୍ତ ସର୍ବଦା ଯାଉଥିଲେ; ଠାକୁର ବି ବ୍ରାହ୍ମମାନଙ୍କୁ ଦେଖିବାକୁ ଆସୁଥିଲେ । ମଥୁରଙ୍କ ଜୀବଦ୍ଦଶାରେ ଠାକୁର ତାଙ୍କ ସହିତ ଦେବେନ୍ଦ୍ରନାଥ ଠାକୁରଙ୍କୁ ତାଙ୍କ ଘରେ ଓ ଉପାସନା ସମୟରେ ଆଦି-ବ୍ରାହ୍ମସମାଜରେ ଦେଖିବାକୁ ଯାଇଥିଲେ । ପରେ କେଶବଙ୍କ ବ୍ରାହ୍ମମନ୍ଦିର ଓ ସାଧାରଣ ସମାଜକୁ ଉପାସନା ସମୟରେ ଯାଇଥିଲେ । କେଶବଙ୍କ ଘରକୁ ପ୍ରାୟ ଯାଉଥିଲେ ଓ ବ୍ରାହ୍ମଭକ୍ତଙ୍କ ସଙ୍ଗରେ କେତେ ଆନନ୍ଦ କରୁଥିଲେ ।

କାଲନାରେ ଭଗବାନ ଦାସ ବାବାଜୀଙ୍କ ସହିତ ଦେଖା ହୋଇଥିଲା । ଠାକୁରଙ୍କ ସମାଧି ଅବସ୍ଥା ଦେଖି ବାବାଜୀ କହିଥିଲେ—ଆପଣ ମହାପୁରୁଷ, ଚୈତନ୍ୟଦେବଙ୍କ ଆସନରେ ବସିବା ପାଇଁ ଆପଣ ଉପଯୁକ୍ତ ।

ଠାକୁର ସର୍ବଧର୍ମ ସମନ୍ୱୟାର୍ଥ ବୈଷ୍ଣବ, ଶାକ୍ତ, ଶୈବ ଇତ୍ୟାଦି ଭାବ ସାଧନ କରି ଅପର ଦିଗରେ ଆଲ୍ଲା-ମନ୍ତ୍ର ଜପ ଓ ଯୀଶୁଖ୍ରୀଷ୍ଟଙ୍କ ଚିନ୍ତା କରିଥିଲେ । ଯେଉଁ ଘରେ ଠାକୁର ରହୁଥିଲେ, ସେଠାରେ ଦେବଦେବୀଙ୍କର ଛବି ଓ ବୁଦ୍ଧଦେବଙ୍କ ମୂର୍ତ୍ତି ଥିଲା । ଯୀଶୁ ଜଳମଗ୍ନ ପିଟର୍‌ଙ୍କୁ ଉଦ୍ଧାର କରୁଛନ୍ତି, ଏ ଛବି ମଧ୍ୟ ଥିଲା ।

ଏବେ ମଧ୍ଯ ସେ ଘରକୁ ଗଲେ ତାହା ଦେଖାଯାଏ । ଆଜି ସେହି ଘରକୁ ଇଂରେଜ ଓ ଆମେରିକାନ୍ ଭକ୍ତମାନେ ଆସି ଠାକୁରଙ୍କ ଧ୍ୟାନଚିନ୍ତା କରୁଥିବାର ଦେଖାଯାଏ ।

ଠାକୁର ଦିନେ ମା'ଙ୍କୁ ବ୍ୟାକୁଳ ହୋଇ କହିଲେ, ''ମା, ତୋର ଖ୍ରୀଷ୍ଟାନ୍ ଭକ୍ତମାନେ ତୋତେ କିପରି ଡାକନ୍ତି ଦେଖିବି, ମୋତେ ନେଇଚାଲ ।'' କିଛିଦିନ ପରେ କଲିକତାକୁ ଯାଇ ଗୋଟିଏ ଗୀର୍ଜାର ଦ୍ୱାରଦେଶରେ ଠିଆ ହୋଇ ଉପାସନା ଦେଖିଥିଲେ । ଠାକୁରେ ଫେରିଆସି ଭକ୍ତମାନଙ୍କୁ କହିଲେ, ''ମୁଁ ଖାଜାଞ୍ଚୀର ଭୟରେ ଭିତରେ ଯାଇ ବସି ନାହିଁ । ଭାବିଲି, କେଜାଣି ଯଦି କାଳୀଘରକୁ ଯିବାକୁ ନ ଦିଅନ୍ତି ।''

ଠାକୁରଙ୍କର ଅନେକ ସ୍ତ୍ରୀ–ଭକ୍ତ ଥିଲେ । ସେମାନଙ୍କୁ ସେ ସାକ୍ଷାତ୍ ଭଗବତୀ ବୋଲି ଦେଖୁଥିଲେ । ଯେପର୍ଯ୍ୟନ୍ତ ସ୍ତ୍ରୀଲୋକଙ୍କୁ ସାକ୍ଷାତ୍ ମା ବୋଲି ବୋଧ ନ ହୁଏ, ଈଶ୍ୱରଙ୍କଠାରେ ଶୁଦ୍ଧାଭକ୍ତି ନ ହୁଏ, ସେତେଦିନ ସ୍ତ୍ରୀଲୋକ ସମ୍ବନ୍ଧରେ ପୁରୁଷମାନଙ୍କୁ ସାବଧାନ ରହିବାକୁ କହୁଥିଲେ । ଏପରିକି ପରମ ଭକ୍ତିମତୀ ହେଲେ ମଧ୍ୟ ସେମାନଙ୍କ ସମ୍ପର୍କରେ ଆସିବା ପାଇଁ ମନା କରୁଥିଲେ । ମା'ଙ୍କୁ ନିଜେ କହିଥିଲେ, ''ମା, ମୋ ଭିତରେ ଯଦି କାମଭାବ ହୁଏ, ତାହା ହେଲେ ମା, ବେକରେ ଛୁରୀ ଚଲେଇଦେବି ।''

ଠାକୁରଙ୍କର ଭକ୍ତମାନେ ଅସଂଖ୍ୟ । ସେମାନେ କେହି ପ୍ରକାଶିତ, କେହି ବା ଗୁପ୍ତ—ସମସ୍ତଙ୍କ ନାମ କହିବା ଅସମ୍ଭବ । ଶ୍ରୀଶ୍ରୀରାମକୃଷ୍ଣ କଥାମୃତରେ ଅନେକଙ୍କ ନାମ ମିଳିବ । ବାଲ୍ୟକାଳରେ ଅନେକ—ରାମକୃଷ୍ଣ, ପୋଟୁ, ତୁଳସୀ, ଶାନ୍ତି, ଶଶୀ, ବିପିନ, ନଗେନ୍ଦ୍ର (ମିତ୍ର), ଉପେନ୍ଦ୍ର, ସୁରେନ୍ଦ୍ର, ସୁରେନ୍, ଇତ୍ୟାଦି ଓ ସାନ ସାନ ଅନେକ ବାଳିକା ଠାକୁରଙ୍କୁ ଦେଖିଥିଲେ । ବର୍ତ୍ତମାନ ସେମାନେ ଠାକୁରଙ୍କର ସେବକ । ଲୀଳାସମ୍ବରଣ ପରେ ଆଜି ତାଙ୍କର କେତେ ଭକ୍ତ ହୋଇଛନ୍ତି ଓ ହେଉଛନ୍ତି । ପୃଥିବୀର ସର୍ବତ୍ର ଶ୍ରୀରାମକୃଷ୍ଣ-ଭକ୍ତପରିବାର ବିକୀର୍ଣ୍ଣ ହୋଇ ଅଛନ୍ତି ଓ ଉତ୍ତରୋତ୍ତର ବଢୁଛନ୍ତି । ଇତି ।

କଲିକତା, ଜନ୍ମାଷ୍ଟମୀ, ୧୩୧୦

# ଶ୍ରୀଶ୍ରୀରାମକୃଷ୍ଣ କଥାମୃତ

## ପ୍ରଥମ ପରିଚ୍ଛେଦ

## (୧)

### ପ୍ରଥମ ଦର୍ଶନ — ୧୮୮୨ ଖ୍ରୀ: ମାର୍ଚ୍ଚ

ତବ କଥାମୃତଂ ତପ୍ତଜୀବନଂ କବିଭିରୀଡ଼ିତଂ କଲ୍ମଷାପହମ୍ ।
ଶ୍ରବଣମଙ୍ଗଳଂ ଶ୍ରୀମଦାତତମ୍ ଭୁବି ଗୃଣନ୍ତି ଯେ ଭୁରିଦା ଜନାଃ ।।
—ଶ୍ରୀମଦ୍‌ଭାଗବତ, ଗୋପୀଗୀତା, ରାସପଞ୍ଚାଧ୍ୟାୟ ।

ଗଙ୍ଗାତୀରରେ ଦକ୍ଷିଣେଶ୍ୱରରେ କାଳୀମନ୍ଦିର । ବସନ୍ତକାଳ, ଇଂରାଜୀ ୧୮୮୨ ଖ୍ରୀଷ୍ଟାବ୍ଦ, ମାର୍ଚ୍ଚ ମାସ । ଠାକୁରଙ୍କର[୧] ଜନ୍ମୋତ୍ସବର କେତେଦିନ ପରେ । ଶ୍ରୀଯୁକ୍ତ କେଶବ ସେନ ଓ ଶ୍ରୀଯୁକ୍ତ ଜୋସେଫ୍ କୁକ୍‌ଙ୍କ ସହିତ ୨୩ ଫେବୃଆରି ଗୁରୁବାର ଦିନ ଠାକୁର ଷ୍ଟିମର୍‌ରେ ବୁଲିଥିଲେ—ତାହାର କିଛିଦିନ ପରେ । ସନ୍ଧ୍ୟା ହେଉଅଛି । ରାମକୃଷ୍ଣଙ୍କ ଘରେ ମାଷ୍ଟର ଆସି ଉପସ୍ଥିତ । ଏହି ପ୍ରଥମ ଦର୍ଶନ । ମାଷ୍ଟର ଦେଖିଲେ ଘରଭର୍ତ୍ତି ଲୋକ ନିସ୍ତବ୍ଧ ହୋଇ ତାଙ୍କର କଥାମୃତ ପାନ କରୁଛନ୍ତି । ଠାକୁର ଖଟ ଉପରେ ବସି ପୂର୍ବାସ୍ୟ ହୋଇ ହାସ୍ୟମୁଖରେ ହରିକଥା କହୁଛନ୍ତି । ଭକ୍ତଗଣ ଚଟାଣରେ ବସିଛନ୍ତି ।

**କର୍ମତ୍ୟାଗ କେତେବେଳେ**

ଠାକୁର କହୁଛନ୍ତି, "ଯେତେବେଳେ ଥରେ ହରି ବା ଥରେ ରାମନାମ କଲେ ରୋମାଞ୍ଚ ହୁଏ ଏବଂ ଅଶ୍ରୁପାତ ହୁଏ, ସେତେବେଳେ ନିଶ୍ଚୟ ଜାଣିବ ଯେ, ସନ୍ଧ୍ୟାଦି କର୍ମ ଆଉ କରିବାକୁ ହେବ ନାହିଁ । ସେତେବେଳେ କର୍ମତ୍ୟାଗର ଅଧିକାର ହୋଇଛି—କର୍ମ ଆପେ ଆପେ ତ୍ୟାଗ ହୋଇଯାଉଛି । ସେତେବେଳେ ରାମନାମ, ହରିନାମ କି କେବଳ ଓଁ କାର ଜପିଲେ ମଧ୍ୟ ହେଲା ।' ପୁଣି କହିଲେ, "ସନ୍ଧ୍ୟା ଗାୟତ୍ରୀରେ ଲୟ ହୁଏ । ଗାୟତ୍ରୀ ପୁଣି ଓଁ କାରରେ ଲୟ ହୁଏ ।"

ମାଷ୍ଟର ବରାହନଗରରେ ଏ-ବଗିଚା ସେ-ବଗିଚା ବୁଲି ବୁଲି ସିଧୁ ସହିତ ଠାକୁର ଶ୍ରୀରାମକୃଷ୍ଣଙ୍କର ଘର ସମ୍ମୁଖରେ ଆସି ପହଞ୍ଚିଥିଲେ । ଏହି କଥା ଶୁଣିବା ପରେ ମାଷ୍ଟର କାଳୀମନ୍ଦିରରେ ଆଳତି ଦେଖିବାକୁ ଯାଇଥିଲେ । ଫେରିଆସି ଦେଖିଲେ ଯେ ଘରର ଦ୍ୱାର ବନ୍ଦ । ଅଳ୍ପକ୍ଷଣ ହେଲା ଝୁଣା ଦିଆହୋଇଛି । ମାଷ୍ଟର ଇଂରାଜୀ ପଢ଼ିଛନ୍ତି, ଘର ଭିତରେ ହଠାତ୍ ପ୍ରବେଶ କରିପାରିଲେ ନାହିଁ । ଦ୍ୱାର ପାଖରେ ବୃନ୍ଦା (ଦାସୀ) ଠିଆ ହୋଇଥିଲା । ମାଷ୍ଟର ପଚାରିଲେ—ଆଚ୍ଛା, ସାଧୁ କଅଣ ବର୍ତ୍ତମାନ ଭିତରେ ଅଛନ୍ତି ?

---

୧ ଭକ୍ତଗଣ ଶ୍ରୀରାମକୃଷ୍ଣଙ୍କୁ 'ଠାକୁର' ବୋଲି ସମ୍ବୋଧନ କରନ୍ତି ।

ବୃନ୍ଦା — ହଁ, ଏହି ଘର ଭିତରେ ଅଛନ୍ତି ।

ମାଷ୍ଟର — ସେ ଏଠାରେ କେତେଦିନୁ ଅଛନ୍ତି ?

ବୃନ୍ଦା — ସେ ଅନେକ ଦିନରୁ ଅଛନ୍ତି ।

ମାଷ୍ଟର — ଆଚ୍ଛା, ଇଏ କଣ ଖୁବ୍ ବହିପତ୍ର ପଢ଼ନ୍ତି ?

ବୃନ୍ଦା — ଆଉ ବାବା, ବହିପତ୍ର ! ସବୁ ଏହାଙ୍କ ମୁହଁରେ !

ମାଷ୍ଟର ଏବେ ପଢ଼ାପଢ଼ି କରି ଆସିଛନ୍ତି । ଠାକୁର ଶ୍ରୀରାମକୃଷ୍ଣ ବହି ପଢ଼ନ୍ତି ନାହିଁ ଶୁଣି ଆହୁରି ଅବାକ୍ ହୋଇଗଲେ ।

ମାଷ୍ଟର — ସେ ବୋଧହୁଏ ସନ୍ଧ୍ୟା କରିବେ ? ଆମେମାନେ କଅଣ ଏହି ଘର ଭିତରକୁ ଯାଇପାରୁ । ତୁମେ ଥରେ ଖବର ଦେବ !

ବୃନ୍ଦା — ତୁମେମାନେ ଯାଅନା ବାବା ! ଯାଇ ଘରେ ବସ ।

ସେମାନେ ଯେତେବେଳେ ଘର ଭିତରେ ପ୍ରବେଶ କରି ଦେଖିଲେ, ଘରେ ଆଉ କେହି ନାହାଁନ୍ତି । ଠାକୁରେ ଘରେ ଏକାକୀ ଛୋଟ ଖଟ ଉପରେ ବସିଛନ୍ତି । ଘରେ ଧୂପ ଦିଆହୋଇଛି ଓ ସମସ୍ତ ଦ୍ୱାର ବନ୍ଦ । ମାଷ୍ଟର ପ୍ରବେଶ କରି ବଦ୍ଧାଞ୍ଜଳି ହୋଇ ପ୍ରଣାମ କଲେ । ଠାକୁର ଶ୍ରୀରାମକୃଷ୍ଣ ବସିବାକୁ ଅନୁଜ୍ଞା କରିବାରୁ ସେ ଓ ସିଧୁ ତଳେ ବସିଲେ । ଠାକୁର ପଚାରିଲେ, ''କେଉଁଠାରେ ରହ, କଅଣ କର, ବରାହନଗରେ କଅଣ କରିବାକୁ ଆସିଛ ?'' ଇତ୍ୟାଦି । ମାଷ୍ଟର ସମସ୍ତ ପରିଚୟ ଦେଲେ; କିନ୍ତୁ ଦେଖିଲେ ଯେ, ଠାକୁର ମଧ୍ୟେ ମଧ୍ୟେ ଯେପରି ଅନ୍ୟମନସ୍କ ହେଉଛନ୍ତି । ପରେ ଶୁଣିଲେ ଏହାର ନାମ ଭାବ । ଯେପରି କେହି ବନ୍‌ଶୀ ହାତରେ ଧରି ମାଛ ଧରିବାକୁ ବସିଛି । ମାଛ ଆସି ଥୋପ ଖାଇବାକୁ ଲାଗିଲେ ଯେତେବେଳେ ତେରେଣ୍ଡା ହଲିଉଠେ, ସେ ବ୍ୟକ୍ତି ଯେପରି ବ୍ୟସ୍ତ ହୋଇ ବନ୍‌ଶୀ ହାତରେ ଧରି ତେରେଣ୍ଡା ଆଡ଼କୁ ଏକ ଦୃଷ୍ଟିରେ ଏକ ମନରେ ଚାହିଁ ରହେ, କାହାରି ସଙ୍ଗରେ କଥା କହେ ନାହିଁ, ଏହା ଠିକ୍ ସେହିପରି ଭାବ । ପରେ ଶୁଣିଲେ ଓ ଦେଖିଲେ ଠାକୁରଙ୍କର ସନ୍ଧ୍ୟା ପରେ ଏହିପରି ଭାବାନ୍ତର ହୁଏ । କେବେ କେବେ ସେ ଏକାବେଳକେ ବାହ୍ୟଜ୍ଞାନଶୂନ୍ୟ ହୁଅନ୍ତି ।

ମାଷ୍ଟର — ଆପଣ ବର୍ତ୍ତମାନ ସନ୍ଧ୍ୟା କରିବେ, ତେବେ ଆମେମାନେ ଆସୁଛୁ ?

ଶ୍ରୀରାମକୃଷ୍ଣ (ଭାବସ୍ଥ) — ନା, ସନ୍ଧ୍ୟା ! ତାହା ଏପରି କିଛି ନୁହେଁ ।

ଆଉ କିଛି କଥାବାର୍ତ୍ତା ପରେ ମାଷ୍ଟର ପ୍ରଣାମ କରି ବିଦାୟ ଗ୍ରହଣ କଲେ । ଠାକୁର କହିଲେ, ''ପୁଣି ଆସ ।''

ମାଷ୍ଟର ଯାଉ ଯାଉ ଠାକୁରଙ୍କ ପ୍ରତି ଏକ ଅଦ୍ଭୁତ ଆକର୍ଷଣ ଅନୁଭବ କରିବାକୁ ଲାଗିଲେ ଓ ଶୀଘ୍ର ଆଉ ଥରେ ଆସିବା ପାଇଁ ମନସ୍ଥ କଲେ ।

## (୨)

## ଦ୍ୱିତୀୟ ଦର୍ଶନ ଓ ଗୁରୁଶିଷ୍ୟ ସମ୍ବାଦ

ଅଖଣ୍ଡମଣ୍ଡଳାକାରଂ ବ୍ୟାପ୍ତଂ ଯେନ ଚରାଚରମ୍ ।
ତତ୍‌ପଦଂ ଦର୍ଶିତଂ ଯେନ ତସ୍ମୈ ଶ୍ରୀଗୁରବେ ନମଃ ।।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)—ଆଚ୍ଛା, ତୁମ ଘର କେଉଁଠି ?

ମାଷ୍ଟର—ଆଜ୍ଞା, କଲିକତାରେ ।

ଶ୍ରୀରାମକୃଷ୍ଣ—ଏଠାକୁ କାହିଁକି ଆସିଛ ?

ମାଷ୍ଟର—ଏହି ବରାହନଗରରେ ବଡ଼ ଭଉଣୀଙ୍କର ଘର ଅଛି । ଈଶାନ କବିରାଜଙ୍କ ଘର ।

ଶ୍ରୀରାମକୃଷ୍ଣ—ଓଃ, ଈଶାନଙ୍କ ଘର ।

### କେଶବଚନ୍ଦ୍ର ସେନ ଓ ଠାକୁରଙ୍କର ମା'ଙ୍କ ନିକଟରେ କ୍ରନ୍ଦନ

ଶ୍ରୀରାମକୃଷ୍ଣ—ଆଚ୍ଛା, କେଶବ କିପରି ଅଛି ? ଦେହ ଭାରୀ ଖରାପ ଥିଲା ।

ମାଷ୍ଟର—ମୁଁ ବି ଶୁଣିଥିଲି, କିନ୍ତୁ ବର୍ତ୍ତମାନ ବୋଧହୁଏ ଭଲ ଅଛନ୍ତି ।

ଶ୍ରୀରାମକୃଷ୍ଣ—ମୁଁ କେଶବ ପାଇଁ ମାଆଙ୍କ ପାଖରେ ପଇଡ଼-ଚିନି ମାନସିକ କରିଥିଲି । ଶେଷ ରାତିରେ ନିଦ ଭାଙ୍ଗିଯାଏ, ଆଉ ମାଆଙ୍କ ପାଖରେ କାନ୍ଦେ, କହେ, ମା, କେଶବର ରୋଗ ଭଲ କରିଦିଅ; କେଶବ ନ ଥିଲେ ମୁଁ କଲିକତା ଗଲେ କାହା ସଙ୍ଗରେ କଥା କହିବି ? ତେଣୁ ଚିନି-ପଇଡ଼ ଯାଚିଥିଲି । ''କୁଆଡ଼େ କୁକ୍‌ସାହେବ ବୋଲି ଜଣେ କିଏ ଆସିଛି ? ସେ କ'ଣ ଲେକ୍‌ଚର ଦେଉଛି ? ମୋତେ କେଶବ ଜାହାଜରେ ନେଇଯାଇଥିଲା । କୁକ୍‌ସାହେବ ମଧ ଥିଲେ ।''

ମାଷ୍ଟର—ଆଜ୍ଞା, ମୁଁ ଏକଥା ଶୁଣିଛି; କିନ୍ତୁ ମୁଁ ତାଙ୍କର ଲେକ୍‌ଚର ଶୁଣିନାହିଁ । ମୁଁ ତାଙ୍କ ବିଷୟରେ ବିଶେଷ କିଛି ଜାଣେ ନାହିଁ ।

### ଗୃହସ୍ଥ ଓ ପିତାର କର୍ତ୍ତବ୍ୟ

ଶ୍ରୀରାମକୃଷ୍ଣ—ପ୍ରତାପର ଭାଇ ଆସିଥିଲା । ଏଠାରେ କିଛିଦିନ ରହିଥିଲା । କାମଦାମ କି ରୋଜଗାରପତ୍ର କିଛି ନାହିଁ । କହିଲା—ମୁଁ ଏଠାରେ ରହିବି । ଶୁଣିଲି, ସ୍ତ୍ରୀ ପିଲାପିଲି ସମସ୍ତଙ୍କୁ ଶ୍ୱଶୁରଘରେ ରଖିଛି । ଅନେକଗୁଡ଼ିଏ ପିଲାଛୁଆ । ମୁଁ ଗାଳିଦେଲି । ଦେଖିଲ ଭଲା, ଛୁଆପିଲା ହୋଇଛନ୍ତି, ସେମାନଙ୍କୁ କଣ ପୁଣି ଅନ୍ୟ ସାହିରୁ ଲୋକେ ଆସି ଖୁଆଇବେ, ପିଆଇବେ, ମଣିଷ କରିବେ ? ଲଜ୍ଜା ଲାଗୁନାହିଁ ଯେ ପିଲାଛୁଆଙ୍କୁ ଆଉ ଜଣେ ଖୁଆଉଛି, ଆଉ ସେମାନଙ୍କୁ

ଶ୍ୱଶୁରଘରେ ପକାଇ ରଖିଛି । ବହୁତ ଗାଳି ଦେଲି, ଆଉ କାମଦାମ ଖୋଜିବାକୁ କହିଲି । ସେତେବେଳେ ଏଠାରୁ ଯିବାକୁ ବାହାରିଲା ।

(୩)

ଅଜ୍ଞାନ-ତିମିରାନ୍ଧସ୍ୟ ଜ୍ଞାନାଞ୍ଜନ-ଶଲାକୟା ।
ଚକ୍ଷୁରୁନ୍ମୀଲିତଂ ୟେନ ତସ୍ମୈ ଶ୍ରୀଗୁରବେ ନମଃ ।।

**ମାଷ୍ଟରଙ୍କୁ ତିରସ୍କାର ଓ ତାଙ୍କର ଅହଙ୍କାର ଚୂର୍ଣ୍ଣୀକରଣ**

ଶ୍ରୀରାମକୃଷ୍ଣ — (ମାଷ୍ଟରଙ୍କୁ) ତୁମେ କଣ ବିବାହ କରିଛ ?

ମାଷ୍ଟର — ଆଜ୍ଞା ହଁ ।

ଶ୍ରୀରାମକୃଷ୍ଣ (ଥରିଉଠି) — ଆରେ ରାମଲାଲ୍ ![1] ଯା, ବିବାହ କରିସାରିଛି । ମାଷ୍ଟର ଘୋରତର ଅପରାଧୀ ପରି ଅବାକ୍ ହୋଇ ଅବନତ-ମସ୍ତକରେ ଚୁପ୍ ହୋଇ ରହିଲେ । ଭାବିଲେ, ବିବାହ କରିବା କଣ ଏଡ଼େ ଦୋଷ ?

ଠାକୁରେ ପୁଣି ପଚାରିଲେ — ତୁମର କଅଣ ପିଲା ହୋଇଛି ? ମାଷ୍ଟରଙ୍କ ଛାତି ଧଡ଼୍‌ପଡ଼୍ ହେବାକୁ ଲାଗିଲା । ଭୟରେ କହିଲେ — ଆଜ୍ଞା, ପୁଅ ହୋଇଛି । ସେତେବେଳେ ଠାକୁରେ ପୁଣି ଆକ୍ଷେପ କରି କହିଲେ — ଯା, ପୁଅ ହୋଇଯାଇଛି ।

ତିରସ୍କୃତ ହୋଇ ମାଷ୍ଟର ସ୍ତବ୍ଧ ହୋଇ ରହିଲେ । ମାଷ୍ଟରଙ୍କର ଅହଂକାର ଚୂର୍ଣ୍ଣ ହେବାକୁ ଲାଗିଲା ।

କିଛି ସମୟ ପରେ ଠାକୁର ଶ୍ରୀରାମକୃଷ୍ଣ ପୁଣି କୃପାଦୃଷ୍ଟି କରି ସ୍ନେହରେ କହିଲେ — ଦେଖ, ତୁମର ଭଲ ଲକ୍ଷଣ ଥିଲା; ମୁଁ କପାଳ ଓ ଚକ୍ଷୁ ଦେଖିଲେ ବୁଝିପାରେ । ଆଚ୍ଛା, ତୁମର ସ୍ତ୍ରୀ କିପରି ? ବିଦ୍ୟାଶକ୍ତି ନା ଅବିଦ୍ୟାଶକ୍ତି ?

**ଜ୍ଞାନ କାହାକୁ କହନ୍ତି**

ମାଷ୍ଟର — ଆଜ୍ଞା ଭଲ, କିନ୍ତୁ ଅଜ୍ଞାନ ।

ଶ୍ରୀରାମକୃଷ୍ଣ (ବିରକ୍ତ ହୋଇ) — ସେ ଅଜ୍ଞାନ ? ଆଉ ତୁମେ ଜ୍ଞାନୀ ?

ଜ୍ଞାନ କାହାକୁ କହନ୍ତି ଓ ଅଜ୍ଞାନ କାହାକୁ କହନ୍ତି, ମାଷ୍ଟର ଏପର୍ଯ୍ୟନ୍ତ ଜାଣି ନାହାନ୍ତି । କେବଳ ଏତିକି ଜାଣିଛନ୍ତି ଯେ, ଲେଖାପଢ଼ା ଶିଖିଲେ ଓ ବହି ପଢ଼ିପାରିଲେ ଜ୍ଞାନ ହୁଏ । ଏହି ଭ୍ରମ ପରେ ଦୂର ହୋଇଥିଲା — ଯେତେବେଳେ ଶୁଣିଲେ ଯେ, ଈଶ୍ୱରଙ୍କୁ ଜାଣିବା ଜ୍ଞାନ ଓ ଈଶ୍ୱରଙ୍କୁ ନ ଜାଣିବା ଅଜ୍ଞାନ । ଠାକୁର କହିଲେ — ତୁମେ କଅଣ ଜ୍ଞାନୀ ? ମାଷ୍ଟରଙ୍କର ଅହଂକାରରେ ବିଶେଷ ଆଘାତ ଲାଗିଲା ।

---

୧. ରାମଲାଲ — ଠାକୁରଙ୍କର ଭ୍ରାତୃଷ୍ପୁତ୍ର ଓ କାଳୀମନ୍ଦିରର ପୂଜକ ।

**ପ୍ରତିମା–ପୂଜା**

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)—ଆଚ୍ଛା, ତୁମର 'ସାକାର'ରେ ବିଶ୍ୱାସ ନା 'ନିରାକାର'ରେ ବିଶ୍ୱାସ ?

ମାଷ୍ଟର (ଅବାକ୍ ହୋଇ ସ୍ୱଗତଃ)—ସାକାରରେ ବିଶ୍ୱାସ ଥିଲେ ପୁଣି କଅଣ ନିରାକାରରେ ବିଶ୍ୱାସ ହୁଏ ? ଈଶ୍ୱର ନିରାକାର, ଏ ବିଶ୍ୱାସ ଥିଲେ, ଈଶ୍ୱର ସାକାର, ଏ ବିଶ୍ୱାସ କଅଣ ହୋଇପାରେ ? ବିରୁଦ୍ଧ ଅବସ୍ଥା ଦୁଇଟି କଅଣ ସତ୍ୟ ହୋଇପାରେ ? ଧଳା ଜିନିଷ ଦୁଧ କଅଣ କଳା ହୋଇପାରେ ?

ମାଷ୍ଟର—ଆଜ୍ଞା, ନିରାକାର । ମୋତେ ଏହିଟି ଭଲ ଲାଗେ ।

ଶ୍ରୀରାମକୃଷ୍ଣ—ଭଲ, ଭଲ । ଗୋଟାକରେ ବିଶ୍ୱାସ ରହିଲେ ହେଲା । ନିରାକାରରେ ବିଶ୍ୱାସ, ସେ ତ ନିଶ୍ଚୟ ଭଲ; ତେବେ ଏପରି ଭାବ ନାହିଁ ଯେ, ଏହିଟି କେବଳ ସତ୍ୟ ଓ ଆଉ ସବୁ ମିଥ୍ୟା । ଜାଣିରଖ ଯେ, ନିରାକାର ସତ୍ୟ ଓ ସାକାର ମଧ୍ୟ ସତ୍ୟ । ତୁମର ଯେଉଁଥିରେ ବିଶ୍ୱାସ, ସେଇଟିକୁ ଧରି ରହ ।

ଦୁଇଟିଯାକ ସତ— ଏହି କଥା ବାରମ୍ବାର ଶୁଣି ମାଷ୍ଟର ଅବାକ୍ ହୋଇ ରହିଲେ । ଏକଥା ତ ସେ କୌଣସି ବହିରେ ପଢ଼ିନାହାନ୍ତି !

ମାଷ୍ଟରଙ୍କର ଅହଙ୍କାର ତୃତୀୟ ଥର ପାଇଁ ଚୂର୍ଣ୍ଣ ହେଲା । କିନ୍ତୁ ଏବେ ମଧ୍ୟ ସମ୍ପୂର୍ଣ୍ଣ ହୋଇନାହିଁ । ତେଣୁ ପୁଣି ଟିକିଏ ତର୍କ କରିବାକୁ ଅଗ୍ରସର ହେଲେ ।

ମାଷ୍ଟର—ଆଜ୍ଞା, ସେ ସାକାର ଏ ବିଶ୍ୱାସ ହେଲା; କିନ୍ତୁ ମାଟିର ପ୍ରତିମା ତ ନୁହଁନ୍ତି ?

ଶ୍ରୀରାମକୃଷ୍ଣ—ମାଟି କାହିଁକି ! **ଚିନ୍ମୟୀ ପ୍ରତିମା ।**

ମାଷ୍ଟର 'ଚିନ୍ମୟୀ ପ୍ରତିମା' କଅଣ ବୁଝିପାରିଲେ ନାହିଁ । କହିଲେ—ଆଜ୍ଞା, ଯେଉଁମାନେ ମାଟିର ପ୍ରତିମା ପୂଜା କରନ୍ତି, ସେମାନଙ୍କୁ ତ ବୁଝାଇଦେବା ଉଚିତ ଯେ, ମାଟିର ପ୍ରତିମା ଈଶ୍ୱର ନୁହନ୍ତି; ଆଉ ପ୍ରତିମା ସମ୍ମୁଖରେ ଈଶ୍ୱରଙ୍କୁ ଉଦ୍ଦେଶ୍ୟ କରି ପୂଜା କରିବା ଉଚିତ, ମାଟିକୁ ପୂଜା କରିବା ଉଚିତ ନୁହେଁ ।

**ଲେକ୍‌ଚର ଓ ଶ୍ରୀରାମକୃଷ୍ଣ**

ଶ୍ରୀରାମକୃଷ୍ଣ (ବିରକ୍ତ ହୋଇ)—ତୁମ କଲିକତା ଲୋକଙ୍କର ଏହି ଗୋଟିଏ କଥା ! କେବଳ ଲେକ୍‌ଚର ଦେବା ଓ ବୁଝାଇବା ! ନିଜକୁ କିଏ ବୁଝାଏ ତାହାର ଠିକଣା ନାହିଁ ! ତୁମେ ବୁଝାଇବାକୁ କିଏ ? ଯାହାଙ୍କର ଜଗତ ସେ ବୁଝାଇବ ! ଯେ ଏହି ଜଗତ କରିଛନ୍ତି, ଚନ୍ଦ୍ର, ସୂର୍ଯ୍ୟ, ମନୁଷ୍ୟ, ଜୀବଜନ୍ତୁ କରିଛନ୍ତି, ଜୀବଜନ୍ତୁମାନଙ୍କର ଖାଇବାର ଉପାୟ କରିଛନ୍ତି, ପାଳନ କରିବା ପାଇଁ ମାଆ–ବାପା କରିଛନ୍ତି, ମାଆ–ବାପାଙ୍କର ସ୍ନେହ ଦେଇଛନ୍ତି, ସେ ହିଁ କେବଳ ବୁଝାଇବେ । ସେ ଏତେ ଉପାୟ କରିଛନ୍ତି, ଆଉ ଏ ଉପାୟ କରିବେ ନାହିଁ ? ଯଦି ବୁଝାଇବାର ଦରକାର ହୁଏ, ସେ ବୁଝାଇବେ । ସେ ତ ଅନ୍ତର୍ଯ୍ୟାମୀ । ଯଦି

ଏହି ମାଟିର ପ୍ରତିମା ପୂଜା କରିବାରେ କିଛି ଭୁଲ ହୋଇଥାଏ, ସେ କଅଣ ଜାଣନ୍ତି ନାହିଁ ଯେ ତାଙ୍କୁ ହିଁ ଡକା ହେଉଛି ? ସେ ଏହି ପୂଜାରେ ସନ୍ତୁଷ୍ଟ ହେବେ । ତୁମର ଏଥିପାଇଁ ମୁଣ୍ଡ ବଥାଉଛି କାହିଁକି ? ଯେଉଁଥିରେ ତୁମ ନିଜର ଜ୍ଞାନ ହେବ, ଭକ୍ତି ହେବ, ସେହି ଚେଷ୍ଟା କର ।

ଏହିଥର ବୋଧହୁଏ ମାଷ୍ଟରଙ୍କର ଅହଂକାର ଏକାବେଳେକେ ଚୂର୍ଣ୍ଣ ହେଲା ।

ଶ୍ରୀରାମକୃଷ୍ଣ — ତୁମେ ମାଟିପ୍ରତିମାର ପୂଜା କଥା କହୁଥିଲ । ଯଦି ମାଟିର ବି ହୁଏ, ସେ ପୂଜାର ମଧ୍ୟ ପ୍ରୟୋଜନ ଅଛି । ଭଗବାନ ନାନା ପ୍ରକାର ପୂଜାର ବ୍ୟବସ୍ଥା କରିଛନ୍ତି । ଯାହାଙ୍କର ଜଗତ, ସେ ହିଁ ଏହିସବୁ କରିଛନ୍ତି — ଅଧିକାରୀ-ଭେଦରେ ଯାହା ପେଟରେ ଯାହା ସହେ, ମାଆ ସେହିପରି ଖାଇବାର ବନ୍ଦୋବସ୍ତ କରନ୍ତି ।

ମାଷ୍ଟର — ଆଜ୍ଞା ହଁ ।

## (୪)

ସଂସାରାର୍ଣ୍ଣବଘୋରେ ୟଃ କର୍ଣ୍ଣଧାରସ୍ୱରୂପକଃ ।
ନମୋଽସ୍ତୁ ରାମକୃଷ୍ଣାୟ ତସ୍ମୈ ଶ୍ରୀଗୁରବେ ନମଃ ॥

**ଭକ୍ତିର ଉପାୟ**

ମାଷ୍ଟର (ବିନୀତ ଭାବରେ) — ଈଶ୍ୱରଙ୍କ ଆଡ଼କୁ ମନ କିପରି ଯାଏ ?

ଶ୍ରୀରାମକୃଷ୍ଣ — ଈଶ୍ୱରଙ୍କର ନାମ-ଗୁଣ-ଗାନ ସର୍ବଦା କରିବାକୁ ହୁଏ । ଆଉ ସତ୍‌ସଙ୍ଗ — ଈଶ୍ୱରଙ୍କର ଭକ୍ତ ବା ସାଧୁ, ଏମାନଙ୍କ ନିକଟକୁ ମଝିରେ ମଝିରେ ଯିବାକୁ ହୁଏ । ସଂସାର ଭିତରେ ଓ ବିଷୟ-କାର୍ଯ୍ୟରେ ରାତିଦିନ ରହିଲେ ଈଶ୍ୱରଙ୍କଠାରେ ମନ ରହେ ନାହିଁ । ମଝିରେ ମଝିରେ ନିର୍ଜ୍ଜନକୁ ଯାଇ ତାଙ୍କର ଚିନ୍ତା କରିବା ଖୁବ୍ ଦରକାର । ପ୍ରଥମ ଅବସ୍ଥାରେ ମଝିରେ ମଝିରେ ନିର୍ଜ୍ଜନ ନ ହେଲେ ଈଶ୍ୱରଙ୍କଠାରେ ମନ ସ୍ଥିର କରିବା ଭାରୀ କଠିନ ।

''ଯେତେବେଳେ ଗଛ ଚାରା ଅବସ୍ଥାରେ ଥାଏ, ସେତେବେଳେ ତା' ଚାରିପଟେ ବାଡ଼ ଦେବାକୁ ହୁଏ । ବାଡ଼ ନ ଦେଲେ ଛେଳି, ଗୋରୁ ଖାଇଯାଆନ୍ତି ।

''ଧ୍ୟାନ କରିବ ମନରେ, କୋଣରେ ଓ ବନରେ । ସର୍ବଦା ସଦସତ୍ ବିଚାର କରିବ — ଈଶ୍ୱର ହିଁ ସତ୍ ବା ନିତ୍ୟବସ୍ତୁ, ଆଉ ସବୁ ଅସତ୍ ବା ଅନିତ୍ୟ — ଏହି ବିଚାର କରୁ କରୁ ଅନିତ୍ୟ ବସ୍ତୁ ମନରୁ ତ୍ୟାଗ କରିବ ।''

ମାଷ୍ଟର (ବିନୀତ ଭାବରେ) — ସଂସାରରେ କିପରି ରହିବାକୁ ହେବ ?

**ଗୃହସ୍ଥ ସନ୍ନ୍ୟାସ । ଉପାୟ—ନିର୍ଜନରେ ସାଧନ**

ଶ୍ରୀରାମକୃଷ୍ଣ—ସବୁ କାମ କରିବ, କିନ୍ତୁ ଈଶ୍ୱରଙ୍କଠାରେ ମନ ରଖିଥିବ । ସ୍ତ୍ରୀ, ପୁତ୍ର, ବାପା, ମାଆ, ସମସ୍ତଙ୍କୁ ନେଇ ରହିବ ଓ ସେବା କରିବ; ଯେପରି କେତେ ଆପଣାର ଲୋକ; କିନ୍ତୁ ମନରେ ଜାଣିବ ସେମାନେ ତୁମର କେହି ନୁହନ୍ତି ।

"ବଡ଼ଲୋକ—ଘରର ଦାସୀ ସବୁ କାମ କରୁଥାଏ; କିନ୍ତୁ ଗାଆଁରେ ନିଜ ଘରେ ମନ ପଡ଼ିଥାଏ । ମୁନିବର ପିଲାମାନଙ୍କୁ ସେ ନିଜର ପିଲାପିଲି ପରି ହେପାଜତ କରେ—କହେ 'ମୋର ରାମ, ମୋର ହରି'—କିନ୍ତୁ ମନରେ ଠିକ୍ ଜାଣେ ଯେ, ଏମାନେ ମୋର କେହି ନୁହନ୍ତି ।

"କଇଁଛ ପାଣିରେ ଚରିବୁଲେ; କିନ୍ତୁ ତା'ର ମନ କେଉଁଠାରେ ରହିଥାଏ ଜାଣ ? ପାଣିକୂଳରେ ଥାଏ, ଯେଉଁଠାରେ ତାର ଡିମ୍ବଗୁଡ଼ିକ ରହିଥାଏ । ସଂସାରରେ ସବୁ କାମ କରିବ; କିନ୍ତୁ ଈଶ୍ୱରଙ୍କଠାରେ ମନ ରଖିଥିବ ।

"ଈଶ୍ୱରଙ୍କଠାରେ ଭକ୍ତି ଲାଭ ନ କରି ଯଦି ସଂସାର କରିବାକୁ ଯାଅ, ତାହାହେଲେ ଆହୁରି ବେଶୀ ବୁଡ଼ିଯିବ । ବିପଦ, ଶୋକ, ତାପ ଏସବୁ ଭିତରେ ଅଧୀର ହୋଇଯିବ । ବିଷୟ-ଚିନ୍ତା ଯେତେ ଅଧିକ କରିବ, ସେତେ ଆସକ୍ତି ବଢ଼ିବ ।

"ହାତରେ ତେଲ ଲଗାଇ ପଣସ ଭାଙ୍ଗିବାକୁ ହୁଏ, ନ ହେଲେ ହାତରେ ଅଠା ଲାଗିଯିବ । ଈଶ୍ୱର-ଭକ୍ତିରୂପକ ତେଲ ଲାଭ କରି ସଂସାର-କାର୍ଯ୍ୟରେ ହାତ ଦେବ ।

"କିନ୍ତୁ ଏହି ଭକ୍ତି ଲାଭ କରିବାକୁ ହେଲେ ନିର୍ଜନ ବାସ ଦରକାର । ଲହୁଣୀ କାଢ଼ିବାକୁ ହେଲେ ନିର୍ଜନରେ ଦହି ବସାଇବାକୁ ହୁଏ । ଦହିକୁ ହଲାହଲି କଲେ ଦହି ବସେ ନାହିଁ । ତା'ପରେ ନିର୍ଜନରେ ବସି, ସବୁ କାମ ଛାଡ଼ିଦେଇ ଦହି ମୁହାଁଇବାକୁ ହୁଏ । ତେବେ ଯାଇ ଲହୁଣୀ ବାହାରେ ।

"ଦେଖ, ଏହି ମନରେ ନିର୍ଜନରେ ଈଶ୍ୱର-ଚିନ୍ତା କଲେ ଜ୍ଞାନ, ବୈରାଗ୍ୟ ଓ ଭକ୍ତି ଲାଭ ହୁଏ; କିନ୍ତୁ ସଂସାରରେ ପକାଇ ରଖିଲେ ଏହି ମନ ନୀଚ ହୋଇଯାଏ । ସଂସାରରେ କେବଳ କାମିନୀ-କାଞ୍ଚନ ଚିନ୍ତା ।

"ସଂସାର ଜଳ, ଆଉ ମନଟି ଯେପରି ଦୁଧ । ଦୁଧକୁ ପାଣିରେ ରଖିଲେ ଦୁଧ ଓ ପାଣି ମିଶି ଏକ ହୋଇଯାଏ, ଖାଣ୍ଟି ଦୁଧ ଖୋଜିଲେ ମିଳେ ନାହିଁ । ଦୁଧକୁ ଦହି ବସାଇ ଲହୁଣୀ ବାହାର କରି ଯଦି ପାଣିରେ ରଖାଯାଏ, ତେବେ ତାହା ଭାସେ । ତେଣୁ ନିର୍ଜନରେ ସାଧନାଦ୍ୱାରା ପ୍ରଥମେ ଜ୍ଞାନ-ଭକ୍ତିରୂପକ ଲହୁଣୀ ଲାଭ କରିବ । ସେହି ଲହୁଣୀ ସଂସାର-ଜଳରେ ପକାଇ ରଖିଲେ ମଧ୍ୟ ମିଶିବ ନାହିଁ, ଭାସିବ ।

''ସଙ୍ଗେ ସଙ୍ଗେ ବିଚାର କରିବା ଖୁବ୍ ଦରକାର । କାମିନୀ-କାଞ୍ଚନ ଅନିତ୍ୟ ଏବଂ ଈଶ୍ୱର ହିଁ ଏକମାତ୍ର ବସ୍ତୁ । ଟଙ୍କାରେ କଅଣ ହୁଏ ? ଭାତ ହୁଏ, ଡାଲି ହୁଏ, ଲୁଗା ହୁଏ, ରହିବାର ଜାଗା ହୁଏ, ଏହି ପର୍ଯ୍ୟନ୍ତ; କିନ୍ତୁ ଏଥିରେ ଭଗବାନଲାଭ ହୁଏ ନାହିଁ । ତେଣୁ ଟଙ୍କା କେବେହେଲେ ଜୀବନର ଉଦ୍ଦେଶ୍ୟ ହୋଇ ନ ପାରେ । ଏହାର ନାମ ବିଚାର, ବୁଝିଲ ?''

ମାଷ୍ଟର—ଆଜ୍ଞା ହଁ, 'ପ୍ରବୋଧଚନ୍ଦ୍ରୋଦୟ' ନାଟକ ମୁଁ ଏବେ ପଢ଼ିଛି, ସେଥିରେ ଅଛି 'ବସ୍ତୁବିଚାର' ।

ଶ୍ରୀରାମକୃଷ୍ଣ—ହଁ, ବସ୍ତୁବିଚାର । ଭାବିଦେଖ, ଟଙ୍କାରେ ବା କଅଣ ଅଛି, ଆଉ ସୁନ୍ଦର ଦେହରେ ବା କଅଣ ଅଛି ! ବିଚାର କର, ସୁନ୍ଦରୀର ଦେହରେ କେବଳ ହାଡ଼, ମାଂସ, ଚର୍ବି, ମଳ, ମୂତ୍ର—ଏହିସବୁ ଅଛି । ମନୁଷ୍ୟ ଈଶ୍ୱରଙ୍କୁ ଛାଡ଼ି ଏହିସବୁ ବସ୍ତୁରେ କାହିଁକି ମନ ଦିଏ ? ଈଶ୍ୱରଙ୍କୁ ଭୁଲିଯାଏ କାହିଁକି ?

**ଈଶ୍ୱର-ଦର୍ଶନର ଉପାୟ**

ମାଷ୍ଟର—ଈଶ୍ୱରଙ୍କୁ କଅଣ ଦର୍ଶନ କରାଯାଏ ?

ଶ୍ରୀରାମକୃଷ୍ଣ—ହଁ, ଅବଶ୍ୟ କରାଯାଏ । ସମୟ ସମୟରେ ନିର୍ଜନବାସ, ତାଙ୍କର ନାମ-ଗୁଣ ଗାନ, ବସ୍ତୁ-ବିଚାର—ଏହିସବୁ ଉପାୟ ଅବଲମ୍ବନ କରିବାକୁ ହୁଏ ।

ମାଷ୍ଟର—କିପରି ଅବସ୍ଥାରେ ତାଙ୍କର ଦର୍ଶନ ମିଳେ ?

ଶ୍ରୀରାମକୃଷ୍ଣ—**ଖୁବ୍ ବ୍ୟାକୁଳ ହୋଇ କାନ୍ଦିଲେ ତାଙ୍କର ଦେଖା ମିଳେ ।** ସ୍ତ୍ରୀ-ଛୁଆଙ୍କ ପାଇଁ ଲୋକେ କେତେ କାନ୍ଦନ୍ତି । ଟଙ୍କା ପାଇଁ ଲୋକେ କାନ୍ଦି ଭସାଇ ଦିଅନ୍ତି; କିନ୍ତୁ ଈଶ୍ୱରଙ୍କ ପାଇଁ କିଏ କାନ୍ଦୁଛି ? ଡାକିବା ଭଳି ଡାକିବାକୁ ହୁଏ ।

ଏହା କହି ଠାକୁର ଗାଇଲେ—

''ଡାକ୍ ଦେଖି ମନ ଡାକାର୍ ମତନ୍ କେମନ୍ ଶ୍ୟାମା ଥାକ୍‌ତେ ପାରେ !...'' ଇତ୍ୟାଦି ।

''**ବ୍ୟାକୁଳତା** ହେଲାମାତ୍ରେ ଅରୁଣ ଉଦୟ ହେଲା । ତା'ପରେ ସୂର୍ଯ୍ୟ ଦେଖାଦେବେ । ବ୍ୟାକୁଳତା ପରେ ହିଁ ଈଶ୍ୱର-ଦର୍ଶନ ।

''ତିନି ଟାଣ ଏକାଠି ହେଲେ ତେବେ ସେ ଦେଖାଦିଅନ୍ତି—ବିଷୟୀର ବିଷୟ ପ୍ରତି ଟାଣ, ମାଆର ସନ୍ତାନ ପ୍ରତି ଟାଣ, ଆଉ ସତୀର ପତି ପ୍ରତି ଟାଣ—ଏହି ତିନି ଟାଣ ଯଦି କାହାର ଏକା ସଙ୍ଗରେ ହୁଏ, ତେବେ ସେହି ଟାଣ ବଳରେ ସେ ଈଶ୍ୱରଙ୍କୁ ଲାଭ କରିପାରେ ।

''ଏହାର ଅର୍ଥ ଈଶ୍ୱରଙ୍କୁ ଭଲ ପାଇବାକୁ ହେବ । ବିଷୟୀ ଯେପରି ବିଷୟକୁ ଭଲପାଏ, ମାଆ ଯେପରି ପିଲାକୁ ଭଲପାଏ, ସତୀ ଯେପରି ପତିକୁ

ଭଲପାଏ—ଏହି ତିନିଜଣଙ୍କର ପ୍ରୀତି ଏକତ୍ର କଲେ ଯେଉଁ ପ୍ରୀତି ହୁଏ, ତାହା ଈଶ୍ୱରଙ୍କୁ ଦେଇପାରିଲେ ତାଙ୍କର ଦର୍ଶନ ମିଳେ ।

''ବ୍ୟାକୁଳ ହୋଇ ତାଙ୍କୁ ଡାକିବା ଦରକାର । ବିରାଡ଼ିଛୁଆ କେବଳ ମ୍ୟାଉଁ ମ୍ୟାଉଁ କରେ । ମାଆକୁ ଡାକେ । ମା' ତାକୁ ଯେଉଁଠାରେ ରଖେ, ସେଠାରେ ରହେ—କେତେବେଳେ ହାଣ୍ଡିଶାଳରେ, କେତେବେଳେ ମାଟି ଉପରେ, କେତେବେଳେ ବା ବିଛଣା ଉପରେ ରଖିଦିଏ । ତା'ର କଷ୍ଟ ହେଲେ ସେ କେବଳ ମ୍ୟାଉଁ ମ୍ୟାଉଁ କରି ଡାକେ, ଆଉ କିଛି ଜାଣେ ନାହିଁ । ମାଆ ଯେଉଁଠାରେ ଥାଉ, ଏହି ମ୍ୟାଉଁ ମ୍ୟାଉଁ ଶବ୍ଦ ଶୁଣି ଆସି ପହଞ୍ଚେ ।''

## (୫)

ସର୍ବଭୂତସ୍ଥମାତ୍ମାନଂ ସର୍ବଭୂତାନି ଚାତ୍ମନି ।
ଈକ୍ଷତେ ଯୋଗଯୁକ୍ତାତ୍ମା ସର୍ବତ୍ର ସମଦର୍ଶନଃ ॥—ଗୀତା, ୬, ୨୯

### ନରେନ୍ଦ୍ର ଓ ଭବନାଥଙ୍କ ସହିତ ମାଷ୍ଟରଙ୍କର ମିଳନ

ଆଜି ରବିବାର । ସମୟ ଅନ୍ଦାଜ ତିନି ଚାରିଟା ବାଜିବ । ଶ୍ରୀରାମକୃଷ୍ଣ ଛୋଟ ଖଟ ଉପରେ ବସିଛନ୍ତି । ଘର ମଧ୍ୟରେ ଘରେ ଲୋକ । ଜଣେ ଊଣିଶ ବର୍ଷ ବୟସ୍କ ଯୁବକଙ୍କୁ ଉଦ୍ଦେଶ୍ୟ କରି ଓ ତାଙ୍କ ଆଡ଼କୁ ଚାହିଁ ଠାକୁରେ ଯେପରି କେତେ ଆନନ୍ଦିତ ହୋଇ ଅନେକ କଥା କହୁଥିଲେ । ଯୁବକଙ୍କର ନାମ ନରେନ୍ଦ୍ର । ସେ କଲେଜରେ ପଢ଼ନ୍ତି ଓ ସାଧାରଣ ବ୍ରାହ୍ମସମାଜକୁ ଯାତାୟାତ କରନ୍ତି, କଥାଗୁଡ଼ିକ ତେଜପରିପୂର୍ଣ୍ଣ । ଚକ୍ଷୁ ଦୁଇଟି ଉଜ୍ଜ୍ୱଳ । ନରେନ୍ଦ୍ରଙ୍କର[୧] ଭକ୍ତର ଚେହେରା ।

ମାଷ୍ଟର ଉପସ୍ଥିତ ହୋଇ ଅନୁମାନରେ ବୁଝିଲେ ଯେ କଥାଟି ବିଷୟାସକ୍ତ ସଂସାରୀ ବ୍ୟକ୍ତିଙ୍କ ସମ୍ବନ୍ଧରେ ହେଉଥିଲା, ଯେଉଁମାନେ ଈଶ୍ୱରାନୁରାଗୀ ଓ ଧର୍ମବିଶ୍ୱାସୀ ଲୋକମାନଙ୍କୁ ନିନ୍ଦା କରନ୍ତି । ସଂସାରରେ ଯେଉଁ ଦୁଷ୍ଟ ଲୋକମାନେ ଅଛନ୍ତି, ସେମାନଙ୍କ ସହିତ କିପରି ବ୍ୟବହାର କରିବା ଉଚିତ, ଏକଥା ମଧ୍ୟ ହେଉଥିଲା ।

ଶ୍ରୀରାମକୃଷ୍ଣ (ନରେନ୍ଦ୍ରଙ୍କ ପ୍ରତି)—ନରେନ୍ଦ୍ର ! କଅଣ କହୁଛୁ ? ସଂସାରୀ ଲୋକମାନେ କେତେ କଅଣ କହନ୍ତି; କିନ୍ତୁ ଦେଖ୍, ହାତୀ ଯେତେବେଳେ ଚାଲିଯାଏ, ପଛରେ କେତେ ଜନ୍ତୁ କେତେ ପ୍ରକାର ଚିତ୍କାର କରନ୍ତି; କିନ୍ତୁ ହାତୀ ଫେରି ଚାହେଁ ନାହିଁ । ତୋର ଯଦି କେହି ନିନ୍ଦା କରେ, ତୁ କଅଣ ମନେକରିବୁ ?

ନରେନ୍ଦ୍ର—ମୁଁ ମନେକରିବି, କୁକୁର ଭୁକୁଛି ।

ଶ୍ରୀରାମକୃଷ୍ଣ (ସହାସ୍ୟ)—ନା ରେ, ଏତେ ଦୂର ନୁହେଁ । (ସମସ୍ତଙ୍କର ହାସ୍ୟ) ଈଶ୍ୱର ସର୍ବଭୂତରେ ଅଛନ୍ତି । ତେବେ ଭଲ ଲୋକ ସଙ୍ଗରେ ମିଳାମିଶା

୧. ପରେ ସ୍ୱାମୀ ବିବେକାନନ୍ଦ ନାମରେ ପ୍ରସିଦ୍ଧ ।

ଚଳେ, ମନ୍ଦ ଲୋକ ପାଖରୁ ଦୂରେଇ ରହିବାକୁ ହୁଏ । ବାଘ ଭିତରେ ମଧ୍ୟ ନାରାୟଣ ଅଛନ୍ତି, ତାହା ବୋଲି ବାଘକୁ ଆଲିଙ୍ଗନ କରଯାଏ ନାହିଁ । (ସମସ୍ତଙ୍କର ହାସ୍ୟ) । ଯଦି କୁହ, ବାଘ ତ ନାରାୟଣ, କାହିଁକି ପଳାଇବି ? ତାହାର ଉତ୍ତର ଏହି ଯେ, ଯେଉଁମାନେ କହନ୍ତି 'ପଳାଇ ଆସ', ସେମାନେ ମଧ୍ୟ ନାରାୟଣ, ସେମାନଙ୍କର କଥା କାହିଁକି ନ ଶୁଣିବି ?

''ଗୋଟିଏ ଗପ ଶୁଣ । ଗୋଟିଏ ବଣରେ ଜଣେ ସାଧୁ ଥାଆନ୍ତି । ତାଙ୍କର ଅନେକ ଶିଷ୍ୟ । ସେ ଦିନେ ଶିଷ୍ୟମାନଙ୍କୁ ଉପଦେଶ ଦେଲେ ଯେ, ସର୍ବଭୂତରେ ନାରାୟଣ ଅଛନ୍ତି, ଏହା ଜାଣି ସମସ୍ତଙ୍କୁ ନମସ୍କାର କରିବ । ଦିନେ ଜଣେ ଶିଷ୍ୟ ହୋମ ସକାଶେ କାଠ ଆଣିବା ପାଇଁ ବଣକୁ ଯାଇଥିଲା । ସେହି ସମୟରେ ପାଟି ଶୁଭିଲା—ପଳାଅ, ପଳାଅ, ପାଗଳା ହାତୀ ଯାଉଛି । ସମସ୍ତେ ପଳାଇଗଲେ, କିନ୍ତୁ ଶିଷ୍ୟଟି ପଳାଇଲା ନାହିଁ । ସେ ଭାବିଲା, 'ହାତୀ ମଧ୍ୟ ନାରାୟଣ, ତେବେ ମୁଁ ପଳାଇବି କାହିଁକି ?' ଏହା ଭାବି ଠିଆ ହୋଇ ରହିଲା, ଆଉ ନମସ୍କାର କରି ସ୍ତବସ୍ତୁତି କରିବାକୁ ଲାଗିଲା । ଏଣେ ମାହୁନ୍ତ ଚିତ୍କାର କରି କହୁଛି, 'ପଳାଅ' 'ପଳାଅ' । ଶିଷ୍ୟଟି ତଥାପି ଘୁଞ୍ଚିଲା ନାହିଁ । ଶେଷରେ ହାତୀଟି ଶୁଣ୍ଢଦ୍ୱାରା ଉଠାଇନେଇ ତାକୁ ଗୋଟିଏ ପାଖକୁ ଫିଙ୍ଗିଦେଇ ଚାଲିଗଲା । ଶିଷ୍ୟ କ୍ଷତବିକ୍ଷତ ଓ ଅଚେତନ ହୋଇ ପଡ଼ିରହିଲା ।

''ଏହି ସମ୍ବାଦ ପାଇ ଗୁରୁ ଓ ଅନ୍ୟାନ୍ୟ ଶିଷ୍ୟ ତାକୁ ଆଶ୍ରମକୁ ଧରାଧରି କରି ନେଇଗଲେ ଓ ଔଷଧ ଦେଲେ । କିଛିକ୍ଷଣ ପରେ ଚେତା ଆସିବାରୁ ତାକୁ କେହି ଜଣେ ପଚାରିଲେ, 'ହାତୀ ଆସୁଛି ଶୁଣି ମଧ୍ୟ ତୁମେ ଘୁଞ୍ଚିଲ ନାହିଁ କାହିଁକି ?' ସେ କହିଲା, 'ମୋର ଗୁରୁଦେବ କହିଥିଲେ—ନାରାୟଣ ହିଁ ମନୁଷ୍ୟ, ଜୀବଜନ୍ତୁ ସବୁ ହୋଇଛନ୍ତି । ତେଣୁ ମୁଁ ହାତୀ-ନାରାୟଣ ଆସୁଛନ୍ତି ଦେଖି ସେଠାରୁ ଘୁଞ୍ଚିଲି ନାହିଁ ।' ଗୁରୁ ତାହା ଶୁଣି କହିଲେ, 'ବାବା, ହାତୀ-ନାରାୟଣ ଆସୁଥିଲେ ସତ; କିନ୍ତୁ ବାବା, ମାହୁନ୍ତ-ନାରାୟଣ ତ ତୁମକୁ ମନା କରିଥିଲେ ! ଯଦି ସମସ୍ତେ ନାରାୟଣ ତେବେ ମାହୁନ୍ତର କଥା ଶୁଣିଲ ନାହିଁ କାହିଁକି ? ମାହୁନ୍ତ-ନାରାୟଣଙ୍କ କଥା ମଧ୍ୟ ଶୁଣିବାକୁ ହୁଏ ।' (ସମସ୍ତଙ୍କର ହାସ୍ୟ)

''ଶାସ୍ତ୍ରରେ ଅଛି 'ଆପୋ ନାରାୟଣଃ'—ଜଳ ନାରାୟଣ । କିନ୍ତୁ କେଉଁ ଜଳ ଦିଅଁଙ୍କ ପୂଜାରେ ଲାଗେ, ଆଉ କେଉଁ ପାଣିରେ କେବଳ ହାତ ଧୋଇବା, ବାସନ ମାଜିବା, ଲୁଗା କାଚିବା ଚଳେ, ମାତ୍ର ପିଇବା ବା ଦିଅଁ ପୂଜା ଚଳେ ନାହିଁ । ସେହିପରି ସାଧୁ-ଅସାଧୁ, ଭକ୍ତ-ଅଭକ୍ତ ସମସ୍ତଙ୍କ ହୃଦୟରେ ନାରାୟଣ ଅଛନ୍ତି; କିନ୍ତୁ ଅସାଧୁ, ଅଭକ୍ତ ଓ ଦୁଷ୍ଟ ଲୋକଙ୍କ ସାଙ୍ଗରେ ବ୍ୟବହାର ଚଳେ ନାହିଁ, ମିଳାମିଶା ଚଳେ ନାହିଁ । କାହା ସଙ୍ଗରେ କେବଳ ମୁହଁରେ କଥା କହିବା ଚଳେ,

ପୁଣି କାହା ସଙ୍ଗରେ ତାହା ମଧ୍ୟ ଚଳେ ନାହିଁ । ଏହିପରି ଲୋକମାନଙ୍କ ନିକଟରୁ ଅଲଗା ରହିବାକୁ ହୁଏ ।''

ଜଣେ ଭକ୍ତ — ମହାଶୟ ! ଯଦି ଦୁଷ୍ଟ ଲୋକ ଅନିଷ୍ଟ କରିବାକୁ ଆସେ ବା ଅନିଷ୍ଟ କରେ, ତାହାହେଲେ କଅଣ ଚୁପ୍ କରି ରହିବା ଉଚିତ ?

**ଗୃହସ୍ଥ ଓ ତମୋଗୁଣ**

ଶ୍ରୀରାମକୃଷ୍ଣ — ଲୋକଙ୍କ ସଙ୍ଗରେ ବାସ କଲେ, ଦୁଷ୍ଟ ଲୋକଙ୍କ ହାତରୁ ନିଜକୁ ରକ୍ଷା କରିବା ପାଇଁ ଟିକିଏ ତମୋଗୁଣ ଦେଖାଇବା ଦରାକାର; କିନ୍ତୁ ଜଣେ ଅନିଷ୍ଟ କଲା ବୋଲି ଓଲଟା ତାହାର ଅନିଷ୍ଟ କରିବା ଉଚିତ୍ ନୁହେଁ ।

''ଗୋଟିଏ ପଡ଼ିଆରେ ଗଉଡ଼ ପିଲାମାନେ ଗୋରୁ ଚରାନ୍ତି । ସେହି ପଡ଼ିଆରେ ଗୋଟିଏ ଭୀଷଣ ବିଷାକ୍ତ ସାପ ଥିଲା । ସମସ୍ତେ ସାପ ଭୟରେ ଅତ୍ୟନ୍ତ ସାବଧାନରେ ରହନ୍ତି । ଦିନେ ଜଣେ ବ୍ରହ୍ମଚାରୀ ସେହି ପଡ଼ିଆ ବାଟେ ଯାଉଥିଲେ । ଗଉଡ଼ ପିଲାମାନେ ଦୌଡ଼ି ଆସି କହିଲେ, 'ଆଜ୍ଞା ! ସେବାଟେ ଯାଆନ୍ତୁ ନାହିଁ । ସେଆଡ଼େ ଗୋଟିଏ ଭୟଙ୍କର ବିଷାକ୍ତ ସାପ ଅଛି ।' ବ୍ରହ୍ମଚାରୀ କହିଲେ, 'ବାବା, ହେଉ, ମୋର ସେଥିରେ ଭୟ ନାହିଁ, ମୁଁ ମନ୍ତ୍ର ଜାଣେ ।' ଏହି କଥା କହି ବ୍ରହ୍ମଚାରୀ ସେହି ବାଟେ ଚାଲିଲେ । ଗଉଡ଼ ପିଲାମାନେ କେହି ଭୟରେ ସଙ୍ଗରେ ଗଲେ ନାହିଁ । ସାପଟି ଫଣା ଉଠାଇ ଦୌଡ଼ି ଆସିଲା; କିନ୍ତୁ ପାଖକୁ ଆସୁ ନ ଆସୁଣୁ ବ୍ରହ୍ମଚାରୀ ଯେମିତି ଗୋଟିଏ ମନ୍ତ୍ର ପଢ଼ିଦେଲେ, ସାପଟି ସଙ୍ଗେ ସଙ୍ଗେ କେଞ୍ଚୁଆ ପରି ତାଙ୍କ ପାଖରେ ପଡ଼ି ରହିଲା । ବ୍ରହ୍ମଚାରୀ କହିଲେ 'ଆରେ, ତୁ କାହିଁକି ଅନ୍ୟକୁ ହିଂସା କରି ବୁଲୁଛୁ ? ଆ, ତୋତେ ମନ୍ତ୍ର ଦେବି । ଏହି ମନ୍ତ୍ର ଜପିଲେ ତୋର ଭଗବାନଙ୍କଠାରେ ଭକ୍ତି ହେବ, ଭଗବାନ-ଲାଭ ହେବ, ଆଉ ହିଂସାପ୍ରବୃତ୍ତି ରହିବ ନାହିଁ ।' ଏହା କହି ସାପଟିକୁ ମନ୍ତ୍ର ଦେଲେ । ସାପଟି ମନ୍ତ୍ର ପାଇ ଗୁରୁଙ୍କୁ ପ୍ରଣାମ କଲା, ଆଉ ପଚାରିଲା, 'ମହାରାଜ ! କିପରି ସାଧନ କରିବି କହନ୍ତୁ ।' ଗୁରୁ କହିଲେ, 'ଏହି ମନ୍ତ୍ର ଜପ କର, ଆଉ କାହାକୁ ହିଂସା କର ନାହିଁ ।' ବ୍ରହ୍ମଚାରୀ ଯିବା ସମୟରେ କହିଲେ, 'ମୁଁ ପୁଣି ଆସିବି ।'

''ଏହିପରି କିଛି ଦିନ ଗଲା । ଗଉଡ଼ ପିଲାମାନେ ଦେଖିଲେ ଯେ, ସାପଟା ଆଉ କାମୁଡ଼ିବାକୁ ଆସୁନାହିଁ । ଟେକା ପକାଇଲେ ବି ରାଗୁ ନାହିଁ, ବରଂ କେଞ୍ଚୁଆ ପରି ହୋଇଯାଉଛି । ଦିନେ ଜଣେ ଗଉଡ଼ପିଲା ପାଖକୁ ଯାଇ ଲାଞ୍ଜକୁ ଧରି ଖୁବ୍ ବୁଲାଇ ବୁଲାଇ ତାକୁ ଫୋପାଡ଼ି ଦେଲା । ସାପର ମୁହଁରୁ ରକ୍ତ ବାହାରିଲା । ସେ ଅଚେତ ହୋଇ ପଡ଼ିଗଲା । ହଲ୍ ନାହିଁ ଚଲ୍ ନାହିଁ, ଗଉଡ଼ ପିଲାମାନେ ଭାବିଲେ ସାପଟା ମରିଗଲା; ତେଣୁ ସେମାନେ ଚାଲିଗଲେ ।

''ବେଶୀ ରାତିକୁ ସାପର ଚେତା ଆସିଲା । ସେତେବେଳେ ସେ ଆସ୍ତେ ଆସ୍ତେ ଅତି କଷ୍ଟରେ ତା'ର ଗାତ ଭିତରକୁ ଚାଲିଗଲା । ତା' ଦେହ ଦୁର୍ବଳ ହୋଇ

ଯାଇଥିଲା, ହଲିବାର ଶକ୍ତି ମଧ୍ୟ ନ ଥିଲା । ଅନେକ ଦିନ ପରେ ଯେତେବେଳେ ଅସ୍ଥି ଚର୍ମସାର ହୋଇଯାଇଛି, ସେତେବେଳେ ଆହାର ପାଇଁ ପ୍ରତିଦିନ ରାତିରେ ଥରେ ବାହାରକୁ ଚରିବାକୁ ଆସେ । ଭୟରେ ଦିନେବେଳେ ଆସେ ନାହିଁ । ମନ୍ତ୍ର ନେବା ଦିନଠାରୁ ଆଉ ଜୀବ ହିଂସା କରେ ନାହିଁ । ମାଟି, ପତ୍ର, ଗଛରୁ ପଡ଼ିଥିବା ଫଳ ଖାଇ ପ୍ରାଣଧାରଣ କରେ । ପ୍ରାୟ ବର୍ଷକ ପରେ ବ୍ରହ୍ମଚାରୀ ପୁଣି ସେହି ବାଟରେ ଆସିଲେ; ଆସି ସାପର ସନ୍ଧାନ ନେଲେ । ଗଉଡ଼ ପିଲାମାନେ କହିଲେ, 'ସାପଟା ମରିଯାଇଛି ।' ବ୍ରହ୍ମଚାରୀଙ୍କର କିନ୍ତୁ ସେକଥାରେ ବିଶ୍ୱାସ ହେଲା ନାହିଁ । ସେ ଜାଣନ୍ତି ଯେ, ସାପଟି ମନ୍ତ୍ର ନେଇଛି, ସେଥିରେ ସିଦ୍ଧ ନହେଲେ ଦେହତ୍ୟାଗ ହେବ ନାହିଁ । ପଡ଼ିଆରେ ବୁଲି ବୁଲି ସେ ତାଙ୍କର ଦେଇଥିବା ନାମ ଧରି ସାପଟିକୁ ଡାକିଲେ । ସାପଟି ଗୁରୁଦେବଙ୍କ ପାଟି ଶୁଣି ଗାତରୁ ବାହାରି ଆସିଲା ଏବଂ ଅତି ଭକ୍ତିଭାବରେ ପ୍ରଣାମ କଲା । ବ୍ରହ୍ମଚାରୀ ପଚାରିଲେ, 'ତୁ କିପରି ଅଛୁ ?' ସେ କହିଲା, 'ଆଜ୍ଞା, ଭଲ ଅଛି ! ବ୍ରହ୍ମଚାରୀ କହିଲେ, 'ତେବେ ତୁ ଏତେ ଦୁର୍ବଳ ହୋଇଯାଇଛୁ କାହିଁକି ?' ସାପ କହିଲା, 'ମହାରାଜ ଆପଣ ଆଦେଶ କରିଛନ୍ତି— କାହାରିକୁ ହିଂସା ନ କରିବାକୁ । ତେଣୁ ପତ୍ରଟାଏ, ଫଳଟାଏ ଖାଏ ବୋଲି ବୋଧହୁଏ ଦୁର୍ବଳ ହୋଇଯାଇଛି !' ତା'ର ସେତେବେଳେକୁ ସତ୍ତ୍ୱଗୁଣ ଆସିଛି, କାହାରି ଉପରେ କ୍ରୋଧ ନାହିଁ । ସେ ଭୁଲିଯାଇଥିଲା ଯେ, ଗଉଡ଼ ପିଲାମାନେ ତାକୁ ମାରିପକାଇବାର ଯୋଗାଡ଼ କରିଥିଲେ । ବ୍ରହ୍ମଚାରୀ କହିଲେ, 'କେବଳ ନ ଖାଇବା ଯୋଗୁଁ ଏପରି ଅବସ୍ଥା ହୁଏ ନାହିଁ, ଆଉ କିଛି କାରଣ ନିଶ୍ଚୟ ଅଛି, ତୁ ଭାବି ଦେଖ୍ ।' ସାପଟାର ସେତେବେଳେ ମନେପଡ଼ିଲା ଯେ ଗଉଡ଼ ପିଲାମାନେ ତାକୁ ଖୁବ୍ ମାରିଥିଲେ । ସେତେବେଳେ ସେ କହିଲା, 'ମହାରାଜ, ବର୍ତ୍ତମାନ ମନେ ପଡୁଛି, ଗଉଡ଼ ପିଲାମାନେ ମୋତେ ଥରେ ଖୁବ୍ ମାରିଥିଲେ । ସେମାନେ ଅଜ୍ଞାନ, ସେମାନେ ମୋ ମନର ଅବସ୍ଥା କିପରି ଜାଣନ୍ତେ ? ମୁଁ ଯେ କାହାକୁ କାମୁଡ଼ିବି ନାହିଁ ବା କୌଣସି ପ୍ରକାର ଅନିଷ୍ଟ କରିବି ନାହିଁ, ସେମାନେ କିପରି ଜାଣିବେ ?' ବ୍ରହ୍ମଚାରୀ କହିଲେ, 'ଛି ! ତୁ ଏଡ଼େ ବୋକା ! ନିଜକୁ ରକ୍ଷା କରି ଜାଣିନୁ । ମୁଁ କାମୁଡ଼ିବାକୁ ସିନା ମନା କରିଥିଲି, ଫଁ କରିବାକୁ ତ ମନା କରିନି ! ଫଁ ଫଁ କରି ସେମାନଙ୍କୁ ଭୟ ଦେଖାଇଲୁ ନାହିଁ କାହିଁକି ?'

''ଦୁଷ୍ଟ ଲୋକ ପାଖରେ ଫଁ ଫଁ କରିବାକୁ ହୁଏ । ଭୟ ଦେଖାଇବାକୁ ହୁଏ, କାଳେ ଅନିଷ୍ଟ କରିବେ । ତାଙ୍କ ଦେହରେ ବିଷ ଢାଳିବ ନାହିଁ, ଓଲଟା ଅନିଷ୍ଟ କରିବ ନାହିଁ ।''

**ଭିନ୍ନ ପ୍ରକୃତି — ସବୁ ଲୋକ କଅଣ ସମାନ ?**

ଶ୍ରୀରାମକୃଷ୍ଣ — ଈଶ୍ୱରଙ୍କର ସୃଷ୍ଟିରେ ନାନାପ୍ରକାର ଜୀବଜନ୍ତୁ, ଗଛପତ୍ର ରହିଛନ୍ତି । ଜନ୍ତୁମାନଙ୍କ ମଧ୍ୟରେ ଭଲ ଅଛନ୍ତି, ମନ୍ଦ ବି ଅଛନ୍ତି । ବାଘ ପରି ହିଂସ୍ର

ଜନ୍ତୁ ମଧ୍ୟ ଅଛନ୍ତି । ଗଛ ମଧ୍ୟରେ ଅମୃତ ପରି ଫଳ ଫଳେ ଏପରି ଅଛି, ଆଉ ବିଷ ଫଳ ଫଳେ ଏପରି ମଧ୍ୟ ଅଛି । ସେହିପରି ମଣିଷମାନଙ୍କ ଭିତରେ ଭଲ ଅଛନ୍ତି, ମନ୍ଦ ଅଛନ୍ତି, ସାଧୁ ଅଛନ୍ତି, ଅସାଧୁ ଅଛନ୍ତି, ସଂସାରୀ ଜୀବ ଅଛନ୍ତି, ଆଉ ଭକ୍ତ ମଧ୍ୟ ଅଛନ୍ତି । ଜୀବ ଚାରିପ୍ରକାର—ବଦ୍ଧ ଜୀବ, ମୁମୁକ୍ଷୁ ଜୀବ, ମୁକ୍ତ ଜୀବ ଓ ନିତ୍ୟ ଜୀବ ।

''**ନିତ୍ୟ ଜୀବ**—ଯେପରି ନାରଦାଦି—ଏମାନେ ସଂସାରରେ ଥାଆନ୍ତି, ଜୀବର ମଙ୍ଗଳ ପାଇଁ—ପ୍ରାଣୀମାନଙ୍କୁ ଶିକ୍ଷା ଦେବା ପାଇଁ ।

''**ବଦ୍ଧ ଜୀବ**—ବିଷୟରେ ଆସକ୍ତ ହୋଇ ଥାଏ, ଆଉ ଭଗବାନଙ୍କୁ ଭୁଲି ଥାଏ, ଭୁଲ୍‌ରେ ମଧ୍ୟ ଭଗବାନଙ୍କୁ ଚିନ୍ତା କରେ ନାହିଁ ।

''**ମୁମୁକ୍ଷୁ ଜୀବ**—ଯେଉଁମାନେ ମୁକ୍ତ ହେବାକୁ ଚେଷ୍ଟା କରନ୍ତି; କିନ୍ତୁ ସେମାନଙ୍କ ମଧ୍ୟରୁ କେହି ମୁକ୍ତ ହୋଇପାରେ କେହି ବା ହୋଇପାରେ ନାହିଁ ।

''**ମୁକ୍ତ ଜୀବ**—ଯେଉଁମାନେ କାମିନୀ-କାଞ୍ଚନରେ ବଦ୍ଧ ନୁହନ୍ତି—ଯେପରି ସାଧୁ ମହାତ୍ମାମାନେ, ଯେଉଁମାନଙ୍କ ମନରେ ବିଷୟ-ବୁଦ୍ଧି ନାହିଁ, ଆଉ ଯେଉଁମାନେ ସର୍ବଦା ଈଶ୍ୱରଙ୍କ ପାଦପଦ୍ମ ଚିନ୍ତା କରନ୍ତି ।

''ଯେପରି ପୋଖରୀରେ ଜାଲ ପଡ଼ିଛି—ଦୁଇ ଚାରିଟା ମାଛ ଏପରି ସିଆଣା ଯେ, କେତେବେଳେ ହେଲେ ଜାଲରେ ପଡ଼ନ୍ତି ନାହିଁ—ଏମାନେ ନିତ୍ୟ ଜୀବର ଉପମାସ୍ଥଳ; କିନ୍ତୁ ଅନେକ ମାଛ ଜାଲରେ ପଡ଼ନ୍ତି । ଏମାନଙ୍କ ମଧ୍ୟରୁ କେତେ ଗୁଡ଼ିଏ ପଳାଇବାକୁ ଚେଷ୍ଟା କରନ୍ତି, ଏମାନେ ମୁମୁକ୍ଷୁ ଜୀବର ଉପମାସ୍ଥଳ । କିନ୍ତୁ ସବୁ ମାଛ ପଳାଇ ପାରନ୍ତି ନାହିଁ । ଦୁଇଚାରିଟା ଧଡ଼ପଡ଼ କରି ଜାଲ ଭିତରୁ ପଳାଇଯାଆନ୍ତି—ସେତେବେଳେ କେଉଟମାନେ କହନ୍ତି—ହେଇ ଗୋଟିଏ ବଡ଼ ମାଛ ପଳାଇଗଲା ! କିନ୍ତୁ ଯେଉଁମାନେ ଜାଲରେ ପଡ଼ିଛନ୍ତି, ଅଧିକାଂଶ ପଳାଇ ପାରନ୍ତି ନାହିଁ । ପଳାଇବାର ଚେଷ୍ଟା ବି କରନ୍ତି ନାହିଁ, ବରଂ ଜାଲ ମଧ୍ୟରେ ମୁହଁ ପୂରାଇ ପୋଖରୀର ପଙ୍କ ଭିତରେ ମୁହଁ ଗୁଞ୍ଜି ଚୁପ୍ କରି ଶୋଇରହନ୍ତି—ମନେକରନ୍ତି, ଆମେମାନେ ବେଶ୍ ଅଛୁ; କିନ୍ତୁ ଜାଣନ୍ତି ନାହିଁ ଯେ କେଉଟ କିଛିସମୟ ପରେ ଟାଣି ଉପରକୁ ଟେକି ନେବ । ଏମାନେ ବଦ୍ଧ-ଜୀବର ଉପମାସ୍ଥଳ ।

**ସଂସାରୀ ଲୋକ ଓ ବଦ୍ଧ ଜୀବ**

''ବଦ୍ଧ-ଜୀବମାନେ ସଂସାରରେ କାମିନୀ ଓ କାଞ୍ଚନରେ ବଦ୍ଧ ହୋଇ ଅଛନ୍ତି । ହାତଗୋଡ଼ ବନ୍ଧା । ମନେକରନ୍ତି ଯେ, ଏହି ସଂସାରରେ କାମିନୀ ଓ କାଞ୍ଚନ ଦ୍ୱାରା ସୁଖ ହେବ, ଆଉ ନିର୍ଭୟରେ ରହିବେ । ଜାଣନ୍ତି ନାହିଁ ଯେ, ଏହାଦ୍ୱାରା ମୃତ୍ୟୁ ହେବ । ବଦ୍ଧ ଜୀବ ଯେତେବେଳେ ମରେ, ସେତେବେଳେ ତାହାର ସ୍ତ୍ରୀ କହେ, 'ତୁମେ ତ ଚାଲିଲ, ମୋର କଅଣ କରିଗଲ ?' ଆଉ ଏପରି

ମାୟା ଯେ, ଦୀପଟାରେ ବେଶୀ ବଳିତା ଜଳିଲେ କହେ, 'ତେଲ ପୋଡ଼ିଯିବ, ବଳିତା କମାଇ ଦିଅ ।' ଏଣେ ମୃତ୍ୟୁ-ଶଯ୍ୟାରେ ପଡ଼ିଛି ।

''ବଦ୍ଧ ଜୀବମାନେ ଈଶ୍ୱରଚିନ୍ତା କରନ୍ତି ନାହିଁ । ଯଦି ଅବସର ହୁଏ ତାହାହେଲେ ହୁଏତ ଏଣୁତେଣୁ ଗପ କରନ୍ତି, ନୋହିଲେ ବାଜେ କାମ କରନ୍ତି । ପଚାରିଲେ କହନ୍ତି, 'ମୁଁ ଚୁପ୍ କରି ରହିପାରେ ନାହିଁ, ତେଣୁ ବାଡ଼ ଦେଉଛି ।' ହୁଏତ ସମୟ କଟୁନି ଦେଖି ତାସ୍ ଖେଳିବାକୁ ଆରମ୍ଭ କଲେ ।'' (ସମସ୍ତେ ସ୍ତବ୍ଧ)

## (୬)

ୟୋ ମାମଜମନାଦିଂ ଚ ବେତ୍ତି ଲୋକମହେଶ୍ୱରମ୍ ।
ଅସଂମ୍ମୂଢ଼ଃ ସ ମର୍ତ୍ତ୍ୟେଷୁ ସର୍ବପାପୈଃ ପ୍ରମୁଚ୍ୟତେ ॥ ଗୀତା — ୧୦,୩

**ଉପାୟ — ବିଶ୍ୱାସ**

ଜଣେ ଭକ୍ତ — ମହାଶୟ ! ଏପରି ସଂସାରୀ ଜୀବର କଅଣ କୌଣସି ଉପାୟ ନାହିଁ ? ଶ୍ରୀରାମକୃଷ୍ଣ — ଅବଶ୍ୟ ଉପାୟ ଅଛି । ମଝିରେ ମଝିରେ ସାଧୁସଙ୍ଗ କରିବାକୁ ହୁଏ, ଆଉ ନିର୍ଜ୍ଜନରେ ଈଶ୍ୱରଚିନ୍ତା କରିବାକୁ ହୁଏ, ପୁଣି ବିଚାର କରିବାକୁ ହୁଏ, ତାଙ୍କ ନିକଟରେ ପ୍ରାର୍ଥନା କରିବାକୁ ହୁଏ — 'ମୋତେ ଭକ୍ତି, ବିଶ୍ୱାସ ଦିଅ ।'

''ବିଶ୍ୱାସ ହୋଇଗଲେ ହେଲା । ବିଶ୍ୱାସଠାରୁ ବଳି ଆଉ ଜିନିଷ ନାହିଁ ।

(କେଦାରଙ୍କ ପ୍ରତି) ''ବିଶ୍ୱାସର କେତେ ବଳ , ତାହା ତ ଶୁଣିଛ ? ପୁରାଣରେ ଅଛି, ରାମଚନ୍ଦ୍ର ଯେ ସାକ୍ଷାତ୍ ପୂର୍ଣ୍ଣବ୍ରହ୍ମ ନାରାୟଣ, ତାଙ୍କୁ ଲଙ୍କା ଯିବା ପାଇଁ ସେତୁ ବାନ୍ଧିବାକୁ ହେଲା; କିନ୍ତୁ ହନୁମାନ ରାମ ନାମରେ ବିଶ୍ୱାସ କରି ଲମ୍ଫଦେଇ ସମୁଦ୍ରର ଆରପାରିରେ ଯାଇ ପଡ଼ିଲା । ତାହାର ଆଉ ସେତୁର ପ୍ରୟୋଜନ ହେଲା ନାହିଁ । (ସମସ୍ତଙ୍କର ହାସ୍ୟ)

''ବିଭୀଷଣ ଗୋଟିଏ ପତ୍ରରେ ରାମନାମ ଲେଖି ପତ୍ରଟିକୁ ଜଣେ ଲୋକର ଲୁଗାକାନିରେ ବାନ୍ଧି ଦେଇଥିଲେ । ସେ ଲୋକଟି ସମୁଦ୍ରର ଆରପାରିକୁ ଯିବ — ବିଭୀଷଣ କହିଲେ, 'ତୁମର ଭୟ ନାହିଁ, ତୁମେ ବିଶ୍ୱାସ କରି ପାଣିଉପରେ ଚାଲିଯାଅ; କିନ୍ତୁ ଶୁଣ, ଯେତେବେଳେ ଅବିଶ୍ୱାସ କରିବ ସେତେବେଳେ ପାଣିରେ ବୁଡ଼ିଯିବ ।' ଲୋକଟି ଖୁସିରେ ସମୁଦ୍ର ଉପରେ ଚାଲିଯାଉଥିଲା । ଏତିକିବେଳେ ତାହାର ଭାରୀ ଇଚ୍ଛା ହେଲା ଯେ, ଲୁଗାକାନିରେ କଅଣ ବନ୍ଧା ହୋଇଛି ଥରେ ଦେଖିବ । ଫିଟାଇ ଦେଖିଲା ଯେ କେବେଳ ରାମନାମ ଲେଖା ଅଛି । ସେତେବେଳେ ସେ ଭାବିଲା — ଏ କଅଣ, କେବଳ ଗୋଟିଏ ରାମନାମ ଲେଖା ଅଛି ! ଯେମିତି ଅବିଶ୍ୱାସ, ସଙ୍ଗେ ସଙ୍ଗେ ବୁଡ଼ିଗଲା ।

''ଯାହାର ଈଶ୍ୱରଙ୍କଠାରେ ବିଶ୍ୱାସ ଅଛି, ସେ ଯଦି ମହାପାତକ କରେ— ଗୋରୁ, ବ୍ରାହ୍ମଣ, ସ୍ତ୍ରୀ ହତ୍ୟା କରେ, ତେବେ ମଧ୍ୟ ଏହି ବିଶ୍ୱାସ ବଳରେ ସେ ଗୁରୁତର ପାପରୁ ଉଦ୍ଧାର ପାଇପାରେ ।

''ସେ ଯଦି କହେ, ମୁଁ ଆଉ ଏପରି କାର୍ଯ୍ୟ କରିବି ନାହିଁ, ତାହାହେଲେ ତାହାର କୌଣସି ଭୟ ନାହିଁ । ଏହା କହି ଠାକୁର ଗୀତ ଗାଇଲେ—

''ଆମି ଦୁର୍ଗା ଦୁର୍ଗା ବଲେ ମା ଯଦି ମରି ।...''

**ନରେନ୍ଦ୍ର ଓ ନିତ୍ୟସିଦ୍ଧର ଲକ୍ଷଣ**

ନରେନ୍ଦ୍ରଙ୍କର କଥା ପଡ଼ିଲା । ଭକ୍ତମାନଙ୍କୁ ଠାକୁର କହିଲେ, ''ଏହି ପିଲାଟିକୁ ଦେଖୁଛ, ଏଠି ଗୋଟାଏ ପ୍ରକାର, ଦୁର୍ଦ୍ଦାନ୍ତ ବାଳକ । ବାପାଙ୍କ ପାଖରେ ଯେତେବେଳେ ବସେ ସତେ ଯେପରି କିଛି ଜାଣେ ନାହିଁ; ଆଉ ଚାନ୍ଦିନୀ ବା ଚଉତରା ଉପରେ ଯେତେବେଳେ ଖେଳେ ସେତେବେଳେ ଆଉ ଗୋଟାଏ ମୂର୍ତ୍ତି । ଏମାନେ ନିତ୍ୟସିଦ୍ଧଙ୍କର ଦଳ । ଏମାନେ ସଂସାରରେ କେବେ ବଦ୍ଧ ହୁଅନ୍ତି ନାହିଁ । ଟିକିଏ ବୟସ ହେଲେ ଚୈତନ୍ୟ ହୁଏ । ଆଉ ଭଗବାନଙ୍କ ଆଡ଼କୁ ଚାଲିଯାଆନ୍ତି । ଏମାନେ ସଂସାରକୁ ଆସନ୍ତି ଜୀବର ଶିକ୍ଷା ପାଇଁ । ଏମାନଙ୍କୁ ସଂସାରର କୌଣସି ବସ୍ତୁ ଭଲ ଲାଗେ ନାହିଁ । ଏମାନେ କାମିନୀ-କାଞ୍ଚନରେ କେବେହେଲେ ଆସକ୍ତି ହୁଅନ୍ତି ନାହିଁ ।

''ବେଦରେ ଅଛି ହୋମା ପକ୍ଷୀର କଥା । ଆକାଶରେ ଖୁବ୍ ଉଚ୍ଚରେ ସେ ରହେ । ସେହି ଆକାଶରେ ସେ ଅଣ୍ଡାଦିଏ । ଅଣ୍ଡା ଦେଲାମାତ୍ରେ ଅଣ୍ଡାଟା ତଳକୁ ପଡ଼ିଥାଏ କିନ୍ତୁ ଏତେ ଉଚ୍ଚ ଯେ ଅନେକ ଦିନ ଧରି ଅଣ୍ଡା ପଡୁଥାଏ ଅଣ୍ଡା ପଡୁ ପଡୁ ଫୁଟିଯାଏ ।.ସେତେବେଳେ ଛୁଆଟା ପଡୁଥାଏ । ପଡୁ ପଡୁ ତାହାର ଆଖି ଫିଟେ ଓ ଡେଣା ବାହାରେ । ଆଖି ଫିଟିଲାମାତ୍ରେ ଦେଖିପାରେ ଯେ ସେ ପଡ଼ିଯାଉଛି, ଆଉ ମାଟିରେ ପଡ଼ିଲେ ଏକାବେଳକେ ଛେଚି ହୋଇଯିବ । ସେତେବେଳେ ସେ ମା ଆଡ଼କୁ ପ୍ରାଣମୂର୍ଚ୍ଛା ମୁହାଁଏ ଏବଂ ଉପରକୁ ଉଠିଯାଏ ।''

ନରେନ୍ଦ୍ର ଉଠିଗଲେ । ସଭା ମଧ୍ୟରେ କେଦାର, ପ୍ରାଣକୃଷ୍ଣ, ମାଷ୍ଟର ଇତ୍ୟାଦି ଅନେକେ ଥିଲେ ।

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି)—ଦେଖ, ନରେନ୍ଦ୍ର ଗାଇବାରେ ବଜାଇବାରେ, ପଢ଼ାପଢ଼ିରେ ସବୁଥିରେ ଭଲ । ସେଦିନ କେଦାର ସାଙ୍ଗରେ ତର୍କ କରୁଥିଲା । କେଦାରର କଥାଗୁଡ଼ିକ କଚ୍ କଚ୍ କରି କାଟିଦେଲା । (ଠାକୁର ଓ ସମସ୍ତଙ୍କର ହାସ୍ୟ)

(ମାଷ୍ଟରଙ୍କ ପ୍ରତି) ''ହଇ ହୋ ! ଇଂରାଜୀରେ କଅଣ କୌଣସି ତର୍କ-ବହି ଅଛି ?''

ମାଷ୍ଟର—ଆଜ୍ଞା ହଁ, ଇଂରାଜୀରେ ନ୍ୟାୟଶାସ୍ତ୍ର Logic (ଲଜିକ୍) ଅଛି ।

ଶ୍ରୀରାମକୃଷ୍ଣ — ଆଚ୍ଛା, କିପରି ଟିକିଏ କହିଲ ।

ମାଷ୍ଟର ଏଥର ମୁସ୍କିଲରେ ପଡ଼ିଲେ ! କହିଲେ, ''ଗୋଟିଏ ପ୍ରକାର ଅଛି — ସାଧାରଣ ସିଦ୍ଧାନ୍ତରୁ ବିଶେଷ ସିଦ୍ଧାନ୍ତରେ ପହଞ୍ଚିବା । ଯେପରି — ସବୁ ମନୁଷ୍ୟ ମରିବେ; ପଣ୍ଡିତମାନେ ମନୁଷ୍ୟ; ଅତଏବ ପଣ୍ଡିତମାନେ ମରିବେ ।

''ଆଉ ଏକ ପ୍ରକାର — ବିଶେଷ ଦୃଷ୍ଟାନ୍ତ ବା ଘଟଣା ଦେଖି ସାଧାରଣ ସିଦ୍ଧାନ୍ତରେ ପହଞ୍ଚିବା । ଯେପରି — ଏ କୁଆଟା କଳା, ସେ କୁଆଟା କଳା, (ଆଉ) ଯେତେ କୁଆ ଦେଖୁଛି ସମସ୍ତେ କଳା; ଅତଏବ ସବୁ କୁଆ କଳା ।

''କିନ୍ତୁ ଏପରି ସିଦ୍ଧାନ୍ତ କଲେ ଭୁଲ ହୋଇପାରେ; କାରଣ, ହୁଏତ ଖୋଜୁ ଖୋଜୁ କେଉଁ ଦେଶରେ ଧଳା କୁଆ ଦେଖାଗଲା । ଆଉ ଗୋଟିଏ ଦୃଷ୍ଟାନ୍ତ — ଯେଉଁଠାରେ ବୃଷ୍ଟି, ସେହିଠାରେ ମେଘ ଥିଲା ବା ଅଛି; ଅତଏବ ସାଧାରଣ ସିଦ୍ଧାନ୍ତ ହେଲା ଯେ, ମେଘରୁ ବୃଷ୍ଟି ହୁଏ । ଆଉ ଗୋଟିଏ ଦୃଷ୍ଟାନ୍ତ — ଏହି ମନୁଷ୍ୟର ବତ୍ରିଶ ଦାନ୍ତ ଅଛି, ସେହି ମନୁଷ୍ୟର ବତ୍ରିଶ ଦାନ୍ତ ଅଛି, ଆଉ ଯେକୌଣସି ମନୁଷ୍ୟ ଦେଖୁଛି ତାହାର ବତ୍ରିଶ ଦାନ୍ତ ଅଛି; ଅତଏବ ସବୁ ମନୁଷ୍ୟଙ୍କର ବତ୍ରିଶ ଦାନ୍ତ ଅଛି ।

''ଏହିପରି ସାଧାରଣ ସିଦ୍ଧାନ୍ତର କଥା ନ୍ୟାୟଶାସ୍ତ୍ରରେ ଅଛି ।''

ଠାକୁର କଥାଗୁଡ଼ିକ ଶୁଣିଲେ, ମାତ୍ର ଶୁଣୁ ଶୁଣୁ ଅନ୍ୟମନସ୍କ ହେଲେ । ସୁତରାଂ ଏ ବିଷୟରେ ଆଉ ବେଶୀ ଆଲୋଚନା ହେଲା ନାହିଁ ।

## (୭)

ଶ୍ରୁତିବିପ୍ରତିପନ୍ନା ତେ ଯଦା ସ୍ଥାସ୍ୟତି ନିଶ୍ଚଳା ।
ସମାଧାବଚଲା ବୁଦ୍ଧିସ୍ତଦା ଯୋଗମବାପସ୍ୟସି ॥ ଗୀତା — ୨/୫୩

### ସମାଧି-ମନ୍ଦିରରେ

ସଭାଭଙ୍ଗ ହେଲା । ଭକ୍ତମାନେ ଏଣେ ତେଣେ ବୁଲିବାକୁ ଲାଗିଲେ । ମାଷ୍ଟର ମଧ୍ୟ ପଞ୍ଚବଟୀ ଇତ୍ୟାଦି ସ୍ଥାନକୁ ବୁଲିବାକୁ ଗଲେ । ସେତେବେଳେ ପ୍ରାୟ ଅପରାହ୍ନ ୫ଟା । କିଛି ସମୟ ପରେ ମାଷ୍ଟର ଠାକୁରଙ୍କ ଘର ଆଡ଼କୁ ଆସି ଘରର ଉତ୍ତର ପଟ ଛୋଟ ବାରଣ୍ଡାରେ ଏକ ଅଦ୍ଭୁତ ଘଟଣା ଦେଖିଲେ ।

ଠାକୁର ଶ୍ରୀରାମକୃଷ୍ଣ ସ୍ଥିର ହୋଇ ଠିଆ ହୋଇଛନ୍ତି । ନରେନ୍ଦ୍ର ଭଜନ ଗାଉଛନ୍ତି, ଦୁଇ ଚାରିଜଣ ଭକ୍ତ ଠିଆ ହୋଇଛନ୍ତି । ମାଷ୍ଟର ଆସି ସଙ୍ଗୀତ ଶୁଣିଲେ । ଭଜନ ଶୁଣି ଆକୃଷ୍ଟ ହୋଇ ରହିଲେ । ଠାକୁରଙ୍କ ଗୀତ ବ୍ୟତୀତ ଏପରି ମଧୁର ଗୀତ ସେ କେବେହେଲେ କେଉଁଠାରେ ଶୁଣି ନାହାନ୍ତି । ହଠାତ୍ ଠାକୁରଙ୍କ ଆଡ଼କୁ ଦୃଷ୍ଟି ପକାଇ ଅବାକ୍ ହୋଇ ରହିଲେ । ଦେଖିଲେ ଠାକୁର ଠିଆ ହୋଇଛନ୍ତି, ନିସ୍ପନ୍ଦ, ଚକ୍ଷୁର ପଲକ ପଡୁନାହିଁ । ନିଃଶ୍ୱାସ ପ୍ରଶ୍ୱାସ ବହୁଛି କି ବହୁନାହିଁ । ପଚାରିବାରୁ ଜଣେ ଭକ୍ତ କହିଲେ, ଏହାର ନାମ 'ସମାଧି' ।

ମାଷ୍ଟର ଏପରି କେବେହେଲେ ଦେଖିନାହାନ୍ତି କି ଶୁଣିନାହାନ୍ତି । ଅବାକ୍ ହୋଇ ସେ ଭାବିବାକୁ ଲାଗିଲେ, ଭଗବାନଙ୍କୁ ଚିନ୍ତା କରି ମନୁଷ୍ୟ କଅଣ ଏତେ ବାହ୍ୟଜ୍ଞାନ-ଶୂନ୍ୟ ହୁଏ ? ଜାଣେ ନା, କେତେଦୂର ବିଶ୍ୱାସ-ଭକ୍ତି ଥିଲେ ଏପରି ହୁଏ ! ଭଜନଟି ଏହି—

ଚିନ୍ତୟ ମନ ମାନସ ହରି ଚିଦ୍‌ଘନ ନିରଞ୍ଜନ ।
(କିବା) ଅନୁପମ ଭାତି, ମୋହନ ମୂରତି
ଭକତ-ହୃଦୟ ରଞ୍ଜନ ।
ନବ ରାଗେ ରଞ୍ଜିତ, କୋଟିଶଶୀ ବିନିନ୍ଦିତ,
କିବା, ବିଜଲୀ ଚମକେ, ସେ ରୂପ ଆଲୋକେ,
ପୁଲକେ ଶିହରେ ଜୀବନ ।

ଗୀତର ଶେଷ ପଦଟି ଗାଇଲାବେଳେ ଠାକୁର ଥରିବାକୁ ଲାଗିଲେ । ଦେହ ରୋମାଞ୍ଚିତ ହେବାକୁ ଲାଗିଲା । ଚକ୍ଷୁରୁ ଆନନ୍ଦାଶ୍ରୁ ବିଗଳିତ ହେଲା । ମଧ୍ୟେ ମଧ୍ୟେ ଯେପରି କିଛି ଦେଖି ହସିବାକୁ ଲାଗିଲେ । ହୁଏତ 'କୋଟିଶଶୀ ବିନିନ୍ଦିତ' ଅନୁପମ ରୂପ ଦର୍ଶନ କରୁଥିଲେ ! ଏହାର ନାମ କଅଣ ଭଗବାନଙ୍କର ଚିନ୍ମୟ ରୂପ ଦର୍ଶନ ? କେତେ ସାଧନା କଲେ, କେତେ ତପସ୍ୟା ଫଳରେ, କେତେଦୂର ଭକ୍ତି-ବିଶ୍ୱାସ ବଳରେ ଏହିପରି ଈଶ୍ୱର ଦର୍ଶନ ହୁଏ ?

ପୁଣି ଗୀତ ଚାଲିଲା—

ହୃଦି କମଳାସନେ ଭଜ ତାର ଶ୍ରୀଚରଣ,
ଦେଖ ଶାନ୍ତ ମନେ, ପ୍ରେମ ନୟନେ
ଅପରୂପ ପ୍ରିୟ ଦର୍ଶନ ।

ପୁନର୍ବାର ସେହି ଭୁବନମୋହନ ହାସ୍ୟ ! ଶରୀର ସେହିପରି ନିସ୍ପନ୍ଦ ! ସ୍ତିମିତ ଲୋଚନ ! କିନ୍ତୁ ଯେପରି କଅଣ ଅପରୂପ ଦର୍ଶନ କରୁଥିଲେ ! ଆଉ ସେହି ଅପରୂପ ରୂପ ଦର୍ଶନ କରି ଯେପରି ମହା ଆନନ୍ଦରେ ଭାସୁଥିଲେ । ଏଥର ଗୀତ ଶେଷ ହେଲା । ନରେନ୍ଦ୍ର ଗାଇଲେ—

ଚିଦାନନ୍ଦ ରସେ, ଭକ୍ତିଯୋଗାବେଶେ, ହଓରେ ଚିର ମଗନ ।
(ଚିଦାନନ୍ଦ-ରସେ) (ପ୍ରେମାନନ୍ଦ-ରସେ)

ସମାଧି ଓ ପ୍ରେମାନନ୍ଦର ଏହି ଅଦ୍ଭୁତ ଛବି ହୃଦୟ ମଧ୍ୟରେ ଗ୍ରହଣ କରି ମାଷ୍ଟର ଗୃହକୁ ଫେରିଲେ । ମଧ୍ୟେ ମଧ୍ୟେ ହୃଦୟ ମଧ୍ୟରେ ସେହି ହୃଦୟୋନ୍ମାଦକାରୀ ମଧୁର ସଙ୍ଗୀତର ସ୍ୱର ଉଠିବାକୁ ଲାଗିଲା ।

''ପ୍ରେମାନନ୍ଦ-ରସେ ହଓରେ ଚିର ମଗନ । (ହରିପ୍ରେମେ ମତ୍ତ ହୟେ)''

## (୮)

ୟଂ ଲବ୍‌ଧ୍ୱା ଚାପରଂ ଲାଭଂ ମନ୍ୟତେ ନାଧିକଂ ତତଃ ।
ୟସ୍ମିନ୍‌ସ୍ଥିତୋ ନ ଦୁଃଖେନ ଗୁରୁଣାପି ବିଚାଲ୍ୟତେ ॥ ଗୀତା — ୬,୨୨

**ନରେନ୍ଦ୍ର ଭଗନାଥାଦି ଭକ୍ତଙ୍କ ସଙ୍ଗରେ ଆନନ୍ଦ**

ତା' ପରଦିନ ଛୁଟି ଥିଲା । ଅପରାହ୍ନ ତିନିଟାବେଳେ ମାଷ୍ଟର ପୁଣି ଆସି ଉପସ୍ଥିତ । ଠାକୁର ଶ୍ରୀରାମକୃଷ୍ଣ ସେହି ପୂର୍ବ ପରିଚିତ ଘରେ ବସିଛନ୍ତି । ତଳେ ମଶିଣା ପଡ଼ିଛି । ସେଠାରେ ନରେନ୍ଦ୍ର, ଭବନାଥ ଓ ଜଣେ ଦୁଇଜଣ ଭକ୍ତ ବସିଛନ୍ତି । ଯୁବକମାନଙ୍କ ବୟସ ଉଣେଇଶ କୋଡ଼ିଏ ବର୍ଷ । ଠାକୁର ସହାସ୍ୟ ବଦନ, ଛୋଟ ଖଟ ଉପରେ ବସିଛନ୍ତି ଏବଂ ଯୁବକମାନଙ୍କ ସହିତ ଆନନ୍ଦରେ କଥାବାର୍ତ୍ତା କରୁଛନ୍ତି । ମାଷ୍ଟର ଘର ଭିତରେ ପ୍ରବେଶ କରୁଛନ୍ତି ଦେଖି ଠାକୁର ଉଚ୍ଚ ହାସ୍ୟ କରି ଯୁବକମାନଙ୍କୁ କହିଲେ, "ହେଇରେ, ପୁଣି ଆସିଛି !" — କହିବାମାତ୍ରେ ହାସ୍ୟ । ସମସ୍ତେ ହସିବାକୁ ଲାଗିଲେ । ମାଷ୍ଟର ଆସି ଭୂମିଷ୍ଠ ହୋଇ ପ୍ରଣାମ କରି ବସିଲେ । ଆଗେ ହାତ ଯୋଡ଼ି ଠିଆ ହୋଇ ପ୍ରଣାମ କରୁଥିଲେ — ଯେପରି ଇଂରାଜୀ-ପଢ଼ା ଲୋକମାନେ କରନ୍ତି । କିନ୍ତୁ ଆଜି ସେ ଭୂମିଷ୍ଠ ହୋଇ ପ୍ରଣାମ କରିବାକୁ ଶିଖିଲେ । ସେ ଆସନ ଗ୍ରହଣ କରିବା ପରେ ଠାକୁର କାହିଁକି ହସୁଥିଲେ, ତାହା ହିଁ ନରେନ୍ଦ୍ରାଦି ଭକ୍ତମାନଙ୍କୁ ବୁଝାଇଦେଲେ । ସେ କହିଲେ, "ଦେଖ, ଗୋଟିଏ ମୟୂରକୁ ଚାରିଟାବେଳେ ଅଫିମ ଖୁଆଇ ଦିଆଯାଇଥିଲା । ତା' ପରଦିନ ଠିକ୍ ଚାରିଟା ସମୟରେ ମୟୂରଟି ଆସି ହାଜର; ଅଫିମ ନିଶା ଧରିଥିଲା, ତେଣୁ ପୁଣି ଠିକ୍ ସମୟରେ ଅଫିମ ଖାଇବାକୁ ଆସିଛି ।" (ସମସ୍ତଙ୍କର ହାସ୍ୟ)

ମାଷ୍ଟର ମନେ ମନେ ଭାବିବାକୁ ଲାଗିଲେ, 'ଏ ତ ଠିକ୍ କଥା କହୁଛନ୍ତି । ଘରକୁ ଯାଏ, କିନ୍ତୁ ଦିନରାତି ଏହାଙ୍କ ପାଖରେ ମନ ପଡ଼ି ରହେ — କେତେବେଳେ ଦେଖିବି, କେତେବେଳେ ଦେଖିବି । ଏଠାକୁ କେହି ଯେପରି ଟାଣି ଆଣେ । ଇଚ୍ଛା କଲେ ବି ଅନ୍ୟ ଜାଗାକୁ ଯିବା ପାଇଁ ଚାରା ନାହିଁ, ଏଠାକୁ ଆସିବାକୁ ହିଁ ହେବ !' ଏହିପରି ଭାବୁଛନ୍ତି । ଏଣେ ଠାକୁର ଯୁବକମାନଙ୍କ ସଙ୍ଗରେ ଅନେକ ଥଟ୍ଟା ପରିହାସ କରିବାକୁ ଲାଗିଲେ, ଯେପରି ସେମାନେ ସମବୟସ୍କ । ହସର ଲହରୀ ଉଠିଲା, ସତେ ଯେପରି ଆନନ୍ଦର ହାଟ ବସିଛି ।

ମାଷ୍ଟର ଅବାକ୍ ହୋଇ ଏହି ଅଦ୍ଭୁତ ଚରିତ୍ର ଦେଖି ଭାବିଲେ — ଏହାଙ୍କର କ'ଣ ସେଦିନ ସମାଧି ଓ ଅଦୃଷ୍ଟପୂର୍ବ ପ୍ରେମାନନ୍ଦ ଦେଖିଥିଲି ! ସେହି ବ୍ୟକ୍ତି କ'ଣ ଆଜି ପ୍ରାକୃତ ଲୋକଙ୍କ ପରି ବ୍ୟବହାର କରୁଛନ୍ତି ! ଏ କ'ଣ ମୋତେ ପ୍ରଥମ ଦିନ ଉପଦେଶ ଦେବା ସମୟରେ ତିରସ୍କାର କରିଥିଲେ ? ଏ କ'ଣ ମୋତେ 'ତୁମେ କଅଣ ଜ୍ଞାନୀ' ବୋଲି କହିଥିଲେ ? ଏ କ'ଣ ସାକାର ନିରାକାର ଦୁଇ

ସତ୍ୟ ବୋଲି କହିଥିଲେ ? ଏ କ'ଣ ମୋତେ କହିଥିଲେ ଯେ, ଈଶ୍ୱର ହିଁ ସତ୍ୟ, ଆଉ ସଂସାରର ସବୁକିଛି ଅନିତ୍ୟ ? ଏ କ'ଣ ମୋତେ ସଂସାରରେ ଦାସୀ ପରି ରହିବାକୁ କହିଥିଲେ ?

ଠାକୁର ରାମକୃଷ୍ଣ ଆନନ୍ଦ କରୁଛନ୍ତି ଓ ମାଷ୍ଟରଙ୍କୁ ଥରେ ଥରେ ଦେଖୁଛନ୍ତି । ଦେଖିଲେ, ସେ ଅବାକ୍ ହୋଇ ବସିଛନ୍ତି । ସେତେବେଳେ ରାମଲାଲଙ୍କୁ ସମ୍ବୋଧନ କରି କହିଲେ, ''ଦେଖ, ଏହାଙ୍କର ବୟସ ଟିକିଏ ବେଶୀ କି ନା, ସେଥିପାଇଁ ଟିକିଏ ଗମ୍ଭୀର । ଏମାନେ ଏତେ ହସକୌତୁକ କରୁଛନ୍ତି, କିନ୍ତୁ ଏ ଚୁପ୍ କରି ବସିଛନ୍ତି ।'' ମାଷ୍ଟରଙ୍କର ବୟସ ସେତେବେଳେ ସତାଇଶ ବର୍ଷ ହେବ ।

କଥା କହୁ କହୁ ପରମଭକ୍ତ ହନୁମାନଙ୍କର କଥା ଉଠିଲା । ହନୁମାନଙ୍କର ଖଣ୍ଡିଏ ଫଟୋ ଠାକୁରଙ୍କ ଘରେ କାନ୍ଥରେ ଝୁଲୁଥିଲା । ଠାକୁର କହିଲେ, ''ଦେଖ, ହନୁମାନଙ୍କର କି ଭାବ ! ଧନ, ମାନ, ଦେହସୁଖ, କିଛି ହିଁ ଚାହାନ୍ତି ନାହିଁ, କେବଳ ଭଗବାନଙ୍କୁ ଚାହାଁନ୍ତି । ଯେତେବେଳେ ସ୍ଫଟିକ ସ୍ତମ୍ଭରୁ ବ୍ରହ୍ମାସ୍ତ୍ର ନେଇ ପଳାଉଛନ୍ତି, ସେତେବେଳେ ମନ୍ଦୋଦରୀ ଅନେକ ପ୍ରକାର ଫଳ ନେଇ ଲୋଭ ଦେଖାଇବାକୁ ଲାଗିଲେ । ଭାବିଲେ ଫଳ ଲୋଭରେ ଓହ୍ଲାଇ ଆସି ଅସ୍ତ୍ରଟି ଯଦି ପକାଇଦିଏ । କିନ୍ତୁ ହନୁମାନ ଭୁଲିଯିବାର ପାତ୍ର ନୁହଁନ୍ତି । ସେ କହିଲେ—

ମୋର କେଉଁ ଫଳର ଅଭାବ ?
ପାଇଛି ଯେ ଫଳ ଜନମ ସଫଳ
ମୋକ୍ଷ-ଫଳର ବୃକ୍ଷ ରାମ ହୃଦୟେ ॥
ଶ୍ରୀରାମ-କଳ୍ପତରୁ ମୂଳେ ବସିଥାଏ,
ଯେଉଁ ଫଳ ଇଚ୍ଛା ସେହି ଫଳ ପାଏ ॥
କି ଫଳ ଦିଅ ବଡ଼ାଇ (ଧନୀ ଗୋ), ସେ ଫଳ ଗ୍ରାହକ ନୋହି,
ଯିବି ପ୍ରତିଫଳ ସଭିଙ୍କି ଦେଇ ॥''

**ସମାଧି-ମନ୍ଦିରରେ**

ଠାକୁରେ ଏହି ଗୀତ ଗାଇବାକୁ ଲାଗିଲେ, ପୁଣି ସେହି ସମାଧି, ନିସ୍ପନ୍ଦ ଦେହ, ସ୍ତିମିତ ଲୋଚନ, ଦେହ ସ୍ଥିର, ବସିଛନ୍ତି—ଫଟୋଗ୍ରାଫରେ ଯେପରି ଛବି ଦେଖାଯାଏ । ଭକ୍ତମାନେ ଏତେବେଳ ଯାଏ ହସାହସି ଖେଳାଖେଳି କରୁଥିଲେ, ବର୍ତ୍ତମାନ ସମସ୍ତେ ଏକଦୃଷ୍ଟିରେ ଠାକୁରଙ୍କର ସେହି ଅଦ୍ଭୁତ ଅବସ୍ଥା ନିରୀକ୍ଷଣ କରିବାକୁ ଲାଗିଲେ । ସମାଧି ଅବସ୍ଥା ମାଷ୍ଟର ଏହି ଦ୍ୱିତୀୟ ଥର ଦର୍ଶନ କଲେ । ବହୁ ସମୟ ପରେ ଏହି ଅବସ୍ଥାର ପରିବର୍ତ୍ତନ ହେଲା । ଦେହ ଶିଥିଳ ହେଲା । ମୁଖ ସହାସ୍ୟ ହେଲା । ଇନ୍ଦ୍ରିୟଗଣ ପୁଣି ନିଜ ନିଜର କାର୍ଯ୍ୟ କଲେ । ଚକ୍ଷୁକୋଣରୁ ଆନନ୍ଦାଶ୍ରୁ ବିସର୍ଜନ କରି ଠାକୁର **'ରାମ ରାମ'** ଏହି ନାମ ଉଚ୍ଚାରଣ କରିବାକୁ ଲାଗିଲେ !

ମାଷ୍ଟର ଭାବିଲେ—ଏହି ମହାପୁରୁଷ କଅଣ ପିଲାମାନଙ୍କ ସାଙ୍ଗରେ ଥଟ୍ଟା ପରିହାସ କରୁଥିଲେ ? ସେତେବେଳେ ଠିକ୍ ଯେପରି ପାଞ୍ଚ ବର୍ଷର ବାଳକ !

ଠାକୁର ପୂର୍ବପରି ପ୍ରକୃତିସ୍ଥ ହୋଇ ପୁଣି ସାଧାରଣ ଲୋକଙ୍କ ପରି ବ୍ୟବହାର କଲେ । ମାଷ୍ଟରଙ୍କୁ ଓ ନରେନ୍ଦ୍ରଙ୍କୁ ସମ୍ବୋଧନ କରି କହିଲେ, ''ତୁମେ ଦୁଇଜଣ ଇଂରାଜୀରେ କଥା କୁହ ଓ ବିଚାର କର, ମୁଁ ଶୁଣିବି ।'' ମାଷ୍ଟର ଓ ନରେନ୍ଦ୍ର ଉଭୟେ ଏହି କଥା ଶୁଣି ହସିଲେ । ଦୁହେଁ କିଛି ଆଲୋଚନା କଲେ କିନ୍ତୁ ବଙ୍ଗଳାରେ । ଠାକୁରଙ୍କ ସମ୍ମୁଖରେ ମାଷ୍ଟରଙ୍କ ବିଚାର ଆଉ ସମ୍ଭବ ନୁହେଁ । ତାଙ୍କର ତର୍କର ଘର ଠାକୁରଙ୍କ କୃପାରୁ ଏକପ୍ରକାର ବନ୍ଦ ହୋଇଯାଇଛି । ଆଉ କିପରି ବା ତର୍କ ବିଚାର କରିବେ ? ଠାକୁର ପୁଣି ଥରେ ଜିଦ୍ କଲେ; କିନ୍ତୁ ଇଂରାଜୀରେ ତର୍କ ଆଉ ହେଲା ନାହିଁ ।

## (୯)

ତ୍ୱମକ୍ଷରଂ ପରମଂ ବେଦିତବ୍ୟଂ, ତ୍ୱମସ୍ୟ ବିଶ୍ୱସ୍ୟ ପରଂ ନିଧାନମ୍ ।
ତ୍ୱମବ୍ୟୟଃ ଶାଶ୍ୱତଧର୍ମଗୋପ୍ତା, ସନାତନସ୍ତ୍ୱଂ ପୁରୁଷୋ ମତୋ ମେ ॥
—ଗୀତା, ୧୧/୧୮

**ଅନ୍ତରଙ୍ଗ ଭକ୍ତଙ୍କ ସଙ୍ଗରେ—'ମୁଁ କିଏ ?'**

ପାଞ୍ଚଟା ବାଜିଛି । କେତେଜଣ ଭକ୍ତ ଯେ ଯାହାର ଘରକୁ ଗଲେ । କେବଳ ମାଷ୍ଟର ଓ ନରେନ୍ଦ୍ର ରହିଲେ । ନରେନ୍ଦ୍ର ଲୋଟା ନେଇ ହଂସପୋଖରୀ ଓ ଝାଉଁତଳ ଆଡ଼କୁ ମୁହଁ ଧୋଇବାକୁ ଗଲେ । ମାଷ୍ଟର ମଧ୍ୟ ମନ୍ଦିର ଭିତରେ ଏପାଖ ସେପାଖ ବୁଲିଲେ । କିଛି ସମୟ ପରେ ହଂସପୋଖରୀ ଆଡ଼କୁ ଆସିଲେ । ଦେଖିଲେ, ପୋଖରୀର ଦକ୍ଷିଣ ଦିଗ ପାହାଚ ଚଟାଣ ଉପରେ ଠାକୁର ଠିଆ ହୋଇଛନ୍ତି, ଏବଂ ନରେନ୍ଦ୍ର ଲୋଟା ହାତରେ ଧରି ମୁହଁ ଧୋଇ ଠିଆ ହୋଇଛନ୍ତି । ଠାକୁର କହୁଛନ୍ତି, ''ଦେଖ୍, ଆଉ ଟିକିଏ ବେଶୀ ବେଶୀ ଆସିବୁ । ନୂଆ ନୂଆ ଆସିଛୁ କି ନା ! ପ୍ରଥମ ଆଳାପ ପରେ ନୂଆ ସମସ୍ତେ ଘନ ଘନ ଆସନ୍ତି । ଯେପରି ନୂଆ ବର । (ନରେନ୍ଦ୍ର ଓ ମାଷ୍ଟରଙ୍କ ହାସ୍ୟ) । କ'ଣ ଆସିବୁ ତ ?'' ନରେନ୍ଦ୍ର ବ୍ରାହ୍ମସମାଜର ଯୁବକ, ହସି ହସି କହିଲେ, ''ହଁ ଚେଷ୍ଟା କରିବି ।''

ପୁଣି ସମସ୍ତେ କୋଠି ବାଟେ ଠାକୁରଙ୍କ ଘରକୁ ଆସିବାକୁ ଲାଗିଲେ । କୋଠି ପାଖରେ ମାଷ୍ଟରଙ୍କୁ ଠାକୁର କହିଲେ, ''ଦେଖ, ଚଷାମାନେ ହାଟକୁ ବଳଦ କିଣିବାକୁ ଯାଆନ୍ତି । ସେମାନେ ଭଲ ମନ୍ଦ ବଳଦ ବେଶ୍ ଚିହ୍ନନ୍ତି । ଲାଙ୍ଗୁଳ ତଳେ ହାତ ଦେଇ ଦେଖନ୍ତି । ଯେଉଁ ବଳଦର ଲାଙ୍ଗୁଳରେ ହାତ ଦେଲେ ଶୋଇପଡ଼େ ତାକୁ କିଣନ୍ତି ନାହିଁ । କିନ୍ତୁ ଯେଉଁ ବଳଦର ଲାଙ୍ଗୁଳରେ ହାତ ଦେଲେ ଚଙ୍ଗ୍ ଚଙ୍ଗ୍ ହୋଇ ଡ଼ିଆଁମାରେ, ସେହି ବଳଦକୁ ହିଁ ପସନ୍ଦ କରନ୍ତି । ନରେନ୍ଦ୍ର ଠିକ୍ ସେହି

ଜାତିର ବଳଦ । ଭିତରେ ଖୁବ୍ ତେଜ ଅଛି ।'' ଏହା କହି ଠାକୁରେ ହସିଲେ । ''ଆଉ କେହି କେହି ଅଛନ୍ତି ଯେପରି ବୂଡ଼ାଚକଟା, ସେଥିରେ ଜୋର୍ ନାହିଁ କି ଆଣ୍ଠ ନାହିଁ, କେବଳ ପଚ୍ ପଚ୍ ହେଉଛି ।''

ସନ୍ଧ୍ୟା ହେଲା । ଠାକୁର ଈଶ୍ୱରଚିନ୍ତା କରିବାକୁ ଲାଗିଲେ । ମାଷ୍ଟରଙ୍କୁ କହିଲେ, ''ତୁମେ ନରେନ୍ଦ୍ର ସହିତ କଥାବାର୍ତ୍ତା କର, ମୋତେ କହିବ ସେ କିଭଳି ପିଲା ।'' ଆଳତି ହୋଇଗଲା । ମାଷ୍ଟର ବହୁସମୟ ପରେ ଚଉତରାର ପଶ୍ଚିମପଟେ ନରେନ୍ଦ୍ରଙ୍କୁ ଦେଖିଲେ । ପରସ୍ପର ମଧ୍ୟରେ କଥାବାର୍ତ୍ତା ହେଲା । ନରେନ୍ଦ୍ର କହିଲେ, ''ମୁଁ ସାଧାରଣ ବ୍ରାହ୍ମ ସମାଜର, କଲେଜରେ ପଢୁଛି, ଇତ୍ୟାଦି ।''

ରାତି ହେଲାଣି—ମାଷ୍ଟର ଏଥର ବିଦାୟ ଗ୍ରହଣ କରିବେ; କିନ୍ତୁ ଆଉ ଯାଇପାରୁନାହାନ୍ତି । ସେଥିପାଇଁ ନରେନ୍ଦ୍ରଙ୍କ ନିକଟକୁ ଚାଲିଆସି ଠାକୁର ରାମକୃଷ୍ଣଙ୍କୁ ଖୋଜିଲେ । ତାଙ୍କର ଗୀତ ଶୁଣି ହୃଦୟମନ ମୁଗ୍ଧ ହୋଇଛି । ଖୁବ୍ ଇଚ୍ଛା ଯେ ପୁଣି ତାଙ୍କ ଶ୍ରୀମୁଖରୁ ଗୀତ ଶୁଣିବେ । ଖୋଜି ଖୋଜି ଦେଖିଲେ, ମା କାଳୀଙ୍କ ମନ୍ଦିର ସମ୍ମୁଖରେ ନାଟମନ୍ଦିର ମଧ୍ୟରେ ଏକାକୀ ଠାକୁର ପଦଚାରଣ କରୁଛନ୍ତି । ମାଆଙ୍କ ମନ୍ଦିରରେ ମାଆଙ୍କର ଦୁଇ ପାର୍ଶ୍ୱରେ ଆଲୁଅ ଜଳୁଥିଲା । କ୍ଷୀଣ ଆଲୋକ । ଆଲୋକ ଓ ଅନ୍ଧକାର ମିଶ୍ରିତ ହେଲେ ଯେପରି ହୁଏ ନାଟମନ୍ଦିର ସେହିପରି ଦେଖାଯାଉଥିଲା ।

ମାଷ୍ଟର ଠାକୁରଙ୍କର ଗୀତ ଶୁଣି ଆତ୍ମହରା ହୋଇଥିଲେ । ଯେପରି ମନ୍ତ୍ରମୁଗ୍ଧ ସର୍ପ; ବର୍ତ୍ତମାନ ସଙ୍କୁଚିତ ଭାବରେ ଠାକୁରଙ୍କୁ ପଚାରିଲେ, 'ଆଜି ଆଉ କଅଣ ଗୀତ ହେବ ?' ଠାକୁର ଚିନ୍ତା କରି କହିଲେ, ''ନା, ଆଜି ଆଉ ଗୀତ ହେବ ନାହିଁ ।'' ଏହା କହି ସତେ ଯେପରି କଅଣ ମନେ ପଡ଼ିଲା, ସଙ୍ଗେ ସଙ୍ଗେ କହିଲେ, ''ତେବେ ଗୋଟେ କାମ କର । ମୁଁ ବଳରାମଙ୍କ ଘରକୁ କଲିକତା ଯିବି, ତୁମେ ଯିବ, ସେଠାରେ ଭଜନ ହେବ ।''

ମାଷ୍ଟର—ଯେ ଆଜ୍ଞା !

ଶ୍ରୀରାମକୃଷ୍ଣ—ତୁମେ ଜାଣ ? ବଳରାମ ବସୁ ?

ମାଷ୍ଟର—ଆଜ୍ଞା, ନା ।

ଶ୍ରୀରାମକୃଷ୍ଣ—ବଳରାମ ବସୁ । ବୋଷପଡ଼ାରେ ଘର ।

ମାଷ୍ଟର—ଆଜ୍ଞା ହଁ, ମୁଁ ପଚାରିନେବି ।

ଶ୍ରୀରାମକୃଷ୍ଣ—(ମାଷ୍ଟରଙ୍କ ସଙ୍ଗରେ ନାଟମନ୍ଦିରରେ ବୁଲି ବୁଲି) ଆଚ୍ଛା, ତୁମକୁ ଗୋଟିଏ କଥା ପଚାରେ, ମୋତେ ତୁମର କଅଣ ବୋଧ ହୁଏ ? ମାଷ୍ଟର ଚୁପ୍ କରି ରହିଲେ । ଠାକୁର ପୁଣି କହିଲେ, ''ତୁମର କ'ଣ ବୋଧ ହୁଏ ? ମୋର କେତେ ଅଣା ଜ୍ଞାନ ହୋଇଛି ?''

ମାଷ୍ଟର—'ଅଣା' ଏକଥା ବୁଝିପାରୁ ନାହିଁ । **ତେବେ ଏପରି ଜ୍ଞାନ ବା ପ୍ରେମଭକ୍ତି, ବିଶ୍ୱାସ, ବୈରାଗ୍ୟ ବା ଉଦାରଭାବ କେବେ ହେଲେ କେଉଁଠି ଦେଖିନାହିଁ ।**

ଠାକୁର ହସିଲେ । ଏପରି କଥାବାର୍ତ୍ତା ପରେ ମାଷ୍ଟର ପ୍ରଣାମ କରି ବିଦାୟ ଗ୍ରହଣ କଲେ । ସଦର ଫାଟକ ପର୍ଯ୍ୟନ୍ତ ଆସି ପୁଣି କଅଣ ମନେପଡ଼ିଲା, ସଙ୍ଗେ ସଙ୍ଗେ ଫେରିଲେ । ପୁନର୍ବାର ନାଟମନ୍ଦିରରେ ଠାକୁର ରାମକୃଷ୍ଣଙ୍କ ନିକଟରେ ଆସି ଉପସ୍ଥିତ ।

ଠାକୁର ସେହି କ୍ଷୀଣାଲୋକ ମଧ୍ୟରେ ଏକାକୀ ପଦଚାରଣା କରୁଛନ୍ତି । ଏକାକୀ ନିଃସଙ୍ଗ । ପଶୁରାଜ ଯେପରି ଅରଣ୍ୟ ମଧ୍ୟରେ ନିଜ ମନ ଇଚ୍ଛାରେ ଏକାକୀ ବିଚରଣ କରୁଛି ! **ଆତ୍ମାରାମ** ! ସିଂହ ଏକାକୀ ରହିବାକୁ, ଏକାକୀ ବୁଲିବାକୁ ଭଲ ପାଏ ।

ଅବାକ୍ ହୋଇ ମାଷ୍ଟର ପୁଣି ସେହି ମହାପୁରୁଷଙ୍କୁ ଦେଖିବାକୁ ଲାଗିଲେ ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)—ପୁଣି ଫେରି ଆସିଲେ ଯେ ?

ମାଷ୍ଟର—ଆଜ୍ଞା, ବୋଧହୁଏ ବଡ଼ଲୋକ ଘର—ଯିବାକୁ ଦେବେ କି ନାହିଁ, ସେଥିପାଇଁ ଭାବୁଛି ଯିବି ନାହିଁ । ଏଠାକୁ ଆସି ଆପଣଙ୍କ ସଙ୍ଗେ ଦେଖା କରିବି ।

ଶ୍ରୀରାମକୃଷ୍ଣ—ନାହିଁ ନାହିଁ, ସେକଥା କାହିଁକି ହେବ ? ତୁମେ ମୋର ନାମ କହିବ—କହିବ, ତାଙ୍କ ପାଖକୁ ଯିବି । ତାହା ହେଲେ—କେହି ହେଲେ ମୋ ନିକଟକୁ ନେଇ ଆସିବ ।

ମାଷ୍ଟର 'ଆଜ୍ଞା ହଁ' କହି ପୁଣି ପ୍ରଣାମ କରି ବିଦାୟ ଗ୍ରହଣ କଲେ ।

# ଦ୍ୱିତୀୟ ପରିଚ୍ଛେଦ

## (୧)

## ବଳରାମ-ମନ୍ଦିରରେ ଭକ୍ତ ସଙ୍ଗରେ ଶ୍ରୀରାମକୃଷ୍ଣଙ୍କର ପ୍ରେମାନନ୍ଦରେ ନୃତ୍ୟ

ରାତ୍ରି ୮ଟା ୯ଟା ହେବ । ଦୋଳଯାତ୍ରା । ରାମ, ମନମୋହନ, ରାଖାଲ, ନିତ୍ୟଗୋପାଳ ପ୍ରଭୃତି ଭକ୍ତଗଣ ତାଙ୍କୁ ଘେରି ରହିଛନ୍ତି । ସମସ୍ତେ ହରିନାମ ସଂକୀର୍ତ୍ତନ କରୁ କରୁ ମତ୍ତ ହୋଇଯାଇଛନ୍ତି । କେତେଜଣ ଭକ୍ତଙ୍କର ଭାବାବସ୍ଥା ହୋଇଛି । ନିତ୍ୟଗୋପାଳଙ୍କର ଭାବାବସ୍ଥାରେ ବକ୍ଷସ୍ଥଳ ରକ୍ତିମବର୍ଣ୍ଣ ହୋଇଛି । ସମସ୍ତେ ବସିଲାରୁ ମାଷ୍ଟର ଠାକୁରଙ୍କୁ ପ୍ରଣାମ କଲେ । ଦେଖିଲେ—ରାଖାଲ ଶୋଇଛନ୍ତି, ଭାବାବିଷ୍ଟ ଓ ବାହ୍ୟଜ୍ଞାନଶୂନ୍ୟ । ଠାକୁରେ ତାଙ୍କ ଛାତିରେ ହାତ ଦେଇ 'ଶାନ୍ତ ହୁଅ' 'ଶାନ୍ତ ହୁଅ' କହୁଛନ୍ତି । **ରାଖାଲଙ୍କର ଏହି ପ୍ରଥମ ଭାବାବସ୍ଥା ।** ସେ କଲିକତାରେ ବାପାଙ୍କ ପାଖରେ ରହନ୍ତି । ମଝିରେ ମଝିରେ ଠାକୁରଙ୍କୁ ଦର୍ଶନ କରିବାକୁ ଆସନ୍ତି । ଏହି ସମୟରେ ଶ୍ୟାମାପୁକୁରର ବିଦ୍ୟାସାଗର ମହାଶୟଙ୍କ ସ୍କୁଲରେ କେତେ ଦିନ ପଢ଼ିଥିଲେ ।

ଠାକୁର ମାଷ୍ଟରଙ୍କୁ ଦକ୍ଷିଣେଶ୍ୱରଠାରେ କହିଥିଲେ, ''ମୁଁ କଲିକତାରେ ବଳରାମଙ୍କ ଘରକୁ ଯିବି, ତୁମେ ଆସିବ ।'' ତେଣୁ ସେ ତାଙ୍କୁ ଦର୍ଶନ କରିବାକୁ ଆସିଛନ୍ତି । ଫାଲ୍‌ଗୁନ ମାସର ଶୁକ୍ଳପକ୍ଷ ୧୮୮୨ ଖ୍ରୀଷ୍ଟାବ୍ଦ ୧୧ ତାରିଖ ମାର୍ଚ୍ଚ, ଶନିବାର; ଶ୍ରୀଯୁକ୍ତ ବଳରାମ ଠାକୁରଙ୍କୁ ନିମନ୍ତ୍ରଣ କରି ଆଣିଛନ୍ତି ।

ଏଥର ଭକ୍ତମାନେ ବାରଣ୍ଡାରେ ବସି ପ୍ରସାଦ ପାଉଛନ୍ତି । ବଳରାମବାବୁ ଦାସ ପରି ଠିଆ ହୋଇଛନ୍ତି, ଦେଖିଲେ ବୋଧ ହୁଏ ନାହିଁ ଯେ ସେ ଏହି ଘରର କର୍ତ୍ତା ।

ମାଷ୍ଟର ଏବେ ନୂଆ ଆସୁଛନ୍ତି । ବର୍ତ୍ତମାନ ମଧ୍ୟ ଭକ୍ତମାନଙ୍କ ସଙ୍ଗରେ ପରିଚୟ ହୋଇନାହିଁ । କେବଳ ଦକ୍ଷିଣେଶ୍ୱରଠାରେ ନରେନ୍ଦ୍ରଙ୍କ ସହିତ ପରିଚୟ ହୋଇଥିଲା ।

### ସର୍ବଧର୍ମ-ସମନ୍ୱୟ

କେତେ ଦିନ ପରେ ଠାକୁର ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱରରେ ଶିବ-ମନ୍ଦିରର ପାହାଚ ଉପରେ ଭାବାବିଷ୍ଟ ହୋଇ ବସିଛନ୍ତି । ସମୟ ୪ଟା ୫ଟା ହେବ । ମାଷ୍ଟର ପାଖରେ ବସିଛନ୍ତି ।

ଟିକିଏ ଆଗରୁ ଠାକୁର ନିଜ ଘରେ ତଳେ ବିଛଣା ପକାଇ ସେଥିରେ ବିଶ୍ରାମ କରୁଥିଲେ । ବର୍ତ୍ତମାନ ମଧ୍ୟ ଠାକୁରଙ୍କର ସେବା ପାଇଁ ପାଖରେ କେହି

ରହନ୍ତି ନାହିଁ । ହୃଦୟ ଯିବା ପରେ ଠାକୁରଙ୍କର କଷ୍ଟ ହେଉଛି । କଲିକତାରୁ ମାଷ୍ଟର ଆସିବା ପରେ ସେ ତାଙ୍କ ସଙ୍ଗରେ କଥା କହୁ କହୁ ଶ୍ରୀଶ୍ରୀରାଧାକାନ୍ତଙ୍କର ମନ୍ଦିର ସମ୍ମୁଖସ୍ଥ ଶିବମନ୍ଦିରର ପାହାଚରେ ଆସି ବସିଥିଲେ; କିନ୍ତୁ ମନ୍ଦିର ଦେଖି ହଠାତ୍ ଭାବାବିଷ୍ଟ ହୋଇଛନ୍ତି ।

ଠାକୁର ଜଗନ୍ମାତାଙ୍କ ସହିତ କଥା କହୁଛନ୍ତି; କହୁଛନ୍ତି, ''ମା ! ସମସ୍ତେ କହୁଛନ୍ତି—ମୋର ଘଡ଼ି ଠିକ୍ ଚାଲିଛି । ଖ୍ରୀଷ୍ଟାନ୍, ବ୍ରହ୍ମଜ୍ଞାନୀ, ହିନ୍ଦୁ, ମୁସଲମାନ ସମସ୍ତେ କୁହନ୍ତି ଆମର ଧର୍ମ ଠିକ୍ । କିନ୍ତୁ ମା, କାହାର ଘଡ଼ି ତ ଠିକ୍ ଚାଲୁ ନାହିଁ । ତୁମକୁ ଠିକ୍ କିଏ ବୁଝିପାରିବ ! ତେବେ ବ୍ୟାକୁଳ ହୋଇ ଡାକିଲେ, ତୁମର କୃପା ହେଲେ ସବୁପଥ ଦେଇ ତୁମ ନିକଟରେ ପହଞ୍ଚିହେବ । ମା, ଖ୍ରୀଷ୍ଟାନ୍‌ମାନେ ଗୀର୍ଜାରେ ତୁମକୁ କିପରି ଡାକନ୍ତି, ଥରେ ଦେଖାଅ ! କିନ୍ତୁ ମା, ଭିତରକୁ ଗଲେ ଲୋକେ କଅଣ କହିବେ ? ଯଦି କିଛି ଗଣ୍ଡଗୋଳ ହୁଏ ? ପୁଣି କାଳୀ-ଘରେ ଯଦି ପଶିବାକୁ ନ ଦିଅନ୍ତି ? ତେବେ ଗୀର୍ଜାର ବାହାରୁ ଦେଖାଅ ।''

### ଭକ୍ତଙ୍କ ସଙ୍ଗେ ଭଜନାନନ୍ଦରେ—ରାଖାଲପ୍ରେମ 'ପ୍ରେମସୁରା'

ଆଉଦିନେ ଠାକୁର ନିଜ ଘରେ ଛୋଟ ଖଟ ଉପରେ ବସିଛନ୍ତି । ଆନନ୍ଦମୟ ମୂର୍ତ୍ତି, ହାସ୍ୟବଦନ । ଶ୍ରୀଯୁକ୍ତ କାଳୀକୃଷ୍ଣଙ୍କ[୧] ସଙ୍ଗରେ ମାଷ୍ଟର ଆସି ଉପସ୍ଥିତ ।

କାଳୀକୃଷ୍ଣ ଜାଣନ୍ତି ନାହିଁ, ତାଙ୍କର ବନ୍ଧୁ ତାଙ୍କୁ କେଉଁଠାକୁ ନେଇ ଆସିଛନ୍ତି । ବନ୍ଧୁ କହିଥିଲେ, ଶୁଣ୍ଡିର ଦୋକାନକୁ ଯିବ ତ ମୋ ସଙ୍ଗରେ ଆସ; ସେଠାରେ ଏକ ମାଠିଆ ମଦ ଅଛି । ମାଷ୍ଟର ଆସି ବନ୍ଧୁଙ୍କୁ ଯାହା କହିଥିଲେ, ପ୍ରଣାମାନନ୍ତର ଠାକୁରଙ୍କୁ ସମସ୍ତ ନିବେଦନ କଲେ । ଠାକୁର ହସିବାକୁ ଲାଗିଲେ ।

ଠାକୁରେ କହିଲେ, ''ଭଜନାନନ୍ଦ, ବ୍ରହ୍ମାନନ୍ଦ—ଏହି ଆନନ୍ଦ ହିଁ ସୁରା, ପ୍ରେମର ସୁରା । ମାନବ-ଜୀବନର ଉଦ୍ଦେଶ୍ୟ ଈଶ୍ୱରଙ୍କଠାରେ ପ୍ରେମ, ଈଶ୍ୱରଙ୍କଠାରେ ଶ୍ରଦ୍ଧା । ଭକ୍ତି ହିଁ ସାର । ଜ୍ଞାନ-ବିଚାର କରି ଈଶ୍ୱରଙ୍କୁ ଜାଣିବା ଅତ୍ୟନ୍ତ କଠିନ ।'' ଏହା କହି ଠାକୁର ଗୀତ ଗାଇଲେ—

''କେ ଜାନେ କାଲୀ କେମନ, ଷଡ଼ଦର୍ଶନେ ନା ପାୟ ଦରଶନ ।''ଇତ୍ୟାଦି

ଠାକୁର ଶ୍ରୀରାମକୃଷ୍ଣ ପୁଣି କହୁଛନ୍ତି, ''ଈଶ୍ୱରଙ୍କୁ ଭଲ ପାଇବା—ଏହା ହିଁ ଜୀବନର ଉଦ୍ଦେଶ୍ୟ—ଯେପରି ବୃନ୍ଦାବନରେ ଗୋପଗୋପୀମାନେ ଗୋପାଳମାନେ ଶ୍ରୀକୃଷ୍ଣଙ୍କୁ ଭଲ ପାଉଥିଲେ । ଯେତେବେଳେ ଶ୍ରୀକୃଷ୍ଣ ମଥୁରାକୁ ଗଲେ, ଗୋପାଳମାନେ ତାଙ୍କର ବିରହରେ କାନ୍ଦିକାନ୍ଦି ବୁଲିଲେ ।'' ଏହା କହି ଠାକୁର ଊର୍ଦ୍ଧ୍ୱଦୃଷ୍ଟି ହୋଇ ଗୀତ ଗାଇଲେ—

---

୧. କାଳୀକୃଷ୍ଣ ଭଟ୍ଟାଚାର୍ଯ୍ୟ ପରେ ବିଦ୍ୟାସାଗର କଲେଜରେ Senior Professor of Sanskrit ହୋଇଥିଲେ ।

''ଦେଖେ ଏଲାମ୍ ଏକ ନବୀନ ରାଖାଲ, ''ଇତ୍ୟାଦି

ଠାକୁରଙ୍କର ପ୍ରେମବୋଳା ଗୀତ ଶୁଣି ମାଷ୍ଟରଙ୍କ ଆଖିରେ ଲୁହ ।

(୨)

## ଶ୍ରୀରାମକୃଷ୍ଣ ଭକ୍ତି-ମନ୍ଦିରରେ — ପ୍ରାଣକୃଷ୍ଣଙ୍କ ଘରେ

ଠାକୁର ଶ୍ରୀରାମକୃଷ୍ଣ ଆଜି କଲିକତାକୁ ଶୁଭାଗମନ କରିଛନ୍ତି । ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ମୁଖୋପାଧ୍ୟାୟଙ୍କର ଶ୍ୟାମପୁକୁର ଘରେ ଦ୍ୱିତଳର ବୈଠକଖାନାରେ ଭକ୍ତଙ୍କ ସଙ୍ଗରେ ବସିଛନ୍ତି । ଏହିକ୍ଷଣି ଭକ୍ତଙ୍କ ସଙ୍ଗରେ ବସି ପ୍ରସାଦ ପାଇଛନ୍ତି । ଆଜି ଅପ୍ରେଲ ଦୁଇ ତାରିଖ, ରବିବାର, ୧୮୮୨ ଖ୍ରୀ:; ଚୈତ୍ର ୨୧ ଦିନ ୧୨୮୮, ଶୁକ୍ଳ ଚତୁର୍ଦ୍ଦଶୀ; ବର୍ତ୍ତମାନ ସମୟ ୧୨ଟା ହେବ । କପ୍ତାନ ଏହି ପଡ଼ାରେ ହିଁ ରହନ୍ତି, ଠାକୁରଙ୍କର ଇଚ୍ଛା ଏହି ଘରେ ବିଶ୍ରାମ ନେଇ କପ୍ତାନଙ୍କର ଘର ହୋଇ ତାଙ୍କୁ ଦର୍ଶନ କରି, କମଳକୁଟୀରରେ ଶ୍ରୀଯୁକ୍ତ କେଶବ ସେନଙ୍କୁ ଦେଖିବାକୁ ଯିବେ । ପ୍ରାଣକୃଷ୍ଣ ବୈଠକଖାନାରେ ବସିଛନ୍ତି । ରାମ, ମନମୋହନ,, କେଦାର, ସୁରେନ୍ଦ୍ର, ଗିରୀନ୍ଦ୍ର (ସୁରେନ୍ଦ୍ରଙ୍କର ଭାଇ), ରାଖାଲ, ବଳରାମ, ମାଷ୍ଟର ପ୍ରଭୃତି ଭକ୍ତମାନେ ଉପସ୍ଥିତ । ସାହିର ବାବୁମାନେ ଓ ଅନ୍ୟାନ୍ୟ ନିମନ୍ତ୍ରିତ ବ୍ୟକ୍ତିମାନେ ମଧ୍ୟ ଅଛନ୍ତି; ଠାକୁର କ'ଣ କହିବେ — ଶୁଣିବା ପାଇଁ ସମସ୍ତେ ଉତ୍ସୁକ ହୋଇ ବସିଛନ୍ତି ।

ଠାକୁର କହୁଛନ୍ତି, ''ଈଶ୍ୱର ଓ ତାଙ୍କର ଐଶ୍ୱର୍ଯ୍ୟ । ଏହି ଜଗତ ତାଙ୍କର ଐଶ୍ୱର୍ଯ୍ୟ । କିନ୍ତୁ ଐଶ୍ୱର୍ଯ୍ୟ ଦେଖି ସମସ୍ତେ ଭୁଲିଯାଆନ୍ତି; ଯାହାଙ୍କର ଐଶ୍ୱର୍ଯ୍ୟ ତାଙ୍କୁ ଖୋଜନ୍ତି ନାହିଁ । କାମିନୀ-କାଞ୍ଚନ ଭୋଗ କରିବାକୁ ସମସ୍ତେ ଧାଆଁନ୍ତି କିନ୍ତୁ ଦୁଃଖ ଅଶାନ୍ତି ହିଁ ବେଶୀ । ସଂସାର ଯେପରି 'ବିଶାଳାକ୍ଷୀଙ୍କର ଦହ' । ନୌକା ଦହରେ ଥରେ ପଡ଼ିଲେ ଆଉ ରକ୍ଷା ନାହିଁ । କାନକୋଳି କଣ୍ଟା ପରି ଗୋଟାଏ ଛାଡ଼େ ତ ଆଉ ଗୋଟାଏ ଲାଗେ । ଗୋଲକଧନ୍ଦାରେ ଥରେ ପଶିଲେ ବାହାରିବା ମୁସ୍କିଲ । ମନୁଷ୍ୟ ଯେପରି ଦରପୋଡ଼ା ହୋଇଯାଏ ।''

ଜଣେ ଭକ୍ତ — ବର୍ତ୍ତମାନ ଉପାୟ ?

### ଉପାୟ — ସାଧୁସଙ୍ଗ ଆଉ ପ୍ରାର୍ଥନା

ଶ୍ରୀରାମକୃଷ୍ଣ — ଉପାୟ ସାଧୁସଙ୍ଗ ଆଉ ପ୍ରାର୍ଥନା । ବୈଦ୍ୟଙ୍କ ପାଖକୁ ନ ଗଲେ ରୋଗ ଭଲ ହୁଏ ନାହିଁ । ସାଧୁସଙ୍ଗ ଦିନେ ଅଧେ କଲେ ହୁଏ ନାହିଁ, ସଦାସର୍ବଦା ଦରକାର । ରୋଗ ଲାଗି ରହିଛି । ପୁଣି ବୈଦ୍ୟଙ୍କ ପାଖରେ ନ ରହିଲେ ନାଡ଼ୀଜ୍ଞାନ ହୁଏ ନାହିଁ, ସଙ୍ଗେ ସଙ୍ଗେ ବୁଲିବାକୁ ହୁଏ, ତେବେ ଯାଇ କେଉଁଟି ପୀତ୍ତ-ନାଡ଼ୀ, କେଉଁଟି କଫ-ନାଡ଼ୀ ବୁଝାଯାଏ ।

ଭକ୍ତ — ସାଧୁସଙ୍ଗରେ କି ଉପକାର ହୁଏ ?

ଶ୍ରୀରାମକୃଷ୍ଣ—ଈଶ୍ୱରଙ୍କଠାରେ ଅନୁରାଗ ହୁଏ । ତାଙ୍କ ଉପରେ ଶ୍ରଦ୍ଧା ହୁଏ । ବ୍ୟାକୁଳତା ନ ଆସିଲେ କିଛି ହୁଏ ନାହିଁ । ସାଧୁ ସଙ୍ଗ କରୁ କରୁ ଈଶ୍ୱରଙ୍କ ପାଇଁ ପ୍ରାଣ ବ୍ୟାକୁଳ ହୁଏ । ଯେପରି ଘରେ କାହାରି ବେମାରି ହେଲେ ସର୍ବଦା ମନ ବ୍ୟାକୁଳ ହୁଏ, କିପରି ରୋଗୀ ଭଲ ହେବ । ପୁଣି କାହାରି ଯଦି ଚାକିରୀ ଯାଏ, ସେ ବ୍ୟକ୍ତି ଯେପରି ଏ ଅଫିସ ସେ ଅଫିସ ଘୂରି ଘୂରି ବୁଲେ, ସେହିପରି ବ୍ୟାକୁଳ ହେବାକୁ ହୁଏ; ଯଦି କେଉଁ ଅଫିସରେ କହନ୍ତି ଚାକିରୀ ଖାଲି ନାହିଁ, ପୁଣି ତା'ପରଦିନ ଆସି ପଚାରେ—ଆଜି କଅଣ କୌଣସି ଚାକିରୀ ଖାଲି ହୋଇଛି ?

''ଆଉ ଗୋଟିଏ ଉପାୟ ଅଛି—ବ୍ୟାକୁଳ ହୋଇ ପ୍ରାର୍ଥନା । ସେ ଯେ ନିଜ ଲୋକ ! ତାଙ୍କୁ କହିବାକୁ ହୁଏ—ତୁମେ କିପରି ? ଦେଖା ଦିଅ—ନିଶ୍ଚୟ ଦେଖା ଦେବାକୁ ହେବ—ତୁମେ ମୋତେ ସୃଷ୍ଟି କରିଛ କାହିଁକି ? ଶିଖ୍‌ମାନେ କହିଥିଲେ,'ଈଶ୍ୱର ଦୟାମୟ ।' ମୁଁ ସେମାନଙ୍କୁ କହିଥିଲି—ଦୟାମୟ କାହିଁକି କହିବି ? ସେ ଆମମାନଙ୍କୁ ସୃଷ୍ଟି କରିଛନ୍ତି, ଯେଉଁଥିରେ ଆମମାନଙ୍କର ମଙ୍ଗଳ ହୁଏ, ତାହା ଯଦି ସେ କରନ୍ତି, ସେଥିରେ ଆଉ ଆଶ୍ଚର୍ଯ୍ୟ କ'ଣ ! ବାପା-ମା' ପିଲାଙ୍କୁ ପାଳନ କରିବେ, ତାହା କ'ଣ ଦୟା ! ତାହା ତ ତାଙ୍କୁ କରିବାକୁ ହିଁ ହେବ; ତେଣୁ ଜୋର୍ କରି ପ୍ରାର୍ଥନା କରିବାକୁ ହୁଏ । ସେ ଯେ ଆପଣାର ମା', ଆପଣାର ବାପା ! ପୁଅ ଯଦି ଖାଇବା ଛାଡ଼ି ଜିଦ୍ କରେ, ବାପା-ମା' ତିନି ବର୍ଷ ପୂର୍ବରୁ ତାହାର ଭାଗ ତାକୁ ଦେଇଦିଅନ୍ତି । ପୁଣି ଯେତେବେଳେ ପିଲା ପଇସା ଚାହେଁ, ଆଉ ବାରମ୍ବାର କହେ, 'ମା, ତୋ ଗୋଡ଼ତଳେ ପଡୁଛି, ମୋତେ ଦୁଇଟା ପଇସା ଦେ', ସେତେବେଳେ ମା ବିରକ୍ତ ହୋଇ ଓ ତାର ବ୍ୟାକୁଳତା ଦେଖି ପଇସା ପକାଇ ଦିଏ ।

''ସାଧୁସଙ୍ଗ କଲେ ଆଉ ଗୋଟିଏ ଉପକାର ହୁଏ । ସଦସତ୍ ବିଚାର । ସତ୍ ନିତ୍ୟ ପଦାର୍ଥ ଅର୍ଥାତ୍ ଈଶ୍ୱର । ଅସତ୍ ଅର୍ଥାତ୍ ଅନିତ୍ୟ । ଅସତ୍ ପଥକୁ ମନ ଗଲେ ବିଚାର କରିବାକୁ ହୁଏ । ହାତୀ ପରର କଦଳୀଗଛ ଖାଇବାକୁ ଶୁଣ୍ଢ ବଢ଼ାଇଲେ ମାହୁନ୍ତ ଅଙ୍କୁଶ ମାରେ ।''

ପ୍ରତିବେଶୀ—ମହାଶୟ, ପାପବୁଦ୍ଧି କାହିଁକି ହୁଏ ?

ଶ୍ରୀରାମକୃଷ୍ଣ—ତାଙ୍କ ଜଗତରେ ସବୁ ପ୍ରକାରର ଅଛି; ସାଧୁ ଲୋକ ସେ କରିଛନ୍ତି, ଦୁଷ୍ଟ ଲୋକ ମଧ୍ୟ ସେ କରିଛନ୍ତି, ସଦ୍‌ବୁଦ୍ଧି ସେହି ଦିଅନ୍ତି, ଅସଦ୍ ବୁଦ୍ଧି ମଧ୍ୟ ସେହି ଦିଅନ୍ତି ।

**ପାପୀର ଦାୟିତ୍ୱ ଓ କର୍ମଫଳ**

ପ୍ରତିବେଶୀ—ତେବେ ପାପ କଲେ କ'ଣ ଆମମାନଙ୍କର କୌଣସି ଦାୟିତ୍ୱ ନାହିଁ ?

ଶ୍ରୀରାମକୃଷ୍ଣ—ଈଶ୍ୱରଙ୍କର ନିୟମ ଯେ, ପାପ କଲେ ତାହାର ଫଳ ପାଇବାକୁ ହେବ । ଲଙ୍କାମରିଚ ଖାଇବ, ଆଉ ରାଗ ଲାଗିବ ନାହିଁ ? ସେଜୋବାବୁ (ମଥୁରବାବୁ) ଯେତେବେଳେ ବୟସ ଥିଲା, କେତେ କ'ଣ କରିଥିଲା, ତେଣୁ ମୃତ୍ୟୁ ବେଳକୁ କେତେ ପ୍ରକାର ରୋଗ ହେଲା । କମ୍ ବୟସରେ ଏତେ ଜଣାଯାଏ ନାହିଁ ! କାଳୀମନ୍ଦିରରେ ଭୋଗ ରାନ୍ଧିବା ପାଇଁ ଅନେକ ସୁନ୍ଦରୀକାଠ[୧] ଥାଏ । ଓଦା କାଠ ପ୍ରଥମେ ବେଶ୍ ଜଳିଯାଏ, ସେତେବେଳେ ଭିତରେ ଯେ ପାଣି ଅଛି, ଜଣାଯାଏ ନାହିଁ ! କାଠଟା ଜଳି ଜଳି ଶେଷ ଆଡ଼କୁ ଆସିଲେ ପାଣିତକ ପଛକୁ ଠେଲି ହୋଇ ଆସେ ଓ ସେଁ ସେଁ କରି ନିଆଁ ଲିଭାଇ ଦିଏ । ତେଣୁ କାମ, କ୍ରୋଧ, ଲୋଭ ଏସୁବୁଥିରେ ସାବଧାନ ରହିବାକୁ ହୁଏ । ଦେଖୁନ, ହନୁମାନ କ୍ରୋଧରେ ଲଙ୍କା ଦଗ୍ଧ କଲେ, ଶେଷରେ ମନେ ପଡ଼ିଲା, ଅଶୋକ ବନରେ ସୀତା ଅଛନ୍ତି । ସେତେବେଳେ ଛଟପଟ ହେବାକୁ ଲାଗିଲେ, କାଳେ ସୀତାଙ୍କର କିଛି ହେବ ।

ପ୍ରତିବେଶୀ—ତେବେ ଈଶ୍ୱର ଦୁଷ୍ଟ ଲୋକ କାହିଁକି କଲେ ?

ଶ୍ରୀରାମକୃଷ୍ଣ—ତାଙ୍କର ଇଚ୍ଛା, ତାଙ୍କର ଲୀଳା । ତାଙ୍କ ମାୟାରେ ବିଦ୍ୟା ଅଛି, ଅବିଦ୍ୟା ମଧ୍ୟ ଅଛି । ଅନ୍ଧକାରର ମଧ୍ୟ ପ୍ରୟୋଜନ ଅଛି; ଅନ୍ଧକାର ଥିଲେ ଆଲୋକର ଅଧିକ ମହିମା ପ୍ରକାଶ ପାଏ । କାମ, କ୍ରୋଧ, ଲୋଭ ଖରାପ ଜିନିଷ ସତ, ତେବେ ସେ ଦେଇଛନ୍ତି କାହିଁକି ? ମହତ୍ ଲୋକ ତିଆରି କରିବେ ବୋଲି । ଇନ୍ଦ୍ରିୟ ଜୟ କଲେ ଲୋକ ମହତ୍ ହୁଏ । ଜିତେନ୍ଦ୍ରିୟ କଅଣ ନ କରିପାରେ ? ଈଶ୍ୱରଲାଭ ମଧ୍ୟ ତାଙ୍କ କୃପାରୁ କରିପାରେ ପୁଣି ଅନ୍ୟ ଦିଗରୁ ଦେଖ, କାମରୁ ହିଁ ତାଙ୍କର ସୃଷ୍ଟି-ଲୀଳା ଚାଲିଛି !

''ଦୁଷ୍ଟ ଲୋକର ମଧ୍ୟ ଦରକାର ଅଛି । ଗୋଟିଏ ତାଲୁକର ପ୍ରଜାମାନେ ଭୀଷଣ ଦୁର୍ଦ୍ଦାନ୍ତ ହୋଇଥିଲେ । ସେତେବେଳେ ଗୋଲକ ଚୌଧୁରୀକୁ ପଠାଇ ଦିଆଗଲା । ତା'ର ନାଆଁ ଶୁଣି ପ୍ରଜାମାନେ ଥରିବାକୁ ଲାଗିଲେ—ଏବେ କଠୋର ଶାସନ ! ସବୁ ଦରକାର । ସୀତା କହିଲେ, 'ରାମ, ଅଯୋଧ୍ୟାରେ ସବୁ ଅଟ୍ଟାଳିକା ହୁଅନ୍ତା ତ ବେଶ୍ ହୁଅନ୍ତା; ଅନେକ ଘର ଦେଖୁଛି ଭଙ୍ଗା, ପୁରୁଣା ।' ରାମ କହିଲେ, 'ସୀତା, ସବୁ ଘର ସୁନ୍ଦର ରହିଲେ ମିସ୍ତ୍ରୀମାନେ କଅଣ କରିବେ ?' (ସମସ୍ତଙ୍କର ହାସ୍ୟ) । ଈଶ୍ୱର ସବୁ ପ୍ରକାର କରିଛନ୍ତି—ଭଲ ଗଛ, ବିଷ ଗଛ, ପୁଣି ବାଳୁଙ୍ଗା କରିଛନ୍ତି । ଜନ୍ତୁମାନଙ୍କ ଭିତରେ ଭଲ ମନ୍ଦ ସବୁ ଅଛି—ବାଘ, ସିଂହ, ସାପ ସବୁ ଅଛନ୍ତି ।''

**ସଂସାରରେ ବି ଈଶ୍ୱରଲାଭ । ସମସ୍ତଙ୍କର ମୁକ୍ତି ହେବ**

ପ୍ରତିବେଶୀ—ମହାଶୟ ! ସଂସାରରେ ରହି କ'ଣ ଭଗବାନଙ୍କୁ ଲାଭ କରାଯାଏ ?

---

୧. ଏକ ପ୍ରକାର ଜାଳେଣୀ କାଠ ।

ଶ୍ରୀରାମକୃଷ୍ଣ — ଅବଶ୍ୟ ଲାଭ କରାଯାଏ । ତେବେ ଯାହା କହିଲି — ସାଧୁସଙ୍ଗ ଆଉ ସର୍ବଦା ପ୍ରାର୍ଥନା କରିବାକୁ ହୁଏ । ତାଙ୍କ ପାଖରେ କାନ୍ଦିବାକୁ ହୁଏ । ମନର ମଇଳା ସବୁ ଧୋଇଗଲେ ତାଙ୍କର ଦର୍ଶନ ହୁଏ । ମନଟି ଯେପରି ମାଟିବୋଳା ଲୁହାର ଛୁଞ୍ଚି, ଈଶ୍ୱର ଚୁମ୍ବକପଥର, ମାଟି ନ ଗଲେ ଚୁମ୍ବକପଥର ସଙ୍ଗରେ ଯୋଗ ହୁଏ ନାହିଁ । କାନ୍ଦିଲେ ଛୁଞ୍ଚିର ମାଟି ଧୋଇଯାଏ; ଛୁଞ୍ଚିରେ ମାଟି ଅର୍ଥାତ — କାମ,କ୍ରୋଧ, ଲୋଭ, ପାପବୁଦ୍ଧି, ବିଷୟବୁଦ୍ଧି । ମାଟି ଧୋଇଲେ ଛୁଞ୍ଚିକୁ ଚୁମ୍ବକପଥର ଟାଣିନେବ, ଅର୍ଥାତ୍ ଈଶ୍ୱର-ଦର୍ଶନ ହେବ । ଚିତ୍ତଶୁଦ୍ଧି ହେଲେ ଯାଇ ତାଙ୍କୁ ଲାଭ କରାଯାଏ । ଜ୍ୱର ହୋଇଛି, ଦେହରେ ବହୁତ ରସ ରହିଛି, ସେଥିରେ କୁଇନାଇନ୍ ଦ୍ୱାରା କି ଫଳ ହେବ ? ସଂସାରରେ ହେବ ନାହିଁ କାହିଁକି ! ଏହି ସାଧୁସଙ୍ଗ, କାନ୍ଦି କାନ୍ଦି ପ୍ରାର୍ଥନା, ମଝିରେ ମଝିରେ ନିର୍ଜ୍ଜନବାସ । ଟିକିଏ ବାଡ଼ ନ ଦେଲେ ବାଟ ପାଖରେ ଚାରାଗଛ, ଗୋରୁ ଛେଳି ଖାଇଯାଆନ୍ତି ।

ପ୍ରତିବେଶୀ — ଯେଉଁମାନେ ସଂସାରରେ ଅଛନ୍ତି, ତାହା ହେଲେ ସେମାନଙ୍କର ମଧ୍ୟ ହେବ ?

ଶ୍ରୀରାମକୃଷ୍ଣ — ସମସ୍ତଙ୍କର ମୁକ୍ତି ହେବ । ତେବେ ଗୁରୁଙ୍କ ଉପଦେଶ ଅନୁସାରେ ଚାଲିବାକୁ ହୁଏ । ବଙ୍କା ବାଟରେ ଗଲେ ଫେରି ଆସିବାକୁ କଷ୍ଟ ହୁଏ । ମୁକ୍ତି ଅନେକ ଡେରିରେ ହୁଏ । ହୁଏତ ଏ ଜନ୍ମରେ ହେଲା ନାହିଁ, ପୁଣି ହୁଏତ ଅନେକ ଜନ୍ମ ପରେ ହେଲା । ଜନକାଦି ସଂସାରରେ ମଧ୍ୟ କର୍ମ କରିଥିଲେ । ଈଶ୍ୱରଙ୍କୁ ମୁଣ୍ଡରେ ଥୋଇ କାମ କରୁଥିଲେ, ନର୍ତ୍ତକୀ ଯେପରି ମୁଣ୍ଡରେ ବାସନ ରଖି ନାଚେ । ଆଉ ପଶ୍ଚିମର ସ୍ତ୍ରୀମାନଙ୍କୁ ଦେଖି ନାହଁ ? ମୁଣ୍ଡରେ ପାଣିମାଠିଆ, ହସି ହସି କଥା କହି କହି ଯାଉଛନ୍ତି ।

ପ୍ରତିବେଶୀ — ଗୁରୁଙ୍କର ଉପଦେଶ କହିଲେ । ଗୁରୁ କିପରି ପାଇବି ?

ଶ୍ରୀରାମକୃଷ୍ଣ — ଯେ ସେ ଲୋକ ଗୁରୁ ହୋଇପାରନ୍ତି ନାହିଁ । ବାହାଦୁରୀ କାଠ ନିଜେ ଭାସି ଚାଲିଯାଏ, ଅନେକ ଜୀବଜନ୍ତୁ ମଧ୍ୟ ଚଢ଼ି ଯାଇପାରନ୍ତି । ହାଲୁକା କାଠ ଉପରେ ଚଢ଼ିଲେ କାଠ ତ ବୁଡ଼ିଯାଏ, ଯେ ଚଢ଼େ ସେ ମଧ୍ୟ ବୁଡ଼ିଯାଏ । **ତେଣୁ ଈଶ୍ୱର ଯୁଗେ ଯୁଗେ ଲୋକଶିକ୍ଷା ପାଇଁ ନିଜେ ଗୁରୁ ରୂପରେ ଅବତୀର୍ଣ୍ଣ ହୁଅନ୍ତି । ସଚ୍ଚିଦାନନ୍ଦ ହିଁ ଗୁରୁ ।**

''ଜ୍ଞାନ କାହାକୁ କହନ୍ତି, ଆଉ ମୁଁ କିଏ ? ଈଶ୍ୱର ହିଁ କର୍ତ୍ତା, ଆଉସବୁ ଅକର୍ତ୍ତା — ଏହାର ନାମ ଜ୍ଞାନ । ମୁଁ ଅକର୍ତ୍ତା, ତାଙ୍କ ହାତରେ ଯନ୍ତ୍ର । ତେଣୁ ମୁଁ କହେ — ମାଆ ! ତୁମେ ଯନ୍ତ୍ରୀ, ମୁଁ ଯନ୍ତ୍ର; ତୁମେ ଘରଣୀ, ମୁଁ ଘର; ମୁଁ ଗାଡ଼ି, ତୁମେ ଇଞ୍ଜିନିୟର; ଯେମିତି ଚଳାଅ ସେମିତି ଚାଲେ; ଯେପରି କରାଅ ସେପରି କରେ; ଯେପରି କୁହାଅ, ସେପରି କହେ; ନାହଂ ନାହଂ, ତୁହୁଁ ତୁହୁଁ ।''

## (୩)

## କମଳକୁଟୀରରେ ଶ୍ରୀରାମକୃଷ୍ଣ ଓ ଶ୍ରୀଯୁକ୍ତ କେଶବ ସେନ୍

ଶ୍ରୀରାମକୃଷ୍ଣ କପ୍ତାନଙ୍କର ଘର ହୋଇ ଶ୍ରୀଯୁକ୍ତ କେଶବ ସେନ୍‌ଙ୍କର କମଳକୁଟୀରକୁ ଆସିଛନ୍ତି । ସଙ୍ଗରେ ରାମ, ମନମୋହନ, ସୁରେନ୍ଦ୍ର, ମାଷ୍ଟର ପ୍ରଭୃତି ଭକ୍ତଗଣ । ସମସ୍ତେ ଦ୍ୱିତଳ ହଲ ଘରେ ଉପବେଶନ କରିଛନ୍ତି । ଶ୍ରୀଯୁକ୍ତ ପ୍ରତାପ ମଜୁମଦାର, ଶ୍ରୀଯୁକ୍ତ ତ୍ରୈଲୋକ୍ୟ ପ୍ରଭୃତି ବ୍ରାହ୍ମଭକ୍ତଗଣ ମଧ୍ୟ ଉପସ୍ଥିତ ଅଛନ୍ତି ।

ଠାକୁର ଶ୍ରୀଯୁକ୍ତ କେଶବଙ୍କୁ ଖୁବ୍ ଭଲ ପାଆନ୍ତି । ଯେତେବେଳେ ବେଲଘରିଆ ଉଦ୍ୟାନରେ ସଶିଷ୍ୟ ସେ ସାଧନ-ଭଜନ କରୁଥିଲେ, ଅର୍ଥାତ୍ ୧୮୭୫ଖ୍ରୀ: ମାଘୋତ୍ସବର କିଛିଦିନ ମଧ୍ୟରେ, ଠାକୁରେ ଦିନେ ଉଦ୍ୟାନକୁ ଯାଇ ତାଙ୍କ ସହିତ ଦେଖା କରିଥିଲେ । ସଙ୍ଗରେ ଭଣଜା ହୃଦୟରାମ । ଏହି ଉଦ୍ୟାନରେ ସେ ତାଙ୍କୁ କହିଥିଲେ, ''ତୁମର ଲାଞ୍ଜ ଖସିଛି, ଅର୍ଥାତ୍ ତୁମେ ସବୁ ତ୍ୟାଗ କରି ସଂସାରର ବାହାରେ ମଧ୍ୟ ରହିପାର, ପୁଣି ସଂସାରରେ ମଧ୍ୟ ରହିପାର, ଯେପରି ବେଙ୍ଗଫୁଲା ଲାଞ୍ଜ ଖସିଲେ ଜଳରେ ରହିପାରେ, ପୁଣି କୂଳରେ ମଧ୍ୟ ରହିପାରେ ।'' ପରେ ଦକ୍ଷିଣେଶ୍ୱରରେ, କମଳକୁଟୀରରେ, ବ୍ରାହ୍ମ-ସମାଜ ଇତ୍ୟାଦି ସ୍ଥାନରେ ଅନେକ ଥର ଠାକୁର କଥାଛଳରେ ତାଙ୍କୁ ଉପଦେଶ ଦେଇଥିଲେ ।

''ନାନା ପଥ ଦେଇ, ବିଭିନ୍ନ ଧର୍ମ ଭିତରେ ଦେଇ ଈଶ୍ୱରଲାଭ ହୋଇପାରେ । ମଝିରେ ମଝିରେ ନିର୍ଜ୍ଜନରେ ସାଧନ-ଭଜନ କରି ଭକ୍ତିଲାଭ କରି ସଂସାରରେ ରହିପାର । ଜନକାଦି ବ୍ରହ୍ମଜ୍ଞାନ ଲାଭକରି ସଂସାରରେ ଥିଲେ । ବ୍ୟାକୁଳ ହୋଇ ତାଙ୍କୁ ଡାକିବାକୁ ହୁଏ, ତେବେ ସେ ଦେଖା ଦିଅନ୍ତି । ତୁମେମାନେ ଯାହା କର, ନିରାକାର ସାଧନ, ତାହା ଖୁବ୍ ଭଲ । ବ୍ରହ୍ମଜ୍ଞାନ ହେଲେ ଠିକ୍ ଠିକ୍ ବୋଧ ହେବ—ଈଶ୍ୱର ସତ୍ୟ, ଆଉସବୁ ଅନିତ୍ୟ, ବ୍ରହ୍ମ ସତ୍ୟ, ଜଗତ୍ ମିଥ୍ୟା । ସନାତନ ହିନ୍ଦୁଧର୍ମରେ ସାକାର ନିରାକାର ଦୁଇ ମାନନ୍ତି, ନାନା ଭାବରେ ଈଶ୍ୱରଙ୍କର ପୂଜା କରନ୍ତି—ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ, ମଧୁର । ରୋଷଣୀ -ବାଜାବାଲାମାନଙ୍କ ଭିତରୁ ଜଣେ କେବଳ ଫୁଁ ଧରି ବଜାଏ, ଅଥଚ ତାହାର ବଂଶୀରେ ସାତଟା ଫୁକାର ଅଛି; କିନ୍ତୁ ଆଉ ଜଣେ, ତାହାର ମଧ୍ୟ ସାତୋଟି ଫୁକାର ଅଛି, ସେ ନାନା ରାଗ-ରାଗିଣୀ ବଜାଏ ।

''ତୁମେମାନେ ସାକାର ମାନ ନାହିଁ, ସେଥିରେ କିଛି କ୍ଷତି ନାହିଁ, ନିରାକାରରେ **ନିଷ୍ଠା** ରହିଲେ ହିଁ ହେଲା; ତେବେ ସାକାରବାଦୀମାନଙ୍କର ଟାଣଟିକକ ନେବ । 'ମା' ବୋଲି ତାଙ୍କୁ ଡାକିଲେ ଭକ୍ତି-ପ୍ରେମ ଆହୁରି ବଢ଼ିବ । କେତେବେଳେ ଦାସ୍ୟ, କେତେବେଳେ ସଖ୍ୟ, କେତେବେଳେ ବାତ୍ସଲ୍ୟ, କେତେବେଳେ ମଧୁ

ମଧୁର ଭାବ । କୌଣସି କାମନା ନାହିଁ, ତାଙ୍କୁ ଭଲପାଏ—ଏହି ଭାବଟି ଖୁବ୍ ଭଲ । ଏହାର ନାମ ଅହୈତୁକୀ ଭକ୍ତି । ଟଙ୍କାକଉଡ଼ି, ମାନସଂଭ୍ରମ କିଛି ଚାହେଁ ନାହିଁ, କେବଳ ତୁମ ପାଦପଦ୍ମରେ ଭକ୍ତି । ବେଦ, ପୁରାଣ, ତନ୍ତ୍ରରେ ଏକ ଈଶ୍ୱରଙ୍କର ହିଁ କଥା ଅଛି ଓ ତାଙ୍କର ଲୀଳାର କଥା, ଜ୍ଞାନ ଭକ୍ତି ଦୁଇଟି ହିଁ ଅଛି । ସଂସାରରେ ଦାସୀ ପରି ରହିବ । ଦାସୀ ସବୁ କାର୍ଯ୍ୟ କରେ; କିନ୍ତୁ ତା' ଗାଁରେ ମନ ପଡ଼ିଥାଏ । ମୁନିବର ପିଲାମାନଙ୍କୁ ମନୁଷ୍ୟ କରେ, କହେ—'ମୋର ହରି', 'ମୋର ରାମ'; କିନ୍ତୁ ଜାଣେ, ପିଲାଏ ତା'ର ନୁହଁନ୍ତି । ତୁମେମାନେ ଯେ ନିର୍ଜ୍ଜନରେ ସାଧନ କରୁଛ ଏ ଖୁବ୍ ଭଲ, ତାଙ୍କର କୃପା ହେବ । ଜନକରାଜା ନିର୍ଜ୍ଜନରେ କେତେ ସାଧନା କରିଥିଲେ ! ସାଧନା କଲେ ତେବେ ସଂସାରରେ ନିର୍ଲିପ୍ତ ହୋଇପାରିବ ।

"ତୁମେମାନେ ବକ୍ତୃତା ଦିଅ ସମସ୍ତଙ୍କର ଉପକାର ପାଇଁ; କିନ୍ତୁ ଈଶ୍ୱରଙ୍କୁ ଲାଭ କରି ଈଶ୍ୱରଙ୍କୁ ଦର୍ଶନ କରି ବକ୍ତୃତା ଦେଲେ ଉପକାର ହୁଏ । ତାଙ୍କରି ଆଦେଶ ନ ପାଇ ଲୋକଶିକ୍ଷା ଦେଲେ ଉପକାର ହୁଏ ନାହିଁ । ଈଶ୍ୱର-ଲାଭ ନ କଲେ ତାଙ୍କର ଆଦେଶ ମିଳେ ନାହିଁ । ଈଶ୍ୱର-ଲାଭ ଯେ ହୋଇଛି, ତାହାର ଲକ୍ଷଣ ଅଛି । ଲୋକ ବାଳକବତ୍, ଜଡ଼ବତ୍, ଉନ୍ମାଦବତ୍, ପିଶାଚବତ୍ ହୋଇଯାଏ, ଯେପରି ଶୁକଦେବାଦି । ଚୈତନ୍ୟଦେବ କେତେବେଳେ ବାଳକବତ୍, କେତେବେଳେ ବା ଉନ୍ମାଦପରି ନୃତ୍ୟ କରୁଥିଲେ । ହସନ୍ତି, କାନ୍ଦନ୍ତି, ନାଚନ୍ତି, ଗାଆନ୍ତି । ପୁରୀ-ଧାମରେ ଯେତେବେଳେ ଥିଲେ, ସେତେବେଳେ ସେ ଅନେକ ସମୟ ଜଡ଼ସମାଧିରେ ରହୁଥିଲେ ।"

### ଶ୍ରୀଯୁକ୍ତ କେଶବଙ୍କର ହିନ୍ଦୁଧର୍ମ ଉପରେ ଉତ୍ତରୋତ୍ତର ଶ୍ରଦ୍ଧା

ଏହିପରି ନାନାସ୍ଥାନରେ ଶ୍ରୀଯୁକ୍ତ କେଶବଚନ୍ଦ୍ର ସେନ୍‌ଙ୍କୁ ଶ୍ରୀରାମକୃଷ୍ଣ କଥା ଛଳରେ ବହୁ ଉପଦେଶ ଦେଇଥିଲେ । ବେଲଘରିଆ ଉଦ୍ୟାନରେ ପ୍ରଥମ ଦର୍ଶନ ପରେ କେଶବ ୨୮ ତାରିଖ ମାର୍ଚ୍ଚ ୧୮୭୫ ରବିବାର 'ମିରର୍' ସମ୍ବାଦପତ୍ରରେ ଲେଖିଥିଲେ, "ଆମେମାନେ ଅଳ୍ପ ଦିନ ହେଲା ଦକ୍ଷିଣେଶ୍ୱରଠାରେ ପରମହଂସ ରାମକୃଷ୍ଣଙ୍କୁ ବେଲଘରିଆର ଉଦ୍ୟାନରେ ଦର୍ଶନ କରିଛୁ । ତାଙ୍କର ଗଭୀର ଅନ୍ତର୍ଦୃଷ୍ଟି ଓ ବାଳକସ୍ୱଭାବ ଦେଖି ଆମେମାନେ ମୁଗ୍ଧ ହୋଇଛୁ । ସେ ଶାନ୍ତସ୍ୱଭାବ, କୋମଳ-ପ୍ରକୃତି, ଏବଂ ଦେଖିଲେ ବୋଧହୁଏ, ସର୍ବଦା ଯୋଗରେ ଅଛନ୍ତି । ବର୍ତ୍ତମାନ ଆମମାନଙ୍କର ବୋଧ ହେଉଛି ଯେ, ହିନ୍ଦୁଧର୍ମର ଗଭୀରତମ ପ୍ରଦେଶ ଅନୁସନ୍ଧାନ କଲେ ବହୁ ସୌନ୍ଦର୍ଯ୍ୟ, ସତ୍ୟ ଓ ସାଧୁତା ଦେଖିବାକୁ ମିଳିବ । ତାହା ନ ହେଲେ ପରମହଂସଦେବଙ୍କ ପରି ଈଶ୍ୱରୀୟ ଭାବରେ ଭାବିତ ଯୋଗୀ ପୁରୁଷ କିପରି ଦେଖାଯାଉଛନ୍ତି ?"[୧]

---

୧. We met not long ago Paramahamsa of Dakhineswar, and were charmed by the depth, penetration and simplicity

୧୮୭୬ ଜାନୁଆରୀରେ ପୁଣି ମାଘୋତ୍ସବ ଆସିଲା । ସେ ଟାଉନହଲରେ ବକ୍ତୃତା ଦେଲେ; ବିଷୟ—ବ୍ରାହ୍ମଧର୍ମ ଓ ଆମେମାନେ କଅଣ ଶିଖୁଛୁ । ସେଥିରେ ମଧ୍ୟ ହିନ୍ଦୁଧର୍ମର ସୌନ୍ଦର୍ଯ୍ୟ ବିଷୟରେ ଅନେକ କଥା କହିଥିଲେ ।[୧]

ଶ୍ରୀରାମକୃଷ୍ଣ ତାଙ୍କୁ ଯେପରି ଭଲ ପାଉଥିଲେ, କେଶବ ମଧ୍ୟ ଠାକୁରଙ୍କୁ ତଦ୍ରୁପ ଭକ୍ତି କରୁଥିଲେ । ପ୍ରାୟ ପ୍ରତିବର୍ଷ ବ୍ରାହ୍ମୋତ୍ସବ ସମୟରେ ଓ ଅନ୍ୟାନ୍ୟ ସମୟରେ ମଧ୍ୟ କେଶବ ଦକ୍ଷିଣେଶ୍ୱରକୁ ଯାଉଥିଲେ ଓ ତାଙ୍କୁ କମଳକୁଟୀରକୁ ନେଇ ଆସୁଥିଲେ । ବେଳେବେଳେ ଏକାକୀ କମଳକୁଟୀରର ଦ୍ୱିତଳସ୍ଥ ଉପାସନା-କକ୍ଷକୁ ପରମ ଅନ୍ତରଙ୍ଗ ଜ୍ଞାନରେ ତାଙ୍କୁ ଭକ୍ତି ସହକାରେ ନେଇ ଯାଉଥିଲେ ଓ ଏକାନ୍ତରେ ଈଶ୍ୱରଙ୍କର ପୂଜା ଓ ଆନନ୍ଦ କରୁଥିଲେ ।

୧୮୭୯ ଭାଦ୍ରୋତ୍ସବ ସମୟରେ କେଶବ ଶ୍ରୀରାମକୃଷ୍ଣଙ୍କୁ ନିମନ୍ତ୍ରଣ କରି ବେଲଘରିଆର ତପୋବନକୁ ନେଇଯାଇଥିଲେ; ୧୫ ସେପ୍ଟେମ୍ବର ସୋମବାର । ପୁଣି ୨୧ ସେପ୍ଟେମ୍ବର ରବିବାର ଦିନ କମଳକୁଟୀରର ଉତ୍ସବରେ ଯୋଗଦାନ କରିବାକୁ ନେଇଯାଇଥିଲେ । ଏହି ସମୟରେ ଶ୍ରୀରାମକୃଷ୍ଣ ସମାଧିସ୍ଥ ହେବାରୁ

---

of his spirit. The never ceasing metaphors and analogies in which he indulged, are most of them as apt as they are beautiful. The characteristics of his mind are very opposite to those of Pandit Dayananda Saraswati, the former being so gentle, tender and contemplative as the latter is sturdy, masculine and polemical.

—Indian Mirror, 28th March 1875

Hinduism must have in it a deep source of beauty, truth and goodness to inspire such men as these.

—Sunday Mirror, 28th March 1875

୧. "If the ancient Vedic Aryan is gratefully honoured today for having taught us the deep truth of the Nirakar or the bodyless spirit, the same loyal homage is due to the later Puranic Hindu for having taught us religious feelings in all their breadth and depth.

In the days of the Vedas and the Vedanta, India was all communion (Yoga). In the days of the Puranas, India was all emotion (Bhakti). The highest and best feelings of religion have been cultivated under the guardianship of specific divinities."

—'Our Faith and Experiences' —Lecture delivered in January 1876..

ବ୍ରାହ୍ମଭକ୍ତଙ୍କ ସଙ୍ଗରେ ତାଙ୍କର ଫଟୋ ନିଆଯାଇଥିଲା—ଠାକୁର ଦଣ୍ଡାୟମାନ, ସମାଧିସ୍ଥ, ହୃଦୟ ଧରିଛନ୍ତି । ୨୨ ଅକ୍ଟୋବର ମହାଷ୍ଟମୀ—ନବମୀ ଦିନ କେଶବ ଦକ୍ଷିଣେଶ୍ୱରକୁ ଯାଇ ତାଙ୍କୁ ଦର୍ଶନ କରିଥିଲେ ।

୧୮୭୯, ୨୯ ଅକ୍ଟୋବର, ବୁଧବାର କୁମାରପୂର୍ଣ୍ଣିମା ଦିନ ଗୋଟାଏ ବେଳେ କେଶବ ପୁଣି ଭକ୍ତଙ୍କ ସଙ୍ଗରେ ଶ୍ରୀରାମକୃଷ୍ଣଙ୍କୁ ଦର୍ଶନ କରିବାକୁ ଦକ୍ଷିଣେଶ୍ୱର ଗଲେ । ଷ୍ଟିମର୍ ସଙ୍ଗରେ ଖଣ୍ଡେ ବଜରା, ଛଅଖଣ୍ଡ ନୌକା, ଦୁଇଖଣ୍ଡ ଡଙ୍ଗା, ପ୍ରାୟ ୮୦ ଜଣ ଭକ୍ତ । ସଙ୍ଗରେ ପତାକା, ପୁଷ୍ପପଲ୍ଲବ, ଖୋଳ, କରତାଳ, ଭେରୀ । ହୃଦୟ ଅଭ୍ୟର୍ଥନା କରି କେଶବଙ୍କୁ ଷ୍ଟିମରରୁ ଆଣିଲେ—ଗୀତ ଗାଇ ଗାଇ, 'ସୂରଧୁନୀର ତୀରେ ହରି ବଲେ କେ, ବୁଝି ପ୍ରେମଦାତା ନିତାଇ ଏସେଛେ !' ବ୍ରାହ୍ମଭକ୍ତଗଣ ମଧ୍ୟ ପଞ୍ଚବଟୀରୁ କୀର୍ତ୍ତନ କରି କରି ଠାକୁରଙ୍କ ସଙ୍ଗରେ ଆସିବାକୁ ଲାଗିଲେ । 'ସଚ୍ଚିଦାନନ୍ଦ ବିଗ୍ରହ ରୂପାନନ୍ଦ ଘନ ।' ଠାକୁରେ ମଝିରେ ମଝିରେ **ସମାଧିସ୍ଥ** । ଏହି ଦିନ ସନ୍ଧ୍ୟାପରେ ବନ୍ଧାଘାଟରେ ପୂର୍ଣ୍ଣଚନ୍ଦ୍ରର ଆଲୋକରେ କେଶବ ଉପାସନା କରିଥିଲେ ।

ଉପାସନା ପରେ ଠାକୁର କହିଲେ—ତୁମେମାନେ କୁହ **'ବ୍ରହ୍ମ-ଆତ୍ମା-ଭଗବାନ'**, **'ବ୍ରହ୍ମ-ମାୟା-ଜୀବ-ଜଗତ୍'**, **'ଭାଗବତ-ଭକ୍ତ-ଭଗବାନ'** । କେଶବାଦି ବ୍ରାହ୍ମଭକ୍ତଗଣ ସେହି ଚନ୍ଦ୍ରାଲୋକରେ ଭାଗୀରଥି-ତୀରରେ ସମସ୍ୱରରେ ଶ୍ରୀରାମକୃଷ୍ଣଙ୍କ ସହିତ ଏହିସବୁ ମନ୍ତ୍ର ଭକ୍ତିଭରେ ଉଚ୍ଚାରଣ କଲେ । ଶ୍ରୀରାମକୃଷ୍ଣ ପୁଣି ଯେତେବେଳେ କହିଲେ—କୁହ **'ଗୁରୁ-କୃଷ୍ଣ-ବୈଷ୍ଣବ'**, ସେତେବେଳେ କେଶବ ଆନନ୍ଦରେ ହସି ହସି କହୁଛନ୍ତି—ମହାଶୟ, ବର୍ତ୍ତମାନ ଏତେ ଦୂର ନୁହେଁ । 'ଗୁରୁ-କୃଷ୍ଣ-ବୈଷ୍ଣବ' ଆମେମାନେ ଯଦି କହୁ, ଲୋକେ କହିବେ 'ଧର୍ମାନ୍ଧ' । ଶ୍ରୀରାମକୃଷ୍ଣ ମଧ୍ୟ ହସିବାକୁ ଲାଗିଲେ ଓ କହିଲେ—ବେଶ, ତୁମେମାନେ(ବ୍ରାହ୍ମମାନେ) ଯେତେଦୂର ପାର ସେତିକି କୁହ ।

କିଛିଦିନ ପରେ ନଭେମ୍ବର ୧୮୭୯ କାଳୀପୂଜା ପରେ ରାମ, ମନମୋହନ, ଗୋପାଳ ମିତ୍ର ଦକ୍ଷିଣେଶ୍ୱରଠାରେ ଶ୍ରୀରାମକୃଷ୍ଣଙ୍କୁ ପ୍ରଥମ ଦର୍ଶନ କରିଥିଲେ ।

୧୮୮୦ ଖ୍ରୀଷ୍ଟାବ୍ଦରେ ଦିନେ ଗ୍ରୀଷ୍ମକାଳରେ ରାମ, ମନମୋହନ କମଳ-କୁଟୀରରେ କେଶବଙ୍କ ସହିତ ଦେଖା କରିବାକୁ ଆସିଥିଲେ । ସେମାନଙ୍କର ଖୁବ୍ ଇଚ୍ଛା ଯେ, କେଶବ ବାବୁ ଠାକୁରଙ୍କୁ କି ଦୃଷ୍ଟିରେ ଦେଖନ୍ତି ଜାଣିବେ । ସେମାନେ କହିଛନ୍ତି—କେଶବବାବୁଙ୍କୁ ପଚାରିବାରୁ ସେ କହିଲେ, ''ଦକ୍ଷିଣେଶ୍ୱରର ପରମହଂସ ସାମାନ୍ୟ ନୁହନ୍ତି । ବର୍ତ୍ତମାନ ପୃଥିବୀରେ ଏତେ ବଡ଼ ଲୋକ କେହି ନାହାନ୍ତି । ଏତେ ସୁନ୍ଦର ! ଏତେ ଅସାଧାରଣ ! ଏହାଙ୍କୁ ଅତି ସାବଧାନରେ ସନ୍ତର୍ପଣରେ ରଖିବାକୁ ହୁଏ; ଅଯତ୍ନ କଲେ ଏହାଙ୍କ ଦେହ ରହିବ ନାହିଁ; ଯେପରି ସୁନ୍ଦର ମୂଲ୍ୟବାନ୍ ଜିନିଷ ଗ୍ଲାସକେଶ୍‌ରେ ରଖାଯାଏ ।''

ଏହାର କିଛିଦିନ ପରେ ୧୮୮୧ ମାଘୋତ୍ସବ ସମୟରେ ଜାନୁଆରୀ ମାସରେ କେଶବ ଶ୍ରୀରାମକୃଷ୍ଣଙ୍କୁ ଦର୍ଶନ କରିବାକୁ ଦକ୍ଷିଣେଶ୍ୱରକୁ ଯାଇଥିଲେ । ସେତେବେଳେ ରାମ, ମନମୋହନ, ଜୟଗୋପାଳ ସେନ୍ ପ୍ରଭୃତି ଅନେକ ଉପସ୍ଥିତ ଥିଲେ ।

୧୮୮୧ ଖ୍ରୀଷ୍ଟାବ୍ଦ ଜୁଲାଇ ୧୫, ଶୁକ୍ରବାର, ପ୍ରଥମ ଶ୍ରାବଣ । କେଶବ ପୁଣି ଶ୍ରୀରାମକୃଷ୍ଣଙ୍କୁ ଦକ୍ଷିଣେଶ୍ୱରଠାରୁ ଷ୍ଟିମର୍‌ରେ ବୁଲାଇ ନେଇଥିଲେ ।

୧୮୮୧ ନଭେମ୍ବର ମାସରେ ମନମୋହନଙ୍କ ଘରକୁ ଯେତେବେଳେ ଠାକୁର ଶୁଭାଗମନ କଲେ ଓ ଉତ୍ସବ ହେଲା, ସେତେବେଳେ ମଧ୍ୟ କେଶବ ନିମନ୍ତ୍ରିତ ହୋଇ ଉତ୍ସବରେ ଯୋଗଦାନ କରିଥିଲେ । ଶ୍ରୀଯୁକ୍ତ ତ୍ରୈଲୋକ୍ୟ ପ୍ରଭୃତି ସଙ୍ଗୀତ ଗାଇଥିଲେ ।

୧୮୮୧ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସରେ ରାଜେନ୍ଦ୍ର ମିତ୍ରଙ୍କ ଘରକୁ ଶ୍ରୀରାମକୃଷ୍ଣ ନିମନ୍ତ୍ରିତ ହୋଇ ଯାଇଥିଲେ । ଶ୍ରୀଯୁକ୍ତ କେଶବ ମଧ୍ୟ ଯାଇଥିଲେ । ଘରଟି ଠନଠନିଆର ବେଚୁ ଚାଟାର୍ଜୀ ଷ୍ଟ୍ରୀଟ୍‌ରେ । ରାମ ଓ ମନମୋହନଙ୍କର ରାଜେନ୍ଦ୍ର ମଉସା । କେଶବଙ୍କୁ ରାମ, ମନମୋହନ, ବ୍ରାହ୍ମଭକ୍ତ ରାଜମୋହନ ଓ ରାଜେନ୍ଦ୍ର ନିମନ୍ତ୍ରଣ କରିଥିଲେ ।

କେଶବଙ୍କୁ ଯେତେବେଳେ ସମ୍ବାଦ ଦିଆହେଲା, ସେତେବେଳେ ସେ ଭାଇ ଅଘୋରନାଥଙ୍କ ମୃତ୍ୟୁରେ ଅଶୌଚ ଗ୍ରହଣ କରିଥିଲେ । ପ୍ରଚାରକ ଭାଇ ଅଘୋର ୮ ଡିସେମ୍ବର ଗୁରୁବାର ଦିନ ଲକ୍ଷ୍ନୌ ନଗରରେ ଦେହତ୍ୟାଗ କରିଥିଲେ । ସମସ୍ତେ ଭାବିଥିଲେ କେଶବ ବୋଧହୁଏ ଆସିପାରିବେ ନାହିଁ । କେଶବ ସମ୍ବାଦ ପାଇ କହିଲେ, ''କି କଥା ! ପରମହଂସ ମହାଶୟ ଆସିବେ, ଆଉ ମୁଁ ଯିବି ନାହିଁ ! ଅବଶ୍ୟ ଯିବି । ଅଶୌଚ, ତେଣୁ ମୁଁ ଅଲଗା ଜାଗାରେ ଖାଇବି ।''

ମନମୋହନଙ୍କ ଜନନୀ ପରମ ଭକ୍ତିମତୀ ଶ୍ୟାମାସୁନ୍ଦରୀ ଦେବୀ ଠାକୁରଙ୍କୁ ପରଷି ଥିଲେ । ଖାଇବା ସମୟରେ ରାମ ଠିଆ ହୋଇଥିଲେ । ଯେଉଁଦିନ ରାଜେନ୍ଦ୍ରଙ୍କ ଘରକୁ ଶ୍ରୀରାମକୃଷ୍ଣ ଶୁଭାଗମନ କରିଥିଲେ ସେହିଦିନ ଅପରାହ୍ନରେ ସୁରେନ୍ଦ୍ର ତାଙ୍କୁ ନେଇ ଚୀନା ବଜାରରେ ତାଙ୍କର ଛବି (ଫଟୋ) ଉଠାଇଥିଲେ । ଠାକୁର ଦଣ୍ଡାୟମାନ, **ସମାଧିସ୍ଥ** ।

ଉତ୍ସବ ଦିନ ମହେନ୍ଦ୍ର ଗୋସ୍ୱାମୀ ଭାଗବତ ପାଠ କରିଥିଲେ ।

୧୮୮୨ ଜାନୁଆରି ମାଘୋତ୍ସବ ସମୟରେ ସିମୁଳିଆ ବ୍ରାହ୍ମସମାଜର ଉତ୍ସବ ହୋଇଥିଲା । ଜ୍ଞାନ ଚୌଧୁରୀଙ୍କ ଘରେ, ବାରଣ୍ଡାରେ ଓ ଅଗଣାରେ ଉପାସନା ଏବଂ କୀର୍ତ୍ତନ ହୋଇଥିଲା । ଶ୍ରୀରାମକୃଷ୍ଣ ଓ କେଶବ ନିମନ୍ତ୍ରିତ ହୋଇ ଉପସ୍ଥିତ ଥିଲେ । ଏହି ସ୍ଥାନରେ ଠାକୁରେ ପ୍ରଥମଥର ନରେନ୍ଦ୍ରଙ୍କ ଗୀତ ଶୁଣିଲେ ଓ ତାଙ୍କୁ ଦକ୍ଷିଣେଶ୍ୱର ଯିବାକୁ କହିଲେ ।

୧୮୮୨ ଫେବୃଆରୀ ୨୩, ୧୨ ଫାଲ୍‌ଗୁନ ଗୁରୁବାର ଦିନ କେଶବ ଶ୍ରୀରାମକୃଷ୍ଣଙ୍କୁ ଦକ୍ଷିଣେଶ୍ୱରଠାରେ ଭକ୍ତଙ୍କ ସଙ୍ଗରେ ପୁଣି ଦର୍ଶନ କରିବାକୁ ଆସିଥିଲେ । ସଙ୍ଗରେ ଯୋସେଫ କୁକ୍, ଆମେରିକାର ପାଦରୀ ମିସ୍ ପିଗଟ୍ । ବ୍ରାହ୍ମଭକ୍ତଗଣ ଓ କେଶବ ଠାକୁରଙ୍କୁ ଷ୍ଟିମରକୁ ଉଠାଇ ନେଲେ । କୁକ୍ ସାହେବ ଶ୍ରୀରାମକୃଷ୍ଣଙ୍କର ସମାଧି ଅବସ୍ଥା ଦେଖିଲେ । ଶ୍ରୀଯୁକ୍ତ ନଗେନ୍ଦ୍ର ଏହି ଜାହାଜରେ ଉପସ୍ଥିତ ଥିଲେ । ତାଙ୍କ ନିକଟରୁ ସମସ୍ତ ଶୁଣି ମାଷ୍ଟର ଦଶ ପନ୍ଦର ଦିନ ମଧ୍ୟରେ ଦକ୍ଷିଣେଶ୍ୱରଠାରେ ଶ୍ରୀରାମକୃଷ୍ଣଙ୍କୁ ପ୍ରଥମ ଦର୍ଶନ କରିଥିଲେ ।

ଦୁଇମାସ ପରେ ଏପ୍ରିଲ ମାସରେ ଶ୍ରୀରାମକୃଷ୍ଣ କମଳକୁଟୀରରେ କେଶବଙ୍କୁ ଦେଖିବାକୁ ଆସିଥିଲେ । ତାହାର କିଞ୍ଚିତ୍ ବିବରଣ ଏହି ପରିଚ୍ଛେଦରେ ଦିଆଗଲା ।

**ଶ୍ରୀରାମକୃଷ୍ଣଙ୍କର କେଶବଙ୍କ ପ୍ରତି ସ୍ନେହ, ଜଗନ୍ମାତାଙ୍କୁ ପଇଡ଼ ଚିନି ମାନସିକ**

ଆଜି କମଳକୁଟୀରଠାରେ ସେହି ବୈଠକଖାନା ଘରେ ଶ୍ରୀରାମକୃଷ୍ଣ ଭକ୍ତଙ୍କ ସଙ୍ଗରେ ଉପବିଷ୍ଟ । ୨ ଏପ୍ରିଲ ୧୮୮୨, ସମୟ ୫ଟା । କେଶବ ଭିତର ଘରେ ଥିଲେ । ତାହାଙ୍କୁ ସମ୍ବାଦ ଦିଆଗଲା । ସେ ଜାମା ଚାଦର ପିନ୍ଧି ପ୍ରଣାମ କଲେ । ତାଙ୍କର ଭକ୍ତ-ବନ୍ଧୁ କାଳୀନାଥ ବସୁ ପୀଡ଼ିତ, ତାଙ୍କୁ ଦେଖିବାକୁ ଯାଉଥିଲେ । ଠାକୁର ଆସିଛନ୍ତି, କେଶବଙ୍କର ଆଉ ଯିବା ହେଲା ନାହିଁ । ଠାକୁର କହୁଛନ୍ତି— ''ତୁମର ବହୁତ କାମ, ପୁଣି ଖବରକାଗଜରେ ଲେଖିବାକୁ ହୁଏ, ସେଠାକୁ (ଦକ୍ଷିଣେଶ୍ୱରକୁ) ଯିବା ପାଇଁ ବେଳ ନାହିଁ, ତେଣୁ ତୁମକୁ ଦେଖିବାକୁ ଆସିଛି । ତୁମର ରୋଗ ହେବା ଶୁଣି ପଇଡ଼-ଚିନି ମାନସିକ କରିଥିଲି । ମାଆଙ୍କୁ କହିଲି, ମା, କେଶବର ଯଦି କିଛି ହୁଏ, ତାହା ହେଲେ କଲିକତାକୁ ଗଲେ କାହା ସହିତ କଥା କହିବି !''

ଶ୍ରୀଯୁକ୍ତ ପ୍ରତାପାଦି ବ୍ରାହ୍ମ-ଭକ୍ତମାନଙ୍କ ସହିତ ଶ୍ରୀରାମକୃଷ୍ଣ କଥା କହୁଛନ୍ତି । ପାଖରେ ମାଷ୍ଟର ବସିଛନ୍ତି ଦେଖି ସେ କେଶବଙ୍କୁ କହୁଛନ୍ତି —ଏ କାହିଁକି ସେଠାକୁ (ଦକ୍ଷିଣେଶ୍ୱରକୁ) ଯାଆନ୍ତି ନାହିଁ, ପଚାର ତ । ପୁଣି ଏ କହନ୍ତି ଯେ, 'ସ୍ତ୍ରୀ-ପିଲାମାନଙ୍କ ଉପରେ ମନ ନାହିଁ !'

ମାଷ୍ଟର ମୋଟେ ମାସେ ହେଲା ଠାକୁରଙ୍କ ପାଖକୁ ନୂଆ ଯାତାୟାତ କରୁଛନ୍ତି । ଶେଷ ଆଡ଼କୁ ଯିବାରେ କେତେଦିନ ବିଳମ୍ବ ହୋଇଛି; ତେଣୁ ଠାକୁରେ ଏପରି କଥା କହୁଛନ୍ତି । ଠାକୁର କହି ଦେଇଥିଲେ, 'ଆସିବାକୁ ଡେରି ହେଲେ ମୋତେ ପତ୍ର ଦେବ ।'

ବ୍ରାହ୍ମଭକ୍ତମାନେ ଶ୍ରୀଯୁକ୍ତ ସମାଧ୍ୟାୟୀଙ୍କୁ ଦେଖାଇ ଠାକୁରଙ୍କୁ କହୁଛନ୍ତି : ଏ ପଣ୍ଡିତ ବେଦାଦି ଶାସ୍ତ୍ର ବେଶ୍ ପଢ଼ିଛନ୍ତି । ଠାକୁର କହୁଛନ୍ତି—ହଁ, ଏହାଙ୍କ

ଆଖିବାଟେ ଏହାଙ୍କର ଭିତରଟା ଦେଖାଯାଉଛି, ଯେପରି କାଚକବାଟ ଭିତର ଦେଇ ଘର ଭିତରର ଜିନିଷ ଦେଖାଯାଏ ।

ଶ୍ରୀଯୁକ୍ତ ତ୍ରୈଲୋକ୍ୟ ଭଜନ ଗାଉଛନ୍ତି । ଗୀତ ଗାଉ ଗାଉ ସନ୍ଧ୍ୟାଦୀପ ଜଳା ହେଲା, ଭଜନ ମଧ୍ୟ ଚାଲିଲା । ଗୀତ ଶୁଣୁ ଶୁଣୁ ଠାକୁର ହଠାତ୍ ଦଣ୍ଡାୟମାନ—ଆଉ ମାଆଙ୍କର ନାମ କରୁ କରୁ **ସମାଧିସ୍ଥ** । କିଞ୍ଚିତ୍ ପ୍ରକୃତିସ୍ଥ ହୋଇ ନିଜେ ନୃତ୍ୟ କରୁ କରୁ ଗାଇବାକୁ ଲାଗିଲେ—

"ସୁରାପାନ କରି ନା ଆମି ସୁଧା ଖାଇ ଜୟ କାଲୀ ବଲେ ।
ମନ ମାତାଲେ ମାତାଲ କରେ ମଦ ମାତାଲେ ମାତାଲ ବଲେ ।"...ଇତ୍ୟାଦି

ଶ୍ରୀଯୁକ୍ତ କେଶବଙ୍କୁ ଠାକୁରେ ସ୍ନେହପୂର୍ଣ୍ଣ ଦୃଷ୍ଟିରେ ଦେଖୁଛନ୍ତି, ଯେପରିକି ଅତି ନିଜର ଲୋକ । ଆଉ ଯେପରି ଆଶଙ୍କା କରୁଛନ୍ତି, କେଶବ କାଳେ ଅନ୍ୟ କାହାର ଅର୍ଥାତ୍ ସଂସାରର ହୋଇଯିବେ । ତାଙ୍କ ଆଡ଼କୁ ଅନାଇଁ ପୁଣି ଗାଇଲେ—

"କଥା ବଲତେ ଡରାଇ, ନା ବଲ୍‌ଲେଓ ଡରାଇ
ମନେର ସନ୍ଦ ହୟ; ପାଛେ ତୋମା ଧନେ ହରାଇ ହା ରାଇ ॥
ଆମରା ଜାନି ଯେ ମନ୍-ତୋର; ଦିଲାମ୍ ତୋରେ ସେଇ ମନ୍ତୋର ।
ଏଖନ ମନ ତୋର; ଯେ ମନ୍ତ୍ରେ ବିପଦେତେ ତରୀ ତରାଇ ॥"

"ମୁଁ ଜାଣେ ଯେ ମନ ତୋର, ଦେଲି ତୋତେ ସେହି ମନ୍ତର, ଏବେ ମନ ତୋର—ଅର୍ଥାତ୍ ସବୁ ତ୍ୟାଗ କରି ଭଗବାନଙ୍କୁ ଡାକ, ସେ ହିଁ କେବଳ ସତ୍ୟ, ଆଉ ସବୁ ଅସତ୍ୟ; ତାଙ୍କୁ ଲାଭ ନ କଲେ କିଛି ହେଲା ନାହିଁ ! —**ଏହା ମହାମନ୍ତ୍ର ।"**

ପୁଣି ଉପବେଶନ କରି ଭକ୍ତମାନଙ୍କ ସହିତ କଥା କହୁଛନ୍ତି ।

ତାଙ୍କୁ ଜଳଖିଆ ଖୁଆଇବା ପାଇଁ ଉଦ୍‌ଯୋଗ ହେଉଛି । ହଲ୍‌ଘରର ଏକ ପାର୍ଶ୍ୱରେ ଜଣେ ବ୍ରାହ୍ମଭକ୍ତ ପିଆନୋ ବଜାଉଛନ୍ତି । ଶ୍ରୀରାମକୃଷ୍ଣ ସହାସ୍ୟବଦନ, ବାଳକ ପରି ପିଆନୋ ପାଖକୁ ଯାଇ ଠିଆ ହୋଇ ଦେଖୁଛନ୍ତି । ଟିକିଏ ପରେ ତାଙ୍କୁ ଅନ୍ତଃପୁରକୁ ନିଆଗଲା । ଜଳଖିଆ ଖାଇବେ ଆଉ ସ୍ତ୍ରୀଲୋକମାନେ ମଧ୍ୟ ପ୍ରଣାମ କରିବେ ।

ଶ୍ରରାମକୃଷ୍ଣଙ୍କର ଜଳଖିଆ ସରିଲା । ଏଥର ସେ ଗାଡ଼ିରେ ଚଢ଼ିଲେ । ବ୍ରାହ୍ମଭକ୍ତମାନେ ସମସ୍ତେ ଗାଡ଼ି ପାଖରେ ଠିଆ ହୋଇଛନ୍ତି । କମଳକୁଟୀରରୁ ଗାଡ଼ି ଦକ୍ଷିଣେଶ୍ୱର ମନ୍ଦିର ଆଡ଼କୁ ଯାତ୍ରା କଲା ।

# ତୃତୀୟ ପରିଚ୍ଛେଦ

## (୧)

## କଲିକତାରେ ଶ୍ରୀଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ସହିତ ଶ୍ରୀରାମକୃଷ୍ଣଙ୍କର ମିଳନ

(ଶ୍ରୀଯୁକ୍ତ ବିଦ୍ୟାସାଗରଙ୍କର ଘର)

ଆଜି ଶନିବାର, ଶ୍ରାବଣ କୃଷ୍ଣା ଷଷ୍ଠୀ ତିଥି, ୫ ଅଗଷ୍ଟ ୧୮୮୨ ଖ୍ରୀଷ୍ଟାବ୍ଦ, ସମୟ ଅପରାହ୍ନ ଚାରିଟା ।

ଠାକୁର ଶ୍ରୀରାମକୃଷ୍ଣ କଲିକତାର ରାଜପଥ ଦେଇ ଠିକା ଗାଡ଼ି କରି ବାଦୁଡ଼ବାଗାନ୍ ଆଡ଼କୁ ଯାଉଛନ୍ତି । ସଙ୍ଗରେ ଭବନାଥ, ହାଜରା ଓ ମାଷ୍ଟର । ବିଦ୍ୟାସାଗରଙ୍କ ଘରକୁ ଯିବେ ।

ଠାକୁରଙ୍କ ଜନ୍ମଭୂମି, ହୁଗୁଳି ଜିଲ୍ଲା ଅନ୍ତର୍ଗତ କାମାରପୁକୁର ଗ୍ରାମ । ଏହି ଗ୍ରାମଟି ବିଦ୍ୟାସାଗରଙ୍କର ଜନ୍ମଭୂମି ବୀରସିଂହ ନାମକ ଗ୍ରାମର ନିକଟବର୍ତ୍ତୀ । ଠାକୁର ଶ୍ରୀରାମକୃଷ୍ଣ ବାଲ୍ୟକାଳରୁ ବିଦ୍ୟାସାଗରଙ୍କ ଦୟାର କଥା ଶୁଣି ଆସୁଛନ୍ତି । ଦକ୍ଷିଣେଶ୍ୱରରେ କାଳୀମନ୍ଦିରରେ ରହିବା ବେଳେ ତାଙ୍କର ପାଣ୍ଡିତ୍ୟ ଓ ଦୟାର କଥା ଶୁଣିଥାଆନ୍ତି । ବିଦ୍ୟାସାଗରଙ୍କ ସ୍କୁଲରେ ମାଷ୍ଟର ଅଧ୍ୟାପନା କରନ୍ତି ଶୁଣି ତାଙ୍କୁ କହିଥିଲେ, ''ମୋତେ ବିଦ୍ୟାସାଗରଙ୍କ ପାଖକୁ ନେଇଯିବ ? ତାଙ୍କୁ ଦେଖିବାକୁ ମୋର ଭାରୀ ଇଚ୍ଛା ।'' ମାଷ୍ଟର ବିଦ୍ୟାସାଗରଙ୍କୁ ସେହି କଥା କହିଥିଲେ । ବିଦ୍ୟାସାଗର ଆନନ୍ଦିତ ହୋଇ ତାଙ୍କୁ ଦିନେ ଶନିବାର ୪ଟା ବେଳେ ସଙ୍ଗରେ ଆଣିବାକୁ କହିଲେ । ଥରେ ଖାଲି ପଚାରିଲେ, ''କିପରି ପରମହଂସ ? ସେ କ'ଣ ଗେରୁଆ ପିନ୍ଧି ରହନ୍ତି ?'' ମାଷ୍ଟର କହିଥିଲେ, ''ଆଜ୍ଞା ନାହିଁ, ସେ ଜଣେ ଅଦ୍ଭୁତ ପୁରୁଷ, ଲାଲଧଡ଼ି ଲୁଗା ପିନ୍ଧନ୍ତି, ଜାମା ପିନ୍ଧନ୍ତି, ରଙ୍ଗଦିଆ ଜୋତା ପିନ୍ଧନ୍ତି, ରାସମଣିଙ୍କ କାଳୀମନ୍ଦିରରେ ଗୋଟିଏ ଘରେ ରହନ୍ତି, ସେହି ଘରେ ଖଟ ପଡ଼ିଛି—ତାହା ଉପରେ ବିଛଣା, ମଶାରି ଅଛି, ସେହି ବିଛଣାରେ ସେ ଶୁଅନ୍ତି । କୌଣସି ବାହ୍ୟିକ ଚିହ୍ନ ନାହିଁ—ତେବେ ଈଶ୍ୱରଙ୍କ ଛଡ଼ା ଆଉ କିଛି ଜାଣନ୍ତି ନାହିଁ, ସବୁବେଳେ ତାଙ୍କରି ଚିନ୍ତା କରନ୍ତି ।''

ଗାଡ଼ି ଦକ୍ଷିଣେଶ୍ୱର ମନ୍ଦିରଠାରୁ ଛାଡ଼ିଛି । ପୋଲ ପାର ହୋଇ ଶ୍ୟାମବଜାର୍ ଦେଇ କ୍ରମେ ଆମହର୍ଷ୍ଟ ଷ୍ଟ୍ରୀଟ୍‌କୁ ଆସିଛି । ଭକ୍ତମାନେ କହୁଛନ୍ତି—ଏଥର ବାଦୁଡ଼ବାଗାନ୍ ପାଖକୁ ଆସିଛି । ଠାକୁର ବାଳକ ପରି ଆନନ୍ଦରେ ଗପ କରି କରି ଆସୁଛନ୍ତି । ଆମହର୍ଷ୍ଟ ଷ୍ଟ୍ରୀଟ୍‌ରେ ପହଞ୍ଚି ହଠାତ୍ ତାଙ୍କର ଭାବାନ୍ତର ହେଲା, ଯେପରି ଈଶ୍ୱରାବେଶ ହେବାର ଉପକ୍ରମ ।

ଗାଡ଼ି ରାମମୋହନ ରାୟଙ୍କ ବଗିଚାଘର ଦେଇ ଆସୁଛି । ମାଷ୍ଟର ଠାକୁରଙ୍କର ଭାବାନ୍ତର ଦେଖି ନାହାନ୍ତି; ତରତରରେ କହୁଛନ୍ତି, ଏହିଟି ରାମମୋହନ ରାୟଙ୍କର ଘର । ଠାକୁର ବିରକ୍ତ ହେଲେ, କହିଲେ—ବର୍ତ୍ତମାନ ଏସବୁ କଥା ଭଲ ଲାଗୁ ନାହିଁ । ଠାକୁର ଭାବାବିଷ୍ଟ ହେଉଛନ୍ତି ।

ବିଦ୍ୟାସାଗରଙ୍କ ଘର ସମ୍ମୁଖରେ ଗାଡ଼ି ଛିଡ଼ା ହେଲା । ଘରଟି ଦୁଇ ମହଲା, ଇଂରାଜୀ ଢାଞ୍ଚାରେ ତିଆରି । ଜାଗାଟିର ମଝିରେ ଘର ଓ ଚାରିପଟେ ପ୍ରାଚୀର । ଘରର ପଶ୍ଚିମ ପାଖରେ ସଦର ଦରଜା ଓ ଫାଟକ । ଫାଟକଟି ଦ୍ୱାରର ଦକ୍ଷିଣ ଦିଗରେ । ପଶ୍ଚିମର ପ୍ରାଚୀର ଓ ଦ୍ୱିତଳ ଗୃହର ମଧ୍ୟବର୍ତ୍ତୀ ସ୍ଥାନରେ ମଧ୍ୟେ ମଧ୍ୟେ ପୁଷ୍ପବୃକ୍ଷ । ପଶ୍ଚିମ ଦିଗର ତଳଘର ଭିତରେ ଶିଡ଼ିବାଟେ ଉପରକୁ ଉଠିବାକୁ ହୁଏ ।

ଠାକୁର ଗାଡ଼ିରୁ ଓହ୍ଲାଇଲେ । ମାଷ୍ଟର ବାଟ ଦେଖାଇ ଘର ଭିତରକୁ ନେଇ ଯାଉଛନ୍ତି । ଅଗଣାରେ ଫୁଲଗଛ, ତାହା ମଧ୍ୟରେ ଆସୁ ଆସୁ ଠାକୁର ବାଳକ ପରି ବୋତାମରେ ହାତ ଦେଇ ମାଷ୍ଟରଙ୍କୁ ପଚାରୁଛନ୍ତି, ''ଜାମାର ବୋତାମ ଖୋଲା ରହିଛି, ଏଥିରେ କିଛି ଦୋଷ ହେବ ନାହିଁ ତ ?'' ଦେହରେ ଗୋଟିଏ ଲଙ୍ କ୍ଲଥର ଜାମା, ଲାଲଧଡ଼ି ଥିବା ପିନ୍ଧାଲୁଗାର କୁଞ୍ଚଟି କାନ୍ଧରେ ପଡ଼ିଛି । ପାଦରେ ପାଲିସ୍ କରା ଜୋତା । ମାଷ୍ଟର କହିଲେ, ''ଆପଣ ସେଥିପାଇଁ ଭାବିବେ ନାହିଁ, ଆପଣଙ୍କର କୌଣସିଥିରେ ଦୋଷ ହେବ ନାହିଁ, ଆପଣଙ୍କର ବୋତାମ ଦେବା ଦରକାର ନାହିଁ ।'' ବାଳକକୁ ବୁଝାଇଦେଲେ ଯେପରି ନିଶ୍ଚିନ୍ତ ହୁଏ, ଠାକୁର ମଧ୍ୟ ସେହିପରି ନିଶ୍ଚିନ୍ତ ହେଲେ ।

## (୨)

## ବିଦ୍ୟାସାଗର

ଶିଡ଼ିରେ ଉଠି ଏକାବେଳକେ ପ୍ରଥମ ବଖରାଟିରେ (ଉଠିବା ପରେ ଠିକ୍ ଉତ୍ତରପଟେ ବଖରାଟିଏ) ଠାକୁର ଭକ୍ତଗଣଙ୍କୁ ସଙ୍ଗରେ ନେଇ ପ୍ରବେଶ କରୁଛନ୍ତି । ବିଦ୍ୟାସାଗର ବଖରାଟିର ଉତ୍ତର ପାର୍ଶ୍ୱରେ ଦକ୍ଷିଣାଭିମୁଖ ହୋଇ ବସିଛନ୍ତି; ସମ୍ମୁଖରେ ଗୋଟିଏ ଚାରିକୋଣିଆ ଲମ୍ବା ପାଲିସ୍ ହୋଇଥିବା ଟେବୁଲ । ଟେବୁଲର ପୂର୍ବପଟେ ପଛଆଡ଼କୁ ଆଉଜି ବସିବା ଖଣ୍ଡିଏ ବେଞ୍ଚ । ଟେବୁଲର ଦକ୍ଷିଣ ପାର୍ଶ୍ୱରେ କେତେଖଣ୍ଡ ଚୌକି । ବିଦ୍ୟାସାଗର ଜଣେ ଦୁଇଜଣ ବନ୍ଧୁଙ୍କ ସହିତ କଥା କହୁଥିଲେ । ଠାକୁର ପ୍ରବେଶ କରିବାମାତ୍ରେ ବିଦ୍ୟାସାଗର ଦଣ୍ଡାୟମାନ ହୋଇ ଅଭ୍ୟର୍ଥନା କଲେ । ଠାକୁର ପଶ୍ଚିମାଭିମୁଖ, ଟେବୁଲର ପୂର୍ବ ପାର୍ଶ୍ୱରେ ଠିଆ ହୋଇଛନ୍ତି । ବାମ ହସ୍ତ ଟେବୁଲ ଉପରେ, ପଛପଟେ ବେଞ୍ଚ ଖଣ୍ଡିକ; ବିଦ୍ୟାସାଗରଙ୍କୁ ପୂର୍ବ ପରିଚିତ ପରି ଏକଦୃଷ୍ଟିରେ ଦେଖୁଛନ୍ତି ଓ ଭାବରେ ହସୁଛନ୍ତି ।

ବିଦ୍ୟାସାଗରଙ୍କ ବୟସ ୬୨/୬୩ । ଠାକୁର ଶ୍ରୀରାମକୃଷ୍ଣଙ୍କ ଅପେକ୍ଷା ୧୬, ୧୭ ବର୍ଷ ବଡ଼ ହେବେ । ଥାନ–କନାର ଲୁଗା, ଗୋଡ଼ରେ ଜୋତା, ଦେହରେ ଗୋଟିଏ ହାତକଟା ଫ୍ଲାନେଲ୍ ଜାମା । ମୁଣ୍ଡରେ ଚାରିପାଖ ଓଡ଼ିଶାବାସୀଙ୍କ ପରି (ଆଗକାଳର ଗ୍ରାମର ଚାଷୀମାନଙ୍କ ପରି) କ୍ଷିଅର ହୋଇଛନ୍ତି । କଥା କହିବା ବେଳେ ଦାନ୍ତଗୁଡ଼ିକ ଉଜ୍ଜ୍ୱଳ ଦେଖାଯାଏ, ଦାନ୍ତଗୁଡ଼ିକ ସମସ୍ତ ବସାଦାନ୍ତ । ମୁଣ୍ଡଟି ଖୁବ୍ ବଡ଼ । ଉନ୍ନତ ଲଲାଟ ଓ ଟିକିଏ ଖର୍ବାକୃତି । ବ୍ରାହ୍ମଣ, ତେଣୁ କାନ୍ଧରେ ପଇତା ।

ବିଦ୍ୟାସାଗରଙ୍କର ଅନେକ ଗୁଣ । ବିଦ୍ୟାନୁରାଗ, ସର୍ବ ଜୀବେ ଦୟା, ସ୍ୱାଧୀନତାନୁରାଗ, ମାତୃଭକ୍ତି ତଥା ମାନସିକ ବଳ ଆଦି ଅନେକ ଗୁଣ ତାଙ୍କଠାରେ ପୂର୍ଣ୍ଣ ହୋଇ ରହିଛି ।

**ଶ୍ରୀରାମକୃଷ୍ଣଙ୍କୁ ବିଦ୍ୟାସାଗରଙ୍କର ପୂଜା ଓ ସମ୍ଭାଷଣ**

ଠାକୁର ଭାବାବିଷ୍ଟ ହେଉଛନ୍ତି ଓ କିଛିକ୍ଷଣ ଭାବସ୍ଥ ହୋଇ ଠିଆ ହୋଇଛନ୍ତି । ଭାବ ସମ୍ବରଣ ପାଇଁ ମଝେ ମଝେ କହୁଛନ୍ତି — ପାଣି ପିଇବି । ଦେଖୁ ଦେଖୁ ଘରର ପିଲାମାନେ ଓ ଆତ୍ମୀୟ ବନ୍ଧୁମାନେ ଆସି ଠିଆ ହେଲେ ।

ଠାକୁର ଭାବାବିଷ୍ଟ ହୋଇ ବେଞ୍ଚ ଉପରେ ବସିଛନ୍ତି । ଜଣେ ୧୭/୧୮ ବର୍ଷର ବାଳକ ସେହି ବେଞ୍ଚରେ ବସିଛି—ବିଦ୍ୟାସାଗରଙ୍କ ପାଖକୁ ଆସିଛି ପଢ଼ାପଢ଼ି ପାଇଁ ସାହାଯ୍ୟ ମାଗିବାକୁ । ଠାକୁର ଭାବାବିଷ୍ଟ, ଋଷିର ଅନ୍ତର୍ଦୃଷ୍ଟି, ବାଳକଟିର ଅନ୍ତରର ଭାବ ସବୁ ବୁଝିଛନ୍ତି । ଟିକିଏ ଘୁଞ୍ଚି ବସିଲେ ଓ ଭାବରେ କହିଲେ, ''ମା ! ଏ ପିଲାଟିର ଭାରୀ ସଂସାରାସକ୍ତି । ତୁମର ଅବିଦ୍ୟାର ସଂସାର ! ଏ ଅବିଦ୍ୟାର ବାଳକ !''

ଯେଉଁ ବ୍ୟକ୍ତି ବ୍ରହ୍ମବିଦ୍ୟା ପାଇଁ ବ୍ୟାକୁଳ ନୁହେଁ, ଅର୍ଥକାରୀ ବିଦ୍ୟା ଉପାର୍ଜନ ତାହା ପକ୍ଷରେ ବିଡ଼ମ୍ବନା ମାତ୍ର, ଏହି କଥା କଅଣ ଠାକୁର କହିଛନ୍ତି ?

ବିଦ୍ୟାସାଗର ବ୍ୟସ୍ତ ହୋଇ ଜଣକୁ ପାଣି ଆଣିବାକୁ କହିଲେ ଓ ମାଷ୍ଟରଙ୍କୁ ପଚାରିଲେ କିଛି ଖାଦ୍ୟ ଆଣିଲେ ସେ ଖାଇବେ କି ? ସେ କହିଲେ, 'ଆଜ୍ଞା, ଆଣନ୍ତୁନା ।' ବିଦ୍ୟାସାଗର ଶୀଘ୍ର ଭିତରକୁ ଯାଇ କିଛି ମିଠାଇ ଆଣିଲେ ଓ କହିଲେ, ଏଗୁଡ଼ିକ ବର୍ଦ୍ଧମାନରୁ ଆସିଛି । ଠାକୁରଙ୍କୁ କିଛି ଖାଇବାକୁ ଦିଆଗଲା । ହାଜରା ଓ ଭବନାଥ ମଧ୍ୟ ଖାଇଲେ । ମାଷ୍ଟରଙ୍କୁ ଦେବାକୁ ଆସିଲାବେଳେ ବିଦ୍ୟାସାଗର କହିଲେ, 'ସେ ଘରର ପୁଅ, ତା' ପାଇଁ ଅଟକିବ ନାହିଁ ।' ଠାକୁର ଜଣେ ଭକ୍ତ ବାଳକର କଥା ବିଦ୍ୟାସାଗରଙ୍କୁ କହୁଛନ୍ତି । ସେ ବାଳକଟି ଏଠାରେ ଠାକୁରଙ୍କ ସମ୍ମୁଖରେ ବସିଥିଲା । ଠାକୁର କହିଲେ, ''ଏ ବାଳକଟି ଖୁବ୍ ସତ୍, ଆଉ ଅନ୍ତଃସାର, ଯେପରି ଫଲ୍‌ଗୁ ନଦୀ, ଉପରେ ବାଲି, ଟିକିଏ ଖୋଳିଲେ ଭିତରେ ପାଣି ବହୁଥିବାର ଦେଖାଯାଏ ।''

ମିଷ୍ଟାନ୍ନ ଖାଇବା ପରେ ଠାକୁରେ ସହାସ୍ୟବଦନ ହୋଇ ବିଦ୍ୟାସାଗରଙ୍କ ସଙ୍ଗରେ କଥା କହୁଛନ୍ତି । ଦେଖୁ ଦେଖୁ ଘରେ ଘରଭର୍ତ୍ତି ଲୋକ, କେହି ବସିଛନ୍ତି, କେହି ଠିଆ ହୋଇଛନ୍ତି ।

ଶ୍ରୀରାମକୃଷ୍ଣ — ଆଜି ସାଗରରେ ଆସି ମିଶିଲି । ଏତେଦିନ ନାଳ, ଖାଲ, ହ୍ରଦ ଓ ଖୁବ୍ ବେଶୀ ହେଲେ ନଦୀ ଦେଖିଛି । (ସମସ୍ତଙ୍କର ହାସ୍ୟ)

ବିଦ୍ୟାସାଗର (ସହାସ୍ୟ) — ତେବେ ଲୁଣିଆ ପାଣି କିଛି ନେଇଯାଆନ୍ତୁ । (ହାସ୍ୟ)

ଶ୍ରୀରାମକୃଷ୍ଣ — ନାହିଁ ହେ ! ଲୁଣିଆ ପାଣି କାହିଁକି ? ତୁମେ ତ ଅବିଦ୍ୟାର ସାଗର ନୁହଁ, ତୁମେ ଯେ ବିଦ୍ୟାର ସାଗର ! (ସମସ୍ତଙ୍କର ହାସ୍ୟ) । ତୁମେ କ୍ଷୀର-ସମୁଦ୍ର ! (ସମସ୍ତଙ୍କର ହାସ୍ୟ)

ବିଦ୍ୟାସାଗର — ହଁ, ସେକଥା ଅବଶ୍ୟ କହିପାରନ୍ତି ।

ବିଦ୍ୟାସାଗର ନୀରବ ରହିଲେ । ଠାକୁରେ କଥା କହୁଛନ୍ତି ।

### ବିଦ୍ୟାସାଗରଙ୍କର ସାତ୍ତ୍ୱିକ କର୍ମ — "ତୁମେ ମଧ୍ୟ ସିଦ୍ଧ ପୁରୁଷ"

ଶ୍ରୀରାମକୃଷ୍ଣ — ତୁମର କର୍ମ ସାତ୍ତ୍ୱିକ କର୍ମ । ସତ୍ତ୍ୱର ରଜଃ । ସତ୍ତ୍ୱ ଗୁଣରୁ ଦୟା ହୁଏ । ଦୟା ହେତୁ ଯେଉଁ କର୍ମ କରାଯାଏ, ତାହା ରାଜସିକ କର୍ମ ସତ୍ୟ; କିନ୍ତୁ ଏ ରଜୋଗୁଣ, ସତ୍ତ୍ୱର ରଜୋଗୁଣ — ଏଥିରେ ଦୋଷ ନାହିଁ । ଶୁକଦେବାଦି ଲୋକଶିକ୍ଷା ପାଇଁ ଦୟା ରଖିଥିଲେ — ଈଶ୍ୱର ବିଷୟ ଶିକ୍ଷା ଦେବା ପାଇଁ । ତୁମେ ବିଦ୍ୟାଦାନ, ଅନ୍ନଦାନ କରୁଛ, ଏ ତ ଭଲ । ନିଷ୍କାମ ଭାବରେ କରିପାରିଲେ ଏଥିରେ ଭଗବାନ ଲାଭ ହୁଏ । କେହି କରନ୍ତି ନାମ ପାଇଁ, ପୁଣ୍ୟ ପାଇଁ, ସେମାନଙ୍କ କର୍ମ ନିଷ୍କାମ କର୍ମ ନୁହେଁ । ଆଉ ତୁମେ ତ ସିଦ୍ଧ ହୋଇଯାଇଛ ।

ବିଦ୍ୟାସାଗର — ମହାଶୟ, କିପରି ?

ଶ୍ରୀରାମକୃଷ୍ଣ (ସହାସ୍ୟ) — ଆଳୁ ପୋଟଳ ସିଦ୍ଧ ହେଲେ ନରମ ହୁଏ, ଆଉ ତୁମେ ତ ଖୁବ୍ ନରମ । ତୁମର ଏତେ ଦୟା ! (ହାସ୍ୟ)

ବିଦ୍ୟାସାଗର (ସହାସ୍ୟ) — ବିରିବଟା ସିଦ୍ଧ ହେଲେ ତ ଟାଣ ହୁଏ ! (ସମସ୍ତଙ୍କର ହାସ୍ୟ)

ଶ୍ରୀରାମକୃଷ୍ଣ — ତୁମେ ତାହା ନୁହଁ ହେ, ତୁଚ୍ଛା ପଣ୍ଡିତଯାକ ଦରପାଚିଆ ! ନା ଏ ପାଖ, ନା ସେ ପାଖ । ଶାଗୁଣା ଖୁବ୍ ଉଚ୍ଚରେ ଉଡ଼େ; କିନ୍ତୁ ତାର ନଜର ଥାଏ ମଢ଼ ଉପରେ । ଯେଉଁମାନେ ତୁଚ୍ଛା ପଣ୍ଡିତ, ଶୁଣିବାରେ ପଣ୍ଡିତ, ସେମାନଙ୍କର କାମିନୀ-କାଞ୍ଚନରେ ଆସକ୍ତି — ଶାଗୁଣା ପରି ପଚା ମଢ଼ା ଖୋଜୁଛନ୍ତି — ଅବିଦ୍ୟା-ସଂସାରରେ ଆସକ୍ତି । ଦୟା, ଭକ୍ତି, ବୈରାଗ୍ୟ ବିଦ୍ୟାର ଐଶ୍ୱର୍ଯ୍ୟ ।

ବିଦ୍ୟାସାଗର ଚୁପ୍ ହୋଇ ଶୁଣୁଛନ୍ତି । ସମସ୍ତେ ଏକ ଦୃଷ୍ଟିରେ ଏହି ଆନନ୍ଦମୟ ପୁରୁଷଙ୍କୁ ଦର୍ଶନ ଓ ତାଙ୍କର କଥାମୃତ ପାନ କରୁଛନ୍ତି ।

## (୩)

## ଶ୍ରୀରାମକୃଷ୍ଣ, ଜ୍ଞାନଯୋଗ ବା ବେଦାନ୍ତ-ବିଚାର

ବିଦ୍ୟାସାଗର ମହାପଣ୍ଡିତ । ଯେତେବେଳେ ସଂସ୍କୃତ କଲେଜରେ ପଢୁଥିଲେ ସେତେବେଳେ ନିଜ ଶ୍ରେଣୀରେ ସର୍ବୋତ୍କୃଷ୍ଟ ଛାତ୍ର ଥିଲେ । ପ୍ରତି ପରୀକ୍ଷାରେ ପ୍ରଥମ ହେଉଥିଲେ ଏବଂ ସ୍ୱର୍ଣ୍ଣପଦକାଦି ଓ ଛାତ୍ରବୃତ୍ତି ପାଉଥିଲେ । କ୍ରମେ ସଂସ୍କୃତ କଲେଜରେ ପ୍ରଧାନ ଅଧ୍ୟାପକ ହୋଇଥିଲେ । ସଂସ୍କୃତ ବ୍ୟାକରଣ ଓ ସଂସ୍କୃତ କାବ୍ୟରେ ବିଶେଷ ପାରଦର୍ଶିତା ଲାଭ କରିଥିଲେ । ଅଧ୍ୟବସାୟ ବଳରେ ନିଜେ ଚେଷ୍ଟା କରି ଇଂରାଜୀ ଶିଖିଥିଲେ ।

ଧର୍ମ ବିଷୟରେ ବିଦ୍ୟାସାଗର କାହାରିକୁ ଶିକ୍ଷା ଦିଅନ୍ତି ନାହିଁ । ସେ ଦର୍ଶନାଦି ଗ୍ରନ୍ଥ ପଢ଼ିଛନ୍ତି । ମାଷ୍ଟର ଦିନେ ପଚାରିଥିଲେ, "ଆପଣଙ୍କୁ ହିନ୍ଦୁ-ଦର୍ଶନ କିପରି ଲାଗେ ?" ସେ କହିଥିଲେ, "ମୋର ମନେହୁଏ — ସେମାନେ ଯାହା ବୁଝାଇବାକୁ ଚାହିଁଛନ୍ତି, ବୁଝାଇପାରି ନାହାନ୍ତି ।" ହିନ୍ଦୁମାନଙ୍କ ପରି ସେ ଶ୍ରାଦ୍ଧାଦି ଧର୍ମକର୍ମ ସମସ୍ତ କରନ୍ତି; କାନ୍ଧରେ ଉପବୀତ ଧାରଣ କରନ୍ତି; ବଙ୍ଗଳାରେ ଯେଉଁ ସମସ୍ତ ପତ୍ର ଲେଖନ୍ତି, ସେଥିରେ 'ଶ୍ରୀଶ୍ରୀହରିଶରଣମ୍' ଭଗବାନଙ୍କର ଏହି ବନ୍ଦନା ପ୍ରଥମେ କରନ୍ତି ।

ମାଷ୍ଟର ଆଉଦିନେ ତାଙ୍କ ମୁହଁରୁ ଶୁଣିଥିଲେ, ସେ ଈଶ୍ୱରଙ୍କ ସମ୍ବନ୍ଧରେ କଅଣ ଭାବନ୍ତି । ବିଦ୍ୟାସାଗର କହିଥିଲେ, "ତାଙ୍କୁ ତ ଜାଣିବାର ଉପାୟ ନାହିଁ । ବର୍ତ୍ତମାନ କର୍ତ୍ତବ୍ୟ କଅଣ ? ମୋ ମତରେ କର୍ତ୍ତବ୍ୟ, ଆମେମାନେ ନିଜେ ଏପରି ହେବା ଉଚିତ୍, ଯାହାଦ୍ୱାରା ସମସ୍ତେ ଯଦି ସେହିପରି ହୁଅନ୍ତି, ତେବେ ପୃଥିବୀ ସ୍ୱର୍ଗ ହୋଇଯିବ । ଯେଉଁଥିରେ ଜଗତର ମଙ୍ଗଳ ହେବ, ତାହା ହିଁ ପ୍ରତ୍ୟେକର ଚେଷ୍ଟା କରିବା ଉଚିତ ।"

ବିଦ୍ୟା ଓ ଅବିଦ୍ୟା କଥା କହୁ କହୁ ଠାକୁର ବ୍ରହ୍ମଜ୍ଞାନ କଥା କହୁଛନ୍ତି । ବିଦ୍ୟାସାଗର ମହାପଣ୍ଡିତ । ଷଡ଼ଦର୍ଶନ ପାଠ କରି ବୋଧହୁଏ ଜାଣିଛନ୍ତି ଯେ ଈଶ୍ୱରଙ୍କ ବିଷୟ କିଛି ଜଣାଯାଏ ନାହିଁ ।

### Problem of Evil — ବ୍ରହ୍ମ ନିର୍ଲିପ୍ତ — ଜୀବର ସମ୍ବନ୍ଧରେ ହିଁ ଦୁଃଖାଦି

ଶ୍ରୀରାମକୃଷ୍ଣ — ବ୍ରହ୍ମ — ବିଦ୍ୟା ଓ ଅବିଦ୍ୟାର ପାର । ସେ ମାୟାତୀତ । ଏହି ଜଗତରେ ବିଦ୍ୟାମାୟା, ଅବିଦ୍ୟାମାୟା ଦୁଇଟି ଯାକ ଅଛି; ଜ୍ଞାନ-ଭକ୍ତି ଅଛି, ପୁଣି କାମିନୀ-କାଞ୍ଚନ ବି ଅଛି, ସତ୍ ଅଛି, ଅସତ୍ ବି ଅଛି; ଭଲ ଅଛି, ମନ୍ଦ ବି ଅଛି । କିନ୍ତୁ ବ୍ରହ୍ମ ନିର୍ଲିପ୍ତ । ଭଲ ମନ୍ଦ ଜୀବ ପାଇଁ; ସତ୍ ଅସତ୍ ଜୀବ ପାଇଁ, ତାଙ୍କର ସେଥିରେ କିଛି ହୁଏ ନାହିଁ ।

''ଯେପରି ଦୀପ ଜଳାଇ କେହି ଭାଗବତ ପଢୁଛି, ଆଉ କେହି ବା ଜାଲ୍ କରୁଛି । ଦୀପ ନିର୍ଲିପ୍ତ । ସୂର୍ଯ୍ୟ ଶିଷ୍ଟ ଉପରେ ଆଲୋକ ଦେଉଛନ୍ତି, ପୁଣି ଦୁଷ୍ଟ ଉପରେ ବି ଦେଉଛନ୍ତି ।

''ଯଦି କୁହ—ଦୁଃଖ, ପାପ, ଅଶାନ୍ତି ଏସବୁ ତେବେ କଅଣ ? ତାହାର ଉତ୍ତର ଏହି ଯେ, ସେସବୁ ଜୀବ ପାଇଁ । ବ୍ରହ୍ମ ନିର୍ଲିପ୍ତ । ସାପ ଭିତରେ ବିଷ ଅଛି; ଅନ୍ୟକୁ କାମୁଡ଼ିଲେ ଜୀବ ମରିଯାଏ; ସାପର କିନ୍ତୁ କିଛି ହୁଏ ନାହିଁ ।

**ବ୍ରହ୍ମ ଅନିର୍ବଚନୀୟ ଅବ୍ୟପଦେଶ୍ୟମ୍**

''ବ୍ରହ୍ମ ଯେ କଅଣ, ମୁହଁରେ କୁହାଯାଇପାରେ ନାହିଁ । ସବୁ ଜିନିଷ ଉଚ୍ଛିଷ୍ଟ ହୋଇଛି । ବେଦ, ପୁରାଣ, ତନ୍ତ୍ର, ଷଡ଼ଦର୍ଶନ ସବୁ ଅଇଁଠା ହୋଇଯାଇଛି ! ମୁଖରେ ଉଚ୍ଚାରିତ ହୋଇଛି—ତେଣୁ ଅଇଁଠା ହୋଇଛି ! କିନ୍ତୁ ଗୋଟିଏ ଜିନିଷ କେବଳ ଉଚ୍ଛିଷ୍ଟ ହୋଇନାହିଁ, ସେହି ଜିନିଷଟି ବ୍ରହ୍ମ । ବ୍ରହ୍ମ ଯେ କି ବସ୍ତୁ, ଆଜି ପର୍ଯ୍ୟନ୍ତ କେହି ମୁହଁରେ କହିପାରି ନାହିଁ ।''

ବିଦ୍ୟାସାଗର (ବନ୍ଧୁମାନଙ୍କ ପ୍ରତି)—ବାଃ ! ବଢ଼ିଆ କଥାଟିଏ ! ଆଜି ଗୋଟିଏ ନୂଆ କଥା ଶିଖିଲି ।

ଶ୍ରୀରାମକୃଷ୍ଣ—ଜଣକର ଦୁଇଟି ପୁଅ । ବ୍ରହ୍ମବିଦ୍ୟା ଶିଖିବା ପାଇଁ ପୁଅ ଦୁହିଁଙ୍କୁ ସେ ଆଚାର୍ଯ୍ୟଙ୍କ ହାତରେ ଦେଲେ । କେତେକ ବର୍ଷ ପରେ ସେମାନେ ଗୁରୁଙ୍କ ଗୃହରୁ ଫେରିଆସିଲେ; ଆସି ବାପାଙ୍କୁ ପ୍ରଣାମ କଲେ । ବାପାଙ୍କର ଇଚ୍ଛା, ଦେଖିବେ, ଏମାନଙ୍କର ବ୍ରହ୍ମଜ୍ଞାନ କିପରି ହୋଇଛି । ବଡ଼ ପୁଅକୁ ପଚାରିଲେ, 'ବାପ ! ତୁମେ ତ ସବୁ ପଢ଼ିଛ, ବ୍ରହ୍ମ କିପରି କୁହ ତ ?' ବଡ଼ ପୁଅ ବେଦରୁ ନାନା ଶ୍ଳୋକ କହି ବ୍ରହ୍ମଙ୍କର ସ୍ୱରୂପ ବୁଝାଇବାକୁ ଲାଗିଲା । ବାପା ଚୁପ୍ କରି ରହିଲେ । ଯେତେବେଳେ ଛୋଟ ପୁଅକୁ ପଚାରିଲେ, ସେ ମୁହଁ ତଳକୁ କରି ଚୁପ୍ କରି ରହିଲା । ପାଟିରେ କୌଣସି କଥା ନାହିଁ । ବାପା ସେତେବେଳେ ପ୍ରସନ୍ନ ହୋଇ ଛୋଟ ପୁଅକୁ କହିଲେ, 'ବାବୁ ! ତୁମେ ଟିକିଏ ବୁଝିଛ । ବ୍ରହ୍ମ ଯେ କଅଣ, ମୁହଁରେ କୁହାଯାଇପାରେ ନାହିଁ ।'

''ମଣିଷ ଭାବେ ଯେ, ସେ ତାଙ୍କୁ ଜାଣିଯାଇଛି । ଗୋଟିଏ ପିମ୍ପୁଡ଼ି ଚିନିର ପାହାଡ଼କୁ ଯାଇଥିଲା । ଗୋଟିଏ ଦାନା ଖାଇ ପେଟ ପୂରିଗଲା, ଆଉ ଗୋଟିଏ ଦାନା ମୁହଁରେ ଧରି ବସାକୁ ଗଲା; ଯିବାବେଳେ ଭାବୁଛି—ଏଥର ଆସି ପୂରା ପାହାଡ଼ଟି ନେଇଯିବି ! କ୍ଷୁଦ୍ର ଜୀବମାନେ ଏହିପରି ମନେ କରନ୍ତି । ଜାଣନ୍ତି ନାହିଁ, ବ୍ରହ୍ମ ବାକ୍ୟମନର ଅତୀତ ।

''ଯେ ଯେତେ ବଡ଼ ହେଉ ନା କାହିଁକି, ତାଙ୍କୁ କଅଣ ଜାଣିବ ? ଶୁକଦେବାଦି ଖୁବ୍ ହେଲେ ଜନ୍ଦା—ଚିନିର ଆଠ ଦଶଟା ଦାନା ହୁଏତ ମୁହଁରେ ଧରିପାରନ୍ତି ।

**ବ୍ରହ୍ମ ସଚ୍ଚିଦାନନ୍ଦସ୍ୱରୂପ — ନିର୍ବିକଳ୍ପ ସମାଧି ଓ ବ୍ରହ୍ମଜ୍ଞାନ**

''ତେବେ ବେଦ-ପୁରାଣରେ ଯାହା କୁହାଯାଇଛି — ତାହା କିପରି ଜ୍ଞାନ ? ଜଣେ ସାଗର ଦେଖି ଆସିଲେ ଯଦି କେହି ପଚାରେ — କିପରି ଦେଖିଲ ? — ସେ ଲୋକ ଏଡ଼େ ବଡ଼ ଆଁ କରି କହେ, 'ଓଃ ! କି ହିଲ୍ଲୋଳ କଲ୍ଲୋଳ !' ବ୍ରହ୍ମକଥା ମଧ୍ୟ ସେହିପରି । ବେଦରେ ଅଛି — ସେ ଆନନ୍ଦସ୍ୱରୂପ ସଚ୍ଚିଦାନନ୍ଦ । ଶୁକଦେବାଦି ଏହି ବ୍ରହ୍ମସାଗର ତଟରେ ଠିଆ ହୋଇ ଦର୍ଶନ ସ୍ପର୍ଶନ କରିଥିଲେ । ଏକ ମତରେ ଅଛି — ସେମାନେ ଏ ସାଗରରେ ପଶି ନାହାନ୍ତି । ଏ ସାଗରରେ ମିଶିଲେ ଫେରିବା ଅସାଧ୍ୟ ।

''ସମାଧିସ୍ଥ ହେଲେ ବ୍ରହ୍ମଜ୍ଞାନ ହୁଏ, ବ୍ରହ୍ମଦର୍ଶନ ହୁଏ । ସେହି ଅବସ୍ଥାରେ ବିଚାର ଏକାବେଳକେ ବନ୍ଦ ହୋଇଯାଏ, ମନୁଷ୍ୟ ଚୁପ୍ ହୋଇଯାଏ । ବ୍ରହ୍ମ କି ବସ୍ତୁ ମୁହଁରେ କହିବାର ଶକ୍ତି ରହେ ନାହିଁ ।

''ଲୁଣର କଣ୍ଢେଇ (ଲବଣ-ପୁତ୍ତଳିକା) ସମୁଦ୍ର ମାପିବାକୁ ଯାଇଥିଲା । (ସମସ୍ତଙ୍କର ହାସ୍ୟ) । କେତେ ଗଭୀର ତା'ର ଖବର ଦେବ ! ଖବର ଦେବା ଆଉ ହେଲା ନାହିଁ । ଯେମିତି ପଶିଛି, ସଙ୍ଗେ ସଙ୍ଗେ ମିଳେଇଗଲା ! କିଏ ଆଉ ଖବର ଦେବ ?''

ଜଣେ ପଚାରିଲେ, ''ସମାଧିସ୍ଥ ବ୍ୟକ୍ତି, ଯାହାଙ୍କର ବ୍ରହ୍ମଜ୍ଞାନ ହୋଇଛି, ସେ କଅଣ ଆଉ କଥା କହନ୍ତି ନାହିଁ ?''

ଶ୍ରୀରାମକୃଷ୍ଣ (ବିଦ୍ୟାସାଗରାଦିଙ୍କ ପ୍ରତି) — ଶଙ୍କରାଚାର୍ଯ୍ୟ ଲୋକଶିକ୍ଷା ପାଇଁ ବିଦ୍ୟାର 'ମୁଁ' ରଖିଥିଲେ । ବ୍ରହ୍ମଦର୍ଶନ ହେଲେ ମନୁଷ୍ୟ ଚୁପ୍ ହୋଇଯାଏ । ଯେପର୍ଯ୍ୟନ୍ତ ଦର୍ଶନ ନ ହୁଏ, ସେପର୍ଯ୍ୟନ୍ତ ବିଚାର । ଘିଅ ଯେତେବେଳେଯାଏ କଞ୍ଚା ଥାଏ ସେତେବେଳେଯାଏ କଡ଼ କଡ଼ ଶବ୍ଦ । ତାତିଗଲେ ଘିଅର କୌଣସି ଶବ୍ଦ ରହେ ନାହିଁ । କିନ୍ତୁ ଯେତେବେଳେ ଏହି ଘିଅରେ ପୁଣି କଞ୍ଚା ଲୁଚି ପଡ଼େ — ସେତେବେଳେ ଆଉ ଥରେ ଚେଁ କଡ଼କଡ଼ ଶବ୍ଦ ହୁଏ । କଞ୍ଚା ଲୁଚି ପାଚିଗଲେ ଘିଅ ପୁଣି ଚୁପ୍ ହୋଇଯାଏ । ସେହିପରି ସମାଧିସ୍ଥ ପୁରୁଷ ଲୋକଶିକ୍ଷା ଦେବା ପାଇଁ ପୁଣି ଓହ୍ଲାଇ ଆସନ୍ତି, ପୁଣି କଥା କହନ୍ତି ।

''ଯେତେବେଳ ଯାଏ ମହୁମାଛି ଫୁଲରେ ନ ବସେ, ସେତେବେଳେ ଯାଏ ଗୁଣୁ ଗୁଣୁ କରେ । ଫୁଲରେ ବସି ମଧୁପାନ କରିବାକୁ ଆରମ୍ଭ କଲେ ଚୁପ୍ ହୋଇଯାଏ । ମଧୁପାନ କରିବା ପରେ ମାତାଲ ହୋଇ ପୁଣି ବେଳେ ବେଳେ ଗୁଣୁ ଗୁଣୁ କରେ ।

''ପୋଖରୀରୁ ମାଠିଆରେ ପାଣି ଭରିବା ବେଳେ ଭକ୍ ଭକ୍ ଶବ୍ଦ ହୁଏ, ପୂର୍ଣ୍ଣ ହୋଇଗଲେ ଆଉ ଶବ୍ଦ ହୁଏ ନାହିଁ । (ସମସ୍ତଙ୍କର ହାସ୍ୟ) । ତେବେ ଆଉ ଗୋଟିଏ ମାଠିଆରେ ଯଦି ଢଳାଢ଼ଳି ହୁଏ ତାହାହେଲେ ପୁଣି ଶବ୍ଦ ହୁଏ ।''(ହାସ୍ୟ)

## (୪)

## ଜ୍ଞାନ ଓ ବିଜ୍ଞାନ, ଅଦ୍ୱୈତବାଦ, ବିଶିଷ୍ଟାଦ୍ୱୈତବାଦ ଓ ଦ୍ୱୈତବାଦ —ଏହି ତିନିର ସମନ୍ୱୟ

ଶ୍ରୀରାମକୃଷ୍ଣ—ଋଷିମାନଙ୍କର ବ୍ରହ୍ମଜ୍ଞାନ ହୋଇଥିଲା । ବିଷୟ-ବୁଦ୍ଧିର ଲେଶମାତ୍ର ଥିଲେ ଏହି ବ୍ରହ୍ମଜ୍ଞାନ ହୁଏ ନାହିଁ । ଋଷିମାନେ କେତେ ଖଟୁଥିଲେ ! ସକାଳୁ ଆଶ୍ରମରୁ ଚାଲିଯାଆନ୍ତି । ଏକଲା ସାରା ଦିନ ଜପ ଧ୍ୟାନ କରନ୍ତି । ରାତିରେ ଆଶ୍ରମକୁ ଫେରିଆସି କିଛି ଫଳମୂଳ ଖାଆନ୍ତି । ଦେଖା, ଶୁଣା, ଛୁଆଁ ଏସବୁ ବିଷୟରୁ ମନକୁ ଅଲଗା ରଖନ୍ତି; ତେବେ ଯାଇ ବ୍ରହ୍ମଙ୍କୁ ଠିକ୍ ଠିକ୍ ଅନୁଭବ କରୁଥିଲେ ।

''କଳିରେ ଅନ୍ନଗତ ପ୍ରାଣ, ଦେହବୁଦ୍ଧି ଯାଏ ନାହିଁ । ଏ ଅବସ୍ଥାରେ 'ସୋଽହଂ' କହିବା ଭଲ ନୁହେଁ । ସବୁ କରାଯାଉଛି, ପୁଣି 'ମୁଁ ବ୍ରହ୍ମ' କହିବା ଠିକ୍ ନୁହେଁ । ଯେଉଁମାନେ ବିଷୟ ତ୍ୟାଗ କରିପାରନ୍ତି ନାହିଁ, ଯେଉଁମାନଙ୍କର 'ମୁଁ' କୌଣସି ମତେ ଯାଉ ନାହିଁ, ସେମାନଙ୍କର 'ମୁଁ ଦାସ' , 'ମୁଁ ଭକ୍ତ' ଏହି ଅଭିମାନ ଭଲ । ଭକ୍ତି-ପଥରେ ରହିଲେ ମଧ୍ୟ ତାଙ୍କୁ ଲାଭ କରାଯାଏ ।

''ଜ୍ଞାନୀ 'ନେତି' 'ନେତି' କରି ବିଷୟ-ବୁଦ୍ଧି ତ୍ୟାଗ କରେ, ତେବେ ବ୍ରହ୍ମଙ୍କୁ ଜାଣିପାରେ—ଯେପରି ଶିଡ଼ିର ପାହାଚ ଚଢ଼ି ଚଢ଼ି ଛାତରେ ପହଞ୍ଚି ହୁଏ । କିନ୍ତୁ ବିଜ୍ଞାନୀ, ଯେ ବିଶେଷ ରୂପେ ତାଙ୍କ ସହିତ ଆଳାପ କରନ୍ତି, ସେ ଆହୁରି କିଛି ଦର୍ଶନ କରନ୍ତି । ସେ ଦେଖନ୍ତି ଛାତ ଯେଉଁ ଜିନିଷରେ ତିଆରି, ସେହି ଇଟା ଚୂନ ସୁରକିରେ ଶିଡ଼ି ମଧ୍ୟ ତିଆରି । 'ନେତି' 'ନେତି' କରି ଯାହାଙ୍କୁ ବ୍ରହ୍ମ ବୋଲି ବୋଧ ହେଉଛି, ସେ ହିଁ ଜୀବଜଗତ୍ ହୋଇଛନ୍ତି । ବିଜ୍ଞାନୀ ଦେଖେ — ଯେ ନିର୍ଗୁଣ, ସେ ହିଁ ସଗୁଣ ।

''ଛାତରେ ଲୋକମାନେ ବେଶୀ ସମୟ ରହିପାରନ୍ତି ନାହିଁ, ପୁଣି ଓହ୍ଲାଇ ଆସନ୍ତି । ଯେଉଁମାନେ ସମାଧିସ୍ଥ ହୋଇ ବ୍ରହ୍ମଙ୍କୁ ଦର୍ଶନ କରନ୍ତି, ସେମାନେ ମଧ୍ୟ ଓହ୍ଲାଇ ଆସି ଦେଖନ୍ତି ଯେ, ସେ ହିଁ ଜୀବ-ଜଗତ୍ ହୋଇଛନ୍ତି । ସା, ରେ, ଗା, ମା, ପା, ଧା, ନି । 'ନି' ରେ ବେଶୀ ସମୟ ରହିହୁଏ ନାହିଁ । 'ମୁଁ' ଯାଏ ନାହିଁ; ସେତେବେଳେ ଦେଖେ, ସେ ହିଁ 'ମୁଁ', ସେ ହିଁ ଜୀବ-ଜଗତ୍ ସବୁ । ଏହାର ନାମ ବିଜ୍ଞାନ ।

''ଜ୍ଞାନୀର ପଥ ବି ପଥ । ଜ୍ଞାନ-ଭକ୍ତିର ପଥ ବି ପଥ । ପୁଣି ଭକ୍ତିର ପଥ ମଧ୍ୟ ପଥ । ଜ୍ଞାନଯୋଗ ବି ସତ୍ୟ, ଭକ୍ତିପଥ ମଧ୍ୟ ସତ୍ୟ—ସବୁ ପଥ ଦେଇ ତାଙ୍କ ପାଖକୁ ଯାଇହୁଏ । ସେ ଯେତେବେଳ ଯାଏ 'ମୁଁ' ରଖି ଦେଇଛନ୍ତି, ସେତେବେଳେ ଯାଏ ଭକ୍ତିପଥ ହିଁ ସହଜ ।

''ବିଜ୍ଞାନୀ ଦେଖେ ବ୍ରହ୍ମ ଅଟଳ, ନିଷ୍କ୍ରିୟ, ସୁମେରୁବତ୍ । ଏହି ଜଗତ୍‌-ସଂସାର ତାଙ୍କର ସତ୍ତ୍ୱ ରଜଃ ତମଃ ତିନି ଗୁଣରେ ହୋଇଛି । ସେ ନିର୍ଲିପ୍ତ ।

''ବିଜ୍ଞାନୀ ଦେଖେ ଯେ, ଯିଏ ବ୍ରହ୍ମ ସେ ହିଁ ଭଗବାନ; ଯେ ଗୁଣାତୀତ ସେ ହିଁ ଷଡ଼ୈଶ୍ୱର୍ଯ୍ୟପୂର୍ଣ୍ଣ ଭଗବାନ । ଏହି ଜୀବଜଗତ୍‌, ମନ-ବୁଦ୍ଧି, ଭକ୍ତି-ବୈରାଗ୍ୟ-ଜ୍ଞାନ ଏସବୁ ତାଙ୍କର ଐଶ୍ୱର୍ଯ୍ୟ । (ସହାସ୍ୟେ) ଯେଉଁ ବାବୁର ଘରଦ୍ୱାର ନାହିଁ, ହୁଏତ ବିକ୍ରି ହୋଇଗଲା, ସେ ବାବୁ କାହିଁର ବାବୁ ! (ସମସ୍ତଙ୍କର ହାସ୍ୟ) ଈଶ୍ୱର ଷଡ଼ୈଶ୍ୱର୍ଯ୍ୟପୂର୍ଣ୍ଣ । ସେ ବ୍ୟକ୍ତିର ଯଦି ଐଶ୍ୱର୍ଯ୍ୟ ନ ଥାଆନ୍ତା, ତାହାହେଲେ କିଏ ମାନନ୍ତା !'' (ସମସ୍ତଙ୍କର ହାସ୍ୟ)

**ବିଭୁରୂପରେ ଏକ — କିନ୍ତୁ ଶକ୍ତିବିଶେଷ**

''ଦେଖ ନା, ଏହି ଜଗତ କି ଚମତ୍କାର । କେତେ ପ୍ରକାରର ଜିନିଷ — ଚନ୍ଦ୍ର, ସୂର୍ଯ୍ୟ, ନକ୍ଷତ୍ର । କେତେ ପ୍ରକାର ଜୀବ — ବଡ଼, ଛୋଟ, ଭଲ, ମନ୍ଦ, କାହାର ବେଶୀ ଶକ୍ତି, କାହାର କମ୍ ଶକ୍ତି ।''

ବିଦ୍ୟାସାଗର — ସେ କ'ଣ କାହାକୁ ବେଶୀ ଶକ୍ତି, କାହାକୁ କମ୍ ଶକ୍ତି ଦେଇଛନ୍ତି ?

ଶ୍ରୀରାମକୃଷ୍ଣ — ସେ ବିଭୁରୂପରେ ସର୍ବଭୂତରେ ଅଛନ୍ତି, ପିମ୍ପୁଡ଼ି ପର୍ଯ୍ୟନ୍ତ, କିନ୍ତୁ ଶକ୍ତିବିଶେଷ । ତାହା ନ ହେଲେ ଜଣେ ଲୋକ ଦଶଜଣଙ୍କୁ ହରାଇ ଦିଅନ୍ତା, ପୁଣି ଜଣକ ପାଖରୁ ଅନ୍ୟ ଜଣେ ପଳାନ୍ତା; ତାହା ନ ହେଲେ ତୁମକୁ ବା ସମସ୍ତେ ମାନନ୍ତେ କାହିଁକି ? ତୁମର କ'ଣ ଦୁଇଟା ଶିଙ୍ଗ ବାହାରିଛି ? (ହାସ୍ୟ) ତୁମର ଦୟା, ତୁମର ବିଦ୍ୟା ଅଛି — ଅନ୍ୟଠାରୁ ବେଶୀ, ତେଣୁ ତୁମକୁ ଲୋକମାନେ ମାନନ୍ତି, ଦେଖିବାକୁ ଆସନ୍ତି । ତୁମେ ଏ କଥା ମାନ କି ନାହିଁ ? (ବିଦ୍ୟାସାଗର ମୃଦୁ ମୃଦୁ ହସୁଛନ୍ତି)

**କେବଳ ପାଣ୍ଡିତ୍ୟ, ପୋଥିଗତ ବିଦ୍ୟା ଅସାର, ଭକ୍ତି ହିଁ ସାର**

ଶ୍ରୀରାମକୃଷ୍ଣ — ଖାଲି ପାଣ୍ଡିତ୍ୟରେ କିଛି ନାହିଁ । ତାଙ୍କୁ ପାଇବାର ଉପାୟ, ତାଙ୍କୁ ଜାଣିବା ପାଇଁ ବହି ପଢ଼ା । ଜଣେ ସାଧୁଙ୍କ ପୋଥିରେ କଅଣ ଅଛି — କେହି ଜଣେ ପଚାରିବାରୁ ସାଧୁ ଖୋଲି ଦେଖାଇଲେ । ପ୍ରତି ପୃଷ୍ଠାରେ 'ଓଁ ରାମଃ' ଲେଖା ଅଛି — ଆଉ କିଛି ଲେଖା ନାହିଁ ।

''ଗୀତାର ଅର୍ଥ କଅଣ ? ଦଶଥର କହିଲେ ଯାହା ହୁଏ । 'ଗୀତା' 'ଗୀତା' ଦଶଥର କହିଲେ 'ତ୍ୟାଗୀ' 'ତ୍ୟାଗୀ' ହୋଇଯାଏ । ଗୀତାର ଏହି ଶିକ୍ଷା — ହେ ଜୀବ, ସବୁ ତ୍ୟାଗ କରି ଭଗବାନଙ୍କୁ ଲାଭ କରିବା ପାଇଁ ଚେଷ୍ଟା କର । ସାଧୁ ହେଉ, ସଂସାରୀ ହେଉ, ମନରୁ ସବୁ ଆସକ୍ତି ତ୍ୟାଗ କରିବାକୁ ହୁଏ ।

''ଚୈତନ୍ୟଦେବ ଯେତେବେଳେ ଦକ୍ଷିଣରେ ତୀର୍ଥ ଭ୍ରମଣ କରୁଥିଲେ — ଦେଖିଲେ ଜଣେ ଗୀତା ପଢୁଛି । ଆଉ ଜଣେ ଟିକିଏ ଦୂରରେ ବସି ଶୁଣୁଛି, ଆଉ

କାନ୍ଦୁଛି — କାନ୍ଦି କାନ୍ଦି ଲୁହରେ ଭାସିଯାଉଛି । ଚୈତନ୍ୟଦେବ ପଚାରିଲେ, 'ତୁମେ ଏସବୁ ବୁଝିପାରୁଛ ?' ସେ କହିଲା, 'ପ୍ରଭୁ ! ମୁଁ ଏସବୁ ଶ୍ଳୋକ କିଛି ବୁଝିପାରୁ ନାହିଁ ।' ସେ ପଚାରିଲେ, 'ତେବେ କାହିଁକି କାନ୍ଦୁଛ ?' ଭକ୍ତଟି କହିଲା, 'ମୁଁ ଦେଖୁଛି ଅର୍ଜୁନଙ୍କର ରଥ, ଆଉ ତା' ସମ୍ମୁଖରେ ଶ୍ରୀକୃଷ୍ଣ ଓ ଅର୍ଜୁନ କଥା କହୁଛନ୍ତି । ମୁଁ ତାହା ହିଁ ଦେଖି କାନ୍ଦୁଛି ।''

## (୫)

## ଭକ୍ତିଯୋଗର ରହସ୍ୟ — The Secret of Dualism

ଶ୍ରୀରାମକୃଷ୍ଣ — ବିଜ୍ଞାନୀ କାହିଁକି ଭକ୍ତି ନେଇ ରହେ ? ଏହାର ଉତ୍ତର ଏହି ଯେ, 'ମୁଁ ଯାଏ ନାହିଁ । ସମାଧି ଅବସ୍ଥାରେ ଯାଏ, ମାତ୍ର ପୁଣି ଆସି ପଡ଼େ । ଆଉ ସାଧାରଣ ଜୀବର 'ଅହଂ' ଯାଏ ନାହିଁ । ଅଶ୍ୱତ୍ଥ ଗଛ କାଟିଦିଅ, ଦେଖିବ ପୁଣି ତା' ପରଦିନ ଗଜା ବାହାରିଛି । (ସମସ୍ତଙ୍କର ହାସ୍ୟ)

''ଜ୍ଞାନଲାଭ ପରେ ମଧ୍ୟ ପୁଣି କେଉଁଠାରୁ 'ମୁଁ' ଆସି ପଡ଼େ । ସ୍ୱପ୍ନରେ ବାଘ ଦେଖିଥିଲ, ତା'ପରେ ଉଠିଲ, ତଥାପି ତୁମର ଛାତି ଧଡ୍ ଧଡ୍ ହେଉଛି ! ଜୀବର 'ମୁଁ' ଘେନି ତ ଯେତେ ଯନ୍ତ୍ରଣା ! ଗାଈ 'ହାମ୍ବା' (ମୁଁ) କରେ, ସେଥିପାଇଁ ତ ଏତେ ଯନ୍ତ୍ରଣା ! ଲଙ୍ଗଳରେ ଯୋଚାଯାଏ, ଖରା ବର୍ଷା ଦେହ ଉପରେ ପଡ଼େ, ପୁଣି କଂସେଇ କାଟନ୍ତି, ଚମଡ଼ାରେ ଜୋତା ହୁଏ , ଢ଼ୋଲ ହୁଏ — ସେତେବେଳେ ଖୁବ୍ ପିଟା ହୁଏ । (ହାସ୍ୟ)

''ତେବେ ମଧ୍ୟ ନିସ୍ତାର ନାହିଁ । ଶେଷରେ ଅନ୍ତବୁଜୁଳିରୁ ତନ୍ତ ତିଆରି ହୁଏ । ସେହି ତନ୍ତରେ ତୁଳାଭିଣା ଯନ୍ତ୍ର ହୁଏ । ସେତେବେଳେ ଆଉ 'ମୁଁ' କହେ ନାହିଁ । ସେତେବେଳେ କହେ 'ତୁହୁଁ' 'ତୁହୁଁ' (ଅର୍ଥାତ୍ 'ତୁମେ', 'ତୁମେ') । ଯେତେବେଳେ 'ତୁମେ', 'ତୁମେ' କହେ ସେତେବେଳେ ଯାଇ ନିସ୍ତାର । 'ହେ ଈଶ୍ୱର, ମୁଁ ଦାସ, ତୁମେ ପ୍ରଭୁ, ମୁଁ ସନ୍ତାନ, ତୁମେ ମା' ।

''ରାମ ପଚାରିଲେ — ହନୁମାନ, ତୁମେ ମୋତେ କି ଭାବରେ ଦେଖ ? ହନୁମାନ କହିଲେ — ରାମ ! ଯେତେବେଳେ ମୋର 'ମୁଁ' ବୋଲି ବୋଧ ଥାଏ, ସେତେବେଳେ ଦେଖେ, ତୁମେ ପୂର୍ଣ୍ଣ, ମୁଁ ଅଂଶ; ତୁମେ ପ୍ରଭୁ, ମୁଁ ଦାସ; ଆଉ ରାମ ! ଯେତେବେଳେ ତତ୍ତ୍ୱଜ୍ଞାନ ହୁଏ, ସେତେବେଳେ ଦେଖେ, ତୁମେ ହିଁ ମୁଁ, ମୁଁ ହି ତୁମେ ।

''ସେବ୍ୟ-ସେବକ ଭାବ ଭଲ । 'ମୁଁ' ଯିବାର ନୁହେଁ । ତେବେ ଆଉ ଶଳା, 'ଦାସ ମୁଁ' ହୋଇ ଥାଉ ।

### ବିଦ୍ୟାସାଗରଙ୍କୁ ଶିକ୍ଷା — 'ମୁଁ' ଓ 'ମୋର' ଅଜ୍ଞାନ

'ମୁଁ' ଓ 'ମୋର' ଏହି ଦୁଇଟି ଅଜ୍ଞାନ । 'ମୋର ଘର', 'ମୋର ଟଙ୍କା', 'ମୋର ବିଦ୍ୟା, ମୋର ଏହିସବୁ ଐଶ୍ୱର୍ଯ୍ୟ' — ଏହି ଯେ ଭାବ — ଏହିଟି ଅଜ୍ଞାନରୁ

ହୁଏ । 'ହେ ଈଶ୍ୱର', ତୁମେ କର୍ତ୍ତା, ଆଉ ଏସବୁ ତୁମର ଜିନିଷ ।'—ଏହି ଭାବ ଜ୍ଞାନରୁ ହୁଏ ।

''ମୃତ୍ୟୁକୁ ସର୍ବଦା ମନେ ରଖିବା ଉଚିତ । ମରିବା ପରେ କିଛି ରହିବ ନାହିଁ । କେତେଗୁଡ଼ିଏ କର୍ମ କରିବାକୁ ଏଠାକୁ ଆସିଥାଉ । ଯେପରି ମଫସଲରେ ଘର— କଲିକତାକୁ କର୍ମ କରିବାକୁ ଆସନ୍ତି । ବଡ଼ଲୋକଙ୍କ ବଗିଚା ଯଦି କେହି ଦେଖିବାକୁ ଆସେ, ବଗିଚାର ଗୁମାସ୍ତା କହେ, 'ଏ ବଗିଚାଟି ଆମର, ଏ ପୋଖରୀଟି ଆମର ପୋଖରୀ' । କିନ୍ତୁ କୌଣସି ଦୋଷ ଦେଖି ବାବୁ ତାକୁ ଯଦି ତଡ଼ି ଦିଅନ୍ତି, ତେବେ ଆମ୍ବକାଠର ସିନ୍ଦୁକଟା ନେଇଯିବାର ଯୋଗ୍ୟତା ମଧ ରହେ ନାହିଁ; ଦରଓ୍ୱାନ ଦ୍ୱାରା ସିନ୍ଦୁକଟା ପଠାଇଦିଏ । (ହାସ୍ୟ)

''ଭଗବାନ ଦୁଇଟି କଥାରେ ହସନ୍ତି । କବିରାଜ ଯେତେବେଳେ ରୋଗୀର ମାଆକୁ କହେ, 'ମା ! ଭୟ କଅଣ ? ମୁଁ ତୁମ ପୁଅକୁ ଭଲ କରିଦେବି'— ସେତେବେଳେ ଥରେ ହସନ୍ତି । ଏଥିପାଇଁ ହସନ୍ତି ଯେ, ମୁଁ ମାରୁଛି, ଆଉ ଏ କହୁଛି କ'ଣ ନା ମୁଁ ବଞ୍ଚାଇବି ! କବିରାଜ ଭାବେ, ମୁଁ କର୍ତ୍ତା; ଈଶ୍ୱର ଯେ କର୍ତ୍ତା, ଏକଥା ସେ ଭୁଲିଯାଏ । ପୁଣି ଦୁଇଭାଇ ଯେତେବେଳେ ଦଉଡ଼ି ପକାଇ ଜାଗା ଭାଗ କରନ୍ତି, ଆଉ କହନ୍ତି 'ଏ ପାଖଟା ମୋର, ସେ ପାଖଟା ତୋର' ସେତେବେଳେ ଈଶ୍ୱର ଆଉ ଥରେ ହସନ୍ତି । ଏହି କଥା ମନେକରି ହସନ୍ତି ଯେ, ମୋର ଜଗତ୍ ବ୍ରହ୍ମାଣ୍ଡ; କିନ୍ତୁ ସେମାନେ କହୁଛନ୍ତି, ଏ ଜାଗା ମୋର, ଆଉ ତୋର !''

**ଉପାୟ—ବିଶ୍ୱାସ ଓ ଭକ୍ତି**

ଶ୍ରୀରାମକୃଷ୍ଣ—ତାଙ୍କୁ କ'ଣ ବିଚାର କରି ଜଣାଯାଏ ! ତାଙ୍କର ଦାସ ହୋଇ, ତାଙ୍କର ଶରଣାଗତ ହୋଇ ତାଙ୍କୁ ଡାକ ।

(ବିଦ୍ୟାସାଗରଙ୍କ ପ୍ରତି ସହାସ୍ୟ)—''ଆଚ୍ଛା, ତୁମର କି ଭାବ ?''

ବିଦ୍ୟାସାଗର ମୃଦୁ ମୃଦୁ ହସୁଛନ୍ତି । କହୁଛନ୍ତି, ''ଆଚ୍ଛା, ସେକଥା ଆପଣଙ୍କୁ ଦିନେ ଏକୁଟିଆ କହିବି ।'' (ସମସ୍ତଙ୍କର ହାସ୍ୟ)

ଶ୍ରୀରାମକୃଷ୍ଣ—(ସହାସ୍ୟ) ତାଙ୍କୁ ପାଣ୍ଡିତ୍ୟ ଦ୍ୱାରା ବିଚାର କରି ଜଣାଯାଏ ନାହିଁ ।

ଏହା କହି ଠାକୁରେ ପ୍ରେମୋନ୍ମତ୍ତ ହୋଇ ଗୀତ ଗାଇ ଉଠିଲେ—
''କେ ଜାନେ କାଲୀ କେମନ ? ଷଡ଼ଦର୍ଶନେ ନା ପାୟ ଦରଶନ ।
ମୂଲାଧାରେ ସହସ୍ରାରେ ସଦା ଯୋଗୀ କରେ ମନନ ।
କାଲୀ ପଦ୍ମବନେ ହଂସ-ସନେ, ହଂସୀରୂପେ କରେ ରମଣ ।
ଆତ୍ମାରାମେର ଆତ୍ମା କାଲୀ ପ୍ରମାଣ ପ୍ରଣବେର ମତନ ।
ତିନି ଘଟେ ଘଟେ ବିରାଜ କରେନ୍ ଇଚ୍ଛାମୟୀର ଇଚ୍ଛା ଯେମନ ॥
ମାୟେର ଉଦରେ ବ୍ରହ୍ମାଣ୍ଡ ଭାଣ୍ଡ ପ୍ରକାଣ୍ଡ ତା ନ ଜାନ କେମନ ।

ମହାକାଲ୍ ଜେନେଛେନ କାଲୀର ମର୍ମ ଅନ୍ୟ କେବା ଜାନେ ତେମନ ॥...ଇତ୍ୟାଦି

''ଦେଖିଲ, କାଳୀର 'ଉଦରେ ବ୍ରହ୍ମାଣ୍ଡ ଭାଣ୍ଡ ପ୍ରକାଣ୍ଡ ତା ଜାନୋ କେମନ'। ତାହା କିପରି ଜାଣ ! ଆଉ କହୁଛି, 'ଷଡ୍‌ଦର୍ଶନେ ନା ପାଏ ଦରଶନ'—ପାଣ୍ଡିତ୍ୟ ଦ୍ୱାରା ତାଙ୍କୁ ଲାଭ କରାଯାଏ ନାହିଁ ।

**ବିଶ୍ୱାସର ଜୋର୍—ଈଶ୍ୱର ବିଶ୍ୱାସ ଓ ମହାପାତକ**

''ବିଶ୍ୱାସ ଆଉ ଭକ୍ତି ଦରକାର—ବିଶ୍ୱାସର କେତେ ଜୋର୍ ଶୁଣ । ଜଣେ ଲଙ୍କାରୁ ସମୁଦ୍ର ପାର ହେବ । ବିଭୀଷଣ କହିଲେ, ଏହି ଜିନିଷଟି ଲୁଗା-କାନିରେ ବାନ୍ଧି ନିଅ । ତାହା ହେଲେ ନିର୍ବିଘ୍ନରେ ଚାଲିଯିବ; ପାଣି ଉପରେ ଚାଲିଯାଇପାରିବ । କିନ୍ତୁ ଖୋଲି ଦେଖିବ ନାହିଁ, ଖୋଲି ଦେଖିବାକୁ ଗଲେ ହିଁ ବୁଡ଼ିଯିବ । ସେହି ଲୋକଟି ସମୁଦ୍ର ଉପର ଦେଇ ବେଶ୍ ଚାଲିଯାଉଥିଲା । ବିଶ୍ୱାସର ଏପରି ଜୋର୍ । କିଛିଦୂର ଯାଇ ଭାବିଲା, ବିଭୀଷଣ କ'ଣ ଏପରି ଜିନିଷ ବାନ୍ଧି ଦେଲେ ଯେ, ପାଣି ଉପରେ ଚାଲିଯାଇପାରୁଛି ? ଏହା ଭାବି ଲୁଗାର କାନିଟି ଖୋଲି ଦେଖିଲା ଯେ କେବଳ 'ରାମ' ନାମ ଲେଖା ଗୋଟିଏ ପତ୍ର ରହିଛି । ସେତେବେଳେ ସେ ଭାବିଲା, ହେଃ ଏହି ଜିନିଷ ! ଏହି ଭାବନା ସଙ୍ଗେ ସଙ୍ଗେ ସେ ବୁଡ଼ିଗଲା !

''କଥାରେ କହନ୍ତି, ହନୁମାନଙ୍କର 'ରାମ' ନାମରେ ଏତେ ବିଶ୍ୱାସ ଯେ, ବିଶ୍ୱାସ ଗୁଣରେ ସେ ସାଗର ଲଙ୍ଘନ କଲେ ! କିନ୍ତୁ ସ୍ୱୟଂ ରାମଙ୍କୁ ସମୁଦ୍ରରେ ବନ୍ଧ ବାନ୍ଧିବାକୁ ପଡ଼ିଲା ।

''ଯଦି ତାଙ୍କଠାରେ ବିଶ୍ୱାସ ଥାଏ, ତାହା ହେଲେ ପାପ କରୁ ଅଥବା ମହାପାତକ କରୁ, କୌଣସିଥିରେ ଭୟ ନାହିଁ ।''

ଏହା କହି ଠାକୁର ଶ୍ରୀରାମକୃଷ୍ଣ ଭକ୍ତର ଭାବ ଆରୋପ କରି ଭାବରେ ମତୁଆଲା ହୋଇ ବିଶ୍ୱାସର ମହାତ୍ମ୍ୟ ଗାଉଛନ୍ତି—

''ଆମି ଦୁର୍ଗା ଦୁର୍ଗା ବଲେ ମା ଯଦି ମରି ।''...ଇତ୍ୟାଦି

## (୬)

## ଈଶ୍ୱରପ୍ରେମ ହିଁ ଜୀବନର ଉଦ୍ଦେଶ୍ୟ

ଶ୍ରୀରାମକୃଷ୍ଣ—ବିଶ୍ୱାସ ଆଉ ଭକ୍ତି । ତାଙ୍କୁ ଭକ୍ତିରେ ସହଜରେ ଲାଭ କରାଯାଏ । ସେ ଭାବର ବିଷୟ ।

ଏହି କଥା କହୁ କହୁ ଠାକୁର ଶ୍ରୀରାମକୃଷ୍ଣ ପୁଣି ଗୀତ ଗାଇଲେ—

''ମନ କି ତତ୍ତ୍ୱ କର ତାଁରେ, ଯେନ ଉନ୍ମତ୍ତ ଆଁଧାର ଘରେ ।

ସେ ଯେ ଭାବେର ବିଷୟ, ଭାବ ବ୍ୟତୀତ, ଅଭାବେ କି ଧରତେ ପାରେ ॥...

ସେ ଭାବ ଲାଗି ପରମ ଯୋଗୀ, ଯୋଗ କରେ ଯୁଗ ଯୁଗାନ୍ତରେ ।...
ପ୍ରସାଦ ବଲେ ମାତୃଭାବେ ଆମି ତତ୍ତ୍ୱ କରି ଯାଁରେ ।
ସେଟା ଚାତରେ କି ଭାଙ୍ଗ୍‌ବୋ ହାଁଡ଼ି ବୋଝ ନାରେ ମନ ଠାରେଠୋରେ ।।"

**ସମାଧି-ମନ୍ଦିରରେ ଠାକୁର**

ଗୀତ ଗାଉ ଗାଉ ଠାକୁରେ ସମାଧିସ୍ଥ ହୋଇଛନ୍ତି । ହାତ ଅଞ୍ଜଳିବଦ୍ଧ । ଦେହ ଉନ୍ନତ ଓ ସ୍ଥିର । ନେତ୍ରଦ୍ୱୟ ସ୍ପନ୍ଦନହୀନ ! ସେହି ବେଞ୍ଚ ଉପରେ ପଶ୍ଚିମାଭିମୁଖ ହୋଇ ପାଦ ଝୁଲାଇ ବସିଛନ୍ତି । ସମସ୍ତେ ଉଦ୍‌ଗ୍ରୀବ ହୋଇ ଏହି ଅଦ୍ଭୁତ ଅବସ୍ଥା ଦେଖୁଛନ୍ତି । ପଣ୍ଡିତ ବିଦ୍ୟାସାଗର ମଧ ନିସ୍ତବ୍ଧ ହୋଇ ଏକ ଦୃଷ୍ଟିରେ ଚାହିଁଛନ୍ତି ।

ଠାକୁର ପ୍ରକୃତିସ୍ଥ ହେଲେ । ଦୀର୍ଘ ନିଃଶ୍ୱାସ ପକାଇ ପୁଣି ହାସ୍ୟ ମୁଖରେ କଥା କହୁଛନ୍ତି— "ଭାବ ଭକ୍ତି, ଏହାର ଅର୍ଥ—ତାଙ୍କୁ ଭଲ ପାଇବା । ଯେ ବ୍ରହ୍ମ ତାଙ୍କୁ ହିଁ ମା' ବୋଲି ଡାକନ୍ତି ।

"ରାମପ୍ରସାଦ ମନକୁ କହୁଛନ୍ତି—ଠାରରେ ବୁଝିବାକୁ । ଏହା ବୁଝିବାକୁ କହୁଛନ୍ତି ଯେ, ବେଦରେ ଯାହାକୁ ବ୍ରହ୍ମ କୁହାଯାଇଛି—ତାଙ୍କୁ ହିଁ ମୁଁ ମାଆ ବୋଲି ଡାକୁଛି । ଯେ ନିର୍ଗୁଣ ସେ ହିଁ ସଗୁଣ, ଯେ ବ୍ରହ୍ମ ସେ ହିଁ ଶକ୍ତି, ଯେତେବେଳେ ନିଷ୍କ୍ରିୟ ବୋଲି ବୋଧହୁଏ, ଯେତେବେଳେ ତାଙ୍କୁ 'ବ୍ରହ୍ମ' ବୋଲି କହେ, ଯେତେବେଳେ ଭାବେ ସୃଷ୍ଟି ସ୍ଥିତି ପ୍ରଳୟ କରୁଛନ୍ତି, ସେତେବେଳେ ତାଙ୍କୁ ଆଦ୍ୟାଶକ୍ତି କହେ, କାଳୀ କହେ ।

"ବ୍ରହ୍ମ ଆଉ ଶକ୍ତି ଅଭେଦ । ଯେପରି ଅଗ୍ନି ଆଉ ତାର ଦାହିକା ଶକ୍ତି; ଅଗ୍ନି କହିଲେ ହିଁ ଦାହିକା ଶକ୍ତି ବୁଝାଯାଏ, ଗୋଟିକୁ ମାନିଲେ ଆଉ ଗୋଟିକୁ ମାନିବାକୁ ହୁଏ ।

"ତାଙ୍କୁ ହିଁ 'ମା' ବୋଲି ଡକା ହେଉଛି । 'ମା' ସବୁଠୁ ବେଶୀ ଭଲ ପାଇବାର ବସ୍ତୁ ତ ! ଈଶ୍ୱରଙ୍କୁ ଭଲ ପାଇପାରିଲେ ହିଁ ତାଙ୍କୁ ଲାଭ କରାଯାଏ । ଭାବ, ଭକ୍ତି, ଭଲ ପାଇବା ଓ ବିଶ୍ୱାସ । ଆଉ ଗୋଟିଏ ଗୀତ ଶୁଣ—

**ଉପାୟ—ଆଗେ ବିଶ୍ୱାସ, ତାହାପରେ ଭକ୍ତି**

"ଭାବିଲେ ଭାବେର ଉଦୟ ହୟ ।
(ଓ ସେ) ଯେମନି ଭାବ, ତେମନ ଲାଭ ମୂଲ୍ ସେ ପ୍ରତ୍ୟୟ ।।
କାଲୀପଦ-ସୁଧାହ୍ରଦେ, ଚିତ୍ତ ଯଦି ରୟ (ଯଦି ଚିତ୍ତ ଡୁବେ ରୟ ।)
ତବେ ପୂଜା, ହୋମ, ଯାଗ, ଯଜ୍ଞ, କିଛୁଇ କିଛୁ ନୟ ।।

"ଚିତ୍ତ ତଦ୍‌ଗତ ହେବା, ତାଙ୍କୁ ଖୁବ୍ ଭଲ ପାଇବା । 'ସୁଧାହ୍ରଦ' ଅର୍ଥାତ୍ ଅମୃତର ହ୍ରଦ । ସେଥିରେ ବୁଡ଼ିଲେ ମନୁଷ୍ୟ ମରେ ନାହିଁ । ଅମର ହୁଏ । କେହି କେହି ଭାବନ୍ତି, ବେଶୀ ଈଶ୍ୱର ଈଶ୍ୱର କଲେ ମୁଣ୍ଡ ଖରାପ ହୋଇଯାଏ । ତାହା

ନୁହେଁ । ଏ ଯେ ସୁଧାର ହ୍ରଦ ! ଅମୃତର ସାଗର ! ବେଦରେ ତାଙ୍କୁ 'ଅମୃତ' କୁହାଯାଇଛି, ଏଥିରେ ବୁଡ଼ିଲେ ମରନ୍ତି ନାହିଁ—ଅମର ହୁଅନ୍ତି ।

**ନିଷ୍କାମ କର୍ମ ବା କର୍ମଯୋଗ ଓ 'ଜଗତର ଉପକାର'**

'ପୂଜା, ହୋମ, ଯାଗ ଯଜ୍ଞ କିଛି ନୁହେଁ । ଯଦି ତାଙ୍କ ଉପରେ ଶ୍ରଦ୍ଧା ଆସେ, ତାହାହେଲେ ଏସବୁ କର୍ମ ଆଉ ବେଶୀ ଦରକାର ନାହିଁ । ଯେତେବେଳେ ପବନ ନ ବହେ, ସେତେବେଳେ ପଙ୍ଖା ଦରକାର, ଯେତେବେଳେ ଦକ୍ଷିଣରୁ ପବନ ଆପେ ଆସେ, ପଙ୍ଖା ରଖିଦିଆଯାଏ । ପଙ୍ଖା ଆଉ କ'ଣ ଦରକାର ?

''ତୁମେ ଯେଉଁସବୁ କର୍ମ କରୁଛ, ସେସବୁ ସତ୍କର୍ମ । ଯଦି 'ମୁଁ କର୍ତ୍ତା' ଏହି ଅହଂକାର ତ୍ୟାଗ କରି ନିଷ୍କାମ ଭାବରେ କରିପାର, ତାହା ହେଲେ ଖୁବ୍ ଭଲ । ଏହି ନିଷ୍କାମ କର୍ମ କରୁ କରୁ ଈଶ୍ୱରଙ୍କଠାରେ ଭକ୍ତି—ଶ୍ରଦ୍ଧା ଆସେ । ଏହିପରି ନିଷ୍କାମ କର୍ମ କରୁ କରୁ ଈଶ୍ୱରଲାଭ ହୁଏ ।

''କିନ୍ତୁ ତାଙ୍କ ଉପରେ ଯେତେ ଭକ୍ତି ଶ୍ରଦ୍ଧା ଆସିବ, ସେତେ ତୁମର କର୍ମ କମିଯିବ । ଘରର ବୋହୂ ପେଟରେ ଯେତେବେଳେ ପିଲା ରହେ—ଶାଶୁ ତା'ର କାମ କମାଇ ଦିଏ । ମାସ ଯେତେ ବଢ଼େ, ଶାଶୁ ସେତେ କାମ କମାଇଦିଏ ! ଦଶ ମାସ ହେଲେ ମୂଳରୁ କାମ କରିବାକୁ ଦିଏ ନାହିଁ, କାଳେ ପିଲାର କୌଣସି କ୍ଷତି ହେବ, ପ୍ରସବରେ କୌଣସି ବାଧା ହେବ, ପ୍ରସବରେ କୌଣସି ବ୍ୟାଘାତ ହେବ । (ହାସ୍ୟ) । ତୁମେ ଯେଉଁସବୁ କର୍ମ କରୁଛ, ଏଥିରେ ତୁମ ନିଜର ଉପକାର । ନିଷ୍କାମ ଭାବରେ କର୍ମ କରିପାରିଲେ ଚିତ୍ତଶୁଦ୍ଧି ହେବ, ଈଶ୍ୱରଙ୍କ ଉପରେ ଶ୍ରଦ୍ଧା ଆସିବ । ଶ୍ରଦ୍ଧା ଆସିଲେ ହିଁ ତାଙ୍କୁ ଲାଭ କରିପାରିବ । ଜଗତର ଉପକାର ମନୁଷ୍ୟ କରେ ନାହିଁ, ସେ ହିଁ କରୁଛନ୍ତି; ଯେ ଚନ୍ଦ୍ର ସୂର୍ଯ୍ୟ କରିଛନ୍ତି, ଯେ ମା'-ବାପାଙ୍କ ଭିତରେ ସ୍ନେହ, ମହତ୍‌ର ଭିତରେ ଦୟା, ସାଧୁଭକ୍ତଙ୍କ ଭିତରେ ଭକ୍ତି ଦେଇଛନ୍ତି । ଯେଉଁ ଲୋକ କାମନାଶୂନ୍ୟ ହୋଇ କର୍ମ କରିବ, ସେ ନିଜର ମଙ୍ଗଳ କରିବ ।

**ନିଷ୍କାମ କର୍ମର ଉଦ୍ଦେଶ୍ୟ—ଈଶ୍ୱର-ଦର୍ଶନ**

''ଅନ୍ତରରେ ସୁନା ଅଛି, ବର୍ତ୍ତମାନ ସୁଦ୍ଧା ଖବର ପାଇ ନାହିଁ । ଟିକିଏ ମାଟି ଘୋଡ଼ା ହୋଇ ରହିଛି । ଯଦି ଥରେ ସନ୍ଧାନ ପାଅ, ଅନ୍ୟ କାର୍ଯ୍ୟ କମିଯିବ । ଘରେ ବୋହୂର ପିଲା ହେଲେ ସେ ପିଲାଟିକୁ ନେଇ ରହେ, ସେଇଟିକୁ ନେଇ ତା'ର ସମୟ କଟେ; ଆଉ ଘର କାମ କରିବାକୁ ଶାଶୁ ଦିଏ ନାହିଁ । (ସମସ୍ତଙ୍କର ହାସ୍ୟ) ।

''ଆହୁରି ଆଗେଇ ଯାଅ । କାଠୁରିଆ କାଠ କାଟିବାକୁ ଯାଇଥିଲା । ବ୍ରହ୍ମଚାରୀ କହିଲେ—ଆଗେଇ ଯାଅ । ଆଗେଇ ଯାଇ ଦେଖେ ଚନ୍ଦନ ଗଛ । ଆଉ କିଛି ଦିନ ପରେ ଭାବିଲା, ସେ ତ ଆଗେଇ ଯିବାକୁ କହିଥିଲେ, ଚନ୍ଦନ ଗଛ

ପର୍ଯ୍ୟନ୍ତ ଯିବାକୁ ତ କହି ନାହାନ୍ତି । ଆଗେଇ ଯାଇ ଦେଖେ ରୂପାର ଖଣି ! ଆଉ କିଛିଦିନ ପରେ ଆଗେଇ ଯାଇ ଦେଖେ ସୁନାର ଖଣି । ତା'ପରେ କେବଳ ହୀରା ମାଣିକ । ଏସବୁଥିରେ ସେ ନିଜକୁ ହଜାଇ ଦେଲା ।

"ନିଷ୍କାମ କର୍ମ କରିପାରିଲେ ଈଶ୍ୱରଙ୍କଠାରେ ଶ୍ରଦ୍ଧା ହୁଏ; କ୍ରମେ ତାଙ୍କ କୃପାରେ ତାଙ୍କୁ ଲାଭ କରାଯାଏ । ଈଶ୍ୱରଙ୍କୁ ଦେଖାଯାଏ, ତାଙ୍କ ସହିତ କଥା କୁହାଯାଏ, ଯେପରି ମୁଁ ତୁମ ସଙ୍ଗରେ କଥା କହୁଛି !" (ସମସ୍ତେ ନିଃଶବ୍ଦ)

## (୭)

## ଠାକୁର ଅହେତୁକ-କୃପାସିନ୍ଧୁ

ସମସ୍ତେ ଅବାକ୍ ଓ ନିସ୍ତବ୍ଧ ହୋଇ ଏସବୁ କଥା ଶୁଣୁଛନ୍ତି । ଯେପରି ସାକ୍ଷାତ୍ ବାଗ୍‌ବାଦିନୀ ଶ୍ରୀରାମକୃଷ୍ଣଙ୍କ ଜିହ୍ୱାରେ ଅବତୀର୍ଣ୍ଣ ହୋଇ ବିଦ୍ୟାସାଗରଙ୍କୁ ଉପଲକ୍ଷ୍ୟ କରି ଜୀବର ମଙ୍ଗଳ ପାଇଁ କଥା କହୁଛନ୍ତି । ରାତି ହୋଇଛି, ନଅଟା ବାଜିଲା । ଠାକୁର ଏଥର ବିଦାୟ ଗ୍ରହଣ କରିବେ ।

ଶ୍ରୀରାମକୃଷ୍ଣ (ବିଦ୍ୟାସାଗରଙ୍କ ପ୍ରତି, ସହାସ୍ୟ)—ଏଇ ଯାହା କହିଲି, କହିବା ବାହୁଲ୍ୟ; ଆପଣ ସବୁ ଜାଣନ୍ତି, ତେବେ ଖବର ନାହିଁ । (ସମସ୍ତଙ୍କର ହାସ୍ୟ) । ବରୁଣଙ୍କ ଭଣ୍ଡାରରେ କେତେ କଅଣ ରତ୍ନ ଅଛି, ବରୁଣ-ରାଜାଙ୍କୁ ଜଣା ନାହିଁ ।

ବିଦ୍ୟାସାଗର (ସହାସ୍ୟ)—ଆପଣ ତାହା କହିପାରନ୍ତି ।

ଶ୍ରୀରାମକୃଷ୍ଣ (ସହାସ୍ୟ)—ହଁ ହେ, ଅନେକ ବାବୁ ତାଙ୍କ ଚାକର ବାକରଙ୍କ ନାମ ଜାଣନ୍ତି ନାହିଁ, (ସମସ୍ତଙ୍କର ହାସ୍ୟ) ବା ଘରେ କେଉଁଠାରେ କ'ଣ ମୂଲ୍ୟବାନ୍ ଜିନିଷ ଅଛି ଜାଣି ନ ଥାନ୍ତି ।

କଥାବାର୍ତ୍ତା ଶୁଣି ସମସ୍ତେ ଆନନ୍ଦିତ । ସମସ୍ତେ ଟିକିଏ ଚୁପ୍ ହୋଇ ବସିଛନ୍ତି । ଠାକୁର ପୁଣି ବିଦ୍ୟାସାଗରଙ୍କୁ ସମ୍ବୋଧନ କରି କଥା କହୁଛନ୍ତି ।

ଶ୍ରୀରାମକୃଷ୍ଣ—(ସହାସ୍ୟ) ଥରେ ବଗିଚା ଦେଖିବାକୁ ଯିବେ, ରାସମଣିଙ୍କ ବଗିଚା । ଭାରୀ ଚମତ୍କାର ଜାଗା ।

ବିଦ୍ୟାସାଗର—ନିଶ୍ଚୟ ଯିବି ! ଆପଣ ଆସିଲେ, ଆଉ ମୁଁ ଯିବି ନାହିଁ !

ଶ୍ରୀରାମକୃଷ୍ଣ—ମୋ ନିକଟକୁ ? ଛି ! ଛି !

ବିଦ୍ୟାସାଗର—କ'ଣ ହେଲା ! ଏପରି କଥା କାହିଁକି କହିଲେ ମୋତେ ବୁଝାଇ ଦିଅନ୍ତୁ ।

ଶ୍ରୀରାମକୃଷ୍ଣ (ସହାସ୍ୟ)—ଆମେମାନେ ଡୁଲି ଡଙ୍ଗା (ସମସ୍ତଙ୍କର ହାସ୍ୟ) । ଖାଲ, ବିଲ ଆଉ ବଡ଼ ନଦୀରେ ମଧ୍ୟ ଯାଇପାରୁ । କିନ୍ତୁ ଆପଣ ଜାହାଜ; କେଜାଣି ଯିବାବେଳେ କାଳେ ଚଡ଼ାରେ ଲାଗିଯିବ । (ସମସ୍ତଙ୍କର ହାସ୍ୟ

ବିଦ୍ୟାସାଗର ସହାସ୍ୟବଦନ; ଚୁପ୍ କରି ରହିଛନ୍ତି । ଠାକୁର ହସୁଛନ୍ତି ।

ଶ୍ରୀରାମକୃଷ୍ଣ — କିନ୍ତୁ ହଁ, ଏ ସମୟରେ ଜାହାଜ ମଧ୍ୟ ଯାଇପାରେ ।

ବିଦ୍ୟାସାଗର (ସହାସ୍ୟ) — ହଁ, ଏଇଟା ଅବଶ୍ୟ ବର୍ଷାକାଳ । (ସମସ୍ତଙ୍କର ହାସ୍ୟ)

ମାଷ୍ଟର (ସ୍ୱଗତଃ) — ନବାନୁରାଗର ବର୍ଷା, ନବାନୁରାଗ ବେଳେ ମାନ-ଅପମାନବୋଧ ରହେ ନାହିଁ ।

ଠାକୁର ଗାତ୍ରୋତ୍‌ଥାନ କଲେ, ଭକ୍ତମାନେ ମଧ୍ୟ । ବିଦ୍ୟାସାଗର ଆତ୍ମୀୟମାନଙ୍କ ସହିତ ଠିଆ ହୋଇଛନ୍ତି । ଠାକୁରଙ୍କୁ ଗାଡ଼ିରେ ଉଠାଇଦେବେ ।

ଶ୍ରୀରାମକୃଷ୍ଣ ବର୍ତ୍ତମାନ ମଧ୍ୟ ଠିଆ ହୋଇ ରହିଛନ୍ତି କାହିଁକି ! ମୂଳମନ୍ତ୍ର କର ଦ୍ୱାରା ଜପୁଛନ୍ତି, ଜପୁ ଜପୁ ଭାବାବିଷ୍ଟ ହେଉଛନ୍ତି । **ଅହେତୁକ-କୃପାସିନ୍ଧୁ !** ବୋଧହୁଏ ଯିବା ସମୟରେ ମହାତ୍ମା ବିଦ୍ୟାସାଗରଙ୍କ ଆଧ୍ୟାତ୍ମିକ ମଙ୍ଗଳ ପାଇଁ ମାଆଙ୍କ ପାଖରେ ପ୍ରାର୍ଥନା କରୁଛନ୍ତି ।

ଠାକୁର ଭକ୍ତଙ୍କ ସହିତ ଶିଡ଼ି ବାଟେ ଓହ୍ଲାଉଛନ୍ତି । ଜଣେ ଭକ୍ତଙ୍କ ହାତ ଧରିଛନ୍ତି । ବିଦ୍ୟାସାଗର ସ୍ୱଜନଙ୍କ ସହ ଆଗେ ଆଗେ ଯାଉଛନ୍ତି — ହାତରେ ଆଲୁଅ, ବାଟ ଦେଖାଇ ଆଗେ ଆଗେ ଯାଉଛନ୍ତି । ଶ୍ରାବଣ କୃଷ୍ଣା ଷଷ୍ଠୀ, ବର୍ତ୍ତମାନ ମଧ୍ୟ ଜହ୍ନ ଉଠି ନାହିଁ । ଅନ୍ଧାରୁଆ ବଗିଚା ଭିତର ଦେଇ ସମସ୍ତେ କ୍ଷୀଣାଲୋକକୁ ଲକ୍ଷ୍ୟ କରି ଫାଟକ ଆଡ଼କୁ ଆସୁଛନ୍ତି ।

ଶ୍ରୀରାମକୃଷ୍ଣ ଭକ୍ତଙ୍କ ସଙ୍ଗରେ ଫାଟକ ପାଖରେ ଯାଇ ପହଞ୍ଚିଲେ; ସମସ୍ତେ ଗୋଟିଏ ସୁନ୍ଦର ଦୃଶ୍ୟ ଦେଖି ଠିଆ ହୋଇଗଲେ । ସମ୍ମୁଖରେ ପରମଭକ୍ତ ବଳରାମବାବୁ, ମୁଣ୍ଡରେ ଶିଖମାନଙ୍କରପରି ଶୁଭ୍ର ପଗଡ଼ି ବାନ୍ଧି ଠିଆ ହୋଇଥିଲେ । ସେ ଶ୍ରୀରାମକୃଷ୍ଣଙ୍କୁ ଦେଖିଲାମାତ୍ରେ ଭୂମିଷ୍ଠ ପ୍ରଣାମ କଲେ । ଠାକୁର କହିଲେ, "ବଳରାମ ! ତୁମେ ? ଏତେ ରାତିରେ ?"

ବଳରାମ (ସହାସ୍ୟ) — ମୁଁ ବହୁତବେଳୁ ଆସିଲିଣି, ଏଠାରେ ଠିଆ ହୋଇଥିଲି ।

ଶ୍ରୀରାମକୃଷ୍ଣ — ଭିତରକୁ କାହିଁକି ଗଲ ନାହିଁ ?

ବଳରାମ — ଆଜ୍ଞା, ସମସ୍ତେ ଆପଣଙ୍କର କଥାବାର୍ତ୍ତା ଶୁଣୁଛନ୍ତି, ମଝିରେ ଯାଇ ବିରକ୍ତ କରିଥାନ୍ତି । (ଏହା କହି ବଳରାମ ହସିଲେ)

ଠାକୁର ଭକ୍ତଙ୍କ ସଙ୍ଗରେ ଗାଡ଼ିରେ ଚଢୁଛନ୍ତି ।

ବିଦ୍ୟାସାଗର (ମାଷ୍ଟରଙ୍କ ପ୍ରତି ମୃଦୁ ସ୍ୱରରେ) — ଭଡ଼ା କଅଣ ଦେବି ?

ମାଷ୍ଟର — ଆଜ୍ଞା ନା, ସେ ହୋଇଯାଇଛି ।

ବିଦ୍ୟାସାଗର ଓ ଅନ୍ୟାନ୍ୟ ସମସ୍ତେ ଠାକୁରଙ୍କୁ ପ୍ରଣାମ କଲେ । ଗାଡ଼ି ଉତ୍ତରାଭିମୁଖରେ ଚାଲିଲା ।

ଓଁଓଁ

# ଚତୁର୍ଥ ପରିଚ୍ଛେଦ

## (୧)

## ଦକ୍ଷିଣେଶ୍ୱରରେ କେଦାରଙ୍କ ଉତ୍ସବ

ଦକ୍ଷିଣେଶ୍ୱର ମନ୍ଦିରରେ ଠାକୁର ଶ୍ରୀରାମକୃଷ୍ଣ କେଦାରାଦି ଭକ୍ତଙ୍କ ସହିତ କଥା କହୁଛନ୍ତି । ଆଜି ରବିବାର, ଶ୍ରାବଣ ଅମାବାସ୍ୟା, ୧୩ ଅଗଷ୍ଟ ୧୮୮୨ ସମୟ ଅପରାହ୍ନ ୫ଟା ।

ଶ୍ରୀଯୁକ୍ତ କେଦାର ଚାଟାର୍ଜୀ, ହାଲି ସହରରେ ଘର । ସରକାରୀ ଆକାଉଣ୍ଟାଣ୍ଟର କାମ କରନ୍ତି । ବହୁଦିନ ଢାକାରେ ଥିଲେ; ସେତେବେଳେ ଶ୍ରୀଯୁକ୍ତ ବିଜୟ ଗୋସ୍ୱାମୀ ତାଙ୍କ ସହିତ ସର୍ବଦା ଶ୍ରୀରାମକୃଷ୍ଣଙ୍କର କଥା ଆଲୋଚନା କରୁଥାନ୍ତି । ଈଶ୍ୱରଙ୍କ କଥା ଶୁଣିଲାବେଳେ ତାଙ୍କର ଚକ୍ଷୁ ଅଶ୍ରୁପୂର୍ଣ୍ଣ ହୁଏ । ସେ ପୂର୍ବେ ବ୍ରାହ୍ମସମାଜଭୁକ୍ତ ଥିଲେ ।

ଠାକୁର ନିଜ ଘରର ଦକ୍ଷିଣପଟ ବରଣ୍ଡାରେ ଭକ୍ତଙ୍କ ସହିତ ବସିଛନ୍ତି । ରାମ, ମନମୋହନ, ସୁରେନ୍ଦ୍ର, ରାଖାଲ, ଭବନାଥ, ମାଷ୍ଟର ପ୍ରଭୃତି ଅନେକ ଭକ୍ତ ଉପସ୍ଥିତ ଅଛନ୍ତି । କେଦାର ଆଜି ଉତ୍ସବ କରିଛନ୍ତି । ସମସ୍ତ ଦିନ ଆନନ୍ଦରେ କଟୁଛି । ରାମ ଜଣେ ଓସ୍ତାଦ୍ ଆଣିଥିଲେ, ସେ ଗୀତ ଗାଇଛନ୍ତି । ସଙ୍ଗୀତ ସମୟରେ ଠାକୁର ସମାଧିସ୍ଥ ହୋଇ ଘରର ଛୋଟ ଖଟଟିରେ ବସିଥିଲେ । ମାଷ୍ଟର ଓ ଅନ୍ୟାନ୍ୟ ଭକ୍ତ ତାଙ୍କର ପାଦତଳେ ବସିଥିଲେ ।

## ସମାଧିତତ୍ତ୍ୱ ଓ ସର୍ବଧର୍ମ ସମନ୍ୱୟ । ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟାନ୍

ଠାକୁର କଥା କହୁ କହୁ ସମାଧିତତ୍ତ୍ୱ ବୁଝାଉଛନ୍ତି । କହୁଛନ୍ତି, ''ସଚ୍ଚିଦାନନ୍ଦ ଲାଭ ହେଲେ ସମାଧି ହୁଏ । ସେତେବେଳେ କର୍ମତ୍ୟାଗ ହୋଇଯାଏ । ମୁଁ ଓସ୍ତାଦ୍‌ଙ୍କର ନାମ କରୁଛି, ଏପରି ସମୟରେ ଓସ୍ତାଦ୍ ଆସି ଉପସ୍ଥିତ; ସେତେବେଳେ ଆଉ ତାଙ୍କର ନାମ କରିବା କ'ଣ ଦରକାର ! ମହୁମାଛି କେତେବେଳେ ଗୁଣୁ ଗୁଣୁ କରେ ? ଯେପର୍ଯ୍ୟନ୍ତ ଫୁଲରେ ନ ବସେ । କିନ୍ତୁ ସାଧକ ପକ୍ଷରେ କର୍ମତ୍ୟାଗ କଲେ ଚଳିବ ନାହିଁ । ପୂଜା, ଜପ, ଧ୍ୟାନ, ସନ୍ଧ୍ୟା, କବଚାଦି, ତୀର୍ଥ ସବୁ ହିଁ କରିବାକୁ ହୁଏ ।

''ଲାଭ ପରେ ଯଦି କେହି ବିଚାର କରେ, ତାହା ଯେପରି ମହୁମାଛି ମଧୁପାନ କରୁ କରୁ ଟିକିଏ ଗୁଣୁ ଗୁଣୁ କରେ ।''

ଓସ୍ତାଦ୍‌ଟି ଭଲ ଗୀତ ଗାଇଥିଲେ । ଠାକୁର ପ୍ରସନ୍ନ ହୋଇଛନ୍ତି । ତାଙ୍କୁ କହୁଛନ୍ତି, ''ଯେଉଁ ମନୁଷ୍ୟଠାରେ ଗୋଟିଏ ବଡ଼ ଗୁଣ ଅଛି, ଯେପରି ସଙ୍ଗୀତବିଦ୍ୟା, ତା' ଭିତରେ ଈଶ୍ୱରଙ୍କର ଶକ୍ତି ବିଶେଷ ରୂପରେ ଅଛି ।''

ଓସ୍ତାଦ—ମହାଶୟ, ତାଙ୍କୁ କିପରି ଲାଭ କରାଯାଏ ?

ଶ୍ରୀରାମକୃଷ୍ଣ—ଭକ୍ତି ହିଁ ସାର । ଈଶ୍ୱର ତ ସର୍ବଭୂତରେ ଅଛନ୍ତି, ତେବେ ଭକ୍ତ କାହାକୁ କହନ୍ତି ? ଯାହାର ମନ ସର୍ବଦା ଈଶ୍ୱରଙ୍କଠାରେ ଅଛି । ଆଉ ଅହଙ୍କାର ଅଭିମାନ ରହିଲେ ହୁଏ ନାହିଁ । 'ମୁଁ' ରୂପକ ଢିପରେ ଈଶ୍ୱରଙ୍କର କୃପାରୂପକ ଜଳ ଜମେ ନାହିଁ, ଗଡ଼ିଯାଏ । ମୁଁ ଯନ୍ତ୍ର ।

(କେଦାରାଦି ଭକ୍ତମାନଙ୍କ ପ୍ରତି) ସବୁ ପଥ ଦେଇ ତାଙ୍କୁ ଲାଭ କରାଯାଏ । ସବୁ ଧର୍ମ ହିଁ ସତ୍ୟ । ଛାତରେ ଉଠିବା ନେଇ କଥା । ତୁମେ ପକ୍କା ଶିଡ଼ି ଦେଇ ଉଠିପାର କିମ୍ବା କାଠ ଶିଡ଼ି ଦେଇ ଉଠିପାର, ବାଉଁଶର ଶିଡ଼ି ଦେଇ ମଧ୍ୟ ଉଠିପାର, ଆଉ ଦଉଡ଼ି ସାହାଯ୍ୟରେ ମଧ୍ୟ ଉଠିପାର । ପୁଣି ଗୋଟିଏ ଅଚଞ୍ଚା ବାଉଁଶ ଦେଇ ମଧ୍ୟ ଉଠିପାର ।

''ଯଦି କହ, ସେମାନଙ୍କ ଧର୍ମରେ ଅନେକ ଭୁଲ, କୁସଂସ୍କାର ଅଛି; ମୁଁ କହେ, ତାହା ରହିଲେ ବା, ସବୁ ଧର୍ମରେ ତ ଭୁଲ ଅଛି । ସମସ୍ତେ ଭାବନ୍ତି, ମୋ ଘଣ୍ଟାଟି ଠିକ୍ ଚାଲୁଛି । ବ୍ୟାକୁଳତା ଥିଲେ ହେଲା, ତାଙ୍କ ଉପରେ ଶ୍ରଦ୍ଧା, ଟାଣ ରହିଲେ ହେଲା । ସେ ଯେ ଅନ୍ତର୍ଯ୍ୟାମୀ, ଅନ୍ତରର ଟାଣ ବ୍ୟାକୁଳତା ଦେଖିପାରନ୍ତି । ମନେକର ଜଣେ ବାପର ଅନେକଗୁଡ଼ିଏ ପିଲା, ବଡ଼ ପିଲାମାନେ କେହି 'ବାବା' ,କେହି 'ପାପା' ଏହିସବୁ ସ୍ପଷ୍ଟ କହି ତାଙ୍କୁ ଡାକନ୍ତି । ପୁଣି ଅତି ଛୋଟ ପିଲା କେବଳ 'ବା' କି 'ପା' ବୋଲି ଡାକେ । ଯେଉଁମାନେ କେବଳ 'ବା' କି 'ପା' କହିପାରନ୍ତି, ବାପା କ'ଣ ତାଙ୍କ ଉପରେ ରାଗିବେ ? ବାପା ଜାଣନ୍ତି ଯେ, ସେମାନେ ମୋତେ ହିଁ ଡାକୁଛନ୍ତି, ତେବେ ଭଲ ଉଚ୍ଚାରଣ କରିପାରୁ ନାହାନ୍ତି । ବାପ ପାଖରେ ସବୁ ପିଲା ସମାନ ।

''ପୁଣି ଭକ୍ତମାନେ ତାଙ୍କୁ ନାନା ନାମରେ ଡାକୁଛନ୍ତି; ଏକ ବ୍ୟକ୍ତିକୁ ହିଁ ଡାକୁଛନ୍ତି । ଗୋଟିଏ ପୋଖରୀରେ ଚାରୋଟି ଘାଟ । ହିନ୍ଦୁମାନେ ଗୋଟିଏ ଘାଟରେ ପାଣି ପିଉଛନ୍ତି—କହୁଛନ୍ତି ଜଳ, ମୁସଲମାନମାନେ ଆଉ ଗୋଟିଏ ଘାଟରେ ପିଉଛନ୍ତି—କହୁଛନ୍ତି ପାନି; ଇଂରେଜମାନେ ଆଉ ଗୋଟିଏ ଘାଟରେ ପିଉଛନ୍ତି—କହୁଛନ୍ତି ଓ୍ୱାଟର; ପୁଣି ଅନ୍ୟ ଲୋକେ ଆଉ ଗୋଟିଏ ଘାଟରେ କହୁଛନ୍ତି ଆକ୍ୱା(aqua) ।

**''ଏକ ଈଶ୍ୱର ତାଙ୍କର ନାନା ନାମ ।''**

# ପଞ୍ଚମ ପରିଚ୍ଛେଦ

## (୧)

## ଠାକୁର ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱରରେ ଭକ୍ତ ସଙ୍ଗରେ

ଶ୍ରୀରାମକୃଷ୍ଣ, ଦକ୍ଷିଣେଶ୍ୱର-ମନ୍ଦିରରେ ଭକ୍ତଙ୍କ ସଙ୍ଗରେ ବିରାଜମାନ । ଗୁରୁବାର, ଶ୍ରାବଣ, ଶୁକ୍ଳଦଶମୀ, ୨୪ ଅଗଷ୍ଟ, ୧୮୮୨ ।

ଆଜିକାଲି ଠାକୁରଙ୍କ ପାଖରେ ହାଜରା ମହାଶୟ, ରାମଲାଲ, ରାଖାଲ ପ୍ରଭୃତି ରହନ୍ତି । ଶ୍ରୀଯୁକ୍ତ ରାମଲାଲ ଠାକୁରଙ୍କର ଭ୍ରାତୃଷ୍ପୁତ୍ର — କାଳୀମନ୍ଦିରରେ ପୂଜା କରନ୍ତି । ମାଷ୍ଟର ଆସି ଦେଖିଲେ ଉତ୍ତରପୂର୍ବରେ ଲମ୍ବା ବାରଣ୍ଡାରେ ଠାକୁର ହାଜରା ନିକଟରେ ଠିଆ ହୋଇ କଥା କହୁଛନ୍ତି । ସେ ଆସି ଭୂମିଷ୍ଠ ହୋଇ ଠାକୁରଙ୍କର ଶ୍ରୀପାଦପଦ୍ମ ବନ୍ଦନା କଲେ ।

ଠାକୁର ହାସ୍ୟବଦନ । ମାଷ୍ଟରଙ୍କୁ କହୁଛନ୍ତି, ''ଆଉ ଥରେ ଦୁଇଥର ଈଶ୍ୱର ବିଦ୍ୟାସାଗରଙ୍କୁ ଦେଖିବା ଦରକାର । ଖୋଟିରେ ଥରେ ମୋଟାମୋଟି ଆଙ୍କି ନେଇ ତା'ପରେ ବସି ବସି ରଙ୍ଗ ଚଢ଼ାଯାଏ । ପ୍ରତିମା ପ୍ରଥମରେ ଏକମାଟି, ପରେ ଦୁଇମାଟି, ତା'ପରେ ଖଡ଼ି, ତା'ପରେ ରଙ୍ଗ — ପର ପର କରିବାକୁ ହୁଏ । ଈଶ୍ୱର ବିଦ୍ୟାସାଗରର ସବୁ ପ୍ରସ୍ତୁତ, କେବଳ ଢାଙ୍କି ହୋଇ ରହିଛି । କେତେଗୁଡ଼ିଏ ସତ୍‌କାର୍ଯ୍ୟ କରୁଛି, କିନ୍ତୁ ଅନ୍ତରରେ କଅଣ ଅଛି ତାହା ଜାଣେ ନାହିଁ । ଅନ୍ତରରେ ସୁନା ଲୁଚିରହିଛି । ଅନ୍ତରରେ ଈଶ୍ୱର ଅଛନ୍ତି — ଜାଣିପାରିଲେ ସବୁ କାମ ଛାଡ଼ି ବ୍ୟାକୁଳ ହୋଇ ତାଙ୍କୁ ଡାକିବାକୁ ଇଚ୍ଛା ହୁଏ ।''

ଠାକୁର ମାଷ୍ଟରଙ୍କ ସଙ୍ଗରେ ଠିଆ ହୋଇ କଥା କହୁଛନ୍ତି — ଆଉ ମଝିରେ ମଝିରେ ବାରଣ୍ଡାରେ ବୁଲୁଛନ୍ତି ।

### ସାଧନା — କାମିନୀ-କାଞ୍ଚନର ଝଡ଼ ତୋଫାନ କଟାଇବା ପାଇଁ

ଶ୍ରୀରାମକୃଷ୍ଣ — ଅନ୍ତରରେ କଅଣ ଅଛି ଜାଣିବା ପାଇଁ ଟିକିଏ ସାଧନା ଆବଶ୍ୟକ ।

ମାଷ୍ଟର — ସାଧନା କଅଣ ବରାବର କରିବାକୁ ହୁଏ ?

ଶ୍ରୀରାମକୃଷ୍ଣ — ନା, ପ୍ରଥମେ ଟିକିଏ ଉଠିପଡ଼ି ଲାଗିବାକୁ ହୁଏ । ତା'ପରେ ଆଉ ବେଶୀ ପରିଶ୍ରମ କରିବାକୁ ପଡ଼େ ନାହିଁ । ଯେପର୍ଯ୍ୟନ୍ତ ଢେଉ, ଝଡ଼, ତୋଫାନ, ଆଉ ବାଙ୍କ ଦେଇ ଯିବାକୁ ହୁଏ, ସେପର୍ଯ୍ୟନ୍ତ ମଙ୍ଗୁଆଳକୁ ଠିଆ ହୋଇ ମଙ୍ଗ ଧରିବାକୁ ହୁଏ — ସେହି ଟିକକ ପାର ହୋଇଗଲେ ଆଉ କଷ୍ଟ ହୁଏ ନାହିଁ । ଯଦି ବାଙ୍କ ପାର ହୋଇଗଲା, ଆଉ ଅନୁକୂଳ ବାୟୁ ବହିଲା, ମଙ୍ଗୁଆଳ ଆରାମ କରି ବସେ, ମଙ୍ଗଧରାରେ କେବଳ ହାତଟା ପକାଇ ରଖେ — ତା'ପରେ ପାଲ

ଟାଣିବାର ବନ୍ଦୋବସ୍ତ କରି ତମାଖୁ ସଜାଡ଼ି ବସେ । କାମିନୀ-କାଞ୍ଚନର ଝଡ଼-ତୋଫାନ କଟିଗଲେ, ତା'ପରେ **ଶାନ୍ତି ।**

**ଠାକୁର ଶ୍ରୀରାମକୃଷ୍ଣ ଓ ଯୋଗତତ୍ତ୍ୱ—ଯୋଗଭ୍ରଷ୍ଟ—ଯୋଗାବସ୍ଥା—''ନିବାତନିଷ୍କମ୍ପମିବ ପ୍ରଦୀପମ୍''—ଯୋଗର ବ୍ୟାଘାତ**

''କାହାରି କାହାରିଠାରେ ଯୋଗୀର ଲକ୍ଷଣ ଦେଖାଯାଏ କିନ୍ତୁ ସେମାନଙ୍କର ମଧ୍ୟ ସାବଧାନ ହେବା ଉଚିତ । କାମିନୀକାଞ୍ଚନ ହିଁ ଯୋଗର ବ୍ୟାଘାତ । ଯୋଗଭ୍ରଷ୍ଟ ହୋଇ ସଂସାରରେ ଆସି ପଡ଼େ—ହୁଏତ କିଛି ଭୋଗର ବାସନା ଥିଲା । ସେଗୁଡ଼ିକ ହୋଇଗଲେ ପୁଣି ଈଶ୍ୱରଙ୍କ ଆଡ଼କୁ ଯିବ—ପୁଣି ସେହି ଯୋଗର ଅବସ୍ଥା । ଛିଟିକିଣି କଳ ଜାଣ ?''

ମାଷ୍ଟର—ଆଜ୍ଞା ନା, ଦେଖିନାହିଁ ।

ଶ୍ରୀରାମକୃଷ୍ଣ—ସେଦେଶରେ (କାମାରପୁକୁରରେ) ଅଛି । ବାଉଁଶ ନୁଆଇଁ ରଖନ୍ତି, ସେଥିରେ ବନ୍‌ଶୀ ଲଗା ଦଉଡ଼ି ବନ୍ଧା ଥାଏ । ବନ୍‌ଶୀରେ ଥୋପ ଦିଆହୁଏ । ମାଛ ଯେତେବେଳେ ଥୋପ ଖାଏ ସଙ୍ଗେ ସଙ୍ଗେ ଚଟ୍‌କରି ବାଉଁଶଟା ଉଠିଯାଏ । ଆଗରୁ ଉପର ଆଡ଼କୁ ବାଉଁଶର ଅଗ ଯେମିତି ଥିଲା ସେହିପରି ରହିଯାଏ ।

''ନିକିତିର ଗୋଟିଏ ପଟ ଭାରୀ ହେଲେ ତଳକଣ୍ଟା ଉପର କଣ୍ଟା ସହିତ ଏକ ହୁଏ ନାହିଁ । ତଳକଣ୍ଟାଟି ମନ—ଉପରକଣ୍ଟାଟି ଈଶ୍ୱର । ତଳକଣ୍ଟାଟି ଉପରକଣ୍ଟା ସହିତ ଏକ ହେବାର ନାମ **ଯୋଗ ।**

''ମନ ସ୍ଥିର ନ ହେଲେ ଯୋଗ ହୁଏ ନାହିଁ । ସଂସାର-ବାୟୁ ମନରୂପକ ଦୀପକୁ ସର୍ବଦା ଚଞ୍ଚଳ କରୁଛି । ଏ ଦୀପଟି ଯଦି ଆଦୌ ନ ହଲେ, ତା'ହେଲେ ଠିକ୍ ଯୋଗର ଅବସ୍ଥା ହୋଇଯାଏ ।

''କାମିନୀକାଞ୍ଚନ ହିଁ **ଯୋଗର ବ୍ୟାଘାତ ।** ବସ୍ତୁବିଚାର କରିବ । ସ୍ତ୍ରୀଲୋକର ଶରୀରରେ କଅଣ ଅଛି—ରକ୍ତ, ମାଂସ, ଚର୍ବି, ନାଡ଼ୀଭୁଡ଼ୀ, କୃମି, ମୂତ୍ର, ବିଷ୍ଠା, ଏହିସବୁ । ସେହି ଶରୀର ଉପରେ ଏତେ ଆସକ୍ତି କାହିଁକି !

''ମୁଁ ରାଜସିକ ଭାବର ଆରୋପ କରୁଥିଲି—ତ୍ୟାଗ କରିବା ସକାଶେ । ଇଚ୍ଛା ହୋଇଥିଲା ଖାଣ୍ଟି ଜରୀର ପୋଷାକ ପିନ୍ଧିବି, ଆଙ୍ଗୁଠିରେ ମୁଦି ପିନ୍ଧିବି, ନଳ ଥିବା ହୁକ୍‌କାରେ ତମାଖୁ ଟାଣିବି । ଖାଣ୍ଟି ଜରୀର ପୋଷାକ ପିନ୍ଧିଲି—ଏମାନେ (ମଥୁରବାବୁ) ଆଣିଦେଲେ—କିଛିକ୍ଷଣ ପରେ ମନକୁ କହିଲି—ମନ, ଏହାର ନାମ ଖାଣ୍ଟି ଜରୀର ପୋଷାକ ! ସେତେବେଳେ ସେଗୁଡ଼ିକ କାଢ଼ି ଫିଙ୍ଗିଦେଲି । ଆଉ ଭଲ ଲାଗିଲା ନାହିଁ । କହିଲି—ମନ, ଏହାର ନାମ ଶାଲ ! ଏହାର ନାମ ମୁଦି ! ଏହାର ନାମ ନଳ ଥିବା ହୁକ୍‌କାରେ ତମାଖୁ ଟାଣିବା ! ସେହି ଯେ ସବୁ ଫିଙ୍ଗିଦେଲି ଆଉ ମନରେ ଉଠିଲା ନାହିଁ ।''

ସନ୍ଧ୍ୟା ଆଗତ ପ୍ରାୟ । ଘରର ଦକ୍ଷିଣ-ପୂର୍ବ ବାରଣ୍ଡାରେ, ଘରର ଦ୍ୱାର ନିକଟରେ ଠାକୁର ମଣିଙ୍କ ସହିତ ନିଭୃତରେ କଥା କହୁଛନ୍ତି ।

ଶ୍ରୀରାମକୃଷ୍ଣ (ମଣିଙ୍କ ପ୍ରତି)—ଯୋଗୀର ମନ ସର୍ବଦା ଈଶ୍ୱରଙ୍କଠାରେ ଥାଏ—ସର୍ବଦା ଆତ୍ମସ୍ଥ । ଅଧାବୁଝା ଆଖି ଦେଖିବାମାତ୍ରକେ ବୁଝାଯାଏ । ଯେପରି ପକ୍ଷୀ ଅଣ୍ଡା ଉଷୁମାଉଛି—ସବୁ ମନଟା ସେହି ଅଣ୍ଡା ଉପରେ, ବାହାରେ ନାମକୁ ମାତ୍ର ଚାହିଁ ରହିଛି ! ଆଚ୍ଛା, ମୋତେ ସେହି ଛବି ଦେଖାଇପାରିବ ?

ମଣି—ଯେ ଆଜ୍ଞା ! ମୁଁ ଚେଷ୍ଟା କରିବି, ଯଦି କେଉଁଠୁ ପାଏ ।

## (୨)

## ଗୁରୁ-ଶିଷ୍ୟ ସମ୍ବାଦ—ଗୁହ୍ୟ କଥା

ସନ୍ଧ୍ୟା ହେଲା । ଭୃତ୍ୟ କାଳୀମନ୍ଦିରରେ, ରାଧାକାନ୍ତଙ୍କ ମନ୍ଦିରରେ ଓ ଅନ୍ୟାନ୍ୟ ଘରେ ଆଲୁଅ ଜାଳି ଦେଲା । ଠାକୁର ଛୋଟ ଖଟଟିରେ ବସି ଜଗନ୍ମାତାଙ୍କର ଚିନ୍ତା ଓ ତତ୍ପରେ ଈଶ୍ୱରଙ୍କ ନାମ ନେଉଛନ୍ତି । ଘରେ ଝୁଣା ଦିଆହୋଇଛି । ଏକ ପାର୍ଶ୍ୱରେ ଗୋଟିଏ ରୁଖା ଉପରେ ଦୀପ ଜଳୁଛି । ଟିକିଏ ପରେ ଶଙ୍ଖ, ଘଣ୍ଟ, ବାଜି ଉଠିଲା । କାଳୀମନ୍ଦିରରେ ଆଳତି ହେଉଛି । ଶୁକ୍ଳା ଦଶମୀ ତିଥି । ଜ୍ୟୋତ୍ସ୍ନାରେ ଚତୁର୍ଦ୍ଦିଗ ଆଲୋକିତ ।

ଆଳତି ପରେ ଶ୍ରୀରାମକୃଷ୍ଣ ଛୋଟ ଖଟଟିରେ ବସି ମଣିଙ୍କ ସହିତ ଏକାକୀ ନାନା ବିଷୟକ କଥା କହୁଛନ୍ତି । ମଣି ତଳେ ବସିଛନ୍ତି ।

### ''କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ''

ଶ୍ରୀରାମକୃଷ୍ଣ (ମଣିଙ୍କ ପ୍ରତି)—**ନିଷ୍କାମ କର୍ମ କରିବ** । ଈଶ୍ୱର ବିଦ୍ୟାସାଗର ଯେଉଁ କାର୍ଯ୍ୟ କରନ୍ତି, ତାହା ଭଲ କାମ—ନିଷ୍କାମ କର୍ମ କରିବା ପାଇଁ ଚେଷ୍ଟା କରନ୍ତି ।

ମଣି—ଆଜ୍ଞା ହଁ । ଆଚ୍ଛା, ଯେଉଁଠାରେ କର୍ମ, ସେଠାରେ କଅଣ ଈଶ୍ୱରପ୍ରାପ୍ତି ହୁଏ ? ରାମ ଆଉ କାମ କଅଣ ଏକସଙ୍ଗରେ ହୁଏ ? ହିନ୍ଦୀରେ ଗୋଟିଏ କଥା ସେଦିନ ପଢ଼ିଲି—'ଯହାଁ ରାମ ତାହାଁ ନହିଁ କାମ, ଯହାଁ କାମ ତାହାଁ ନହିଁ ରାମ ।'

ଶ୍ରୀରାମକୃଷ୍ଣ—କର୍ମ ସମସ୍ତେ କରନ୍ତି—ତାଙ୍କର ନାମ ଗୁଣ ଗାନ କରିବା, ଏହା ମଧ୍ୟ କର୍ମ । ସୋଽହଂବାଦୀମାନଙ୍କର 'ମୁଁ କେବଳ ସେହି' ଏହି ଚିନ୍ତା ମଧ୍ୟ କର୍ମ—ନିଃଶ୍ୱାସ ମାରିବା ମଧ୍ୟ କର୍ମ । କର୍ମ ତ୍ୟାଗ କରିବାର ଯୁ ନାହିଁ । ତେଣୁ କର୍ମ କରିବ; କିନ୍ତୁ ଫଳ ଈଶ୍ୱରଙ୍କଠାରେ ସମର୍ପଣ କରିବ ।

ମଣି—ଆଜ୍ଞା, ଯଦ୍ଦ୍ୱାରା ବେଶୀ ଅର୍ଥ ହେବ, ସେପରି ଚେଷ୍ଟା କଅଣ କରିପାରେ ?

ଶ୍ରୀରାମକୃଷ୍ଣ — **ବିଦ୍ୟାର ସଂସାର ପାଇଁ କରିପାର ।** ବେଶୀ ଉପାର୍ଜ୍ଜନର ଚେଷ୍ଟା କରିପାର, କିନ୍ତୁ **ସଦୁପାୟରେ ।** ଉପାର୍ଜ୍ଜନ କରିବା ଉଦ୍ଦେଶ୍ୟ ନୁହେଁ । ଈଶ୍ୱରଙ୍କର ସେବା କରିବା ହିଁ ଉଦ୍ଦେଶ୍ୟ । ଟଙ୍କାରେ ଯଦି ଈଶ୍ୱରଙ୍କର ସେବା ହୁଏ, ତାହା ହେଲେ ସେହି ଟଙ୍କାରେ ଦୋଷ ନାହିଁ ।

ମଣି — ଆଜ୍ଞା, **ପରିବାର ପ୍ରତି କର୍ତ୍ତବ୍ୟ କେତେଦିନ ?**

ଶ୍ରୀରାମକୃଷ୍ଣ — ଯେପର୍ଯ୍ୟନ୍ତ ସେମାନଙ୍କର ଖାଇବା-ପିନ୍ଧିବାରେ କଷ୍ଟ ନ ହୁଏ । କିନ୍ତୁ ସନ୍ତାନ ନିଜେ ସମର୍ଥ ହେଲେ ଆଉ ତାଙ୍କର ଭାର ନେବା ଦରକାର ନାହିଁ । ପକ୍ଷୀର ଛୁଆ ଖୁଣ୍ଟି ଖାଇ ଶିଖିଲା ପରେ ମା ପାଖକୁ ଖାଇବାକୁ ଆସିଲେ, ମା ଖୁମ୍ପି ଗୋଡ଼ାଏ ।

ମଣି — ଆଜ୍ଞା, **କର୍ମ କେତେ ଦିନ କରିବାକୁ ହେବ ?**

ଶ୍ରୀରାମକୃଷ୍ଣ — ଫଳ ଲାଭ ହେଲେ ଆଉ ଫୁଲ ରହେ ନାହିଁ । **ଈଶ୍ୱରଲାଭ ହେଲେ ଆଉ କର୍ମ କରିବାକୁ ପଡ଼େ ନାହିଁ ।** ମନ ବି ଲାଗେ ନାହିଁ ।

''ମାତାଲ ବେଶୀ ମଦ ଖାଇଲେ ହୋସ୍ ରଖିପାରେ ନାହିଁ — ଦୁଇ ଅଣାର ଖାଇଲେ କାମଦାମ ଚାଲିପାରେ । ଈଶ୍ୱରଙ୍କ ଆଡ଼େ ଯେତେ ଆଗେଇବ ସେତେ କର୍ମ ସେ କମାଇ ଦେବେ । ଭୟ ନାହିଁ । ଘରର ବୋହୂ ଅନ୍ତଃସତ୍ତ୍ୱା ହେଲେ ଶାଶୁ କ୍ରମେ କ୍ରମେ କାମ କମାଇ ଦିଏ । ଦଶମାସ ହେଲେ ଆଦୌ କାମ କରିବାକୁ ଦିଏ ନାହିଁ । ପିଲା ହେଲେ ସେଇଟିକୁ ନେଇ ଉଠାବସା କରେ ।

ଯେଉଁ କେତେଟା କର୍ମ ଅଛି, ସେହିତକ ଶେଷ ହୋଇଗଲେ ନିଶ୍ଚିନ୍ତ । ଗୃହିଣୀ ଘରର ରନ୍ଧାବଢ଼ା ଆଦି କାମ ସାରି ଯେତେବେଳେ ଗାଧୋଇବାକୁ ଯାଏ, ସେତେବେଳେ ଡକାଡକି କଲେ ମଧ୍ୟ ଆସିବ ନାହିଁ ।

**ଈଶ୍ୱରଲାଭ ଓ ଈଶ୍ୱରଦର୍ଶନ କଅଣ ? ଉପାୟ କଅଣ ?**

ମଣି — ଆଜ୍ଞା, ଈଶ୍ୱରଲାଭ କରିବା ଅର୍ଥ କଅଣ ? ଈଶ୍ୱରଦର୍ଶନ କାହାକୁ କହନ୍ତି ? ପୁଣି ଏହି ଦର୍ଶନ କିପରି ହୁଏ ?

ଶ୍ରୀରାମକୃଷ୍ଣ — ବୈଷ୍ଣବମାନେ କହନ୍ତି ଯେ, ଈଶ୍ୱରଙ୍କ ପଥରେ ଯେଉଁମାନେ ଯାଉଛନ୍ତି, ଆଉ ଯେଉଁମାନେ ତାଙ୍କୁ ଲାଭ କରିଛନ୍ତି, ସେମାନଙ୍କର ଭିନ୍ନ ଭିନ୍ନ ସ୍ତର ଅଛି — **ପ୍ରବର୍ତ୍ତକ, ସାଧକ, ସିଦ୍ଧ ଓ ସିଦ୍ଧର ସିଦ୍ଧ ।** ଯେ ନୂଆ କରି ପଥକୁ ଉଠିଛନ୍ତି ତାଙ୍କୁ ପ୍ରବର୍ତ୍ତକ କହନ୍ତି । ଯେ ସାଧନ ଭଜନ କରୁଛନ୍ତି — ପୂଜା, ଜପ, ଧ୍ୟାନ, ନାମଗୁଣ-କୀର୍ତ୍ତନ କରୁଛନ୍ତି, ସେ ସାଧକ । ଯେଉଁ ବ୍ୟକ୍ତି ଈଶ୍ୱର ଅଛନ୍ତି ବୋଲି ଠିକ୍‌ରୂପେ ଉପଲବ୍ଧି କରନ୍ତି ତାଙ୍କୁ ହିଁ ସିଦ୍ଧ କୁହାଯାଏ — ଯେପରି ବେଦାନ୍ତରେ ଉପମା ଅଛି — ଅନ୍ଧକାର ଘର, ବାବୁ ଶୋଇଛନ୍ତି, ବାବୁଙ୍କୁ ଜଣେ ଦରାଣ୍ଡି ଦରାଣ୍ଡି ଖୋଜୁଛନ୍ତି — ଗୋଟିଏ ସୋଫାରେ ହାତ ଦେଇ କହୁଛନ୍ତି, ଏ ନୁହେଁ; ଝରକାରେ ହାତ ଦେଇ କହୁଛନ୍ତି, ଏ ନୁହେଁ; ଦରଜାରେ ହାତ ଦେଇ

କହୁଛନ୍ତି ଏ ନୁହେଁ—ନେତି, ନେତି, ନେତି । ଶେଷରେ ବାବୁଙ୍କ ଦେହରେ ହାତ ପଡ଼ିଛି, ସେତେବେଳେ କହୁଛନ୍ତି, 'ଇହ', ଏଇ ବାବୁ—ଅର୍ଥାତ୍ 'ଅସ୍ତି' ବୋଧ ହୋଇଛି । ବାବୁଙ୍କୁ ମିଳିଛି, କିନ୍ତୁ ବିଶେଷରୂପେ ଜଣା ହୋଇନାହିଁ ।

''ଆଉ ଏକ ସ୍ତର ଅଛନ୍ତି, ତାଙ୍କୁ କହନ୍ତି **ସିଦ୍ଧର ସିଦ୍ଧ** । ବାବୁଙ୍କ ସଙ୍ଗରେ ଯଦି ବିଶେଷ ଆଳାପ ହୁଏ, ତାହା ହେଲେ ଆଉ ଏକପ୍ରକାର ଅବସ୍ଥା—ସେହିପରି ଈଶ୍ୱରଙ୍କ ସଙ୍ଗରେ ପ୍ରେମଭକ୍ତି ଦ୍ୱାରା ବିଶେଷ ଆଳାପ ହୁଏ । ଯେ ସିଦ୍ଧ ସେ ଈଶ୍ୱରଙ୍କୁ ପାଇଛନ୍ତି—ଯେ ସିଦ୍ଧର ସିଦ୍ଧ ସେ ଈଶ୍ୱରଙ୍କ ସହିତ ବିଶେଷରୂପେ ଆଳାପ କରିଛନ୍ତି ।

''କିନ୍ତୁ ତାଙ୍କୁ ଲାଭ କରିବାକୁ ହେଲେ ଗୋଟିଏ ଭାବ ଆଶ୍ରୟ କରିବାକୁ ହୁଏ । **ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ** ବା **ମଧୁର** ।

''ଶାନ୍ତ—ଋଷିମାନଙ୍କର ଥିଲା । ସେମାନଙ୍କ ଅନ୍ୟ କିଛି ଭୋଗ କରିବାର ବାସନା ନ ଥିଲା । ଯେପରି ସ୍ତ୍ରୀର ସ୍ୱାମୀଠାରେ ନିଷ୍ଠା—ସେ ଜାଣେ ମୋର ପତି କନ୍ଦର୍ପ ।

''ଦାସ୍ୟ—ଯେପରି ହନୁମାନଙ୍କର । ରାମଙ୍କ କାର୍ଯ୍ୟ କରିବା ସମୟରେ ସିଂହତୁଲ୍ୟ । ସ୍ତ୍ରୀର ଦାସ୍ୟ ଭାବ ଥାଏ—ପ୍ରାଣପଣେ ସ୍ୱାମୀଙ୍କର ସେବା କରେ । ମାଆର କିଛି କିଛି ଥାଏ—ଯଶୋଦାଙ୍କର ମଧ୍ୟ ଥିଲା ।

''ସଖ୍ୟ—ବନ୍ଧୁଭାବ । ଆସ, ପାଖରେ ଆସି ବସ । ସୁଦାମାଦି କୃଷ୍ଣଙ୍କୁ କେତେବେଳେ ଅଇଁଠା ଫଳ ଖୁଆଉଛନ୍ତି ତ କେତେବେଳେ ପିଠିରେ ଚଢ଼ୁଛନ୍ତି ।

''ବାତ୍ସଲ୍ୟ—ଯେପରି ଯଶୋଦାଙ୍କର । ସ୍ତ୍ରୀର ବି କିଛିଟା ଥାଏ—ସ୍ୱାମୀଙ୍କୁ ପ୍ରାଣଭରି ଖୁଆଏ । ପିଲାଟି ପେଟଭରି ଖାଇଲେ ତେବେ ମା' ସନ୍ତୁଷ୍ଟ । କୃଷ୍ଣ ଖାଇବେ ବୋଲି ଯଶୋଦା ଲବଣୀ ହାତରେ ଧରି ବୁଲୁଥାନ୍ତି ।

''ମଧୁର—ଯେପରି ଶ୍ରୀମତୀଙ୍କର ! ସ୍ତ୍ରୀର ବି ମଧୁର ଭାବ । ଏ ଭାବ ଭିତରେ ସମସ୍ତ ଅଛି—ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ।''

ମଣି—ଈଶ୍ୱରଙ୍କୁ କ'ଣ ଏହି ଚକ୍ଷୁରେ ଦର୍ଶନ କରିହୁଏ ?

ଶ୍ରୀରାମକୃଷ୍ଣ—ତାଙ୍କୁ ଚର୍ମଚକ୍ଷୁରେ ଦେଖାଯାଏ ନାହିଁ । ସାଧନା କରୁ କରୁ **ପ୍ରେମର ଶରୀର ହୁଏ**—ତାହାର ପ୍ରେମର ଚକ୍ଷୁ, ପ୍ରେମର କର୍ଣ୍ଣ । ସେହି ଚକ୍ଷୁରେ ତାଙ୍କୁ ଦେଖାଯାଏ, ସେହି କର୍ଣ୍ଣରେ ତାଙ୍କର ବାଣୀ ଶୁଣାଯାଏ । ପୁଣି ପ୍ରେମର ଲିଙ୍ଗ ଯୋନି ହୁଏ ।

ଏହି କଥା ଶୁଣି ମଣି ହୋ ହୋ କରି ହସି ପକାଇଲେ । ଠାକୁର ବିରକ୍ତ ନ ହୋଇ ପୁଣି କହୁଛନ୍ତି ।

ଶ୍ରୀରାମକୃଷ୍ଣ—ଏହି ପ୍ରେମ-ଶରୀରରେ ଆତ୍ମା ସହିତ ରମଣ ହୁଏ । ମଣି ପୁଣି ଗମ୍ଭୀର ହେଲେ ।

ଶ୍ରୀରାମକୃଷ୍ଣ — ଈଶ୍ୱରଙ୍କ ପ୍ରତି ଖୁବ୍ ଭଲ ପାଇବା ନ ହେଲେ ହୁଏ ନାହିଁ । ଭଲ ପାଇବା ବେଶୀ ହେଲେ ତେବେ ତ ଚତୁର୍ଦ୍ଦିଗ ଈଶ୍ୱରମୟ ଦେଖାଯାଏ ! କାମଳରୋଗ ହେଲେ ଯେପରି ଚାରିଆଡ଼େ ହଳଦିଆ ଦେଖାଯାଏ ।

''ସେତେବେଳେ ପୁଣି 'ସେ ହିଁ ମୁଁ' ଏହି ବୋଧ ହୁଏ । ମାତାଲର ନିଶା ବେଶୀ ହେଲେ କହେ, 'ମୁଁ କାଳୀ' ।

''ଗୋପୀମାନେ ପ୍ରେମୋନ୍ମତ୍ତ ହୋଇ କହିବାକୁ ଲାଗିଲେ, 'ମୁଁ କୃଷ୍ଣ' ।

''ତାଙ୍କୁ ଦିନ ରାତି ଚିନ୍ତା କଲେ ସବୁଆଡ଼େ ତାଙ୍କୁ ଦେଖାଯାଏ — ଯେପରି ଦୀପର ଶିଖା ଆଡ଼କୁ ଯଦି ଏକଦୃଷ୍ଟିରେ ଚାହିଁ ରହ, ତେବେ କିଛିକ୍ଷଣ ପରେ ଚାରିଆଡ଼େ ଶିଖାମୟ ଦେଖାଯାଏ ।''

## ଈଶ୍ୱର-ଦର୍ଶନ କ'ଣ ମସ୍ତିଷ୍କର ଭୁଲ୍ ? 'ସଂଶୟାତ୍ମା ବିନଶ୍ୟତି'

ମଣି ଭାବୁଛନ୍ତି ଯେ, ସେହି ଶିଖା ସତ୍ୟ ଶିଖା ନୁହେଁ ।

ଠାକୁର ଅନ୍ତର୍ଯ୍ୟାମୀ, କହୁଛନ୍ତି — ''ଚୈତନ୍ୟକୁ ଚିନ୍ତା କଲେ କେହି ଅଚୈତନ୍ୟ ହୁଏ ନାହିଁ । ଶିବନାଥ କହିଥିଲା — ଈଶ୍ୱରଙ୍କୁ ଶହେ ଥରେ ଭାବିଲେ ବେହୋସ୍ ହୋଇଯାଆନ୍ତି । ମୁଁ ତାକୁ କହିଲି — ଚୈତନ୍ୟକୁ ଚିନ୍ତା କଲେ କ'ଣ କେହି ଅଚୈତନ୍ୟ ହୁଏ ?''

ମଣି — ଆଜ୍ଞା, ବୁଝିଛି । ଏହା ତ କୌଣସି ଅନିତ୍ୟ ବିଷୟ ଚିନ୍ତା କରିବା ନୁହେଁ ? ଯେ ନିତ୍ୟ ଚୈତନ୍ୟ ସ୍ୱରୂପ, ତାଙ୍କଠାରେ ମନ ଲଗାଇ ଦେଲେ ମନୁଷ୍ୟ କାହିଁକି ଅଚୈତନ୍ୟ ହେବ ?

ଶ୍ରୀରାମକୃଷ୍ଣ (ପ୍ରସନ୍ନ ହୋଇ) — ଏହିଟି ତାଙ୍କର କୃପା ! ତାଙ୍କର କୃପା ନ ହେଲେ ସନ୍ଦେହଭଞ୍ଜନ ହୁଏ ନାହିଁ ।

''ଆତ୍ମାର ସାକ୍ଷାତ୍କାର ନହେଲେ ସନ୍ଦେହଭଞ୍ଜନ ହୁଏ ନାହିଁ । ତାଙ୍କର କୃପା ହେଲେ ଆଉ ଭୟ ନାହିଁ । ବାପାଙ୍କ ହାତ ଧରି ଗଲେ ପିଲା ବରଂ ପଡ଼ିଯାଇପାରେ; କିନ୍ତୁ ପିଲାର ହାତ ଯଦି ବାପା ଧରନ୍ତି ଆଉ ଭୟ ନାହିଁ । ସେ କୃପା କରି ଯଦି ସନ୍ଦେହଭଞ୍ଜନ କରନ୍ତି ଓ ଦେଖା ଦିଅନ୍ତି, ଆଉ କଷ୍ଟ ନାହିଁ । ତେବେ ତାଙ୍କୁ ପାଇବା ପାଇଁ ଖୁବ୍ ବ୍ୟାକୁଳ ହୋଇ ଡାକି ଡାକି ସାଧନା କରୁ କରୁ ତେବେ କୃପା ହୁଏ । ପୁଅ ବହୁତ ଦୌଡ଼ା ଦୌଡ଼ି କରୁଛି ଦେଖି ମାଆର ଦୟା ହୁଏ । ମା ଲୁଚିଥିଲେ, ଆସି ଦେଖାଦିଏ ।''

ମଣି ଭାବୁଛନ୍ତି — ସେ ଦୌଡ଼ାଦୌଡ଼ି କାହିଁକି କରାନ୍ତି ? ଠାକୁର ସଙ୍ଗେ ସଙ୍ଗେ କହୁଛନ୍ତି, ''ତାଙ୍କର ଇଚ୍ଛା ଯେ କିଛି ଦୌଡ଼ାଦୌଡ଼ି ହେଉ, ତେବେ ଆମୋଦ ହୁଏ । ସେ ଲୀଳାରେ ଏହି ସଂସାର ରଚନା କରିଛନ୍ତି । ଏହାର ନାମ **ମହାମାୟା** । ତେଣୁ ସେହି ଶକ୍ତିରୂପିଣୀ ମାଆଙ୍କର ଶରଣାଗତ ହେବାକୁ ହୁଏ ।

ମାୟାପାଶରେ ବାନ୍ଧି ପକାଇଛନ୍ତି, ଏହି ପାଶ ଛେଦନ କରିପାରିଲେ ତେବେ ଈଶ୍ୱରଦର୍ଶନ ହୋଇପାରେ ।''

**ଆଦ୍ୟାଶକ୍ତି ମହାମାୟା ଓ ଶକ୍ତି–ସାଧନା**

ଶ୍ରୀରାମକୃଷ୍ଣ—ତାଙ୍କର କୃପା ପାଇବାକୁ ହେଲେ ଆଦ୍ୟାଶକ୍ତିରୂପିଣୀ ତାଙ୍କୁ ପ୍ରସନ୍ନ କରିବାକୁ ହୁଏ । ସେ ହିଁ ମହାମାୟା । ଜଗତକୁ ମୁଗ୍ଧ କରି ସୃଷ୍ଟି ସ୍ଥିତି ପ୍ରଳୟ କରୁଛନ୍ତି । ସେ ଅଜ୍ଞାନ କରି ରଖି ଦେଇଛନ୍ତି । ସେହି ମହାମାୟା ଦ୍ୱାର ଛାଡ଼ିଦେଲେ, ତେବେ ଭିତରକୁ ଯାଇପାର । ବାହାରେ ପଡ଼ି ରହିଲେ କେବଳ ବାହାରର ଜିନିଷ ଦେଖାଯାଏ; ସେହି ନିତ୍ୟ ସଚ୍ଚିଦାନନ୍ଦ ପୁରୁଷଙ୍କୁ ଜାଣିହୁଏ ନାହିଁ । ସେଥିପାଇଁ ପୁରାଣରେ କଥା ଅଛି—ଚଣ୍ଡୀରେ—ମଧୁକୈଟଭ[୧] ବଧ ସମୟରେ ବ୍ରହ୍ମାଦି ଦେବତାମାନେ ମହାମାୟାଙ୍କର ସ୍ତବ କରୁଛନ୍ତି ।

**''ଶକ୍ତି ହିଁ ଜଗତର ମୂଳାଧାର** । ସେହି ଆଦ୍ୟାଶକ୍ତି ଭିତରେ ବିଦ୍ୟା ଓ ଅବିଦ୍ୟା ଉଭୟ ଅଛି । ଅବିଦ୍ୟା ମୁଗ୍ଧ କରେ । **ଅବିଦ୍ୟା**—ଯେଉଁଥିରେ କାମିନୀକାଞ୍ଚନ—ମୁଗ୍ଧ କରେ । **ବିଦ୍ୟା**—ଯେଉଁଥିରେ **ଭକ୍ତି, ଦୟା, ଜ୍ଞାନ,** ପ୍ରେମ—ଈଶ୍ୱରଙ୍କ ପଥରେ ନେଇଯାଏ ।

''ସେହି ଅବିଦ୍ୟାକୁ ପ୍ରସନ୍ନ କରିବାକୁ ହେବ । ତେଣୁ ଶକ୍ତିର ପୂଜାପଦ୍ଧତି ।

''ତାଙ୍କୁ ପ୍ରସନ୍ନ କରିବା ପାଇଁ ନାନା ଭାବରେ ପୂଜା—ଦାସୀଭାବ, ବୀରଭାବ, ସନ୍ତାନଭାବ । ବୀରଭାବ—ଅର୍ଥାତ୍ ରମଣ ଦ୍ୱାରା ତାଙ୍କୁ ପ୍ରସନ୍ନ କରିବା ।

''ଶକ୍ତିସାଧନା—ଏସବୁ ଭାରୀ ଉତ୍କଟ ସାଧନା, ଚାଲାକି ନୁହେଁ ।

''ମୁଁ ମାଆଙ୍କର ଦାସୀଭାବରେ, ସଖୀଭାବରେ ଦୁଇ ବର୍ଷ ଥିଲି । ମୋର କିନ୍ତୁ **ସନ୍ତାନଭାବ**—ସ୍ତ୍ରୀଲୋକଙ୍କର ସ୍ତନକୁ ମାତୃସ୍ତନ ବୋଲି ମନେକରେ ।

''ସ୍ତ୍ରୀଲୋକମାନେ ଗୋଟିଏ ଗୋଟିଏ ଶକ୍ତିର ରୂପ । ପଶ୍ଚିମରେ ବିବାହ ସମୟରେ ବର ହାତରେ ଛୁରୀ ଥାଏ, ବଙ୍ଗଳା ଦେଶରେ ଗୁଆକାଟି ଥାଏ—ଅର୍ଥାତ୍ ସେହି ଶକ୍ତିରୂପା କନ୍ୟା ସାହାଯ୍ୟରେ ବର ମାୟାପାଶ ଛେଦନ କରିବ । ଏହିଟି ବୀରଭାବ । ମୁଁ ବୀରଭାବରେ ପୂଜା କରି ନାହିଁ । ମୋର ସନ୍ତାନ ଭାବ ।

''କନ୍ୟା ଶକ୍ତିରୂପା । ବିବାହ ସମୟରେ ଦେଖିନାହଁ—ବର ବୋକାଟି ପରି ପଛରେ ବସିଥାଏ ? କନ୍ୟା କିନ୍ତୁ ନିଃଶଙ୍କ ।''

---

୧. ତ୍ୱଂ ସ୍ୱାହା ତ୍ୱଂ ସ୍ୱଧା ତ୍ୱଂ ହି ବଷଟ୍କାରସ୍ୱରାତ୍ମିକା ।
ସୁଧା ତ୍ୱମକ୍ଷରେ ନିତ୍ୟେ ତ୍ରିଧାମାତ୍ରାତ୍ମିକା ସ୍ଥିତା ॥ —ଚଣ୍ଡୀ, ମଧୁକୈଟଭବଧ

**ଦର୍ଶନ ପରେ ଐଶ୍ୱର୍ଯ୍ୟ ଭୁଲ୍ ହୋଇଯାଏ — ନାନା ଜ୍ଞାନ, ଅପରାବିଦ୍ୟା — Religion and Science — ସାତ୍ତ୍ୱିକ ଓ ରାଜସିକ ଜ୍ଞାନ**

ଶ୍ରୀରାମକୃଷ୍ଣ — ଈଶ୍ୱରଙ୍କୁ ଲାଭ କଲେ ତାଙ୍କର ବାହ୍ୟ ଐଶ୍ୱର୍ଯ୍ୟ, ତାଙ୍କ ଜଗତର ଐଶ୍ୱର୍ଯ୍ୟ ଭୁଲ୍ ହୋଇଯାଏ । ତାଙ୍କୁ ଦେଖିଲେ ତାଙ୍କର ଐଶ୍ୱର୍ଯ୍ୟରେ ମନ ରହେ ନାହିଁ । ଈଶ୍ୱରଙ୍କ ଆନନ୍ଦରେ ମଗ୍ନ ହୋଇ ଭକ୍ତର ଆଉ ହିସାବ ରହେ ନାହିଁ । ନରେନ୍ଦ୍ରଙ୍କୁ ଦେଖିଲେ — 'ତୁମର ନାମ କଅଣ, ତୁମର ଘର କେଉଁଠାରେ' — ଏସବୁ ପ୍ରଶ୍ନ ଦରକାର ହୁଏ ନାହିଁ । ପଚାରିବାର ଅବସର କାହିଁ ? ହନୁମାନଙ୍କୁ ଜଣେ ପଚାରିଲେ, 'ଆଜି କି ତିଥି ?' ହନୁମାନ କହିଲେ, 'ଭାଇ, ମୁଁ ବାର ତିଥି ନକ୍ଷତ୍ର ଏସବୁ କିଛି ଜାଣେ ନାହିଁ; ଏକମାତ୍ର **ରାମଙ୍କୁ** ଚିନ୍ତା କରେ ।'

# ଷଷ୍ଠ ପରିଚ୍ଛେଦ

## (୧)

## ପୂର୍ବକଥା

### ଶ୍ରୀରାମକୃଷ୍ଣଙ୍କର ପ୍ରଥମ ପ୍ରେମୋନ୍ମାଦ କଥା, ୧୮୫୮

(କୃଷ୍ଣକିଶୋର, ଏଁଡ଼େଦାର ସାଧୁ, ହଳଧାରୀ, ଯତୀନ୍ଦ୍ର, ଜୟ ମୁଖାର୍ଜୀ, ରାସମଣି)

ଆଜି ଶ୍ରୀରାମକୃଷ୍ଣ ମହା ଆନନ୍ଦରେ ଅଛନ୍ତି । ଦକ୍ଷିଣେଶ୍ୱର କାଳୀମନ୍ଦିରକୁ ନରେନ୍ଦ୍ର ଆସିଛନ୍ତି । ଆଉ ମଧ୍ୟ କେତେ ଜଣ ଅନ୍ତରଙ୍ଗ ଅଛନ୍ତି । ନରେନ୍ଦ୍ର ମନ୍ଦିରକୁ ଆସି ସ୍ନାନ କରି ପ୍ରସାଦ ପାଇଛନ୍ତି ।

ଆଜି ଆଶ୍ୱିନ ଶୁକ୍ଳଚତୁର୍ଥୀ ତିଥି, ୧୬ ଅକ୍ଟୋବର ୧୮୮୨, ସୋମବାର । ଅଗାମୀ ଗୁରୁବାର ସପ୍ତମୀ ତିଥିରେ ଶ୍ରୀଶ୍ରୀଦୁର୍ଗାପୂଜା ।

ଶ୍ରୀରାମକୃଷ୍ଣଙ୍କ ପାଖରେ ରାଖାଲ, ରାମଲାଲ ଓ ହାଜରା ଅଛନ୍ତି । ନରେନ୍ଦ୍ରଙ୍କ ସଙ୍ଗରେ ଆଉ ଜଣେ ଦୁଇଜଣ ବ୍ରହ୍ମଜ୍ଞାନୀ ଯୁବକ ଆସିଛନ୍ତି । ଆଜି ମାଷ୍ଟର ମଧ୍ୟ ଆସିଛନ୍ତି ।

ନରେନ୍ଦ୍ର ଠାକୁରଙ୍କ ପାଖରେ ଭୋଜନ କଲେ । ଆହାରାନ୍ତେ ଠାକୁର ଶ୍ରୀରାମକୃଷ୍ଣ ତାଙ୍କ ଘରର ଚଟାଣରେ ବିଛଣା କରି ଦେବାକୁ କହିଲେ, ନରେନ୍ଦ୍ରାଦି ଭକ୍ତମାନେ ବିଶେଷତଃ ନରେନ୍ଦ୍ର—ବିଶ୍ରାମ କରିବେ । ସପ ଉପରେ ଶେଯ ଓ ତକିଆ ପଡ଼ିଛି । ଠାକୁର ମଧ୍ୟ ବାଳକ ପରି ନରେନ୍ଦ୍ରଙ୍କ ପାଖରେ ବସିଲେ । ଭକ୍ତମାନଙ୍କ ସହିତ ବିଶେଷତଃ ନରେନ୍ଦ୍ରଙ୍କ ସହିତ, ଆଉ ତାଙ୍କ ଆଡ଼କୁ ମୁହଁ କରି, ହସ ହସ ମୁହଁରେ ମହା ଆନନ୍ଦରେ କଥା କହୁଛନ୍ତି ।

ଶ୍ରୀରାମକୃଷ୍ଣ ନରେନ୍ଦ୍ରାଦି ଭକ୍ତଙ୍କ ପ୍ରତି—''ମୋର ଏହି ଅବସ୍ଥା ପରେ କେବଳ ଈଶ୍ୱରଙ୍କ କଥା ଶୁଣିବା ପାଇଁ ବ୍ୟାକୁଳତା ହେଉଥିଲା । କେଉଁଠାରେ ଭାଗବତ, କେଉଁଠାରେ ଅଧ୍ୟାତ୍ମ, କେଉଁଠାରେ ମହାଭାରତ ଖୋଜି ବୁଲୁଥିଲି । ଏଁଡ଼େଦାର କୃଷ୍ଣକିଶୋର ପାଖକୁ ଅଧ୍ୟାତ୍ମ ଶୁଣିବାକୁ ଯାଉଥିଲି ।

''କୃଷ୍ଣକିଶୋରର କି ବିଶ୍ୱାସ ! ବୃନ୍ଦାବନକୁ ଯାଇଥିଲା; ସେଠାରେ ଦିନେ ଶୋଷ ହେଲା । କୂଅ ପାଖକୁ ଯାଇ ଦେଖେ, ଜଣେ ଠିଆ ହୋଇ ରହିଛି । ପଚାରିବାରୁ ସେ କହିଲା 'ମୁଁ ନୀଚ ଜାତି, ଆପଣ ବ୍ରାହ୍ମଣ, କିପରି ଆପଣଙ୍କୁ ପାଣି ଦେବି ?' କୃଷ୍ଣକିଶୋର କହିଲା—ତୁ କହ, 'ଶିବ' । 'ଶିବ' 'ଶିବ' କହିବାମାତ୍ରେ ତୁ ଶୁଦ୍ଧ ହୋଇଯିବୁ । ସେ 'ଶିବ' 'ଶିବ' କହି ପାଣି ଗଡ଼ାଇ ଦେଲା । ଏପରି ଆଚାରୀ ବ୍ରାହ୍ମଣ ! ସେହି ପାଣି ପିଇଲା । କି ବିଶ୍ୱାସ !

''ଏଁଡ଼େଦାର ଘାଟକୁ ଜଣେ ସାଧୁ ଆସିଥିଲେ । ଆମେମାନେ ଦିନେ ଦେଖିବାକୁ ଯିବୁ ବୋଲି ଭାବିଲୁ । ମୁଁ କାଳୀମନ୍ଦିରରେ ହଳଧାରୀଙ୍କୁ କହିଲି— କୃଷ୍ଣକିଶୋର ଆଉ ମୁଁ ସାଧୁ ଦେଖିବାକୁ ଯିବୁ । ତୁମେ ଯିବ ? ହଳଧାରୀ କହିଲା—ଗୋଟାଏ ମାଟିର ପିଞ୍ଜରା ଦେଖିବାକୁ ଯାଇ କଅଣ ହେବ ? ହଳଧାରୀ ଗୀତା, ବେଦାନ୍ତ ପଢ଼େ କି ନା ! ତେଣୁ ସାଧୁଙ୍କୁ କହିଲା—'ମାଟିର ପିଞ୍ଜରା' । କୃଷ୍ଣକିଶୋରକୁ ଯାଇ ମୁଁ ଏହି କଥା କହିଲି । ସେ ଭାରୀ ରାଗିଗଲା । ଆଉ କହିଲା, 'କଅଣ ! ହଳଧାରୀ ଏପରି କଥା କହିଛି, ଯେ ଈଶ୍ୱର ଚିନ୍ତା କରନ୍ତି, ଯେ ରାମ ଚିନ୍ତା କରନ୍ତି, ଆଉ ସେଥିପାଇଁ ସର୍ବତ୍ୟାଗ କରିଛନ୍ତି, ତାଙ୍କ ଦେହ ମାଟିର ପିଞ୍ଜରା ! ସେ ଜାଣେ ନାହିଁ ଯେ, ଭକ୍ତର ଦେହ ଚିନ୍ମୟ !' ଏତେ ରାଗ— କାଳୀମନ୍ଦିରର ବଗିଚାକୁ ଫୁଲ ତୋଳିବାକୁ ଆସେ, ହଳଧାରୀ ସଙ୍ଗରେ ଦେଖା ହେଲେ ମୁହଁ ଫେରାଇନିଏ ! କଥା କହେ ନାହିଁ !

''ମୋତେ କହିଥିଲା । 'ପଇତାଟା ଫିଙ୍ଗିଦେଲ କାହିଁକି ?' ଯେତେବେଳେ ମୋର ଏହି ଅବସ୍ଥା ହେଲା ସେତେବେଳେ ଆଶ୍ୱିନ ଝଡ଼ ପରି କଅଣ ଗୋଟାଏ ଆସି କେଉଁଠାକୁ କଅଣ ଉଡ଼ାଇ ନେଇଗଲା । ଆଗର ଚିହ୍ନ କିଛି ରହିଲା ନାହିଁ । ହୋସ୍ ନାହିଁ । ଲୁଗା ପଡ଼ିଯାଇଛି, ସେତେବେଳେ ପଇତା କିପରି ରହିବ ? ମୁଁ କହିଲି, 'ତୁମର ଥରେ ଉନ୍ମାଦ ହେଲେ, ତୁମେ ବୁଝିପାରିବ ।'

''ତାହା ମଧ୍ୟ ହେଲା । ତା'ର ନିଜର ଉନ୍ମାଦ ହେଲା । ସେତେବେଳେ ସେ କେବଳ 'ଓଁ ଓଁ' କହେ ଆଉ ଗୋଟିଏ ଘରେ ଚୁପ୍ କରି ବସିଥାଏ । ସମସ୍ତେ ମୁଣ୍ଡ ଗରମ ହୋଇଛି ବୋଲି କବିରାଜ ଡାକିଲେ । ନାଟାଗଡ଼ର ରାମ କବିରାଜ ଆସିଲା । କୃଷ୍ଣ କିଶୋର ତାକୁ କହିଲା, 'ଆହେ, ମୋର ରୋଗ ଭଲ କର, କିନ୍ତୁ ଦେଖ, ଯେପରି ମୋର ଓଁ କାରଟି ଭଲ ନ କର ।' (ସମସ୍ତଙ୍କର ହାସ୍ୟ)

''ଦିନେ ଯାଇ ଦେଖେ, ବସି ଭାବୁଛି । ପଚାରିଲି, 'କଅଣ ହୋଇଛି ?' କହିଲା, 'ଟ୍ୟାକ୍ସବାଲା ଆସିଥିଲା, ତେଣୁ ଭାବୁଛି । କହିଛନ୍ତି—ଟଙ୍କା ନ ଦେଲେ କଂସାବାସନ ବିକି ନେବେ ।' ମୁଁ କହିଲି, 'କଅଣ ହେବ ଭାବି ? କଂସାବାସନ ନେଲେ ନେଇଯିବେ । ବାନ୍ଧି ନେଇଯିବେ, ତୁମକୁ ତ ନେଇ ଯାଇପାରିବେ ନାହିଁ ! ତୁମେ ତ 'ଖ' ହେ !' (ନରେନ୍ଦ୍ରାଦିଙ୍କର ହାସ୍ୟ) । କୃଷ୍ଣକିଶୋର କହେ, 'ମୁଁ ଆକାଶବତ୍ ।' ଅଧ୍ୟାତ୍ମ ପଢ଼େ କି ନା ! ମଝିରେ ମଝିରେ 'ତୁମେ ଖ' ବୋଲି ଥଟ୍ଟା କରେ । ହସି କହିଲି—ତୁମେ 'ଖ', ଟ୍ୟାକ୍ସ ତ ତୁମକୁ ଟାଣିପାରିବ ନାହିଁ !

''ଉନ୍ମାଦ ଅବସ୍ଥାରେ ଲୋକଙ୍କୁ ଠିକ୍ ଠିକ୍ କଥା, ହକ୍ କଥା କହୁଥିଲି । କାହାରିକୁ ମାନୁ ନ ଥିଲି । ବଡ଼ ଲୋକ ଦେଖିଲେ ଭୟ ହେଉ ନ ଥିଲା ।

''ଯଦୁ ମଲ୍ଲିକଙ୍କ ଉଦ୍ୟାନକୁ ଯତୀନ୍ଦ୍ର ଆସିଥିଲା । ମୁଁ ମଧ୍ୟ ସେଠାରେ ଥିଲି । ମୁଁ ତାକୁ କହିଲି—କର୍ତ୍ତବ୍ୟ କଅଣ ? ଈଶ୍ୱରଚିନ୍ତା କରିବା ଆମମାନଙ୍କର

କ'ଣ କର୍ତ୍ତବ୍ୟ ନୁହେଁ ? ଯତୀନ୍ଦ୍ର କହିଲା—ଆମେମାନେ ସଂସାରୀ ଲୋକ । ଆମମାନଙ୍କର କଅଣ ଆଉ ମୁକ୍ତି ଅଛି ! ରାଜା ଯୁଧିଷ୍ଠିର ତ ନରକ ଦର୍ଶନ କରିଥିଲେ ! ସେତେବେଳେ ମୋର ଖୁବ୍ ରାଗ ହେଲା । କହିଲି—ତୁମେ କିପରି ଲୋକ ହେ ! ଯୁଧିଷ୍ଠିରଙ୍କର କେବଳ ନରକ-ଦର୍ଶନ ମନେ ରଖିଛ ? ଯୁଧିଷ୍ଠିରଙ୍କର ସତ୍ୟ କଥା, କ୍ଷମା, ଧୈର୍ଯ୍ୟ, ବିବେକ, ବୈରାଗ୍ୟ, ଈଶ୍ୱରଙ୍କଠାରେ ଭକ୍ତି ଏସବୁ କିଛି ମନେପଡ଼େ ନାହିଁ ! ଆଉ ମଧ୍ୟ କେତେ କଅଣ କହିବାକୁ ଯାଉଥିଲି । ହୃଦୁ ମୋର ପାଟିକୁ ଚାପି ଧରିଲା । ଯତୀନ୍ଦ୍ର ଟିକିଏ ପରେ 'ମୋର ଟିକିଏ କାମ ଅଛି' କହି ଚାଲିଗଲା ।

''ଅନେକଦିନ ପରେ କପ୍ତାନ୍‌ଙ୍କ ସଙ୍ଗରେ ସୌରୀନ୍ଦ୍ର ଠାକୁର ଘରକୁ ଯାଇଥିଲି । ତାକୁ ଦେଖି କହିଲି, 'ତୁମକୁ ରାଜା ଫାଜା କହିପାରିବି ନାହିଁ; କାରଣ, ତାହା ମିଥ୍ୟା କଥା ହେବ ।' ମୋ ସାଙ୍ଗରେ କିଛି ସମୟ କଥାବାର୍ତ୍ତା କଲା । ତା'ପରେ ଦେଖିଲି, ସାହେବ-ଟାହେବ ଯିବା ଆସିବା କଲେ । ରଜୋଗୁଣୀ ଲୋକ, ନାନା କାର୍ଯ୍ୟରେ ବ୍ୟସ୍ତ । ଯତୀନ୍ଦ୍ର ପାଖକୁ ଖବର ପଠାଗଲା । ସେ କହି ପଠାଇଲା—ମୋ ଗଳାରେ ଦରଜ ହୋଇଛି ।

''ସେହି ଉନ୍ମାଦ ଅବସ୍ଥାରେ ଆଉଦିନେ ବରାହନଗର ଘାଟରେ ଦେଖିଲି ଜୟ ମୁଖାର୍ଜୀ ଜପ କରୁଛି, କିନ୍ତୁ ଅନ୍ୟମନସ୍କ । ସେତେବେଳେ ପାଖକୁ ଯାଇ ଦୁଇ ଚାପୁଡ଼ା ଦେଲି ।

''ଦିନେ ମନ୍ଦିରକୁ ରାମମଣି ଆସିଥାଏ । କାଳୀଘରକୁ ଆସିଲା । ପୂଜାବେଳେ ଆସେ ଓ ଗୋଟାଏ ଦୁଇଟା ଗୀତ ଗାଇବାକୁ କହେ । ଗୀତ ଗାଉଛି, ଦେଖେ ଯେ ସେ ଅନ୍ୟମନସ୍କା ହୋଇ ଫୁଲ ବାଛୁଛି । ସଙ୍ଗେ ସଙ୍ଗେ ଦୁଇ ଚାପୁଡ଼ା । ସେତେବେଳେ ତ୍ରସ୍ତ ବ୍ୟସ୍ତ ହୋଇ ହାତ ଯୋଡ଼ି ରହିଲା ।

''ହଳଧାରୀକୁ କହିଲି, ଭାଇ—ଏ କି ସ୍ୱଭାବ ହେଲା ! କ'ଣ ଉପାୟ କରିବି ! ତା'ପରେ ମାଆଙ୍କୁ ଡାକି ଡାକି ସେ ସ୍ୱଭାବ ଗଲା ।

**ମଥୁରଙ୍କ ସଙ୍ଗରେ ତୀର୍ଥ, ୧୮୬୮—**

**କାଶୀରେ ବିଷୟକଥା ଶ୍ରବଣରେ ଠାକୁରଙ୍କର କ୍ରନ୍ଦନ**

''ଏହି ଅବସ୍ଥାରେ ଈଶ୍ୱରଙ୍କର କଥା ବ୍ୟତୀତ ଅନ୍ୟ କିଛି ଭଲ ଲାଗେ ନାହିଁ । ବିଷୟ କଥା ହେଉଛି ଶୁଣିଲେ ବସି ବସି କାନ୍ଦେ । ମଥୁରବାବୁ ଯେତେବେଳେ ସଙ୍ଗରେ ତୀର୍ଥକୁ ନେଇଥିଲା, ସେତେବେଳେ କାଶୀରେ ରାଜାବାବୁଙ୍କ ଘରେ କିଛିଦିନ ଆମେମାନେ ଥିଲୁ । ମଥୁରବାବୁ ସଙ୍ଗରେ ବୈଠକଖାନାରେ ବସିଛି, ରାଜାବାବୁମାନେ ମଧ୍ୟ ବସିଥାନ୍ତି । ଦେଖେ, ସେମାନେ ବିଷୟର କଥା କହୁଛନ୍ତି—'ଏତେ ଟଙ୍କା କ୍ଷତି ହୋଇଛି'—ଏହିସବୁ କଥା । ମୁଁ କାନ୍ଦିବାକୁ ଲାଗିଲି ମା' କେଉଁଠାକୁ ଆଣିଲ ! ମୁଁ ଯେ ରାସମଣିଙ୍କ ମନ୍ଦିରରେ ଖୁବ୍ ଭଲ ଥିଲି ।

ତୀର୍ଥ କରିବାକୁ ଆସି ମଧ୍ୟ ସେହି କାମିନୀକାଞ୍ଚନର କଥା ! କିନ୍ତୁ ସେଠାରେ (ଦକ୍ଷିଣେଶ୍ୱରରେ) ତ ବିଷୟର କଥା ଶୁଣିବାକୁ ପଡ଼େ ନାହିଁ !''

ଠାକୁର ଭକ୍ତମାନଙ୍କୁ ବିଶେଷତଃ ନରେନ୍ଦ୍ରଙ୍କୁ ଟିକିଏ ବିଶ୍ରାମ ନେବାକୁ କହିଲେ, ନିଜେ ମଧ୍ୟ ଛୋଟ ଖଟଟିରେ ବିଶ୍ରାମ ନେବାକୁ ଗଲେ ।

## (୨)

## କୀର୍ତ୍ତନାନନ୍ଦରେ ନରେନ୍ଦ୍ର ପ୍ରଭୃତିଙ୍କ ସଙ୍ଗେ

## ନରେନ୍ଦ୍ରଙ୍କୁ ପ୍ରେମାଲିଙ୍ଗନ

ଅପରାହ୍ଣ ହେଲା । ନରେନ୍ଦ୍ର ଗୀତ ଗାଉଛନ୍ତି ! ରାଖାଲ, ଲାଟୁ, ମାଷ୍ଟର, ନରେନ୍ଦ୍ରର ବ୍ରାହ୍ମବନ୍ଧୁ, ପ୍ରିୟ, ହାଜରା — ସମସ୍ତେ ଅଛନ୍ତି ।

ନରେନ୍ଦ୍ର କୀର୍ତ୍ତନ ଗାଇଲେ, ଖୋଳ ବାଜିଲା —

''ଚିନ୍ତୟ ମମ ମାନସ ହରି ଚିଦ୍‌ଘନ ନିରଞ୍ଜନ ।...''

ନରେନ୍ଦ୍ର ପୁଣି ଗାଇଲେ —

''ସତ୍ୟ ଶିବ ସୁନ୍ଦର ରୂପ ଭାତି ହୃଦମନ୍ଦିରେ ।''

ପୁନଶ୍ଚ ଗାଇଲେ —

''ଆନନ୍ଦବଦନେ ବଲ ମଧୁର ବ୍ରହ୍ମ ନାମ ।<br>ନାମେ ଉଥଲିବେ ସୁଧାସିନ୍ଧୁ ପ୍ରିୟ ଅବିରାମ ।...''

ଖୋଳ କରତାଳ ନେଇ କୀର୍ତ୍ତନ ଚାଲିଛି । ନରେନ୍ଦ୍ରାଦି ଭକ୍ତଗଣ ଠାକୁରଙ୍କୁ ଘେରି କୀର୍ତ୍ତନ କରୁଛନ୍ତି । କେତେବେଳେ ଗାଉଛନ୍ତି — ''ପ୍ରେମାନନ୍ଦ ରସେ ହଓରେ ଚିରମଗନ !'' ପୁଣି କେତେବେଳେ ଗାଉଛନ୍ତି — ''ସତ୍ୟଂ ଶିବ ସୁନ୍ଦର-ରୂପ ଭାତି ହୃଦମନ୍ଦିରେ ।''

ଅବଶେଷରେ ନିଜେ ନରେନ୍ଦ୍ର ଖୋଳ ଧରିଛନ୍ତି ଓ ମତ୍ତ ହୋଇ ଠାକୁରଙ୍କ ସଙ୍ଗରେ ଗାଉଛନ୍ତି — ''ଆନନ୍ଦ-ବଦନେ ବଲ ମଧୁର ହରିନାମ ।''

କୀର୍ତ୍ତନାନ୍ତେ ନରେନ୍ଦ୍ରଙ୍କୁ ଠାକୁର ବହୁ ସମୟ ଧରି ଥରକୁ ଥର ଆଲିଙ୍ଗନ କରୁଛନ୍ତି । କହୁଛନ୍ତି, ''ତୁମେ ଆଜି ମୋତେ ଯାହା ଆନନ୍ଦ ଦେଲ !''

ଆଜି ଠାକୁରଙ୍କର ହୃଦୟସ୍ଥ ପ୍ରେମନିର୍ଝର ଉଚ୍ଛ୍ୱସିତ ହୋଇଛି । ରାତ୍ରି ପ୍ରାୟ ଆଠଟା, ତଥାପି ପ୍ରେମୋନ୍ମତ୍ତ ହୋଇ ଏକାକୀ ବାରଣ୍ଡାରେ ବିଚରଣ କରୁଛନ୍ତି । ଉତ୍ତରର ଲମ୍ବା ବାରଣ୍ଡାକୁ ଆସି ଦ୍ରୁତ ପଦରେ ବାରଣ୍ଡାରେ ଗୋଟିଏ ପାଖରୁ ଅନ୍ୟ ପାଖକୁ ପଦ-ଚାରଣ କରୁଛନ୍ତି । ମଝିରେ ମଝିରେ ମାଆଙ୍କ ସଙ୍ଗରେ କ'ଣ କଥା କହୁଛନ୍ତି । ହଠାତ୍ ଉନ୍ମତ୍ତ ପରି କହି ଉଠିଲେ — ''ତୁ ମୋର କଣ କରିବୁ ?'' ମାଆ ଯାହାର ସହାୟ, ତା'ର ମାୟା କଅଣ କରିପାରେ ?'' — ଏହି କଥା କଅଣ କହୁଛନ୍ତି ?

ନରେନ୍ଦ୍ର, ମାଷ୍ଟର, ପ୍ରିୟ ରାତିରେ ରହିବେ । ନରେନ୍ଦ୍ର ରହିବେ; ଠାକୁରଙ୍କର ଆନନ୍ଦର ସୀମା ନାହିଁ । ରାତ୍ରିକାଳୀନ ଆହାର ପ୍ରସ୍ତୁତ । ଶ୍ରୀଶ୍ରୀମା ନହବତରେ ଅଛନ୍ତି । ରୁଟି, ବୁଟଡ଼ାଲି ଇତ୍ୟାଦି ପ୍ରସ୍ତୁତ କରି ଭକ୍ତମାନେ ଖାଇବେ ବୋଲି ପଠାଇଛନ୍ତି । ଭକ୍ତମାନେ ମଝିରେ ମଝିରେ ରହନ୍ତି, ସୁରେନ୍ଦ୍ର ମାସକୁ ମାସ କିଛି ଖର୍ଚ୍ଚ ଦିଅନ୍ତି ।

ଆହାର ପ୍ରସ୍ତୁତ । ଘରର ଦକ୍ଷିଣ-ପୂର୍ବ ବାରଣ୍ଡାରେ ଜାଗା ହେଉଛି ।

**ନରେନ୍ଦ୍ର ପ୍ରଭୃତିଙ୍କୁ ସ୍କୁଲ ଓ ଅନ୍ୟାନ୍ୟ ବିଷୟକଥା କହିବାକୁ ନିଷେଧ**

ଘରର ପୂର୍ବଦିଗରେ ଦରଜା ପାଖରେ ନରେନ୍ଦ୍ରାଦି ଗଳ୍ପ କରୁଛନ୍ତି ।

ନରେନ୍ଦ୍ର—ଆଜିକାଲି ଯୁବକମାନଙ୍କୁ କିମିତି କ'ଣ ଦେଖୁଛନ୍ତି ?

ମାଷ୍ଟର—ମନ୍ଦ ନୁହନ୍ତି, ତେବେ ଧର୍ମୋପଦେଶ କିଛି ହୁଏ ନାହିଁ ।

ନରେନ୍ଦ୍ର—ମୁଁ ନିଜେ ଯାହା ଦେଖୁଛି, ସେଥିରୁ ଜଣାଯାଉଛି, ସବୁ ଖରାପ ହେଉଛନ୍ତି । ଚୁରୁଟ୍ ପିଇବା, ଥଟ୍ଟାପରିହାସ, ବାବୁଗିରି, ସ୍କୁଲ୍‌ରୁ ପଳାଇବା, ଏସବୁ ସର୍ବଦା ଦେଖାଯାଏ ! ଏପରି କି, ଦେଖୁଛି ଯେ କୁସ୍ଥାନକୁ ମଧ୍ୟ ଯାଆନ୍ତି ।

ମାଷ୍ଟର—ପିଲାବେଳେ ଯେତେବେଳେ ଆମେମାନେ ପଢୁଥିଲୁ, ସେତେବେଳେ ଏପରି ଶୁଣିନାହୁଁ କି ଦେଖିନାହୁଁ ।

ନରେନ୍ଦ୍ର—ଆପଣ ବୋଧହୁଏ ସେତେ ମିଳାମିଶା କରୁ ନ ଥିଲେ । ଏପରିକି, ଦେଖୁଛି ଯେ, ଖରାପ ଲୋକମାନେ ସେମାନଙ୍କୁ ନାମ ଧରି ଡାକନ୍ତି, କେଜାଣି କେବେ କଥାବାର୍ତ୍ତା କରିଛନ୍ତି ନା କଅଣ ।

ମାଷ୍ଟର—କି ଆଶ୍ଚର୍ଯ୍ୟ !

ନରେନ୍ଦ୍ର—ମୁଁ ଜାଣେ, ଅନେକଙ୍କର ଚରିତ୍ର ଖରାପ ହୋଇଯାଇଛି । ସ୍କୁଲର କର୍ତ୍ତୃପକ୍ଷମାନେ ଓ ପିଲାମାନଙ୍କର ଅଭିଭାବକମାନେ ଏସବୁ ବିଷୟ ଯଦି ଦେଖନ୍ତେ, ତାହାହେଲେ ଭଲ ହୁଅନ୍ତା ।

**ଈଶ୍ୱରଙ୍କ କଥା ହିଁ କଥା—"ଆତ୍ମାନଂ ବା ବିଜାନୀଥ ଅନ୍ୟାଂ ବାଚଂ ବିମୁଞ୍ଚଥ"**

ଏହପରି କଥାବାର୍ତ୍ତା ଚାଲିଛି, ଠାକୁର ଶ୍ରୀରାମକୃଷ୍ଣ ଘର ଭିତରୁ ସେମାନଙ୍କ ପାଖକୁ ଆସିଲେ ଓ ହସି ହସି କହିଲେ, ''କଅଣ ହେ, ତୁମମାନଙ୍କର କ'ଣ କଥା ପଡ଼ିଛି ?' ନରେନ୍ଦ୍ର କହିଲେ, ''ଏହାଙ୍କ ସହିତ ସ୍କୁଲର କଥାବାର୍ତ୍ତା ହେଉଥିଲା । ପିଲାମାନଙ୍କର ଚରିତ୍ର ଭଲ ରହୁନାହିଁ ।'' ଠାକୁର ଟିକିଏ ଏହି ସମସ୍ତ କଥା ଶୁଣି ମାଷ୍ଟରଙ୍କୁ ଗମ୍ଭୀର ଭାବରେ କହୁଛନ୍ତି, ''ଏସବୁ କଥାବାର୍ତ୍ତା ଭଲ ନୁହେଁ । ଈଶ୍ୱରଙ୍କ କଥା ବ୍ୟତୀତ ଅନ୍ୟ କଥା ଭଲ ନୁହେଁ । ତୁମେ ଏମାନଙ୍କ ଅପେକ୍ଷା ବୟସରେ ବଡ଼; ବୁଦ୍ଧି ହୋଇଛି; ତୁମର ଏସବୁ କଥା ଉଠାଇବାକୁ ଦେବା ଉଚିତ ନ ଥିଲା ।'' (ନରେନ୍ଦ୍ରଙ୍କର ବୟସ ସେତେବେଳେ ୧୯/୨୦, ମାଷ୍ଟରଙ୍କ ୨୭/୨୮) ।

ମାଷ୍ଟର ଅପ୍ରସ୍ତୁତ । ନରେନ୍ଦ୍ରାଦି ଭକ୍ତଗଣ ମଧ୍ୟ ଚୁପ୍ କରି ରହିଲେ ।

ଠାକୁର ଶ୍ରୀରାମକୃଷ୍ଣ ଠିଆ ହୋଇ ହସି ହସି ନରେନ୍ଦ୍ରାଦି ଭକ୍ତଗଣଙ୍କୁ ଖୁଆଉଛନ୍ତି । ଠାକୁରଙ୍କର ଆଜି ମହା ଆନନ୍ଦ ।

ନରେନ୍ଦ୍ରାଦି ଭକ୍ତମାନେ ଆହାର କରି ଠାକୁରଙ୍କ ଘରର ଚଟାଣରେ ବସି ବିଶ୍ରାମ କରୁଛନ୍ତି ଓ ଠାକୁରଙ୍କ ସଙ୍ଗରେ ଗପ କରୁଛନ୍ତି । ଆନନ୍ଦର ହାଟ ବସିଛି । କଥା କହୁ କହୁ ନରେନ୍ଦ୍ରଙ୍କୁ ଠାକୁର କହୁଛନ୍ତି, ''ଚିଦାକାଶେ ହଲ ପୂର୍ଣ୍ଣ ପ୍ରେମଚନ୍ଦ୍ରୋଦୟ ହେ—ଏହି ଗୀତଟି ଥରେ ଗାଆ ନା !''

ନରେନ୍ଦ୍ର ଗାଇବାକୁ ଆରମ୍ଭ କଲେ । ସଙ୍ଗେ ସଙ୍ଗେ ଅନ୍ୟଭକ୍ତମାନେ ଖୋଳ କରତାଳ ବଜାଇଲେ—

''ଚିଦାକାଶେ ହଲ ପୂର୍ଣ୍ଣ ପ୍ରେମଚନ୍ଦ୍ରୋଦୟ ହେ ।...''

କୀର୍ତ୍ତନ କରୁ କରୁ ଠାକୁର ଶ୍ରୀରାମକୃଷ୍ଣ ନୃତ୍ୟ କରୁଛନ୍ତି । ଭକ୍ତମାନେ ମଧ୍ୟ ତାଙ୍କୁ ଘେରି ନୃତ୍ୟ କରୁଛନ୍ତି । କୀର୍ତ୍ତନାନ୍ତେ ଠାକୁର ଉତ୍ତର-ପୂର୍ବ ବାରଣ୍ଡାରେ ବୁଲୁଛନ୍ତି । ହାଜରା ମହାଶୟ ବାରଣ୍ଡାରେ ଉତ୍ତରାଂଶରେ ବସିଛନ୍ତି । ଠାକୁର ସେହିଠାକୁ ଯାଇ ବସିଲେ; ମାଷ୍ଟର ସେଠାରେ ବସିଛନ୍ତି ଓ ହାଜରାଙ୍କ ସଙ୍ଗେ କଥା କହୁଛନ୍ତି । ଠାକୁର ଜଣେ ଭକ୍ତଙ୍କୁ ପଚାରିଲେ ''ତୁମେ ସ୍ୱପ୍ନ-ଫ୍ୱପ୍ନ ଦେଖ ?''

ଭକ୍ତ—ମୁଁ ଗୋଟିଏ ଆଶ୍ଚର୍ଯ୍ୟ ସ୍ୱପ୍ନ ଦେଖିଛି—ଏହି ଜଗତ୍ ଜଳମୟ । ଅନନ୍ତ ଜଳରାଶି ! କେତେ ଖଣ୍ଡ ନୌକା ଭାସୁଥିଲା; ହଠାତ୍ ଜଳୋଚ୍ଛ୍ୱାସରେ ବୁଡ଼ିଗଲା । ମୁଁ ଆଉ କେତେ ଜଣ ଲୋକ ଜାହାଜରେ ଉଠିଛୁ; ଏପରି ସମୟରେ ସେହି ଅକୂଳ ସମୁଦ୍ର ଉପରେ ଦେଇ ଜଣେ ବ୍ରାହ୍ମଣ ଚାଲି ଯାଉଛନ୍ତି । ମୁଁ ପଚାରିଲି—ଆପଣ କିପରି ଯାଉଛନ୍ତି ? ବ୍ରାହ୍ମଣଟି ଟିକିଏ ହସି କହିଲେ—ଏଠାରେ କୌଣସି କଷ୍ଟ ନାହିଁ; ପାଣି ତଳେ ବରାବର ପୋଲ ଅଛି । ପଚାରିଲି—ଆପଣ କେଉଁଠାକୁ ଯାଉଛନ୍ତି ? ସେ କହିଲେ—ଭବାନୀପୁର ଯାଉଛି । ମୁଁ କହିଲି—ଟିକିଏ ଠିଆ ହୁଅନ୍ତୁ, ମୁଁ ମଧ୍ୟ ଆପଣଙ୍କ ସଙ୍ଗରେ ଯିବି ।

ଶ୍ରୀରାମକୃଷ୍ଣ—ଏକଥା ଶୁଣି ମୋର ରୋମାଞ୍ଚ ହେଉଛି ।

ଭକ୍ତ—ବ୍ରାହ୍ମଣ ଜଣକ କହିଲେ, ମୁଁ ବର୍ତ୍ତମାନ ଖୁବ୍ ତରତରରେ ଅଛି, ତୁମର ଓହ୍ଲାଇବାକୁ ଡେରି ହେବ । ମୁଁ ଯାଉଛି, ଏହି ପଥ ଦେଖି ରଖ, ପଛରେ ତୁମେ ଆସିବ ।

ଶ୍ରୀରାମକୃଷ୍ଣ—ମୋର ରୋମାଞ୍ଚ ହେଉଛି, ତୁମେ ମନ୍ତ୍ର ନିଅ ।

ରାତି ଏଗାରଟା ହୋଇଛି । ନରେନ୍ଦ୍ରାଦି ଭକ୍ତଗଣ ଠାକୁରଙ୍କ ଘରେ ତଳେ ବିଛଣା କରି ଶୟନ କଲେ ।

(୩)

ନିଦ୍ରାଭଙ୍ଗ ପରେ ଭକ୍ତମାନେ କେହି କେହି ଦେଖୁଛନ୍ତି ଯେ, ପ୍ରଭାତ ହୋଇଛି । ୧୭ ଅକ୍ଟୋବର ୧୮୮୨ । ଶ୍ରୀରାମକୃଷ୍ଣ ବାଳକ ପରି ଦିଗମ୍ବର, ଠାକୁରମାନଙ୍କର ନାମ କରି କରି ଘରେ ବୁଲୁଛନ୍ତି । କେତେବେଳେ ଗଙ୍ଗାଦର୍ଶନ, କେତେବେଳେ ଠାକୁରମାନଙ୍କ ପାଖକୁ ଯାଇ ପ୍ରଣାମ, କେତେବେଳେ ବା ମଧୁର ସ୍ୱରରେ ନାମ-କୀର୍ତ୍ତନ । କେତେବେଳେ କହୁଛନ୍ତି—**"ବେଦ, ପୁରାଣ, ତନ୍ତ୍ର; ଗୀତା, ଗାୟତ୍ରୀ; ଭାଗବତ-ଭକ୍ତ-ଭଗବାନ ।"** ଗୀତାକୁ ଉଦ୍ଦେଶ୍ୟ କରି ଅନେକ ଥର କହୁଛନ୍ତି—ତ୍ୟାଗୀ, ତ୍ୟାଗୀ, ତ୍ୟାଗୀ, ତ୍ୟାଗୀ । କେତେବେଳେ ବା—ତୁମେ ହିଁ ବ୍ରହ୍ମ, ତୁମେ ହିଁ ଶକ୍ତି; ତୁମେ ହିଁ ପୁରୁଷ, ତୁମେ ହିଁ ପ୍ରକୃତି; ତୁମେ ହିଁ ବିରାଟ, ତୁମେ ହିଁ ସ୍ୱରାଟ; ତୁମେ ହିଁ ନିତ୍ୟ, ତୁମେ ହିଁ ଲୀଳାମୟୀ, ତୁମେ ହିଁ ଚତୁର୍ବିଂଶତି ତତ୍ତ୍ୱ !"

ଏଣେ କାଳୀମନ୍ଦିରରେ ଓ ରାଧାକାନ୍ତଙ୍କ ମନ୍ଦିରରେ ମଙ୍ଗଳଆଳତି ହେଉଛି ଓ ଶଙ୍ଖଘଣ୍ଟାଧ୍ୱନି ସହିତ ପ୍ରଭାତୀ ରାଗର ଲହରୀ ଉଠାଇ ନହବତ ବାଜୁଛି ।

ନରେନ୍ଦ୍ରାଦି ଭକ୍ତଗଣ ପ୍ରାତଃକୃତ୍ୟ ସମାପନ କରି ଠାକୁରଙ୍କ ପାଖକୁ ଆସିଲେ । ଠାକୁର ହାସ୍ୟମୁଖ, ଉତ୍ତର-ପୂର୍ବ ବାରଣ୍ଡାରେ ପଶ୍ଚିମାଂଶରେ ଠିଆ ହୋଇଛନ୍ତି ।

ନରେନ୍ଦ୍ର—ପଞ୍ଚବଟୀରେ କେତେ ଜଣ ନାନକପନ୍ଥୀ ସାଧୁ ବସିଛନ୍ତି, ଦେଖିଲି ।

ଶ୍ରୀରାମକୃଷ୍ଣ—ହଁ, ସେମାନେ କାଲି ଆସିଥିଲେ । (ନରେନ୍ଦ୍ରଙ୍କୁ) ତୁମେ ସମସ୍ତେ ଏକସଙ୍ଗରେ ମଶିଣାରେ ବସ, ମୁଁ ଦେଖେ ।

ଭକ୍ତମାନେ ସମସ୍ତେ ବସିବାରୁ ଠାକୁର ଆନନ୍ଦରେ ଦେଖିବାକୁ ଲାଗିଲେ ଓ ସେମାନଙ୍କ ସହିତ ଗପ କରିବାକୁ ଲାଗିଲେ । ନରେନ୍ଦ୍ର ସାଧନାର କଥା ଉଠାଇଲେ ।

**ନରେନ୍ଦ୍ରାଦିଙ୍କୁ ସ୍ତ୍ରୀଲୋକ ନେଇ ସାଧନ ନିଷେଧ—ସନ୍ତାନଭାବ ଅତି ଶୁଦ୍ଧ**

ଶ୍ରୀରାମକୃଷ୍ଣ (ନରେନ୍ଦ୍ରାଦିଙ୍କ ପ୍ରତି)—ଭକ୍ତି ହିଁ ସାର । ତାଙ୍କୁ ଭଲ ପାଇଲେ ବିବେକବୈରାଗ୍ୟ ଆପେ ଆସେ ।

ନରେନ୍ଦ୍ର—ଆଚ୍ଛା, ସ୍ତ୍ରୀ-ଲୋକ ନେଇ ସାଧନ ତନ୍ତ୍ରରେ ଅଛି ?

ଶ୍ରୀରାମକୃଷ୍ଣ—ସେସବୁ ପଥ ଭଲ ନୁହେଁ, ଅତି କଠିନ, ଆଉ ପ୍ରାୟ ପତନ ହୁଏ । ବୀର ଭାବରେ ସାଧନ, ଦାସୀଭାବରେ ସାଧନ ଆଉ ମାତୃଭାବରେ ସାଧନ । ମୋର ମାତୃଭାବ । ଦାସୀ ଭାବ ମଧ ଭଲ । ବୀରଭାବରେ ସାଧନ ଅତି କଠିନ । ସନ୍ତାନଭାବ ଅତ୍ୟନ୍ତ ଶୁଦ୍ଧ ଭାବ ।

ନାନକପନ୍ଥୀ ସାଧୁମାନେ ଠାକୁରଙ୍କୁ ଅଭିବାଦନ କରି କହିଲେ — 'ନମୋ ନାରାୟଣାୟ ।' ଠାକୁର ସେମାନଙ୍କୁ ଆସନ ଗ୍ରହଣ କରିବାକୁ କହିଲେ ।

**ଈଶ୍ୱରଙ୍କର ପାଖରେ ସବୁକିଛି ସମ୍ଭବ — Miracles**

ଠାକୁରେ କହୁଛନ୍ତି, ''ଈଶ୍ୱରଙ୍କ ପକ୍ଷରେ ଅସମ୍ଭବ କିଛି ନାହିଁ । ତାଙ୍କର ସ୍ୱରୂପ କେହି ମୁହଁରେ କହିପାରନ୍ତି ନାହିଁ । ସବୁକିଛି ସମ୍ଭବ । ଦୁଇଜଣ ଯୋଗୀ ଥିଲେ; ଈଶ୍ୱରଙ୍କର ସାଧନ କରୁଥିଲେ । ନାରଦ ଋଷି ଯାଉଥିଲେ । ଜଣେ ତାଙ୍କର ପରିଚୟ ପାଇ କହିଲେ, 'ତୁମେ ନାରାୟଣଙ୍କ ପାଖରୁ ଆସୁଛ; ସେ କ'ଣ କରୁଛନ୍ତି ?' ନାରଦ କହିଲେ, ଦେଖି ଆସିଲି, 'ସେ ଛୁଞ୍ଚି ଭିତର ଦେଇ ଓଟ, ହାତୀ ପୂରାଉଛନ୍ତି ଓ ବାହାର କରୁଛନ୍ତି ।' ଜଣେ କହିଲେ, 'ସେଥିରେ ଆଶ୍ଚର୍ଯ୍ୟ ହେବାର କଅଣ ଅଛି ! ତାଙ୍କ ପକ୍ଷରେ ସବୁ ସମ୍ଭବ ।' କିନ୍ତୁ ଅପର ଜଣକ କହିଲେ, 'ତା କଅଣ ହୋଇପାରେ ! ତୁମେ କେବେହେଲେ ସେଠାକୁ ଯାଇ ନାହଁ ।''

ସମୟ ପ୍ରାୟ ନଅଟା । ଠାକୁରେ ନିଜ ଘରେ ବସିଛନ୍ତି । ମନମୋହନ କୋନ୍ନଗରରୁ ସସ୍ତ୍ରୀକ ଆସିଛନ୍ତି । ମନମୋହନ ପ୍ରଣାମ କରି କହିଲେ, 'ଏମାନଙ୍କୁ କଲିକତା ନେଇ ଯାଉଛି ।' ଠାକୁରେ କୁଶଳ-ପ୍ରଶ୍ନ କରି କହିଲେ, 'ଆଜି ପହିଲା ଅଗଷ୍ଟ, କଲିକତାକୁ ଯାଉଛ, କେଜାଣି ବାବୁ !' ଏହା କହି ଟିକିଏ ହସି ଅନ୍ୟ କଥା କହିବାକୁ ଲାଗିଲେ ।

**ନରେନ୍ଦ୍ରଙ୍କୁ ମଗ୍ନ ହୋଇ ଧ୍ୟାନର ଉପଦେଶ**

ନରେନ୍ଦ୍ର ଓ ବନ୍ଧୁମାନେ ସ୍ନାନ କରି ଆସିଲେ । ଠାକୁରେ ବ୍ୟଗ୍ର ହୋଇ ନରେନ୍ଦ୍ରଙ୍କୁ କହିଲେ, ''ଯାଅ ପଞ୍ଚବଟୀରେ ଧ୍ୟାନ କର, ଆସନ ଦେବି ?''

ନରେନ୍ଦ୍ର ଓ ତାଙ୍କର କେତେ ଜଣ ବ୍ରାହ୍ମବନ୍ଧୁ ପଞ୍ଚବଟୀ ମୂଳରେ ଧ୍ୟାନ କରୁଛନ୍ତି । ସମୟ ସାଢ଼େ ଦଶଟା । ଠାକୁର ଶ୍ରୀରାମକୃଷ୍ଣ କିଛି ସମୟ ପରେ ସେଠାରେ ଉପସ୍ଥିତ, ମାଷ୍ଟର ମଧ୍ୟ ଆସିଛନ୍ତି । ଠାକୁରେ କଥା କହୁଛନ୍ତି ।

ଶ୍ରୀରାମକୃଷ୍ଣ (ବ୍ରାହ୍ମଣଭକ୍ତମାନଙ୍କ ପ୍ରତି) — ଧ୍ୟାନ କରିବା ସମୟର ତାଙ୍କଠାରେ ମଗ୍ନ ହେବାକୁ ହୁଏ । ଉପରେ ଭାସିଲେ କ'ଣ ପାଣି ତଳେ ଥିବା ରତ୍ନ ମିଳେ ?

''ଡୁବ୍ ଦେରେ ମନ କାଲୀ ବଲେ ।
ହୃଦି-ରତ୍ନାକରେର ଅଗାଧ ଜଲେ ।।...''

**ବ୍ରାହ୍ମସମାଜ, ବକ୍ତୃତା ଓ ସମାଜ-ସଂସ୍କାର**

**ଆଗେ ଈଶ୍ୱରଲାଭ, ପରେ ଲୋକଶିକ୍ଷା ପ୍ରଦାନ**

ନରେନ୍ଦ୍ର ଓ ତାଙ୍କ ବନ୍ଧୁଗଣ ପଞ୍ଚବଟୀର ଚଉତରାରୁ ଓହ୍ଲାଇ ଠାକୁରଙ୍କ ପାଖରେ ଆସି ଠିଆ ହେଲେ । ଠାକୁର ଦକ୍ଷିଣାଭିମୁଖ ହୋଇ ନିଜର ଘର ଆଡ଼କୁ ସେମାନଙ୍କ ସହିତ କଥା କହି କହି ଆସୁଛନ୍ତି ।

ଠାକୁର କହୁଛନ୍ତି, ''ପାଣିରେ ବୁଡ଼ିଲେ କୁମ୍ଭୀର ଧରିପାରେ, କିନ୍ତୁ ହଳଦି ଲଗାଇଲେ କୁମ୍ଭୀର ଛୁଏଁ ନାହିଁ । 'ହୃଦୟ-ସମୁଦ୍ରର ଅଗାଧ ଜଳରେ' କାମାଦି ଛଅଟି କୁମ୍ଭୀର ଅଛନ୍ତି । କିନ୍ତୁ ବିବେକ-ବୈରାଗ୍ୟ ରୂପକ ହଳଦି ଲଗାଇଲେ ସେମାନେ ଆଉ ତୁମକୁ ଛୁଇଁବେ ନାହିଁ ।

''ପାଣ୍ଡିତ୍ୟ ବା ଲେକ୍‌ଚର୍‌ରେ କଅଣ ହେବ ଯଦି ବିବେକ-ବୈରାଗ୍ୟ ନ ଆସେ ? ଈଶ୍ୱର ସତ୍ୟ ଆଉସବୁ ଅନିତ୍ୟ; ସେ କେବଳ ବସ୍ତୁ ଆଉ ସବୁ ଅବସ୍ତୁ—ଏହାର ନାମ ବିବେକ ।

''ତାଙ୍କୁ ହୃଦୟ-ମନ୍ଦିରରେ ଆଗେ ପ୍ରତିଷ୍ଠା କର । ବକ୍ତୃତା, ଲେକ୍‌ଚର, ତାହା ପରେ ଇଚ୍ଛା ହୁଏ ତ କର । କେବଳ ବ୍ରହ୍ମ କହିଲେ କଅଣ ହେବ ଯଦି ବିବେକ-ବୈରାଗ୍ୟ ନ ଥାଏ ? ସେ ତ ଫାଙ୍କା ଶଙ୍ଖଧ୍ୱନି ?

''ଗୋଟିଏ ଗାଁଆରେ ପଦ୍ମଲୋଚନ ବୋଲି ଜଣେ ବାଳକ ଥିଲା । ଲୋକେ ତାକୁ 'ପୋଦୋ' 'ପୋଦୋ' ବୋଲି ଡାକନ୍ତି । ସେହି ଗ୍ରାମରେ ଗୋଟିଏ ଭଙ୍ଗା ମନ୍ଦିର ଥିଲା । ଭିତରେ ଠାକୁର -ବିଗ୍ରହ ନାହିଁ—ମନ୍ଦିର-ଦେହରେ ଅଶ୍ୱତ୍ଥ ଗଛ ଓ ଅନ୍ୟାନ୍ୟ ଗଛପତ୍ର ହୋଇଛି । ମନ୍ଦିର ଭିତରେ ଚେମେଣି ବସା କରିଛନ୍ତି । ତଳେ ଧୂଳି ଓ ଚେମେଣିର ବିଷ୍ଠା । ମନ୍ଦିରରେ ଲୋକମାନଙ୍କର ଯାତାୟାତ ନାହିଁ ।

''ଦିନେ ସନ୍ଧ୍ୟାର କିଛି ସମୟ ପରେ ଗ୍ରାମରେ ଲୋକମାନେ ଶଙ୍ଖଧ୍ୱନି ଶୁଣିବାକୁ ପାଇଲେ । ମନ୍ଦିରଆଡୁ ଭୋଁ ଭୋଁ ଶଙ୍ଖ ଶୁଭୁଛି । ଗ୍ରାମର ଲୋକମାନେ ଭାବିଲେ, ହୁଏତ କେହି ଠାକୁର ପ୍ରତିଷ୍ଠା କରିଛି—ସନ୍ଧ୍ୟା ପରେ ଆଳତି ହେଉଛି । ପିଲା, ବୁଢ଼ା, ପୁରୁଷ, ସ୍ତ୍ରୀ ସମସ୍ତେ ଦୌଡ଼ି ଦୌଡ଼ି ଯାଇ ମନ୍ଦିର ପାଖରେ ହାଜର—ଠାକୁର ଦର୍ଶନ କରିବେ ଆଉ ଆଳତି ଦେଖିବେ । ସେମାନଙ୍କ ମଧ୍ୟରୁ ଜଣେ ମନ୍ଦିରର ଦ୍ୱାର ଆସ୍ତେ ଆସ୍ତେ ଖୋଲି ଦେଖେ, ପଦ୍ମଲୋଚନ ଗୋଟିଏ ପାଖରେ ଠିଆ ହୋଇ ଭୋଁ ଭୋଁ ଶଙ୍ଖ ଫୁଙ୍କୁଛି । ଠାକୁର ପ୍ରତିଷ୍ଠା ହୋଇ ନାହିଁ ମନ୍ଦିର ଝାଡ଼ୁ ହୋଇ ନାହିଁ, ଚେମେଣିର ବିଷ୍ଠା ରହିଛି । ସେତେବେଳେ ସେ ଉଚ୍ଚ ସ୍ୱରରେ କହିଲା—

'ମନ୍ଦିରେ ତୋର ନାହିଁରେ ମାଧବ
ପୋଦୋ, ଶଙ୍ଖ ଫୁଙ୍କି ତୁହି କରିଲୁ ଗୋଳ !'

''ଯଦି ହୃଦୟ-ମନ୍ଦିରରେ ମାଧବ ପ୍ରତିଷ୍ଠା କରିବାକୁ ଚାହଁ, ଯଦି ଭଗବାନଙ୍କୁ ଲାଭ କରିବାକୁ ଚାହଁ, ଖାଲି ଭୋଁ ଭୋଁ କରି ଶଙ୍ଖ ଫୁଙ୍କିଲେ କଅଣ ହେବ ? ଆଗେ ଚିତ୍ତଶୁଦ୍ଧି । ମନ ଶୁଦ୍ଧ ହେଲେ ଭଗବାନ୍ ପବିତ୍ର ଆସନରେ ଆସି ବସିବେ । ଚେମେଣିଙ୍କର ବିଷ୍ଠା ରହିଲେ ମାଧବଙ୍କୁ ଅଣାଯାଏ ନାହିଁ । 'ଏଗାରଟା ଚେମେଣି' ଅର୍ଥାତ୍ ଏକାଦଶ ଇନ୍ଦ୍ରିୟ—ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ, ଆଉ ମନ । ଆଗେ ମାଧବ-ପ୍ରତିଷ୍ଠା, ତାହା ପରେ ଇଚ୍ଛା ହୁଏ ତ ବକ୍ତୃତା ଲେକ୍‌ଚର୍ ଦିଅ ।

''ଆଗେ ବୁଡ଼ । ବୁଡ଼ି ରତ୍ନ କାଢ଼, ତାହା ପରେ ଅନ୍ୟ କାମ ।

''କେହି ବୁଡ଼ିବାକୁ ଚାହାଁନ୍ତି ନାହିଁ । ସାଧନ ନାହିଁ, ଭଜନ ନାହିଁ, ବିବେକ-ବୈରାଗ୍ୟ ନାହିଁ, ଦୁଇ ଚାରିଟା କଥା ମାତ୍ର ଶିଖି ସଙ୍ଗେ ସଙ୍ଗେ ଲେକ୍‌ଚର୍ !

''ଲୋକଶିକ୍ଷା ଦେବା କଠିନ । ଭଗବାନଙ୍କ ଦର୍ଶନ ପରେ ଯଦି କେହି ତାଙ୍କର ଆଦେଶ ପାଏ, ତାହା ହେଲେ ଲୋକଶିକ୍ଷା ଦେଇପାରେ ।''

**ଅବିଦ୍ୟା ସ୍ତ୍ରୀ—ଆନ୍ତରିକ ଭକ୍ତି ହେଲେ ସମସ୍ତେ ବଶ ହୁଅନ୍ତି**

କଥା କହୁ କହୁ ଠାକୁର ଉତ୍ତର ବାରଣ୍ଡାରେ ପଶ୍ଚିମାଂଶକୁ ଆସି ଠିଆ ହେଲେ । ମଣି ନିକଟରେ ଦଣ୍ଡାୟମାନ । ଠାକୁର ବାରମ୍ବାର କହୁଛନ୍ତି, ''ବିବେକ-ବୈରାଗ୍ୟ ନ ହେଲେ ଭଗବାନଙ୍କୁ ଲାଭ କରାଯାଏ ନାହିଁ ।'' ମଣି ବିବାହ କରିଛନ୍ତି, ତେଣୁ ବ୍ୟାକୁଳ ହୋଇ ଭାବୁଛନ୍ତି କଅଣ ହେବ ! ବୟସ ୨୮, କଲେଜରେ ପଢ଼ି ଇଂରାଜୀ ଲେଖାପଢ଼ା ଶିଖିଛନ୍ତି । ଭାବୁଛନ୍ତି—'ବିବେକ-ବୈରାଗ'ର ଅର୍ଥ କାମିନୀ-କାଞ୍ଚନ ତ୍ୟାଗ ?

ମଣି (ଶ୍ରୀରାମକୃଷ୍ଣଙ୍କ ପ୍ରତି)—ସ୍ତ୍ରୀ ଯଦି କହେ ମୋତେ ଦେଖୁନାହଁ, ମୁଁ ଆତ୍ମହତ୍ୟା କରିବି, ତାହା ହେଲେ କଅଣ ହେବ ?

ଶ୍ରୀରାମକୃଷ୍ଣ (ଗମ୍ଭୀର ସ୍ୱରରେ)—ଏପରି ସ୍ତ୍ରୀକୁ ତ୍ୟାଗ କରିବ, ଯେ ଈଶ୍ୱରଙ୍କ ପଥରେ ବିଘ୍ନ କରେ ! ଆତ୍ମହତ୍ୟା କରୁ କି ଆଉ ଯାହା କରୁ ! **ଯେ ଈଶ୍ୱରଙ୍କ ପଥରେ ବିଘ୍ନ କରେ, ସେ ଅବିଦ୍ୟା ସ୍ତ୍ରୀ ।**

ଗଭୀର ଚିନ୍ତାମଗ୍ନ ହୋଇ ମଣି କାନ୍ଥରେ ଠେସ ଦେଇ ଗୋଟିଏ ପାଖରେ ଠିଆ ହୋଇ ରହିଲେ । ନରେନ୍ଦ୍ରାଦି ଭକ୍ତଗଣ ମଧ୍ୟ କିଛି ସମୟ ଅବାକ୍ ହୋଇ ରହିଲେ !

ଠାକୁର ସେମାନଙ୍କ ସହିତ ଟିକିଏ କଥା କହୁଛନ୍ତି, ହଠାତ୍ ମଣିଙ୍କ ପାଖକୁ ଆସି ଏକାନ୍ତରେ ଆସ୍ତେ ଆସ୍ତେ କହୁଛନ୍ତି, ''କିନ୍ତୁ ଯାହାର ଈଶ୍ୱରଙ୍କଠାରେ ଆନ୍ତରିକ ଭକ୍ତି ଅଛି, ସମସ୍ତେ ତା'ର ବଶ ହୁଅନ୍ତି—ରାଜା, ଦୁଷ୍ଟଲୋକ, ସ୍ତ୍ରୀ । ନିଜର ଆନ୍ତରିକ ଭକ୍ତି ଥିଲେ ସ୍ତ୍ରୀ ମଧ୍ୟ କ୍ରମେ ଈଶ୍ୱରଙ୍କ ପଥରେ ଯାଇପାରେ; ନିଜେ ଭଲ ହେଲେ ଈଶ୍ୱରଙ୍କ ଇଚ୍ଛାରେ ସେ ମଧ୍ୟ ଭଲ ହୋଇପାରେ ।''

ମଣିଙ୍କର ଚିନ୍ତାଗ୍ନିରେ ପାଣି ପଡ଼ିଲା । ସେ ଏତେ ସମୟ ଧରି ଭାବୁଥିଲେ — ସ୍ତ୍ରୀ ଆତ୍ମହତ୍ୟା କରୁ, ମୁଁ କଅଣ କରିବି ?

ମଣି (ଶ୍ରୀରାମକୃଷ୍ଣଙ୍କ ପ୍ରତି) — ସଂସାରରେ ଭାରୀ ଭୟ !

ଶ୍ରୀରାମକୃଷ୍ଣ (ମଣି ଓ ନରେନ୍ଦ୍ରାଦିଙ୍କ ପ୍ରତି) — ତେଣୁ ଚୈତନ୍ୟଦେବ କହୁଥିଲେ, 'ଶୁଣ ଶୁଣ ନିତ୍ୟାନନ୍ଦ ଭାଇ, ସଂସାରୀ ଜୀବର କେବେ ଗତି ନାହିଁ ।'

(ମଣିଙ୍କୁ ଏକାନ୍ତରେ ଦିନେ କହିଥିଲେ) ''ଈଶ୍ୱରଙ୍କଠାରେ ଯଦି ଶ୍ରଦ୍ଧା ଭକ୍ତି ନ ହୁଏ, ତା'ହେଲେ କୌଣସି ଗତି ନାହିଁ । କେହି ଯଦି ଈଶ୍ୱରଲାଭ କରି ସଂସାରରେ ରହେ, ତାହାର କୌଣସି ଭୟ ନାହିଁ । ନିର୍ଜ୍ଜନରେ ମଝିରେ ମଝିରେ ସାଧନ କରି କେହି ଯଦି ଶ୍ରଦ୍ଧା ଭକ୍ତି ଲାଭ କରିପାରେ, ସଂସାରରେ ରହିଲେ ତାହାର କୌଣସି ଭୟ ନାହିଁ । ଚୈତନ୍ୟଦେବଙ୍କର ସଂସାରୀ ଭକ୍ତ ମଧ୍ୟ ଥିଲେ । ସେମାନେ ସଂସାରରେ ନାମମାତ୍ର ଥିଲେ । ଅନାସକ୍ତ ହୋଇଥିଲେ ।''

ଦେବଦେବୀଙ୍କର ଭୋଗାଳତି ହୋଇଗଲା । ସଙ୍ଗେ ସଙ୍ଗେ ନହବତ ବାଜିଲା । ଏଥର ସେମାନେ ବିଶ୍ରାମ କରିବେ । ଠାକୁର ଶ୍ରୀରାମକୃଷ୍ଣ ଆହାରରେ ବସିଲେ । ନରେନ୍ଦ୍ରାଦି ଭକ୍ତଗଣ ଆଜି ମଧ୍ୟ ଠାକୁରଙ୍କ ପାଖରେ ପ୍ରସାଦ ପାଇବେ ।

# ସପ୍ତମ ପରିଚ୍ଛେଦ

## (୧)

## ବିଜୟା ଦଶମୀରେ ଦକ୍ଷିଣେଶ୍ୱର-ମନ୍ଦିରରେ ଭକ୍ତଙ୍କ ସଙ୍ଗରେ ଶ୍ରୀରାମକୃଷ୍ଣ

ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱର-ମନ୍ଦିରରେ ନିଜ ଘରେ ଅଛନ୍ତି । ସମୟ ୯ଟା ହେବ; ଠାକୁର ଛୋଟ ଖଟଟିରେ ବିଶ୍ରାମ କରୁଛନ୍ତି, ମଣି ତଳେ ବସିଛନ୍ତି । ତାଙ୍କ ସହିତ କଥା କହୁଛନ୍ତି ।

ଆଜି ଦଶହରା (ବିଜୟା), ରବିବାର, ୨୨ ଅକ୍ଟୋବର ୧୮୮୨ ଖ୍ରୀଷ୍ଟାବ୍ଦ; ଆଶ୍ୱିନ ଶୁକ୍ଳା ଦଶମୀ ତିଥି ! ଆଜିକାଲି ରାଖାଲ ଠାକୁରଙ୍କ ପାଖରେ ରହୁଛନ୍ତି । ନରେନ୍ଦ୍ର, ଭବନାଥ ମଝିରେ ମଝିରେ ଯାତାୟାତ କରନ୍ତି । ଠାକୁରଙ୍କ ସଙ୍ଗରେ ତାଙ୍କର ଭ୍ରାତୁଷ୍ପୁତ୍ର ଶ୍ରୀଯୁକ୍ତ ରାମଲାଲ ଓ ହାଜରା ମହାଶୟ ବାସ କରୁଛନ୍ତି । ରାମ, ମନମୋହନ, ସୁରେଶ, ମାଷ୍ଟର, ବଳରାମ ଏମାନେ ମଧ୍ୟ ପ୍ରାୟ ପ୍ରତି ସପ୍ତାହରେ ଠାକୁରଙ୍କୁ ଦର୍ଶନ କରିବାକୁ ଆସନ୍ତି । ବାବୁରାମ କେବଳ ଥରେ ଦୁଇଥର ଦର୍ଶନ କରିଛନ୍ତି ।

ଶ୍ରୀରାମକୃଷ୍ଣ — ତୁମର ପୂଜାଛୁଟି ହୋଇଛି ?

ମଣି — ଆଜ୍ଞା ହଁ, ମୁଁ ସପ୍ତମୀ, ଅଷ୍ଟମୀ, ନବମୀ ପ୍ରତ୍ୟହ କେଶବ ସେନ୍‌ଙ୍କ ଘରକୁ ଯାଉଥିଲି ।

ଶ୍ରୀରାମକୃଷ୍ଣ — କଅଣ କହୁଛ !

ମଣି — ଦୁର୍ଗାପୂଜାର ବେଶ୍ ବ୍ୟାଖ୍ୟା ଶୁଣିଛି ।

ଶ୍ରୀରାମକୃଷ୍ଣ — କଅଣ କହିଲ ଦେଖି ।

ମଣି — କେଶବ ସେନ୍‌ଙ୍କ ଘରେ ପ୍ରତିଦିନ ସକାଳେ ଉପାସନା ହୁଏ, ଦଶଟା ଏଗାରଟା ପର୍ଯ୍ୟନ୍ତ । ସେହି ଉପାସନା ବେଳେ ସେ ଦୁର୍ଗାପୂଜାର ବ୍ୟାଖ୍ୟା କରୁଥିଲେ । ସେ କହିଲେ, 'ଯଦି ମାଆଙ୍କୁ ଲାଭ କରାଯାଏ, ଯଦି ମା ଦୁର୍ଗାଙ୍କୁ କେହି ହୃଦୟ-ମନ୍ଦିରକୁ ଆଣିପାରେ, ତାହାହେଲେ ଲକ୍ଷ୍ମୀ, ସରସ୍ୱତୀ, କାର୍ତ୍ତିକ, ଗଣେଶ ନିଜେ ନିଜେ ଆସନ୍ତି । ଲକ୍ଷ୍ମୀ ଅର୍ଥାତ୍ ଐଶ୍ୱର୍ଯ୍ୟ, ସରସ୍ୱତୀ ଅର୍ଥାତ୍ ଜ୍ଞାନ, କାର୍ତ୍ତିକ ଅର୍ଥାତ୍ ବିକ୍ରମ, ଗଣେଶ ଅର୍ଥାତ୍ ସିଦ୍ଧି, ଏସବୁ ମନକୁ ହୋଇଯାଏ — ମା' ଯଦି ଆସନ୍ତି ।

**ଠାକୁର ଶ୍ରୀରାମକୃଷ୍ଣଙ୍କର ନରେନ୍ଦ୍ରାଦି ଅନ୍ତରଙ୍ଗ**

ଠାକୁର ସମସ୍ତ ବିବରଣ ଶୁଣିଲେ ଓ ମଝିରେ ମଝିରେ କେଶବଙ୍କ ଉପାସନା ସମ୍ବନ୍ଧରେ କେତେକ ପ୍ରଶ୍ନ ପଚାରିବାକୁ ଲାଗିଲେ । ଅବଶେଷରେ କହୁଛନ୍ତି, ''ତୁମେ ଏଠାକୁ ସେଠାକୁ ଯାଅ ନାହିଁ, ଏହିଠାକୁ ଆସିବ ।''

''ଯେଉଁମାନେ ଅନ୍ତରଙ୍ଗ ସେମାନେ କେବଳ ଏହିଠାକୁ ଆସିବେ । ନରେନ୍ଦ୍ର, ଭବନାଥ, ରାଖାଲ — ଏମାନେ ମୋର ଅନ୍ତରଙ୍ଗ । ଏମାନେ ସାମାନ୍ୟ ନୁହଁନ୍ତି । ତୁମେ ଏମାନଙ୍କୁ ଦିନେ ଖୁଆଅ । ନରେନ୍ଦ୍ରଙ୍କୁ ତୁମର କିପରି ବୋଧହୁଏ ?''

ମଣି — ଆଜ୍ଞା, ଖୁବ୍ ଭଲ ।

ଶ୍ରୀରାମକୃଷ୍ଣ — ଦେଖ, ନରେନ୍ଦ୍ରର କେତେ ଗୁଣ — ଗାଇବା, ବଜାଇବା, ବିଦ୍ୟା, ପୁଣି ଜିତେନ୍ଦ୍ରିୟ, କହୁଛି ବିବାହ କରିବ ନାହିଁ — ପିଲାଦିନରୁ ଈଶ୍ୱରଙ୍କଠାରେ ମନ ।

**ସାକାର ନା ନିରାକାର — ଚିନ୍ମୟୀ ମୂର୍ତ୍ତି ଧ୍ୟାନ, ମାତୃଧ୍ୟାନ**

ଶ୍ରୀରାମକୃଷ୍ଣ — ତୁମର ଆଜିକାଲି ଈଶ୍ୱରଚିନ୍ତା କିପରି ହେଉଛି ? ତୁମର 'ସାକାର' ଭଲ ଲାଗେ, ନା 'ନିରାକାର' ?

ମଣି — ଆଜ୍ଞା, ସାକାରକୁ ବର୍ତ୍ତମାନ ମନ ଯାଏ ନାହିଁ ! ପୁଣି ନିରାକାରରେ ମଧ୍ୟ ମନ ସ୍ଥିର କରିପାରେ ନାହିଁ ।

ଶ୍ରୀରାମକୃଷ୍ଣ — ଦେଖିଲ ! ଆରମ୍ଭରୁ ନିରାକାରରେ ମନ ସ୍ଥିର ହୁଏ ନାହିଁ । ପ୍ରଥମେ ପ୍ରଥମେ ସାକାର ତ ବେଶ୍ !

ମଣି — ଏହିସବୁ ମାଟିମୂର୍ତ୍ତିର ଧ୍ୟାନ ଚିନ୍ତା ?

ଶ୍ରୀରାମକୃଷ୍ଣ — କାହିଁକି ? **ଚିନ୍ମୟୀ ମୂର୍ତ୍ତି** ।

ମଣି — ଆଜ୍ଞା, ତାହା ହେଲେ ତ ହାତ ଗୋଡ଼ ଭାବିବାକୁ ହେବ ? ମାତ୍ର ପୁଣି ମଧ୍ୟ ଭାବୁଛି ଯେ, ପ୍ରଥମାବସ୍ଥାରେ ରୂପ ଚିନ୍ତା ନ କଲେ ମନ ସ୍ଥିର ହେବ ନାହିଁ — ଆପଣ କହି ଦେଇଛନ୍ତି । ଆଚ୍ଛା, ସେ ତ ନାନା ରୂପ ଧରିପାରନ୍ତି । ନିଜର ମାଆଙ୍କ ରୂପ କଅଣ ଧ୍ୟାନ କରାଯାଇପାରେ ?

ଶ୍ରୀରାମକୃଷ୍ଣ — **ହଁ, ସେ (ମା) ଗୁରୁ — ଆଉ ବ୍ରହ୍ମମୟୀ ସ୍ୱରୂପା ।**

ମଣି ଚୁପ୍ ହୋଇ ରହିଛନ୍ତି ।

କିଛିକ୍ଷଣ ପରେ ଠାକୁରଙ୍କୁ ପୁଣି ପଚାରୁଛନ୍ତି — ଆଜ୍ଞା, ନିରାକାରରେ କିପରି ଦେଖାଯାଏ ? ତାହା କଅଣ ବର୍ଣ୍ଣନା କରାଯାଏ ନାହିଁ ?

ଶ୍ରୀରାମକୃଷ୍ଣ (ଟିକିଏ ଚିନ୍ତା କରି) — ସେ କିପରି ଜାଣ ?

ଏହି କଥା କହି ଠାକୁରେ ଟିକିଏ ନୀରବ ହେଲେ । ତା'ପରେ ସାକାର-ନିରାକାର ଦର୍ଶନ କିପରି ଅନୁଭୂତ ହୁଏ, ଗୋଟିଏ କଥା କହିଦେଲେ । ପୁଣି ଠାକୁର ଚୁପ୍ ହୋଇ ରହିଛନ୍ତି ।

ଶ୍ରୀରାମକୃଷ୍ଣ—କଅଣ ଜାଣ, ଏହିଟି ଠିକ୍ ବୁଝିବାକୁ ସାଧନା ଦରକାର । ଘର ଭିତରର ରତ୍ନ ଯଦି ଦେଖିବାକୁ ଚାହଁ, ଆଉ ନେବାକୁ ଚାହଁ, ତାହା ହେଲେ ପରିଶ୍ରମ କରି ଚାବି ଆଣି କବାଟର ତାଲା ଖୋଲିବାକୁ ହୁଏ । ତାପରେ ରତ୍ନ ବାହାର କରି ଆଣିବାକୁ ହୁଏ । ତାହା ନ ହେଲେ ତାଲାଦିଆ ଘରର ଦ୍ୱାର ପାଖରେ ଠିଆହୋଇ ଭାବୁଛି, ବର୍ତ୍ତମାନ ମୁଁ କବାଟ ଖୋଲିଲି, ସିନ୍ଦୁକର ତାଲା ଭାଙ୍ଗିଲି, ହେଇଟି ରତ୍ନ ବାହାର କଲି । କେବଳ ଠିଆ ହୋଇ ଭାବିଲେ ତ ହୁଏ ନାହିଁ । ସାଧନା କରିବା ଦରକାର ।

## (୨)

## ଠାକୁର ଅନନ୍ତ ଓ ଅନନ୍ତ ଈଶ୍ୱର—ସକଳ ହିଁ ପନ୍ଥା—ଶ୍ରୀବୃନ୍ଦାବନ ଦର୍ଶନ

(ଜ୍ଞାନୀଙ୍କ ମତରେ ଅସଂଖ୍ୟ ଅବତାର । କୁଟୀଚକ-ତୀର୍ଥ କାହିଁକି ?)

ଶ୍ରୀରାମକୃଷ୍ଣ—ଜ୍ଞାନୀମାନେ ନିରାକାର ଚିନ୍ତା କରନ୍ତି । ସେମାନେ ଅବତାର ମାନନ୍ତି ନାହିଁ । ଅର୍ଜ୍ଜୁନ ଶ୍ରୀକୃଷ୍ଣଙ୍କୁ ସ୍ତବ କରୁଛନ୍ତି—ତୁମେ ପୂର୍ଣ୍ଣବ୍ରହ୍ମ ! ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ କହିଲେ—ମୁଁ ପୂର୍ଣ୍ଣ ବ୍ରହ୍ମ କି କଅଣ ଦେଖିବ ଆସ—ଏହା କହି ଗୋଟିଏ ଜାଗାକୁ ନେଇଯାଇ ପଚାରିଲେ—ତୁମେ କଅଣ ଦେଖୁଛ ? ଅର୍ଜ୍ଜୁନ କହିଲେ—ମୁଁ ଏକ ବୃହତ୍ ଗଛ ଦେଖୁଛି, ସେଥିରେ ପେଛା ପେଛା କଳାଜାମୁପରି ଫଳ ଫଳି ରହିଛି । ଶ୍ରୀକୃଷ୍ଣ କହିଲେ—ଆହୁରି ପାଖକୁ ଆସି ଦେଖ ଦେଖି, ତାହା ପେଛା ପେଛା କଳାଫଳ ନୁହେଁ, ପେଛା ପେଛା **କୃଷ୍ଣ** ଅସଂଖ୍ୟ ଫଳି ରହିଛି—ମୋ ପରି । ଅର୍ଥାତ୍ ସେହି **ପୂର୍ଣ୍ଣବ୍ରହ୍ମ**-ରୂପକ ବୃକ୍ଷରୁ ଅସଂଖ୍ୟ ଅବତାର ହେଉଛନ୍ତି, ଯାଉଛନ୍ତି ।

"କବୀର ଦାସଙ୍କର ନିରାକାର ଉପରେ ଖୁବ୍ ଝୁଙ୍କ୍ ଥିଲା । କୃଷ୍ଣଙ୍କ କଥାରେ କବୀର ଦାସ କହୁଥିଲେ—ତାଙ୍କୁ କଅଣ ଭଜିବି ? ଗୋପୀମାନେ ହାତତାଳି ଦେଉଥିଲେ, ଆଉ ସେ ମାଙ୍କଡ଼-ନାଚ ନାଚୁଥିଲେ ! (ସହାସ୍ୟ) ମୁଁ ସାକାରବାଦୀଙ୍କ ପାଖରେ ସାକାର, ଆଉ ନିରାକାରବାଦୀଙ୍କ ପାଖରେ ନିରାକାର ।"

ମଣି (ସହାସ୍ୟ) —ଯାହାଙ୍କ କଥା ହେଉଛି ସେ (ଈଶ୍ୱର) ଯେପରି ଅନନ୍ତ, **ଆପଣ ମଧ୍ୟ ସେହିପରି ଅନନ୍ତ ! ଆପଣଙ୍କ ଅନ୍ତ ମିଳେ ନାହିଁ ।**

ଶ୍ରୀରାମକୃଷ୍ଣ (ସହାସ୍ୟ)—ତୁମେ ବୁଝି ନେଇଛ ! କଅଣ ଜାଣ—ସବୁଧର୍ମ ଥରେ ଥରେ କରିନେବାକୁ ହୁଏ ।—ସବୁ ପଥ ଦେଇ ଚାଲି ଆସିବାକୁ ହୁଏ । ଖେଳର ଗୋଟି ସବୁ ଘର ପାରି ନ ହେଲେ କଅଣ ପାଚେ ? ଗୋଟି ଯେତେବେଳେ ପାଚେ ତାକୁ ଆଉ କେହି ଧରିପାରେ ନାହିଁ ।

ଶ୍ରୀରାମକୃଷ୍ଣ — ଯୋଗୀ ଦୁଇ ପ୍ରକାର — ବହୁଦକ ଆଉ କୁଟୀଚକ । ଯେଉଁ ସାଧୁ ବହୁ ତୀର୍ଥ କରି ବୁଲୁଛି, ଯାହାର ମନରେ ବର୍ତ୍ତମାନ ସୁଦ୍ଧା ଶାନ୍ତି ଆସି ନାହିଁ, ତାକୁ ବହୁଦକ କହନ୍ତି । ଯେଉଁ ଯୋଗୀ ସବୁ ବୁଲି ମନ ସ୍ଥିର କରିଛି, ମନ ଯାହାର ଶାନ୍ତ ହୋଇଯାଇଛି, ସେ ଗୋଟିଏ ଜାଗାରେ ଆସନ କରି ବସେ, ଆଉ ହଲେ ନାହିଁ । ସେହି ଏକ ସ୍ଥାନରେ ବସି ମଧ୍ୟ ତାହାର ଆନନ୍ଦ । ତାହାର ତୀର୍ଥକୁ ଯିବାର କୌଣସି ପ୍ରୟୋଜନ ନାହିଁ । ଯଦି ସେ ତୀର୍ଥକୁ ଯାଏ ସେ କେବଳ ଉଦ୍ଦୀପନା ପାଇଁ । ସେ କୁଟୀଚକ ।

''ମୋତେ ସବୁଧର୍ମ ଥରେ ଥରେ କରି ନେବାକୁ ହୋଇଥିଲା—ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟାନ୍, ପୁଣି ଶାକ୍ତ, ବୈଷ୍ଣବ, ବେଦାନ୍ତ, ଏସବୁ ପଥ ଦେଇ ଆସିବାକୁ ହୋଇଛି । **ଦେଖିଲି ସେହି ଏକ ଈଶ୍ୱର**—ତାଙ୍କ ପାଖକୁ ସମସ୍ତେ ଆସନ୍ତି—ଭିନ୍ନ ଭିନ୍ନ ପଥ ଦେଇ ।

''ତୀର୍ଥକୁ ଗଲି, କିନ୍ତୁ ଥରେ ଥରେ ଭାରୀ କଷ୍ଟ ହେଉଥିଲା । କାଶୀରେ ସେଜୋବାବୁଙ୍କ ସଙ୍ଗରେ ରାଜାବାବୁଙ୍କ ବୈଠକଖାନାକୁ ଯାଇଥିଲି । ସେଠାରେ ଦେଖେ—ସେମାନେ ବିଷୟ କଥା କହୁଛନ୍ତି ! —ଟଙ୍କା, ଜମି ଏହିସବୁ କଥା । କଥା ଶୁଣି ମୁଁ କାନ୍ଦିବାକୁ ଲାଗିଲି । କହିଲି—ମା, କେଉଁଠାକୁ ଆଣିଲୁ ? ଦକ୍ଷିଣେଶ୍ୱରରେ ଯେ ମୁଁ ବେଶ୍ ଥିଲି । ପ୍ରୟାଗରେ ଦେଖିଲି—ସେହି ପୋଖରୀ, ସେହି ଦୁର୍ବା, ସେହି ଗଛ, ସେହି ତେନ୍ତୁଳିପତ୍ର ! କେବଳ ତଫାତ୍—ପଶ୍ଚିମା ଲୋକଙ୍କର କୁଣ୍ଡା ପରି ମଳ । (ଠାକୁର ଓ ମଣିଙ୍କର ହାସ୍ୟ)

''ତେବେ ତୀର୍ଥରେ ଉଦ୍ଦୀପନା ହୁଏ । ମଥୁରବାବୁଙ୍କ ସଙ୍ଗରେ ବୃନ୍ଦାବନ ଗଲି । ମଥୁରବାବୁର ଘରର ସ୍ତ୍ରୀମାନେ ମଧ୍ୟ ଥିଲେ — ହୃଦୁ ବି ଥିଲା । କାଳୀୟଦମନ ଘାଟ ଦେଖିବାମାତ୍ରେ ଉଦ୍ଦୀପନା ହେଉଥିଲା, ମୁଁ ବିହ୍ୱଳ ହୋଇଯାଉଥିଲି — ହୃଦୁ ମୋତେ ଯମୁନାର ସେହି ଘାଟରେ ପିଲାଟି ପରି ଗାଧୋଇ ଦେଉଥିଲା ।

''ଯମୁନା-ତୀରରେ ସନ୍ଧ୍ୟା ସମୟରେ ବୁଲିବାକୁ ଯାଉଥିଲି । ଯମୁନାର ତୀର ଦେଇ ସେଇ ସମୟରେ ଗୋଠରୁ ଗୋରୁସବୁ ଫେରିଆସନ୍ତି । ଦେଖିଲାମାତ୍ରେ ମୋର କୃଷ୍ଣଙ୍କର ଉଦ୍ଦୀପନ ହେଲା, ଉନ୍ମତ୍ତ ପରି ମୁଁ ଦୌଡ଼ିବାକୁ ଲାଗିଲି — 'କୃଷ୍ଣ କାହାନ୍ତି, କୃଷ୍ଣ କାହାନ୍ତି' ବୋଲି କହି କହି ।

''ପାଲିଙ୍କି ଚଢ଼ି ଶ୍ୟାମକୁଣ୍ଡ ରାଧାକୁଣ୍ଡ ବାଟରେ ଯାଉଛି, ଗୋବର୍ଦ୍ଧନ ଦେଖିବାକୁ ଓହ୍ଲାଇଲି, ଗୋବର୍ଦ୍ଧନ ଦେଖିବାମାତ୍ରେ ଏକାବେଳକେ ବିହ୍ୱଳ, ଦୌଡ଼ିଯାଇ ଗୋବର୍ଦ୍ଧନ ଉପରେ ଠିଆ ହୋଇ ପଡ଼ିଲି—ଆଉ ବାହ୍ୟ—ଜ୍ଞାନଶୂନ୍ୟ ହୋଇଗଲି । ସେତେବେଳେ ବ୍ରଜବାସୀମାନେ ଯାଇ ମୋତେ ତଳକୁ ଆଣିଲେ । ଶ୍ୟାମକୁଣ୍ଡ ରାଧାକୁଣ୍ଡ ବାଟରେ ସେହି କ୍ଷେତ ଆଉ ଗଛପତ୍ର, ପକ୍ଷୀ, ହରିଣ—ଏହିସବୁ ଦେଖି ବିହ୍ୱଳ ହୋଇଗଲି । ଲୁହରେ ଆଖି ଓଦା ହୋଇଗଲା । ମନେହେଲା—କୃଷ୍ଣରେ ! ସବୁ ରହିଛି, କେବଳ ତୋତେ ଦେଖିପାରୁ ନାହିଁ । ପାଲିଙ୍କି ଭିତରେ ବସେ, କିନ୍ତୁ ଥରଟିଏ ପଦେ କଥା କହିବାର ଶକ୍ତି ନ ଥାଏ—ଚୁପ୍ କରି ବସେ ! କିନ୍ତୁ ହୃଦୁ ପାଲିଙ୍କି ପଛରେ ଆସୁଥାଏ । ବେହେରାମାନଙ୍କୁ କହି ଦେଇଥିଲା—'ଖୁବ୍ ହୁସିଆର' ।

''ଗଙ୍ଗାମାୟୀ ବହୁଯତ୍ନ କରୁଥିଲା । ବହୁତ ବୟସ । ନିଧୁବନ ପାଖରେ କୁଟୀରରେ ଏକୁଟିଆ ରହୁଥିଲା । ମୋର ଅବସ୍ଥା ଆଉ ଭାବ ଦେଖି କହୁଥିଲା—ଏ ସାକ୍ଷାତ୍ ରାଧା, ଦେହ ଧାରଣ କରି ଆସିଛନ୍ତି । ମୋତେ 'ଦୁଲାଳୀ' ବୋଲି ଡାକୁଥିଲା । ତାକୁ ପାଇଲେ ମୋର ଖାଇବା, ପିଇବା, ବସାକୁ ଫେରିଯିବା ସବୁ ଭୁଲ ହୋଇଯାଉଥିଲା । ହୃଦୁ ଦିନେ ଦିନେ ବସାରୁ ଖାଦ୍ୟ ଆଣି ଖୁଆଇ ଯାଉଥିଲା—ସେ ମଧ୍ୟ ଖାଇବା ଜିନିଷ ତିଆରି କରି ଖୁଆଉଥିଲା ।

''ଗଙ୍ଗାମାୟୀର ଭାବ ହେଉଥିଲା । ତା'ର ଭାବ ଦେଖିବା ପାଇଁ ଲୋକଙ୍କର ଭିଡ଼ ହେଉଥିଲା । ଭାବରେ ଦିନେ ହୃଦୁର କାନ୍ଧରେ ଚଢ଼ିଥିଲା ।

''ଗଙ୍ଗାମାୟୀ ପାଖରୁ ଦେଶକୁ ଚାଲିଆସିବାର ମୋର ଇଚ୍ଛା ନ ଥିଲା । ସବୁ ଠିକ୍‌ଠାକ୍; ମୁଁ ସିଦ୍ଧ ଚାଉଳର ଭାତ ଖାଇବି—ଗଙ୍ଗାମାୟୀର ବିଛଣା ଘରର ଏପଟେ ହେବ, ମୋର ବିଛଣା ସେପଟେ ହେବ । ସବୁ ଠିକ୍‌ଠାକ୍, ହୃଦୁ ସେତେବେଳେ କହିଲା, 'ତୁମର ଏତେ ପେଟ-ରୋଗ—କିଏ ଦେଖିବ ?' ଗଙ୍ଗାମାୟୀ କହିଲା, 'କାହିଁକି, ମୁଁ ଦେଖିବି, ମୁଁ ସେବା କରିବି ।' ହୃଦୁ ଗୋଟିଏ ହାତ ଧରି ଟାଣେ, ଗଙ୍ଗାମାୟୀ ଆଉ ଗୋଟିଏ ହାତ ଧରି ଟାଣେ—ଏତିକିବେଳେ ମା'ଙ୍କ କଥା ମନେ ପଡ଼ିଲା ! —ମା ସେତେବେଳେ ଏକା ଦକ୍ଷିଣେଶ୍ୱର କାଳୀମନ୍ଦିରର ନହବତ୍‌ରେ । ଆଉ ରହିବା ହେଲା ନାହିଁ । ସେତେବେଳେ କହିଲି—ନା, ମୋତେ ଯିବାକୁ ହେବ ।

''ବୃନ୍ଦାବନର ଭାବଧାରାଟି ବେଶ୍ । ନୂତନ ଯାତ୍ରୀ ଗଲେ ବ୍ରଜ-ବାଳକମାନେ କହନ୍ତି, 'ହରିବୋଲ, ଗଣ୍ଠିଲି ଖୋଲ' ।''

ଦିନ ଏଗାରଟା ପରେ ଠାକୁର ଶ୍ରୀରାମକୃଷ୍ଣ ମା'-କାଳୀଙ୍କର ପ୍ରସାଦ ଗ୍ରହଣ କଲେ । ମଧ୍ୟାହ୍ନରେ ଟିକିଏ ବିଶ୍ରାମ କରି ଓପରଓଳି ପୁଣି ଭକ୍ତଙ୍କ ସଙ୍ଗରେ

କଥାବାର୍ତ୍ତାରେ କଟାଉଛନ୍ତି — କେବଳ ମଧ୍ୟେ ମଧ୍ୟେ ଥରେ ଥରେ ପ୍ରଣବଧ୍ୱନି ବା 'ହା ଚୈତନ୍ୟ' ଏହି ନାମ ଉଚ୍ଚାରଣ କରୁଛନ୍ତି ।

ଦିଅଁଙ୍କ ମନ୍ଦିରରେ ସନ୍ଧ୍ୟାରେ ଆଳତି ହେଲା । ଆଜି ବିଜୟା — ଶ୍ରୀରାମକୃଷ୍ଣ କାଳୀଘରକୁ ଆସିଛନ୍ତି । ମାଆଙ୍କୁ ପ୍ରଣାମ ପରେ ଭକ୍ତମାନେ ତାଙ୍କର ପାଦଧୂଳି ଗ୍ରହଣ କଲେ । ରାମଲାଲ ମା' କାଳୀଙ୍କର ଆଳତି କରିଛନ୍ତି । ଠାକୁରେ ରାମଲାଲଙ୍କୁ ସମ୍ବୋଧନ କରି କହୁଛନ୍ତି, ''ଓ ରାମଲାଲ, କାହିଁରେ ?''

ମା' କାଳୀଙ୍କୁ ଭାଙ୍ଗପଣା ନିବେଦନ କରାଯାଇଛି । ଠାକୁର ସେହି ପ୍ରସାଦ ସ୍ପର୍ଶ କରିବେ — ସେଥିପାଇଁ ରାମଲାଲଙ୍କୁ ଡାକୁଛନ୍ତି । ଆଉ ଭକ୍ତମାନଙ୍କୁ ସମସ୍ତଙ୍କୁ ଟିକିଏ ଟିକିଏ ଦେବାକୁ କହୁଛନ୍ତି ।

## (୩)

## ଦକ୍ଷିଣେଶ୍ୱର ମନ୍ଦିରରେ ବଳରାମାଦିଙ୍କ ସଙ୍ଗରେ ବଳରାମଙ୍କୁ ଶିକ୍ଷା

(ଲକ୍ଷଣ — ସତ୍ୟକଥା — ସର୍ବଧର୍ମସମନ୍ୱୟ — 'କାମିନୀ-କାଞ୍ଚନ ହିଁ ମାୟା')

ମଙ୍ଗଳବାର ଅପରାହ୍ନ ୨୪ ଅକ୍ଟୋବର, ସମୟ ୩ଟା ୪ଟା ହେବ । ଠାକୁରେ ଖାଇବା ଜିନିଷର ଥାକ ପାଖରେ ଠିଆ ହୋଇଛନ୍ତି । ବଳରାମ ଓ ମାଷ୍ଟର ଖଣ୍ଡେ ଗାଡ଼ିରେ କଲିକତାରୁ ଆସିଛନ୍ତି ଓ ପ୍ରଣାମ କରୁଛନ୍ତି । ପ୍ରଣାମ କରି ବସିଲା ପରେ ଠାକୁର ହସି ହସି କହୁଛନ୍ତି, ''ଥାକ ଉପରୁ ଖାଇବା ଜିନିଷ ଆଣିବାକୁ ଯାଉଥିଲି, ଖାଦ୍ୟରେ ହାତ ଦେଇଛି, ଏତିକି ବେଳେ ଝିଟିପିଟି ପଡ଼ିଲା — ସଙ୍ଗେ ସଙ୍ଗେ ଛାଡ଼ି ଦେଇଛି ।' (ସମସ୍ତଙ୍କର ହାସ୍ୟ)

ଶ୍ରୀରାମକୃଷ୍ଣ — ହଁ ହେ, ସେସବୁ ମାନିବାକୁ ହୁଏ । ଏଇ ଦେଖୁନ, ରାଖାଲର ଦେହ ଖରାପ, ମୋର ହାତ ଗୋଡ଼ ବିନ୍ଧୁଛି । କ'ଣ ହେଲା ଜାଣ ? ମୁଁ ସକାଳେ ବିଛଣାରୁ ଉଠିବାବେଳେ ରାଖାଲ ଆସିଛି ଭାବି ଅମୁକର ମୁହଁ ଚାହିଁଛି । (ସମସ୍ତଙ୍କର ହାସ୍ୟ) । ହଁ ହେ, ଲକ୍ଷଣ ଦେଖିବାକୁ ହୁଏ । ସେଦିନ ନରେନ୍ଦ୍ର ଜଣେ କଣା ପିଲା ଆଣିଥିଲା, ତାର ବନ୍ଧୁ; ଯାହା ହେଉ ପୂରା କଣା ନୁହେଁ; ମୁଁ ଭାବିଲି ଏ ପୁଣି କଅଣ ଘଟିଲା !

''ଆଉ ଜଣେ ଆସେ, ମୁଁ ତା'ର ଜିନିଷ ଖାଇପାରେ ନାହିଁ । ସେ ଅଫିସ୍‌ରେ ଚାକିରୀ କରେ । ତାହାର ମାସିକ ବେତନ ୨୦ଟଙ୍କା । ଆଉ ୨୦ଟଙ୍କା କଅଣ ମିଥ୍ୟା (ବିଲ୍) ଲେଖି ପାଏ । ମିଛ କଥା କହେ ବୋଲି ସେ ଆସିଲେ ମୁଁ ବିଶେଷ କଥା କହେ ନାହିଁ । ହୁଏତ ଦୁଇ ଚାରିଦିନ ଅଫିସକୁ ଗଲା ନାହିଁ,

ଏହିଠାରେ ପଡ଼ି ରହିଲା । କ'ଣ ଜାଣ, ମତଲବ ଯେ ଯଦି କାହାକୁ କହି ବୋଲି ଦିଏ, ତାହା ହେଲେ ଅନ୍ୟ ଜାଗାରେ ଚାକିରୀ ହୋଇପାରେ ।''

ବଳରାମଙ୍କର ବଂଶ ପରମ ବୈଷ୍ଣବ ବଂଶ । ବଳରାମଙ୍କ ପିତା ବୃଦ୍ଧ ହୋଇଗଲେଣି, ପରମ ବୈଷ୍ଣବ । ମସ୍ତକରେ ଶିଖା, ଗଳାରେ ତୁଳସୀର ମାଳା, ଆଉ ହସ୍ତରେ ସର୍ବଦା ହରିନାମର ମାଳା ଜପ କରୁଥାନ୍ତି । ଏହାଙ୍କର ଓଡ଼ିଶାରେ ଅନେକ ଜମିଦାରୀ ଅଛି । ଆଉ କୋଠାରରେ, ଶ୍ରୀବୃନ୍ଦାବନରେ ଓ ଅନ୍ୟାନ୍ୟ ଅନେକ ସ୍ଥାନରେ ଶ୍ରୀଶ୍ରୀରାଧାକୃଷ୍ଣ ବିଗ୍ରହଙ୍କର ସେବା ଅଛି ଓ ଅତିଥିଶାଳା ଅଛି । ବଳାରାମ ନୂଆ କରି ଆସିଛନ୍ତି, ଠାକୁରେ ଗଳ୍ପ ଛଳରେ ତାଙ୍କୁ ନାନା ଉପଦେଶ ଦେଉଛନ୍ତି ।

ଶ୍ରୀରାମକୃଷ୍ଣ — ସେଦିନ ଅମୁକ ଆସିଥିଲା; ଶୁଣିଛି, ସେ କୁଆଡ଼େ ସେହି କାଳୀ ମାଇପିଟାର ଗୋଲାମ ! — ଈଶ୍ୱରଙ୍କ ଦର୍ଶନ କାହିଁକି ହେଉ ନାହିଁ ? — କାମିନୀକାଞ୍ଚନ ମଝିରେ ଆବୁଆଳ ହୋଇ ରହିଛି ବୋଲି । ଆଉ ତୁମ ସାମନାରେ କିପରି ସେଦିନ ଏକଥା କହିଲା ଯେ, ମୋ ବାପାଙ୍କ ପାଖକୁ ଜଣେ ପରମହଂସ ଆସିଥିଲେ, ବାବା ତାଙ୍କୁ କୁକୁଡ଼ା ରାନ୍ଧି ଖୁଆଇଲେ । (ବଳାରାମଙ୍କର ହାସ୍ୟ) । 'ମୋର ଅବସ୍ଥା' ବର୍ତ୍ତମାନ ମାଛର ଝୋଳ ମାଆଙ୍କର ପ୍ରସାଦ ହେଲେ ଟିକିଏ ଖାଇପାରେ । କିନ୍ତୁ ମାଆଙ୍କ ପ୍ରସାଦ ମାଂସ ବର୍ତ୍ତମାନ ପାରେ ନାହିଁ । ତେବେ ଆଙ୍ଗୁଠିରେ ନେଇ ଟିକିଏ ଚାଖେ, କାଳେ ମା' ରାଗିବେ । (ସମସ୍ତଙ୍କର ହାସ୍ୟ) ।

**ପୂର୍ବକଥା — ବର୍ଦ୍ଧମାନ ପଥେ ଦେଶଯାତ୍ରା —**

**ନକୁଡ଼ ଆଚାର୍ଯ୍ୟଙ୍କ ଗୀତ ଶ୍ରବଣ**

''ଆଚ୍ଛା, ମୋର ଏ କି ଅବସ୍ଥା କହ ତ ! ମୁଁ ସେଦେଶକୁ 'କାମାରପୁକୁରକୁ' ଯାଉଛି ବର୍ଦ୍ଧମାନରୁ ଓହ୍ଲାଇ, ଗୋରୁଗାଡ଼ିରେ ବସି — ଏପରି ସମୟରେ ଝଡ଼ ବୃଷ୍ଟି । ପୁଣି ଗାଡ଼ି ପାଖରେ କେଉଁଠାରୁ ଲୋକ ଆସି ଜୁଟିଲେ । ମୋ ସଙ୍ଗୀ ଲୋକମାନେ କହିଲେ, ଏମାନେ ଡକାଏତ ! ମୁଁ ସେତେବେଳେ ଈଶ୍ୱରଙ୍କ ନାମ କରିବାକୁ ଲାଗିଲି । କିନ୍ତୁ କେତେବେଳେ ରାମ ରାମ କହୁଛି ତ କେତେବେଳେ କାଳୀ, କାଳୀ, ପୁଣି କେତେବେଳେ ହନୁମାନ ହନୁମାନ, ସବୁ ପ୍ରକାର କହୁଛି — ଏ କ'ଣ କହିଲ !''

ଠାକୁର ଏହି କଥା କ'ଣ କହୁଛନ୍ତି ଯେ, ଏକ ଈଶ୍ୱର, ତାଙ୍କର ଅସଂଖ୍ୟ ନାମ — ଭିନ୍ନ ଧର୍ମାବଲମ୍ବୀ ବା ସଂପ୍ରଦାୟର ଲୋକେ ଅଯଥା ବିବାଦ କରି ମରନ୍ତି ?

ଶ୍ରୀରାମକୃଷ୍ଣ (ବଳରାମଙ୍କ ପ୍ରତି) — **କାମିନୀ–କାଞ୍ଚନ ହିଁ ମାୟା** । ତାହା ଭିତରେ ଅନେକ ଦିନ ରହିଲେ ହୋସ୍ ଚାଲିଯାଏ — ମନେହୁଏ ବେଶ୍ ଅଛି । ମେହେନ୍ତର ମଇଳା ବୋଝ ବୋହେ — ବୋହି ବୋହି ଆଉ ଘୃଣା ରହେ ନାହିଁ । ଈଶ୍ୱରଙ୍କ ନାମ–ଗୁଣ କୀର୍ତ୍ତନ କରିବା ଅଭ୍ୟାସ କଲେ କ୍ରମେ ଭକ୍ତି ହୁଏ ।

(ମାଷ୍ଟରଙ୍କ ପ୍ରତି) ''ସେଥିରେ ଲଜ୍ଜା କରିବାର କିଛି ନାହିଁ । 'ଲଜ୍ଜା, ଘୃଣା ଡର — ଏ ତିନିକୁ କର ଦୂର ।'

''ସେଦେଶରେ ବେଶ୍ କୀର୍ତ୍ତନ ଗୀତ ହୁଏ — ଖୋଳ ନେଇ କୀର୍ତ୍ତନ । ନକୁଡ଼ ଆଚାର୍ଯ୍ୟଙ୍କର ଗୀତ ଚମତ୍କାର ! ତୁମମାନଙ୍କର ବୃନ୍ଦାବନରେ ସେବା ଅଛି ?''

ବଳରାମ — ଆଜ୍ଞା ହଁ । ଗୋଟିଏ କୁଞ୍ଜ ଅଛି — ଶ୍ୟାମସୁନ୍ଦରଙ୍କର ସେବା ।

ଶ୍ରୀରାମକୃଷ୍ଣ — ମୁଁ ବୃନ୍ଦାବନ ଯାଇଥିଲି । ନିଧୁବନ ବେଶ୍ ସ୍ଥାନଟିଏ ।

# ଅଷ୍ଟମ ପରିଚ୍ଛେଦ

## (୧)

## ଶ୍ରୀଯୁକ୍ତ କେଶବଚନ୍ଦ୍ର ସେନ୍‌ଙ୍କ ସହିତ ନୌକାବିହାର

ଆଜି କୁମାରପୂର୍ଣ୍ଣିମା, ଲକ୍ଷ୍ମୀପୂଜା; ଶୁକ୍ରବାର, ୨୭ ଅକ୍ଟୋବର ୧୮୮୨ ।

ଠାକୁର ଦକ୍ଷିଣେଶ୍ୱର କାଳୀମନ୍ଦିରରେ ସେହି ପୂର୍ବ-ପରିଚିତ ଘରେ ବସିଛନ୍ତି । ବିଜୟ (ଗୋସ୍ୱାମୀ) ଓ ହରଲାଲଙ୍କ ସହିତ କଥାବାର୍ତ୍ତା କରୁଛନ୍ତି । ଜଣେ ଆସି କହିଲେ, କେଶବ ସେନ୍ ଜାହାଜରେ ଚଢ଼ି ଘାଟରେ ଆସି ଉପସ୍ଥିତ ! କେଶବଙ୍କ ଶିଷ୍ୟମାନେ ଆସି ଠାକୁରଙ୍କୁ ପ୍ରଣାମ କରି କହିଲେ, 'ମହାଶୟ, ଜାହାଜ ଆସିଛି, ଆପଣଙ୍କୁ ଯିବାକୁ ହେବ; ଚାଲନ୍ତୁ ଟିକିଏ ବୁଲି ଆସିବେ । କେଶବ ବାବୁ ଜାହାଜରେ ଅଛନ୍ତି, ଆମମାନଙ୍କୁ ପଠାଇଲେ ।'

ଅପରାହ୍ଣ ୪ଟା ପରେ । ଠାକୁର ନୌକା କରି ଜାହାଜକୁ ଉଠୁଛନ୍ତି । ସଙ୍ଗରେ ବିଜୟ । ନୌକାକୁ ଉଠିବା ମାତ୍ରେ ବାହ୍ୟଜ୍ଞାନଶୂନ୍ୟ, ସମାଧିସ୍ଥ । ମାଷ୍ଟର ଜାହାଜରେ ଠିଆ ହୋଇ ଏହି ସମାଧିଚିତ୍ର ଦେଖୁଛନ୍ତି । ସେ ୩ଟା ବେଳେ କେଶବଙ୍କ ଜାହାଜରେ ଚଢ଼ି କଲିକତାରୁ ଆସିଛନ୍ତି । ଭାରୀ ଇଚ୍ଛା, ଦେଖିବେ— ଠାକୁର ଓ କେଶବଙ୍କର ମିଳନ, ସେମାନଙ୍କର ଆନନ୍ଦ, ଶୁଣିବେ ସେମାନଙ୍କର କଥାବାର୍ତ୍ତା । କେଶବ ତାଙ୍କର ସାଧୁ ଚରିତ୍ରରେ ଓ ବକ୍ତୃତା ବଳରେ ମାଷ୍ଟରଙ୍କ ପରି ଅନେକ ବଙ୍ଗୀୟ ଯୁବକଙ୍କର ମନ ହରଣ କରିଛନ୍ତି । ଅନେକେ ମଧ୍ୟ ତାହାଙ୍କୁ ପରମ ଆତ୍ମୀୟବୋଧରେ ହୃଦୟର ପ୍ରୀତି ଦେଇଛନ୍ତି । କେଶବ ଇଂରାଜୀ-ପଢ଼ା ଲୋକ, ଇଂରାଜୀ ଦର୍ଶନ, ସାହିତ୍ୟ ପଢ଼ିଛନ୍ତି । ସେ ପୁଣି ହିନ୍ଦୁଙ୍କର ଦେବଦେବୀ-ପୂଜାକୁ ପୌତ୍ତଳିକତା କହୁଛନ୍ତି । ଏପରି ଲୋକ ଠାକୁର ଶ୍ରୀରାମକୃଷ୍ଣଙ୍କୁ ଭକ୍ତି— ଶ୍ରଦ୍ଧା କରନ୍ତି, ପୁଣି ମଝିରେ ମଝିରେ ତାଙ୍କୁ ଦର୍ଶନ କରିବାକୁ ଆସନ୍ତି—ଏହା ଅତି ଆଶ୍ଚର୍ଯ୍ୟ ! ସେମାନଙ୍କର ମନର ମିଳନ କେଉଁଠାରେ ବା କିପରି ହେଲା, ଏହି ରହସ୍ୟ ଭେଦ କରିବା ପାଇଁ ମାଷ୍ଟରାଦି ଅନେକେ କୌତୁହଳାକ୍ରାନ୍ତ ହୋଇଛନ୍ତି । ଠାକୁର ଶ୍ରୀରାମକୃଷ୍ଣ ନିରାକାରବାଦୀ ସତ୍ୟ, କିନ୍ତୁ ପୁଣି ସାକାରବାଦୀ । ବ୍ରହ୍ମଙ୍କର ଚିନ୍ତା କରନ୍ତି, ପୁଣି ଦେବଦେବୀ ପ୍ରତିମା ସମ୍ମୁଖରେ ଫୁଲ, ଚନ୍ଦନ ଦେଇ ପୂଜା ମଧ୍ୟ କରନ୍ତି ଓ ପ୍ରେମରେ ମତୁଆଲା ହୋଇ ନୃତ୍ୟ ଗୀତ କରନ୍ତି । ଖଟ ବିଛଣାରେ ବସନ୍ତି, ଲାଲଧଡ଼ି ଲୁଗା, ଜାମା, ମୋଜା, ଜୋତା ପିନ୍ଧନ୍ତି । କିନ୍ତୁ ସଂସାର କରନ୍ତି ନାହିଁ । ଭାବଗୁଡ଼ିକ ଠିକ୍ ସନ୍ନ୍ୟାସୀ ପରି, ତେଣୁ ଲୋକେ ପରମହଂସ କହନ୍ତି । ଏଣେ କେଶବ ନିରାକାରବାଦୀ, ସ୍ତ୍ରୀ-ପୁତ୍ର ନେଇ ସଂସାର କରନ୍ତି, ଇଂରାଜୀରେ ଲେକ୍‌ଚର୍ ଦିଅନ୍ତି, ସମ୍ବାଦପତ୍ର ଲେଖନ୍ତି ଓ ବିଷୟ-କର୍ମ ମଧ୍ୟ କରନ୍ତି ।

ଜାହାଜରେ ସମବେତ କେଶବ ପ୍ରମୁଖ ବ୍ରାହ୍ମ ଭକ୍ତଗଣ ଜାହାଜ ଉପରୁ ଦେବୀ ମନ୍ଦିରର ଶୋଭା ସନ୍ଦର୍ଶନ କରୁଛନ୍ତି । ଜାହାଜର ପୂର୍ବ ଦିଗରେ ଅନତିଦୂରରେ ବନ୍ଧା–ଘାଟ ଓ ମନ୍ଦିରର ମଣ୍ଡପ । ଆରୋହୀମାନଙ୍କର ବାମ ପାର୍ଶ୍ୱରେ ମଣ୍ଡପର ଉତ୍ତରରେ ଦ୍ୱାଦଶ ଶିବମନ୍ଦିର ମଧ୍ୟରୁ କ୍ରମାନ୍ୱୟରେ ଛଅଟି ମନ୍ଦିର । ଦକ୍ଷିଣ ପାର୍ଶ୍ୱରେ ମଧ୍ୟ ଛଅଟି ଶିବମନ୍ଦିର । ଶରତ୍‌କାଳର ନୀଳ ଆକାଶ ଚିତ୍ରପଟରେ ଭବତାରିଣୀ ମନ୍ଦିରର ଚୂଡ଼ା ଓ ଉତ୍ତର ଦିଗରେ ପଞ୍ଚବଟୀ ଏବଂ ଝାଉଁଗଛର ଉପରିଭାଗଗୁଡ଼ିକ ଦେଖାଯାଉଛି । ବକୁଳତଳ ନିକଟରେ ଗୋଟିଏ ଓ କାଳୀମନ୍ଦିରର ଦକ୍ଷିଣ ପ୍ରାନ୍ତରେ ଆଉ ଗୋଟିଏ ନହବତ୍‌ଖାନା । ଦୁଇ ନହବତ୍‌ଖାନାର ମଧ୍ୟବର୍ତ୍ତୀ ଉଦ୍ୟାନପଥ ଓ ତାହାର ଧାରେ ଧାରେ ଧାଡ଼ି ଧାଡ଼ି ପୁଷ୍ପବୃକ୍ଷ । ଶରତ୍‌ର ନୀଳାକାଶର ନୀଳିମା ଜାହ୍ନବୀର ଜଳରେ ପ୍ରତିଭାସିତ ହେଉଛି । ବହିର୍ଜଗତରେ କୋମଳ ଭାବ, ବ୍ରାହ୍ମଭକ୍ତଙ୍କର ହୃଦୟ ମଧ୍ୟରେ କୋମଳ ଭାବ । ଊର୍ଦ୍ଧ୍ୱରେ ସୁନ୍ଦର ସୁନୀଳ ଅନନ୍ତ ଆକାଶ, ସମ୍ମୁଖରେ ସୁନ୍ଦର ଦେବାଳୟ, ନିମ୍ନରେ ପବିତ୍ରସଲିଳା ଗଙ୍ଗା, ଯାହାଙ୍କର ତୀରରେ ଆର୍ଯ୍ୟଋଷିଗଣ ଭଗବାନଙ୍କର ଚିନ୍ତା କରୁଛନ୍ତି । ପୁଣି ଆସିଛନ୍ତି ଜଣେ ମହାପୁରୁଷ, ଯେପରି ସାକ୍ଷାତ୍ ସନାତନ ଧର୍ମ । ଏପରି ଦର୍ଶନ ମନୁଷ୍ୟର କପାଳରେ ସର୍ବଦା ଘଟେ ନାହିଁ । ଏପରି ସ୍ଥଳେ ସମାଧିସ୍ଥ ମହାପୁରୁଷଙ୍କଠାରେ କାହାର ବା ଭକ୍ତିର ଉଦ୍ରେକ ନ ହେବ ! କେଉଁ ପାଷାଣ–ହୃଦୟ ବା ବିଗଳିତ ନ ହେବ !

## (୨)

ବାସାଂସି ଜୀର୍ଣ୍ଣାନି ଯଥା ବିହାୟ, ନବାନି ଗୃହ୍ଣାତି ନରୋଽପରାଣି ।
ତଥା ଶରୀରାଣି ବିହାୟ ଜୀର୍ଣ୍ଣାନ୍ୟନ୍ୟାନି ସଂଯାତି ନବାନି ଦେହୀ ॥
—ଗୀତା, ୨/୨୨

## ସମାଧିମନ୍ଦିରରେ—ଅତ୍ମା ଅବିନଶ୍ୱର—ପଓ୍ୱାହାରୀ ବାବା

ନୌକା ଆସି ଲାଗିଲା । ସମସ୍ତେ ଠାକୁର ଶ୍ରୀରାମକୃଷ୍ଣଙ୍କୁ ଦେଖିବା ପାଇଁ ବ୍ୟସ୍ତ । ଭିଡ଼ ହୋଇଛି । ଠାକୁରଙ୍କୁ ନିରାପଦରେ ଓହ୍ଲାଇ ଦେବା ପାଇଁ କେଶବ ବ୍ୟସ୍ତ ହେଲେ । ଠାକୁରଙ୍କୁ ଅନେକ କଷ୍ଟରେ ହୋସ୍ କରାଇ ଘର ଭିତରକୁ ନିଆଗଲା । ବର୍ତ୍ତମାନ ମଧ୍ୟ ଭାବସ୍ଥ । ଜଣେ ଭକ୍ତଙ୍କ ଉପରେ ଭରା ଦେଇ ଆସୁଛନ୍ତି । ପାଦ ପଡୁଛି ମାତ୍ର । କ୍ୟାବିନ୍ ଘରେ ପ୍ରବେଶ କଲେ । କେଶବାଦି ଭକ୍ତମାନେ ପ୍ରଣାମ କଲେ, କିନ୍ତୁ କିଛି ହୋସ୍ ନାହିଁ । ଘର ମଧ୍ୟରେ ଗୋଟିଏ ଟେବୁଲ, କେତୋଟି ଚୌକି । ଖଣ୍ଡେ ଚୌକିରେ ଠାକୁରଙ୍କୁ ବସାଇ ଦିଆଗଲା । କେଶବ ଖଣ୍ଡକରେ ବସିଲେ । ବିଜୟ ବସିଲେ । ଅନ୍ୟାନ୍ୟ ଯେ ଯେପରି ପାଇଲେ, ତଳେ ବସିଲେ । ଅନେକ ଲୋକଙ୍କୁ ସ୍ଥାନ ହେଲା ନାହିଁ । ସେମାନେ ବାହାରୁ ଉଙ୍କିମାରି ଦେଖୁଛନ୍ତି ।

ଠାକୁର ବସି ପୁଣି ସମାଧିସ୍ଥ । ସଂପୂର୍ଣ୍ଣ ବାହ୍ୟଜ୍ଞାନଶୂନ୍ୟ । ସମସ୍ତେ ଏକ ଦୃଷ୍ଟିରେ ଦେଖୁଛନ୍ତି ।

କେଶବ ଦେଖିଲେ ଘର ମଧ୍ୟରେ ଅନେକ ଲୋକ, ଠାକୁରଙ୍କୁ କଷ୍ଟ ହେଉଛି । ବିଜୟ ତାଙ୍କୁ ଛାଡ଼ିଯାଇ ସାଧାରଣ ବ୍ରାହ୍ମସମାଜଭୁକ୍ତ ହୋଇଛନ୍ତି ଓ ତାଙ୍କ କନ୍ୟାଙ୍କର ବିବାହ ଇତ୍ୟାଦି କାର୍ଯ୍ୟ ବିରୋଧରେ ଅନେକ ବକ୍ତୃତା ଦେଇଛନ୍ତି । ତେଣୁ ବିଜୟଙ୍କୁ ଦେଖି କେଶବ ଟିକିଏ ଅପ୍ରସ୍ତୁତ ହେଲେ । କେଶବ ଆସନ ତ୍ୟାଗ କରି ଉଠିଲେ । ଘରର ଝରକା ଖୋଲିଦେଲେ ।

ବ୍ରାହ୍ମ ଭକ୍ତମାନ ଏକ ଦୃଷ୍ଟିରେ ଚାହିଁଛନ୍ତି । ଠାକୁରଙ୍କର ସମାଧି ଭଙ୍ଗ ହେଲା । ବର୍ତ୍ତମାନ ମଧ ଭାବ ପୂର୍ଣ୍ଣମାତ୍ରାରେ ରହିଛି । ଠାକୁରେ ନିଜେ ନିଜେ ଅସ୍ଫୁଟ ସ୍ୱରରେ କହୁଛନ୍ତି, ''ମା, ମୋତେ ଏଠାକୁ କାହିଁକୁ ଆଣିଲୁ ? ମୁଁ କ'ଣ ଏମାନଙ୍କୁ ବନ୍ଧନରୁ ରକ୍ଷା କରିପାରିବି ?''

ଠାକୁର କ'ଣ ଦେଖୁଛନ୍ତି ଯେ, ସଂସାରୀ ବ୍ୟକ୍ତିମାନେ ପାଚେରୀ ଭିତରେ ବଦ୍ଧ, ବାହାରକୁ ଆସିପାରୁ ନାହାନ୍ତି, ବାହାରର ଆଲୋକ ମଧ ଦେଖିବାକୁ ପାଉନାହାନ୍ତି, ସମସ୍ତଙ୍କର ବିଷୟ-କର୍ମ, ହାତ ଗୋଡ଼ ବନ୍ଧା ! ସେମାନେ କେବଳ ଘର ଭିତରର ଜିନିଷଗୁଡ଼ିକ ଦେଖିବାକୁ ପାଉଛନ୍ତି, ଆଉ ମନେ କରୁଛନ୍ତି ଯେ, ଜୀବନର ଉଦ୍ଦେଶ୍ୟ କେବଳ ଦେହସୁଖ ଓ ବିଷୟକର୍ମ, 'କାମିନୀ ଓ କାଞ୍ଚନ' । ସେଥିପାଇଁ ଠାକୁର କ'ଣ ଏପରି କଥା କହିଲେ ?—''ମା, ମୋତେ ଏଠାକୁ କାହିଁକି ଆଣିଲୁ ? ମୁଁ କ'ଣ ଏମାନଙ୍କୁ ବନ୍ଧନରୁ ରକ୍ଷା କରିପାରିବି ?

ଠାକୁରଙ୍କର କ୍ରମେ କ୍ରମେ ବାହ୍ୟଜ୍ଞାନ ହେଉଛି । ଗାଜିପୁରର ନୀଳମାଧବ ବାବୁ ଓ ଜଣେ ବ୍ରାହ୍ମଭକ୍ତ ପଓହାରୀ ବାବାଙ୍କ କଥା ପକାଇଲେ ।

ଜଣେ ବ୍ରାହ୍ମଭକ୍ତ (ଠାକୁରଙ୍କ ପ୍ରତି)—ଆଜ୍ଞା, ଏମାନେ ସମସ୍ତେ ପଓହାରୀ ବାବାଙ୍କୁ ଦେଖିଛନ୍ତି । ସେ ଗାଜିପୁରରେ ଥାଆନ୍ତି । ଆପଣଙ୍କ ପରି ଆଉ ଜଣେ ।

ଠାକୁର ଏପର୍ଯ୍ୟନ୍ତ କଥା କହି ପାରୁନାହାନ୍ତି । ଈଷତ୍ ହାସ୍ୟ କଲେ ।

ବ୍ରାହ୍ମଭକ୍ତ (ଠାକୁରଙ୍କ ପ୍ରତି)—ମହାଶୟ, ପୱାହାରୀ ବାବା ନିଜ ଘରେ ଆପଣଙ୍କର ଫଟୋଗ୍ରାଫ୍ ରଖିଛନ୍ତି ।

ଠାକୁର ଈଷତ୍ ହାସ୍ୟ କରି କହିଲେ, ''ଖୋଳଟାଏ ।''

## (୩)

ୟତ୍ସାଂଖ୍ୟୈଃ ପ୍ରାପ୍ୟତେ ସ୍ଥାନଂ ତଦ୍ୟୋଗୈରପି ଗମ୍ୟତେ ।
ଏକଂ ସାଂଖ୍ୟଂ ଚ ଯୋଗଂ ଚ ୟଃ ପଶ୍ୟତି ସ ପଶ୍ୟତି ॥—ଗୀତା, ୫/୫

## ଜ୍ଞାନଯୋଗ, ଭକ୍ତିଯୋଗ ଓ କର୍ମଯୋଗର ସମନ୍ୱୟ

'ତକିଆ ଓ ତାହାର ଖୋଳ'—ଦେହୀ ଓ ଦେହ । ଠାକୁର କ'ଣ କହୁଛନ୍ତି ଯେ, ଦେହ ବିନଶ୍ୱର, ରହିବ ନାହିଁ ? ଦେହ ଭିତରେ ଯେ ଦେହୀ ସେ ଅବିନାଶୀ, ଅତଏବ ଦେହର ଫଟୋଗ୍ରାଫ୍ ନେଇ କଅଣ ହେବ ? ଦେହ ଅନିତ୍ୟ ପଦାର୍ଥ, ଏହା ଆଦର କରି କଅଣ ହେବ ? ବରଂ ଯେଉଁ ଭଗବାନ ଅନ୍ତର୍ଯ୍ୟାମୀ ରୂପରେ ମନୁଷ୍ୟର ହୃଦୟ ମଧ୍ୟରେ ବିରାଜ କରୁଛନ୍ତି ତାଙ୍କୁ ପୂଜା କରିବା ଉଚିତ ।

ଠାକୁର ଏବେ ଟିକିଏ ପ୍ରକୃତିସ୍ଥ ହୋଇଛନ୍ତି । କହୁଛନ୍ତି, "ତେବେ ଗୋଟିଏ କଥା ଅଛି । ଭକ୍ତର ହୃଦୟ ତାଙ୍କର ଆବାସସ୍ଥାନ । ସେ ସର୍ବଭୂତରେ ଅଛନ୍ତି ସତ୍ୟ; କିନ୍ତୁ ଭକ୍ତହୃଦୟରେ ସେ ବିଶେଷରୂପରେ ଅଛନ୍ତି । ଯେପରି କୌଣସି ଜମିଦାର ତାଙ୍କ ଜମିଦାରୀର ସବୁ ସ୍ଥାନରେ ରହିପାରନ୍ତି; କିନ୍ତୁ ଅମୁକ ବୈଠକଖାନାରେ ସେ ପ୍ରାୟ ରହନ୍ତି, ଏହା ଲୋକେ କହନ୍ତି । ଭକ୍ତର ହୃଦୟ ଭଗବାନଙ୍କ ବୈଠକଖାନା । (ସମସ୍ତଙ୍କର ଆନନ୍ଦ)

**ଏକ ଈଶ୍ୱର—ତାଙ୍କର ଭିନ୍ନ ନାମ—ଜ୍ଞାନୀ, ଯୋଗୀ ଓ ଭକ୍ତ**

"ଜ୍ଞାନୀମାନେ ଯାହାଙ୍କୁ **ବ୍ରହ୍ମ** କହନ୍ତି, ଯୋଗୀମାନେ ତାହାଙ୍କୁ ହିଁ **ଆତ୍ମା** କହନ୍ତି, ଆଉ ଭକ୍ତମାନେ ତାଙ୍କୁ ହିଁ **ଭଗବାନ** କହନ୍ତି ।

"ଜଣେ ବ୍ରାହ୍ମଣ—ଯେତେବେଳେ ପୂଜା କରେ, ତା'ର ନାମ ପୂଜାରୀ, ଯେତେବେଳେ ରାନ୍ଧେ, ସେତେବେଳେ ସେ ରୋଷେୟା ବ୍ରାହ୍ମଣ । ଯେ ଜ୍ଞାନୀ, ଜ୍ଞାନଯୋଗ ଧରି ରହିଛନ୍ତି; ସେ ନେତି ନେତି ବିଚାର କରନ୍ତି—ବ୍ରହ୍ମ ଏହା ନୁହେଁ, ତାହା ନୁହେଁ, ଜୀବ ନୁହେଁ, ଜଗତ୍ ନୁହେଁ—ଏପରି ବିଚାର କରୁ କରୁ ଯେତେବେଳେ ମନ ସ୍ଥିର ହୁଏ, ମନର ଲୟ ହୁଏ, ସମାଧି ହୁଏ, ସେତେବେଳେ ବ୍ରହ୍ମଜ୍ଞାନ । ବ୍ରହ୍ମଜ୍ଞାନୀର ଠିକ୍ ଧାରଣା—**ବ୍ରହ୍ମ ସତ୍ୟ, ଜଗତ୍ ମିଥ୍ୟା** । ନାମ-ରୂପ—ଏସମସ୍ତ ସ୍ୱପ୍ନପରି; ବ୍ରହ୍ମ କଅଣ ସେ କଥା ମୁହଁରେ କୁହାଯାଇପାରେ ନାହିଁ; ସେ ଜଣେ ବ୍ୟକ୍ତି (Personal God)—ଏହା ମଧ୍ୟ କହିବାର ବାଟ ନାହିଁ ।

"ଜ୍ଞାନୀମାନେ ଏହିପରି କହନ୍ତି—ଯେପରି ବେଦାନ୍ତବାଦୀମାନେ । ଭକ୍ତମାନେ କିନ୍ତୁ ସବୁ ଅବସ୍ଥା ମାନନ୍ତି । ଜାଗ୍ରତ ଅବସ୍ଥାକୁ ମଧ୍ୟ ସତ୍ୟ ବୋଲି କହନ୍ତି । ଜଗତ୍‌କୁ ସ୍ୱପ୍ନବତ୍ କହନ୍ତି ନାହିଁ । ଭକ୍ତମାନେ କହନ୍ତି, ଏହି ଜଗତ ଭଗବାନଙ୍କର ଐଶ୍ୱର୍ଯ୍ୟ । ଆକାଶ, ନକ୍ଷତ୍ର, ଚନ୍ଦ୍ର, ପର୍ବତ, ସମୁଦ୍ର, ଜୀବ, ଜନ୍ତୁ, ଏସବୁ ଈଶ୍ୱର କରିଛନ୍ତି । ତାଙ୍କର ହିଁ ଐଶ୍ୱର୍ଯ୍ୟ । ସେ ଅନ୍ତରରେ, ହୃଦୟ ମଧ୍ୟରେ, ଆହୁରି ମଧ୍ୟ ବାହାରେ । ଉତ୍ତମ ଭକ୍ତ କହନ୍ତି—ସେ ନିଜେ ଏହି ଚତୁର୍ବିଂଶତି ତତ୍ତ୍ୱ, ଜଗତ ହୋଇଛନ୍ତି । ଭକ୍ତର ଇଚ୍ଛା ଯେ, ସେ ଚିନି ଖାଇବ । ନିଜେ ଚିନି ହେବାକୁ ଭଲପାଏ ନାହିଁ । (ସମସ୍ତଙ୍କର ହାସ୍ୟ)

''ଭକ୍ତର ଭାବ କିପରି ଜାଣ ? ହେ ଭଗବାନ୍, 'ତୁମେ ପ୍ରଭୁ, ମୁଁ ତୁମର ଦାସ; ତୁମେ ମା, ମୁଁ ତୁମର ସନ୍ତାନ; ଆଉ ତୁମେ ମୋର ସନ୍ତାନ, ମୁଁ ତୁମର ପିତା ବା ମାତା, ତୁମେ ପୂର୍ଣ୍ଣ, ମୁଁ ତୁମର ଅଂଶ । ଭକ୍ତ ଏପରି କହିବାକୁ ଇଚ୍ଛା କରେ ନାହିଁ ଯେ 'ମୁଁ ବ୍ରହ୍ମ' ।

''ଯୋଗୀ ମଧ୍ୟ ପରମାତ୍ମାଙ୍କୁ ସାକ୍ଷାତ୍କାର କରିବାକୁ ଚେଷ୍ଟା କରେ । ଉଦ୍ଦେଶ୍ୟ ଜୀବାତ୍ମା ଓ ପରମାତ୍ମାଙ୍କର ଯୋଗ । ଯୋଗୀ ବିଷୟରୁ ମନକୁ କାଢ଼ି ନିଏ ଓ ପରମାତ୍ମାଙ୍କଠାରେ ମନ ସ୍ଥିର କରିବାକୁ ଚେଷ୍ଟା କରେ । ତେଣୁ ପ୍ରଥମ ଅବସ୍ଥାରେ ନିର୍ଜ୍ଜନରେ ସ୍ଥିର ଆସନରେ ଅନନ୍ୟମନା ହୋଇ ଧ୍ୟାନ ଚିନ୍ତା କରେ ।

''କିନ୍ତୁ ଗୋଟିଏ ମାତ୍ର ବସ୍ତୁ; ନାମରେ କେବଳ ଯାହା ଭେଦ । ଯେ ବ୍ରହ୍ମ, ସେ ହିଁ ଆତ୍ମା, ସେ ହିଁ ଭଗବାନ୍ । ବ୍ରହ୍ମଜ୍ଞାନୀର **ବ୍ରହ୍ମ,** ଯୋଗୀର **ପରମାତ୍ମା,** ଭକ୍ତର **ଭଗବାନ ।''**

## (୪)

ତ୍ୱମେବ ସୂକ୍ଷ୍ମା ତ୍ୱଂ ସ୍ଥୂଳା ବ୍ୟକ୍ତାବ୍ୟକ୍ତସ୍ୱରୂପିଣୀ ।
ନିରାକାରାପି ସାକାରା କସ୍ତ୍ୱାଂ ବେଦିତୁମର୍ହତି ॥

—ମହାନିର୍ବାଣତନ୍ତ୍ର, ୪/୧୫

## ବେଦ ଓ ତନ୍ତ୍ରର ସମନ୍ୱୟ—ଆଦ୍ୟାଶକ୍ତିର ଐଶ୍ୱର୍ଯ୍ୟ

ଏଣେ ଆଗ୍ନେୟପୋତ କଲିକତା ଅଭିମୁଖେ ଚାଲିଛି । ଘର ଭିତରେ ଶ୍ରୀରାମକୃଷ୍ଣଙ୍କୁ ଯେଉଁମାନେ ଦର୍ଶନ କରୁଥିଲେ ଓ ତାଙ୍କର ଅମୃତମୟୀ ବାଣୀ ଶ୍ରବଣ କରୁଥିଲେ, ସେମାନେ ଜାହାଜ ଚାଲୁଛି କି ନାହିଁ, ଏକଥା ଜାଣିପାରିଲେ ନାହିଁ । ଭ୍ରମର ପୁଷ୍ପରେ ବସିଲେ ଆଉ କ'ଣ ଭଁ ଭଁ କରେ ?

ଆସ୍ତେ ଆସ୍ତେ ଜାହାଜ ଦକ୍ଷିଣେଶ୍ୱରଠାରୁ ଦୂରକୁ ଚାଲିଗଲା । ସୁନ୍ଦର ଦେବାଳୟର ଛବି ଦୃଶ୍ୟପଟର ବହିର୍ଭୂତ ହେଲା । ପୋତଚକ୍ରବିକ୍ଷୁବ୍ଧ ନୀଳାଭ ଗଙ୍ଗାବାରି ତରଙ୍ଗାୟିତ, ଫେନିଳ, କଲ୍ଲୋଳପୂର୍ଣ୍ଣ ହେବାକୁ ଲାଗିଲା । ଭକ୍ତମାନଙ୍କର କାନରେ ସେ କଲ୍ଲୋଳ ଆଉ ପହଞ୍ଚିଲା ନାହିଁ । ସେମାନେ ମୁଗ୍ଧ ହୋଇ ଦେଖୁଛନ୍ତି—ସହାସ୍ୟବଦନ, ଆନନ୍ଦମୟ, ପ୍ରେମାନୁରଞ୍ଜିତନୟନ, ପ୍ରିୟଦର୍ଶନ ଅଦ୍ଭୁତ ଏକ ଯୋଗୀ ! ସେମାନେ ବିଭୋର ହୋଇ ଦେଖୁଛନ୍ତି—ଜଣେ ସର୍ବତ୍ୟାଗୀ ପ୍ରେମିକ ବୈରାଗୀ ! ଈଶ୍ୱର ଭିନ୍ନ ଆଉ କିଛି ସେ ଜାଣନ୍ତି ନାହିଁ । ଏଣେ ଠାକୁରଙ୍କର କଥା ଚାଲିଛି ।

ଶ୍ରୀରାମକୃଷ୍ଣ—ବେଦାନ୍ତବାଦୀ ବ୍ରହ୍ମଜ୍ଞାନୀମାନେ କହନ୍ତି, 'ସୃଷ୍ଟି ସ୍ଥିତି, ପ୍ରଳୟ, ଜୀବ, ଜଗତ—ଏସମସ୍ତ ଶକ୍ତିର ଖେଳ । ବିଚାର କରିବାକୁ ଗଲେ, ଏସମସ୍ତ ସ୍ୱପ୍ନବତ୍; ବ୍ରହ୍ମ ହିଁ ବସ୍ତୁ, ଆଉ ସବୁ ଅବସ୍ତୁ । ଶକ୍ତି ମଧ୍ୟ ସ୍ୱପ୍ନବତ୍ ଅବସ୍ତୁ ।'

''କିନ୍ତୁ ହଜାର ବିଚାର କର, ସମାଧିସ୍ଥ ନ ହେଲେ ଶକ୍ତିର ଇଲାକା ଛାଡ଼ି ଯିବାର ଯୁ ନାହିଁ । 'ମୁଁ ଧ୍ୟାନ କରୁଛି', 'ମୁଁ ଚିନ୍ତା କରୁଛି' — ଏସବୁ ଶକ୍ତିର ଇଲାକା ମଧ୍ୟରେ, ଶକ୍ତିର ଐଶ୍ୱର୍ଯ୍ୟ ମଧ୍ୟରେ ।

''ତେଣୁ ବ୍ରହ୍ମ ଓ ଶକ୍ତି ଅଭେଦ । ଗୋଟିକୁ ମାନିଲେ ଆଉ ଗୋଟିକୁ ମାନିବାକୁ ହୁଏ । ଯେପରି ଅଗ୍ନି ଆଉ ତାହାର ଦାହିକାଶକ୍ତି — ଅଗ୍ନି ମାନିଲେ ଦାହିକାଶକ୍ତି ମାନିବାକୁ ହୁଏ; ଦାହିକାଶକ୍ତି ବ୍ୟତୀତ ଅଗ୍ନିକୁ ଭାବି ହୁଏ ନାହିଁ । ସୂର୍ଯ୍ୟଙ୍କୁ ବାଦ ଦେଇ ସୂର୍ଯ୍ୟଙ୍କର ରଶ୍ମିକୁ ଭାବି ହୁଏ ନାହିଁ ଓ ସୂର୍ଯ୍ୟଙ୍କର ରଶ୍ମିକୁ ଛାଡ଼ି ସୂର୍ଯ୍ୟଙ୍କୁ ଭାବି ହୁଏ ନାହିଁ ।

''ଦୁଧ କିପରି ? ନା, ଧଳା ଧଳା । ଦୁଧକୁ ଛାଡ଼ି ଦୁଧର ଧବଳତ୍ୱ ଭାବି ହୁଏ ନାହିଁ; ପୁଣି ଦୁଧର ଧବଳତ୍ୱକୁ ଛାଡ଼ି ଦୁଧକୁ ଭାବି ହୁଏ ନାହିଁ ।

''ତେଣୁ ବ୍ରହ୍ମଙ୍କୁ ଛାଡ଼ି ଶକ୍ତିକୁ ବା ଶକ୍ତିକୁ ଛାଡ଼ି ବ୍ରହ୍ମଙ୍କୁ ଭାବି ହୁଏ ନାହିଁ । ନିତ୍ୟକୁ ଛାଡ଼ି ଲୀଳା, ଆଉ ଲୀଳାକୁ ଛାଡ଼ି ନିତ୍ୟ ଭାବି ହୁଏ ନାହିଁ ।''

କେଶବ (ସହାସ୍ୟ) — କାଳୀ କେତେ ଭାବରେ ଲୀଳା କରୁଛନ୍ତି, ସେହି କଥା ଥରେ କୁହନ୍ତୁ ।

**କେଶବଙ୍କ ସହିତ କଥୋପକଥନ — ମହାକାଳୀ ଓ ସୃଷ୍ଟିପ୍ରକରଣ**

ଶ୍ରୀରାମକୃଷ୍ଣ (ହସି ହସି) — ସେ ନାନା ଭାବରେ ଲୀଳା କରୁଛନ୍ତି । ସେ **ମହାକାଳୀ, ନିତ୍ୟକାଳୀ, ଶ୍ମଶାନକାଳୀ, ରକ୍ଷାକାଳୀ, ଶ୍ୟାମାକାଳୀ ।**

''ମହାକାଳୀ ଓ ନିତ୍ୟକାଳୀର କଥା ତନ୍ତ୍ରରେ ଅଛି । ଯେତେବେଳେ ସୃଷ୍ଟି ହୋଇ ନଥିଲା — ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ପୃଥିବୀ ନ ଥିଲେ — ନିବିଡ଼ ଅନ୍ଧକାର, ସେତେବେଳେ କେବଳ ମା ନିରାକାର ମହାକାଳୀ ମହାକାଳଙ୍କ ସଙ୍ଗରେ ବିରାଜ କରୁଥିଲେ ।

''ଶ୍ୟାମାକାଳୀଙ୍କର ବହୁପରିମାଣରେ କୋମଳ ସ୍ୱଭାବ — ବରାଭୟଦାୟିନୀ । ଗୃହସ୍ଥର ଘରେ ତାଙ୍କର ପୂଜା ହୁଏ । ଯେତେବେଳେ ମହାମାରୀ, ଦୁର୍ଭିକ୍ଷ, ଭୂମିକମ୍ପ, ଅନାବୃଷ୍ଟି, ଅତିବୃଷ୍ଟି ହୁଏ, ସେତେବେଳେ ରକ୍ଷାକାଳୀଙ୍କର ପୂଜା କରିବାକୁ ହୁଏ । ଶ୍ମଶାନକାଳୀଙ୍କର ସଂହାରମୂର୍ତ୍ତି — ଶବ, ଶିବା, ଡାକିନୀ, ଯୋଗିନୀ, ଶ୍ମଶାନ ଭିତରେ ରହନ୍ତି — ରୁଧିରଧାରା, ଗଳାରେ ମୁଣ୍ଡମାଳା, କଟିରେ ନରହସ୍ତର କଟିବନ୍ଧନ ।

''ଯେତେବେଳେ ଜଗତର ବିନାଶ ହୁଏ, ମହାପ୍ରଳୟ ହୁଏ, ସେତେବେଳେ ମା ସୃଷ୍ଟିର ବୀଜସବୁ ଗୋଟାଇ ରଖନ୍ତି । ଗୃହିଣୀ ନିକଟରେ ଯେପରି ଗୋଟିଏ ଆଳିମାଳିକା ହାଣ୍ଡିଥାଏ, ଆଉ ସେହି ହାଣ୍ଡିରେ ଗୃହିଣୀ ପାଞ୍ଚ ପ୍ରକାର ଜିନିଷ ଗୋଟାଇ ରଖେ ।'' (କେଶବ ଓ ସମସ୍ତଙ୍କର ହାସ୍ୟ)

ଶ୍ରୀରାମକୃଷ୍ଣ (ସହାସ୍ୟ)—ହଁ ହେ, ଘରଣୀଙ୍କର ଏହିପରି ଗୋଟିଏ ହାଣ୍ଡିଥାଏ । ଭିତରେ ସମୁଦ୍ରଫେଣ, ନୀଳବଡ଼ି, କନାପୁଡ଼ିଆରେ କାକୁଡ଼ି ମଞ୍ଜି, କଖାରୁ ମଞ୍ଜି, ଲାଉ ମଞ୍ଜି, ଏହିସବୁ ରଖିଥାନ୍ତି; ଦରକାର ହେଲେ ବାହାର କରନ୍ତି । ମା ବ୍ରହ୍ମମୟୀ ସୃଷ୍ଟିନାଶ ପରେ ଏହିପରି ସବୁ ବୀଜ ଗୋଟାଇ ରଖନ୍ତି । ସୃଷ୍ଟି ପରେ **ଆଦ୍ୟାଶକ୍ତି** ଜଗତ ଭିତରେ ହିଁ ଥାଆନ୍ତି । ଜଗତ ପ୍ରସବ କରନ୍ତି, ଆଉ ଜଗତ ମଧ୍ୟରେ ରହନ୍ତି । ବେଦରେ ଅଛି ଊର୍ଣ୍ଣନାଭିର କଥା—ବୁଢ଼ୀଆଣୀ ଆଉ ତା'ର ଜାଲ । ବୁଢ଼ୀଆଣୀ ନିଜ ଭିତରୁ ଜାଲ ବାହାର କରେ, ଆଉ ନିଜେ ସେହି ଜାଲରେ ରହେ । ଈଶ୍ୱର ଜଗତର ଆଧାର ଓ ଆଧେୟ ଦୁଇ ।

**କାଳୀବ୍ରହ୍ମ—କାଳୀ ନିର୍ଗୁଣା ଓ ସଗୁଣା**

''କାଳୀ କ'ଣ କଳା ? ଦୂରରୁ କଳା, ଜାଣିପାରିଲେ କଳା ନୁହେଁ ।

''ଆକାଶ ଦୂରରୁ ନୀଳବର୍ଣ୍ଣ । ପାଖରେ ଦେଖ, କୌଣସି ରଙ୍ଗ ନାହିଁ । ସମୁଦ୍ରର ଜଳ ଦୂରରୁ ଦେଖିଲେ ନୀଳ, ପାଖକୁ ଯାଇ ହାତରେ ଉଠାଇ ଦେଖ, କୌଣସି ରଙ୍ଗ ନାହିଁ ।''

ଏହି କଥା କହି ପ୍ରେମୋନ୍ମତ୍ତ ହୋଇ ଠାକୁର ଶ୍ରୀରାମକୃଷ୍ଣ ଗୀତ ଗାଇଲେ—

''ମା କି ଆମାର କାଲୋରେ ।
କାଲୋରୂପେ ଦିଗମ୍ବରୀ ହୃତ୍‌ପଦ୍ମ କରେ ଆଲୋ ରେ ।।''

## (୫)

ତ୍ରିଭିର୍ଗୁଣମୟୈର୍ଭାବୈରେଭିଃ ସର୍ବମିଦଂ ଜଗତ୍ ।
ମୋହିତଂ ନାଭିଜାନାତି ମାମେଭ୍ୟଃ ପରମବ୍ୟୟମ୍ ।।—ଗୀତା, ୭/୧୩

## ଏ ସଂସାର କାହିଁକି ?

ଶ୍ରୀରାମକୃଷ୍ଣ (କେଶବାଦି ଭକ୍ତମାନଙ୍କ ପ୍ରତି)—ବନ୍ଧନ ଆଉ ମୁକ୍ତି, ଉଭୟର କର୍ତ୍ତା ମଧ୍ୟ ସେହି । ତାଙ୍କର ମାୟାରେ ସଂସାରୀ ଜୀବ କାମିନୀ ଓ କାଞ୍ଚନରେ ବଦ୍ଧ, ପୁଣି ତାଙ୍କର ଦୟା ହେଲାମାତ୍ରେ ମୁକ୍ତ ହୋଇଯାଏ । ସେ 'ଭବବନ୍ଧନର ବନ୍ଧନହାରିଣୀ ତାରିଣୀ' ।

ଏହା କହି ଠାକୁର ଗନ୍ଧର୍ବନିନ୍ଦିତକଣ୍ଠରେ ରାମପ୍ରସାଦଙ୍କର ଗୀତ ଗାଇଲେ—

''ଶ୍ୟାମା ମା ଉଡ଼ାଛେ ଘୁଡ଼ି (ଭବ-ସଂସାର-ବାଜାର ମାଝେ)
ଆଶା-ବାୟୁ ଭରେ ଉଡ଼େ, ବାଁଧା ତାହେ ମାୟାଦଡ଼ୀ ।।...
ବିଷୟେ ମେଜେଛ ମାଞ୍ଜା, କର୍କଶା ହୟେଛେ ଦଡ଼ି ।
ଘୁଡ଼ି ଲକ୍ଷେର ଦୁଟା ଏକଟା କାଟେ, ହେସେ ଦାଓ ମା ହାତଚାପଡ଼ି ।।...

''ସେ ଲୀଳାମୟୀ, ଏ ସଂସାର ତାଙ୍କର ଲୀଳା । ସେ ଇଚ୍ଛାମୟୀ, ଆନନ୍ଦମୟୀ । ଲକ୍ଷେକରେ ଜଣେ ଦୁଇଜଣଙ୍କୁ ମୁକ୍ତି ଦିଅନ୍ତି ।''

ବ୍ରାହ୍ମଭକ୍ତ — ମହାଶୟ, ସେ ତ ଇଚ୍ଛା କଲେ ସମସ୍ତଙ୍କୁ ମୁକ୍ତି ଦେଇପାରନ୍ତି । ତେବେ କାହିଁକି ଆମକୁ ସଂସାରରେ ବଦ୍ଧ କରି ରଖିଛନ୍ତି ?

ଶ୍ରୀରାମକୃଷ୍ଣ — ତାଙ୍କର ଇଚ୍ଛା । ତାଙ୍କର ଇଚ୍ଛା ଯେ, ସେ ଏସବୁ ନେଇ ଲୀଳାକରିବେ । ବୁଢ଼ୀକୁ ଆଗରୁ ଛୁଇଁଦେଲେ, ଆଉ ଦୌଡ଼ାଦୌଡ଼ି ହୁଏ ନାହିଁ । ସମସ୍ତେ ଯଦି ଛୁଇଁ ଦେବେ ତାହାହେଲେ ଖେଳ ହେବ କିପରି ? ସମସ୍ତେ ଛୁଇଁ ଦେଲେ ବୁଢ଼ୀ ଅସନ୍ତୁଷ୍ଟ ହୁଏ । ଖେଳ ଚାଲୁଥିଲେ ବୁଢ଼ୀର ଆହ୍ଲାଦ ହୁଏ । ତେଣୁ 'ଲକ୍ଷେର ଦୁଟା ଏକଟା କାଟେ, ହେସେ ଦାଓ ମା ହାତଚାପଡ଼ି' । (ସମସ୍ତଙ୍କର ଆନନ୍ଦ)

''ସେ ମନକୁ ଆଖି ଠାରି ଇସାରା କରି କହିଦେଇଛନ୍ତି — ଯା, ବର୍ତ୍ତମାନ ସଂସାର କରିବୁ ଯା । ମନର କି ଦୋଷ ? ସେ ଯଦି ପୁଣି ଦୟା କରି ମନକୁ ଫେରାଇ ନିଅନ୍ତି, ତାହା ହେଲେ ବିଷୟବୁଦ୍ଧି ହାତରୁ ମୁକ୍ତି ମିଳେ । ସେତେବେଳେ ପୁଣି ତାଙ୍କର ପାଦ-ପଦ୍ମରେ ମନ ରହେ ।''

ଠାକୁର ସଂସାରୀ-ଭାବରେ ମାଆଙ୍କ ନିକଟରେ ଅଭିମାନ କରି ଗୀତ ଗାଇଲେ —

''ଆମି ଏଇ ଖେଦେ ଖେଦ କରି ।
ତୁମି ମାତା ଥାକ୍‌ତେ ଆମାର ଜାଗାଘରେ ଚୁରି ॥
ମନେ କରି ତୋମାର ନାମ କରି, କିନ୍ତୁ ସମୟେ ପାସୋରି ।...
ପ୍ରସାଦ ବଲେ ମନ ଦିୟେଛ, ମନରେ ଆଁଖିଠାରି ।
(ଓମା) ତୋମାର ସୃଷ୍ଟି ଦୃଷ୍ଟିପୋଡ଼ା, ମିଷ୍ଟି ବଲେ ଘୁରି ॥

''ତାଙ୍କରି ମାୟାରେ ଭୁଲି ମନୁଷ୍ୟ ସଂସାରୀ ହୋଇଛି । 'ପ୍ରସାଦ ବଲେ ମନ ଦିୟେଛ ମନରେ ଆଁଖିଠାରି ।''

**କର୍ମଯୋଗ ସମ୍ବନ୍ଧରେ ଶିକ୍ଷା — ସଂସାର ଓ ନିଷ୍କାମ କର୍ମ**

ବ୍ରାହ୍ମଭକ୍ତ — ମହାଶୟ, ସମସ୍ତ ତ୍ୟାଗ ନ କଲେ କ'ଣ ଈଶ୍ୱରଲାଭ ହେବ ନାହିଁ ?

ଶ୍ରୀରାମକୃଷ୍ଣ (ସହାସ୍ୟ) — ନା ହେ, ତୁମମାନଙ୍କୁ ସବୁ ତ୍ୟାଗ କରିବାକୁ ହେବ କାହିଁକି ? ତୁମେମାନେ ତ ବେଶ୍ ହସ ଖୁସି ମଜାରେ ଅଛ । 'ସା-ରେ-ମା-ତେ' ! ନକ୍‌ସ ଖେଳ ଜାଣ ? ମୁଁ ବେଶୀ କାଟି ଜଳିଯାଇଛି । ତୁମେ ଭାରୀ ଚାଲାକ୍ । କେହି ଦଶରେ ଅଛ, କେହି ଛଅରେ ଅଛ, କେହି ପାଞ୍ଚରେ ଅଛ । ବେଶୀ କଟାଇ ନାହଁ, ତେଣୁ ମୋ ପରି ଜଳି ଯାଇନାହଁ । ଖେଳ ଚାଲିଛି, ଏ ତ ବେଶ୍ ! (ସମସ୍ତଙ୍କର ହାସ୍ୟ)

''ସତ କହୁଛି, ତୁମେମାନେ ସଂସାର କରୁଛ, ଏଥିରେ ଦୋଷ ନାହିଁ । ତେବେ ଈଶ୍ୱରଙ୍କଠାରେ ମନ ରଖିବାକୁ ହେବ । ତାହା ନ ହେଲେ ହେବ ନାହିଁ । ଗୋଟିଏ ହାତରେ କାମ କର, ଆଉ ହାତରେ ଈଶ୍ୱରଙ୍କୁ ଧରି ରହ । କର୍ମ ଶେଷ ହେଲେ ଦୁଇ ହାତରେ ଈଶ୍ୱରଙ୍କୁ ଧରିବ ।

''ମନ ନେଇ କଥା । ମନରେ ହିଁ ବଦ୍ଧ ମନରେ ହିଁ ମୁକ୍ତ । ମନକୁ ଯେଉଁ ରଙ୍ଗରେ ରଙ୍ଗାଇବ, ତାହା ସେହି ରଙ୍ଗର ହୋଇଯିବ । ଯେପରି ଧୋବାଘରର ଲୁଗା । ନାଲିରେ ବୁଡ଼ାଅ ନାଲି, ନୀଳରେ ବୁଡ଼ାଅ ନୀଳ, ସବୁଜରେ ରଙ୍ଗାଅ ସବୁଜ । ଯେଉଁ ରଙ୍ଗରେ ବୁଡ଼ାଅ, ସେହି ରଙ୍ଗର ହୋଇଯିବ । ଦେଖୁନ, ଯଦି ଟିକିଏ ଇଂରାଜୀ ପଢ଼ିବ, ତାହା ହେଲେ ମୁହଁରୁ ସଙ୍ଗେ ସଙ୍ଗେ ଇଂରାଜୀ କଥା ବାହାରିବ । ଫୁଟ୍ ଫାଟ୍, ଇଟ୍‌ମିଟ୍ । (ସମସ୍ତଙ୍କର ହାସ୍ୟ) । ପୁଣି ପାଦରେ ବୁଟ୍ ଜୋତା, ସୁଷୁରି ମାରି ଗୀତ ଗାଇବା, ଏହିସବୁ ଆସି ଜୁଟିବ । ପୁଣି ଯଦି ପଣ୍ଡିତ ସଂସ୍କୃତ ପଢ଼େ, ତାହା ହେଲେ ସଙ୍ଗେ ସଙ୍ଗେ ଶ୍ଳୋକ ଝାଡ଼ିବ । ମନକୁ ଯଦି କୁସଙ୍ଗରେ ରଖ, ତାହା ହେଲେ ସେହି ପ୍ରକାର କଥାବାର୍ତ୍ତା, ଚିନ୍ତା ହୋଇଯିବ । ଯଦି ଭକ୍ତଙ୍କ ସଙ୍ଗରେ ରଖ, ତାହା ହେଲେ ଈଶ୍ୱର-ଚିନ୍ତା, ହରିକଥା, ଏହିସବୁ ହେବ ।

''ମନ ନେଇ ସବୁ । ଏକ ପାଖରେ ସ୍ତ୍ରୀ, ଅନ୍ୟ ପାଖରେ ସନ୍ତାନ; ଜଣକୁ ଗୋଟିଏ ଭାବରେ, ସନ୍ତାନକୁ ଆଉ ଗୋଟିଏ ଭାବରେ ଆଦର କରେ; କିନ୍ତୁ ମନ ଗୋଟିଏ ।''

## (୬)

ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ ।
ଅହଂ ତ୍ୱା ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ ।

—ଗୀତା, ୧୮/୬୬

### ବ୍ରାହ୍ମମାନଙ୍କୁ ଉପଦେଶ—ଖ୍ରୀଷ୍ଟଧର୍ମ, ବ୍ରାହ୍ମସମାଜ ଓ ପାପବାଦ

ଶ୍ରୀରାମକୃଷ୍ଣ (ବ୍ରାହ୍ମଭକ୍ତଙ୍କ ପ୍ରତି)—ମନରେ ବଦ୍ଧ, ମନରେ ହିଁ ମୁକ୍ତ । ମୁଁ ମୁକ୍ତ ପୁରୁଷ—ସଂସାରରେ ରହେ ବା ଅରଣ୍ୟରେ ଥାଏ, ମୋର ବନ୍ଧନ କ'ଣ ? ମୁଁ ଈଶ୍ୱରଙ୍କର ସନ୍ତାନ, ରାଜାଧିରାଜଙ୍କର ପୁତ୍ର, ମୋତେ ପୁଣି କିଏ ବାନ୍ଧିବ ? ଯଦି ସାପ କାମୁଡ଼େ, ତେବେ 'ବିଷ ନାହିଁ' ବୋଲି ଜୋର୍ କରି କହିଲେ ବିଷ ଛାଡ଼ିଯାଏ । ସେହିପରି 'ମୁଁ ବଦ୍ଧ ନୁହେଁ' 'ମୁଁ ମୁକ୍ତ'—ଏହି କଥା ଜୋର୍ କରି କହୁ କହୁ ମୁକ୍ତ ହିଁ ହୋଇଯାଏ ।

### ପୂର୍ବକଥା—ଶ୍ରୀରାମକୃଷ୍ଣଙ୍କର ବାଇବେଲ ଶ୍ରବଣ—କୃଷ୍ଣକିଶୋରର ବିଶ୍ୱାସ

''ଖ୍ରୀଷ୍ଟିଆନ୍‌ଙ୍କର ଖଣ୍ଡିଏ ବହି ଜଣେ ଆଣିଦେଲା । ମୁଁ ପଢ଼ି ଶୁଣାଇବାକୁ କହିଲି । ସେଥିରେ କେବଳ 'ପାପ' ଆଉ 'ପାପ' । (କେଶବଙ୍କ ପ୍ରତି) ତୁମ

ବ୍ରାହ୍ମସମାଜରେ ମଧ୍ୟ କେବେଳ 'ପାପ' । ଯେଉଁ ଲୋକ 'ମୁଁ ବଦ୍ଧ, ମୁଁ ବଦ୍ଧ' ବୋଲି ବାରମ୍ବାର କହେ, ସେ ଶଳା ବଦ୍ଧ ହୋଇଯାଏ । ରାତିଦିନ ଯିଏ 'ମୁଁ ପାପୀ, ମୁଁ ପାପୀ' ବୋଲି କହୁଥାଏ, ସେ ସେଇୟା ହିଁ ହୋଇଯାଏ ।

''ଈଶ୍ୱରଙ୍କ ନାମରେ ଏପରି ବିଶ୍ୱାସ ହେବା ଦରକାର—କଣ ! ମୁଁ ତାଙ୍କର ନାମ ନେଇଛି, ମୋର ପୁଣି ପାପ କ'ଣ ! ମୋର ପୁଣି ବନ୍ଧନ କ'ଣ ? ଭଗବାନଙ୍କର ନାମ ନେଲେ ମନୁଷ୍ୟର ଦେହ ମନ ସବୁ ଶୁଦ୍ଧ ହୋଇଯାଏ ।

''କେବଳ 'ପାପ' ଆଉ 'ନରକ' ଏସବୁ କଥା କାହିଁକି ? ଥରେ କୁହ ଯେ, ଅନ୍ୟାୟ କାମ ଯାହା କରିଛି, ଆଉ କରିବି ନାହିଁ । ଆଉ ତାଙ୍କ ନାମରେ ବିଶ୍ୱାସ କର ।''

ଠାକୁର ପ୍ରେମୋନ୍ମତ୍ତ ହୋଇ ଗାଇଲେ—

''ଆମି ଦୁର୍ଗା ଦୁର୍ଗା ବୋଲେ ମା ଯଦି ମରି ।...''

''ମୁଁ ମା'ଙ୍କ ନିକଟରେ କେବଳ ଭକ୍ତି ଚାହିଁଥିଲି । ହାତରେ ଫୁଲ ନେଇ ମା'ଙ୍କ ପାଦପଦ୍ମରେ ଦେଇଥିଲି, କହିଥିଲି—ମା, ଏଇ ନିଅ ତୁମର ପାପ, ଏଇ ନିଅ ତୁମର ପୁଣ୍ୟ, ମୋତେ ଶୁଦ୍ଧା ଭକ୍ତି ଦିଅ; ଏଇ ନିଅ ତୁମର ଜ୍ଞାନ, ଏଇ ନିଅ ତୁମର ଅଜ୍ଞାନ, ମୋତେ ଶୁଦ୍ଧା ଭକ୍ତି ଦିଅ; ଏଇ ନିଅ ତୁମର ଶୁଚି, ଏଇ ନିଅ ତୁମର ଅଶୁଚି, ମୋତେ ଶୁଦ୍ଧା ଭକ୍ତି ଦିଅ; ଏଇ ନିଅ ତୁମର ଧର୍ମ, ଏଇ ନିଅ ତୁମର ଅଧର୍ମ, ମୋତେ ଶୁଦ୍ଧା ଭକ୍ତି ଦିଅ ।''

**ବ୍ରାହ୍ମସମାଜ ଓ ଜନକରାଜା—ଗୃହସ୍ଥର ଉପାୟ—ନିର୍ଜନବାସ ଓ ବିବେକ**

ଶ୍ରୀରାମକୃଷ୍ଣ—ସଂସାରରେ ଈଶ୍ୱର-ଲାଭ ହେବ ନାହିଁ କାହିଁକି ? ଜନକଙ୍କର ହୋଇଥିଲା । ...କିନ୍ତୁ ଭୁସ୍‌କରି କ'ଣ ଜନକରାଜା ହୋଇଯିବ ? ଜନକରାଜା ନିର୍ଜନରେ ଅନେକ ତପସ୍ୟା କରିଥିଲେ । ସଂସାରରେ ରହି ମଧ୍ୟ ଥରେ ଥରେ ନିର୍ଜନରେ ବାସ କରିବାକୁ ହୁଏ । ସଂସାରର ବାହାରକୁ ଯାଇ ଯଦି ଏକୁଟିଆ ଭଗବାନଙ୍କ ପାଇଁ ତିନି ଦିନ କାନ୍ଦିପାର, ସେ ବି ଭଲ । ଏପରିକି ଅବସର ପାଇ ଯଦି ଦିନେ ମାତ୍ର ତାଙ୍କୁ ଚିନ୍ତା କରିପାର, ତା' ମଧ୍ୟ ଭଲ । ନିର୍ଜନରେ ରହି ମଝିରେ ମଝିରେ ଭଗବାନଙ୍କ ପାଇଁ ସାଧନା କରିବାକୁ ହୁଏ । ସଂସାର ଭିତରେ, କର୍ମ ଭିତରେ ରହି ପ୍ରଥମାବସ୍ଥାରେ ମନ ସ୍ଥିର କରିବାରେ ଅନେକ ବାଧା ଆସେ । ଫୁଟ୍‌ପାଥ୍‌ର ଗଛ ଯେତେବେଳେ ଚାରା ଥାଏ, ବାଡ଼ ନ ଦେଲେ ଗୋରୁ ଛେଳି ଖାଇଯାଆନ୍ତି । ପ୍ରଥମାବସ୍ଥାରେ ବାଡ଼ ଦେବାକୁ ହୁଏ; ଗଣ୍ଡି ହେଲେ ଆଉ ବାଡ଼ ଦରକାର ହୁଏ ନାହିଁ । ସେତେବେଳେ ଗଣ୍ଡିରେ ହାତୀ ବାନ୍ଧିଦେଲେ ମଧ୍ୟ କିଛି ହୁଏ ନାହିଁ ।

''ରୋଗଟି ହେଉଛି ବିକାର । ପୁଣି ଯେଉଁ ଘରେ ବିକାର-ରୋଗୀ, ସେହି ଘରେ ପାଣିମାଠିଆ ଆଉ ତେନ୍ତୁଳି ଆଚାର ! ଯଦି ବିକାରର ରୋଗୀକୁ ଭଲ

କରିବାକୁ ଚାହଁ, ତେବେ ସେଗୁଡ଼ିକୁ ସେଠାରୁ କାଢ଼ି ନେବାକୁ ହେବ । ସଂସାରୀ ଜୀବ—ବିକାର-ରୋଗୀ; ବିଷୟ—ପାଣିମାଠିଆ; ବିଷୟ-ଭୋଗତୃଷ୍ଣା—ଜଳତୃଷ୍ଣା । ତେନ୍ତୁଳି-ଆଚାର ଭାବିଲେ ହିଁ ଜିଭରୁ ଲାଳ ବାହାରେ, ପାଖକୁ ଆଣିବା ଦରକାର ନାହିଁ । ଏପରି ଜିନିଷ ମଧ୍ୟ ଘରେ ରହିଛି—ଯୋଷିତ୍ସଙ୍ଗ । ତେଣୁ ନିର୍ଜନରେ ଚିକିତ୍ସା ଦରକାର ।

''ବିବେକ-ବୈରାଗ୍ୟ ଲାଭ କରି ସଂସାର କରିବାକୁ ହୁଏ । ସଂସାର-ସମୁଦ୍ରରେ କାମକ୍ରୋଧାଦି କୁମ୍ଭୀର ଅଛନ୍ତି । ଦେହରେ ହଳଦି ଲଗାଇ ପାଣିକୁ ଗଲେ କୁମ୍ଭୀରର ଭୟ ରହେ ନାହିଁ । ବିବେକ-ବୈରାଗ୍ୟ ହଳଦି । ସଦସତ୍-ବିଚାରର ନାମ ବିବେକ । ଈଶ୍ୱର ସତ୍, ନିତ୍ୟବସ୍ତୁ; ଆଉସବୁ ଅସତ୍, ଅନିତ୍ୟ, ଦୁଇଦିନ ପାଇଁ । ଏହି ବୋଧ, ଆଉ ଈଶ୍ୱରଙ୍କ ଉପରେ ଅନୁରାଗ । ତାଙ୍କ ଉପରେ ଟାଣ—ଭଲପାଇବା । ଗୋପୀମାନଙ୍କର କୃଷ୍ଣଙ୍କ ଉପରେ ଯେପରି ଟାଣ ଥିଲା । ଗୋଟିଏ ଗୀତ ଶୁଣ :

**ଆଉ ଉପାୟ–ଈଶ୍ୱରଙ୍କଠାରେ ଅନୁରାଗ -ଗୋପୀମାନଙ୍କ ଭଳି ଟାଣ ବା ସ୍ନେହ**

ଗୀତ—ବଂଶୀ ବାଜିଲ ବିପିନେ... ଇତ୍ୟାଦି ॥

ଠାକୁର ଅଶ୍ରୁପୂର୍ଣ୍ଣ ନୟନରେ ଏହି ଗୀତଟି ଗାଇ ଗାଇ କେଶବାଦି ଭକ୍ତମାନଙ୍କୁ କହିଲେ, ''ରାଧାକୃଷ୍ଣ ମାନ ବା ନ ମାନ, ଏହି ଟାଣଟିକକ ନେବ; ଭଗବାନଙ୍କ ପାଇଁ କେଉଁଥିରେ ଏହିପରି ବ୍ୟାକୁଳତା ହୁଏ, ଚେଷ୍ଟା କର । **ବ୍ୟାକୁଳତା ଥିଲେ ହିଁ ତାଙ୍କୁ ଲାଭ କରାଯାଏ ।''**

## (୭)

ସଂନିୟମ୍ୟେନ୍ଦ୍ରିୟଗ୍ରାମଂ ସର୍ବତ୍ର ସମବୁଦ୍ଧୟଃ ।
ତେ ପ୍ରାପ୍ନୁବନ୍ତି ମାମେବ ସର୍ବଭୂତହିତେ ରତାଃ ।—ଗୀତା, ୧୨/୪

**ଶ୍ରୀଯୁକ୍ତ କେଶବ ସେନଙ୍କ ସହିତ ନୌକା ବିହାର—ସର୍ବଭୂତହିତେ ରତାଃ**

ଗଙ୍ଗାରେ ଜୁଆର ଯାଇ ଭଟ୍ଟା ପଡ଼ିଲା । ଜାହାଜଟି କଲିକତା ଅଭିମୁଖରେ ଦ୍ରୁତ ଗତିରେ ଚାଲିଛି । ପୋଲ ପାର ହୋଇ କମ୍ପାନୀର ବଗିଚା ଆଡ଼କୁ ଆଉ କିଛିଟା ବୁଲି ଆସିବା ପାଇଁ କ୍ୟାପ୍ଟେନଙ୍କୁ ହୁକୁମ ହୋଇଛି । କେତେ ଦୂର ଜାହାଜ ଯାଇଥିଲା—ଅନେକଙ୍କର ଜ୍ଞାନ ନାହିଁ—ସେମାନେ ମଗ୍ନ ହୋଇ ଶ୍ରୀରାମକୃଷ୍ଣଙ୍କର କଥା ଶୁଣୁଛନ୍ତି । କେତେ ସମୟ ହେଲାଣି ଖିଆଲ ନାହିଁ ।

ଏଥର ମୁଢ଼ି ନଡ଼ିଆ ଖିଆ ହେଉଛି । ସମସ୍ତେ କିଛି କିଛି ଅଣ୍ଟିରେ ନେଲେ ଓ ଖାଇବାକୁ ଲାଗିଲେ । ଆନନ୍ଦର ହାଟ । କେଶବ ମୁଢ଼ି ଆୟୋଜନ କରିଥିଲେ । ଏତିକି ବେଳେ ଠାକୁରେ ଦେଖିଲେ—ବିଜୟ ଓ କେଶବ ଦୁଇଜଣଯାକ ସଙ୍କୁଚିତ

ଭାବରେ ବସିଛନ୍ତି । ଯେପରି ଦୁଇଜଣ ଅବୋଧ ବାଳକଙ୍କ ଭିତରେ ମିଳାମିଶା କରାଇଦେବେ, ସେହିପରି ଭାବରେ ଠାକୁରେ କଥା କହୁଛନ୍ତି !

ଶ୍ରୀରାମକୃଷ୍ଣ (କେଶବଙ୍କ ପ୍ରତି)—ଆହେ ! ଏଇ ବିଜୟ ଆସିଛନ୍ତି । ତୁମର ଝଗଡ଼ା ବିବାଦ—ଯେପରି ଶିବ ଓ ରାମଙ୍କର ଯୁଦ୍ଧ (ହାସ୍ୟ) । ରାମଙ୍କର ଗୁରୁ ଶିବ । ଯୁଦ୍ଧ ବି ହେଲା, ଦୁଇଜଣଙ୍କର ମିଳାମିଶା ବି ହେଲା । କିନ୍ତୁ ଶିବଙ୍କର ଭୂତପ୍ରେତ ଆଉ ରାମଙ୍କର ମାଙ୍କଡ଼ଙ୍କ ଭିତରେ ଝଗଡ଼ା କିଚିରି-ମିଚିରି ଆଉ ନ ତୁଟେ (ଉଚ୍ଚ ହାସ୍ୟ) । ନିଜ ଲୋକ—ଏପରି ହୋଇଥାଏ । ଲବ-କୁଶ ତ ପୁଣି ରାମଙ୍କ ସହିତ ଯୁଦ୍ଧ କରିଥିଲେ । ପୁଣି ଜାଣ, ମା ଝିଅ ଅଲଗା ମଙ୍ଗଳବାର କରନ୍ତି ! ମା'ର ମଙ୍ଗଳ ଓ ଝିଅର ମଙ୍ଗଳ ଯେପରି ଅଲଗା ! କିନ୍ତୁ ଏହାର ମଙ୍ଗଳରେ ତା'ର ମଙ୍ଗଳ ହୁଏ, ତା'ର ମଙ୍ଗଳରେ ଏହାର ମଙ୍ଗଳ ହୁଏ । ସେମିତି ତୁମମାନଙ୍କ ଭିତରୁ ଏହାଙ୍କର ଗୋଟିଏ ସମାଜ ଅଛି, ପୁଣି ତାଙ୍କର ଗୋଟିଏ ଦରକାର (ସମସ୍ତଙ୍କର ହାସ୍ୟ) । ତେବେ, ଏସବୁ ଦରକାର । ଯଦି କୁହ, ଭଗବାନ ନିଜେ ଲୀଳା କରିଛନ୍ତି, ସେଠାରେ 'ଜଟିଳାକୁଟିଳା'ର କ'ଣ ଦରକାର ? 'ଜଟିଳା-କୁଟିଳା' ନ ରହିଲେ ଲୀଳା 'ପୋଷ୍ଟାଇ' ହୁଏ ନାହିଁ (ସମସ୍ତଙ୍କର ହାସ୍ୟ) । 'ଜଟିଳା-କୁଟିଳା' ନ ରହିଲେ ଜମେ ନାହିଁ । (ଉଚ୍ଚ ହାସ୍ୟ)

''ରାମାନୁଜ ବିଶିଷ୍ଟାଦ୍ୱୈତବାଦୀ । ତାଙ୍କର ଗୁରୁ ଥିଲେ ଅଦ୍ୱୈତବାଦୀ । ଶେଷରେ ଦୁଇଜଣଙ୍କ ମଧ୍ୟରେ ମତାନ୍ତର । ଗୁରୁଶିଷ୍ୟ ପରସ୍ପରଙ୍କ ମତ ଖଣ୍ଡନ କରିବାକୁ ଲାଗିଲେ । ଏହିଭଳି ପ୍ରାୟ ହୋଇଥାଏ । ଯାହାହେଉ, ତେବେ ଆପଣାର ଲୋକ ।''

## (୮)

ପିତାସି ଲୋକସ୍ୟ ଚରାଚରସ୍ୟ ତ୍ୱମସ୍ୟ ପୂଜ୍ୟଶ୍ଚ ଗୁରୁର୍ଗରୀୟାନ୍ ।
ନ ତ୍ୱତ୍ସମୋଽସ୍ତ୍ୟଭ୍ୟଧିକଃ କୁତୋଽନ୍ୟ ଲୋକତ୍ରୟେଽପ୍ୟପ୍ରତିମପ୍ରଭାବ ॥
—ଗୀତା ୧୧/୪୩

## କେଶବଙ୍କୁ ଶିକ୍ଷା—ଗୁରୁଗିରି ଓ ବ୍ରାହ୍ମସମାଜ—ଗୁରୁ ଏକ ସଚ୍ଚିଦାନନ୍ଦ

ସମସ୍ତେ ଆନନ୍ଦ କରୁଛନ୍ତି । ଠାକୁରେ କେଶବଙ୍କୁ କହୁଛନ୍ତି, ''ତୁମେ ପ୍ରକୃତି ଦେଖି ଶିଷ୍ୟ କରୁନ, ତେଣୁ ଏପରି ଭାଙ୍ଗି ଭାଙ୍ଗି ଯାଉଛି ।

''ମଣିଷମାନେ ଦେଖିବାକୁ ସବୁ ଏକାପରି, କିନ୍ତୁ ଭିନ୍ନ ଭିନ୍ନ ପ୍ରକୃତି । କାହା ଭିତରେ ସତ୍ତ୍ୱଗୁଣ ବେଶୀ, କାହାର ରଜୋଗୁଣ ବେଶୀ, କାହାର ତମୋଗୁଣ । ପୁଳିସବୁ ଦେଖିବାକୁ ଏକାପରି; କିନ୍ତୁ କାହା ଭିତରେ କ୍ଷୀରର ପୁର, କାହା ଭିତରେ ନଡ଼ିଆପୁର, ଆଉ କାହା ଭିତରେ ବିରିଡାଲିପୁର । (ସମସ୍ତଙ୍କର ହାସ୍ୟ)

''ମୋର କି ଭାବ ଜାଣ ? ମୁଁ ଖାଏ ପିଏ ରହେ, ଆଉ ସବୁ ମା ଜାଣେ । ତିନୋଟି କଥାରେ ମୋ ଦେହରେ କଣ୍ଟା ଫୁଟେ—ଗୁରୁ, କର୍ତ୍ତା ଆଉ ବାବା ।

''**ଗୁରୁ ଏକ ସଚ୍ଚିଦାନନ୍ଦ** । ସେ ହିଁ ଶିକ୍ଷା ଦେବେ । ମୋର ସନ୍ତାନ ଭାବ । ମନୁଷ୍ୟ-ଗୁରୁ ଲକ୍ଷ ଲକ୍ଷ ମିଳେ । ସମସ୍ତେ ଗୁରୁ ହେବାକୁ ଚାହାଁନ୍ତି । ଶିଷ୍ୟ ହେବାକୁ କିଏ ଚାହେଁ ?

''ଲୋକଶିକ୍ଷା ଦେବା ଅତି କଠିନ । ଯଦି ସେ ସାକ୍ଷାତ୍କାର ହୁଅନ୍ତି ଏବଂ **ଆଦେଶ** ଦିଅନ୍ତି, ତାହା ହେଲେ ହୋଇପାରେ । ନାରଦ, ଶୁକଦେବାଦି, ଶଙ୍କର—ଏମାନଙ୍କୁ ଆଦେଶ ମିଳିଥିଲା । ଆଦେଶ ନ ପାଇଲେ ତୁମ କଥା କିଏ ଶୁଣିବ ?

''ପୁଣି ମନେ ମନେ ଆଦେଶ ଦେଲେ ହୁଏ ନାହିଁ । ସେ ପ୍ରକୃତରେ ସାକ୍ଷାତ୍କାର ହୁଅନ୍ତି ଓ କଥା କୁହନ୍ତି । ସେତେବେଳେ ଆଦେଶ ହୋଇପାରେ । ସେକଥାର କେତେ ଜୋର୍ ! ପର୍ବତ ଟଳି ପଡ଼େ । ଖାଲି ଲେକ୍‌ଚର ? ଦିନାକେତେ ଲୋକେ ଶୁଣିବେ, ତା'ପରେ ଭୁଲିଯିବେ । କଥା ଅନୁସାରେ କାମ କରିବେ ନାହିଁ ।

### ପୂର୍ବକଥା—ଭାବଚକ୍ଷୁରେ ହାଲ୍‌ଦାର ପୋଖରୀ ଦର୍ଶନ

''ସେ ଦେଶରେ (କାମାରପୁକୁରରେ) ହାଲ୍‌ଦାର ପୋଖରୀ ବୋଲି ଗୋଟିଏ ପୋଖରୀ ଅଛି । ପୋଖରୀ-ବନ୍ଧରେ ପ୍ରତିଦିନ ଲୋକେ ଭୋରବେଳେ ମଳତ୍ୟାଗ କରନ୍ତି । ସକାଳେ ଯେଉଁମାନେ ଆସନ୍ତି, ଖୁବ୍ ଗାଳିଗୁଲଜ କରନ୍ତି । ତା'ପରଦିନ ମଧ୍ୟ ସେହିପରି । ଯେଉଁ ମଇଳାକୁ ସେଇ ମଇଳା । ଲୋକମାନେ କମ୍ପାନୀକୁ ଜଣାଇଦେଲେ । ସେମାନେ ଜଣେ ଚାପରାସୀ ପଠାଇଦେଲେ । ଚାପରାସୀ କାଗଜରେ ଲେଖି ନୋଟିସ୍ ମାରିଦେଲା—'ଏଠାରେ ମଳତ୍ୟାଗ ନିଷିଦ୍ଧ'; ସେତେବେଳେ ସବୁ ବନ୍ଦ । (ସମସ୍ତଙ୍କର ହାସ୍ୟ)

''ଆଦେଶ ନ ଥିଲେ—'ମୁଁ ଲୋକଶିକ୍ଷା ଦେଉଛି'—ଏହି ଅହଂକାର ହୁଏ । ଅଜ୍ଞାନରୁ ଅହଂକାର ହୁଏ । ଅଜ୍ଞାନରୁ ବୋଧହୁଏ, 'ମୁଁ କର୍ତ୍ତା' । 'ଈଶ୍ୱର କର୍ତ୍ତା, ଈଶ୍ୱର ହିଁ ସବୁ କରୁଛନ୍ତି'—ଏହି ବୋଧ ହେଲେ ତ ସେ ଜୀବନ୍ମୁକ୍ତ ! 'ମୁଁ କର୍ତ୍ତା'—ଏହି ବୋଧରୁ ହିଁ ଯେତେ ଦୁଃଖ, ଅଶାନ୍ତି ।''

## (୯)

ତସ୍ମାଦସକ୍ତଃ ସତତଂ କାର୍ଯ୍ୟଂ କର୍ମ ସମାଚର ।
ଅସକ୍ତୋ ହ୍ୟାଚରନ୍ କର୍ମ ପରମାପ୍ନୋତି ପୁରୁଷଃ ॥

—ଗୀତା, ୩/୧୯

### କେଶବାଦି ବ୍ରାହ୍ମମାନଙ୍କୁ କର୍ମଯୋଗ ସମ୍ବନ୍ଧରେ ଉପଦେଶ

ଶ୍ରୀରାମକୃଷ୍ଣ (କେଶବାଦି ଭକ୍ତଙ୍କ ପ୍ରତି)—ତୁମେସବୁ କୁହ ଜଗତର ଉପକାର କରିବା କଥା । ଜଗତ କଅଣ ଏତେ ଟିକିଏ ? ଆଉ ତୁମେ କିଏ ଯେ

ଜଗତର ଉପକାର କରିବ ? ତାଙ୍କୁ ସାଧନଦ୍ୱାରା ସାକ୍ଷାତ୍କାର କର । ତାଙ୍କୁ ଲାଭ କର । ସେ ଶକ୍ତି ଦେଲେ ଯାଇ ତୁମେ ସମସ୍ତଙ୍କର ହିତ କରିପାର । ନଚେତ୍ ନୁହେଁ ।

ଜଣେ ଭକ୍ତ—ଯେପର୍ଯ୍ୟନ୍ତ ଭଗବାନ-ଲାଭ ନ ହୁଏ, ସେତେଦିନ କ'ଣ ସବୁ କର୍ମ ତ୍ୟାଗ କରିବାକୁ ପଡ଼ିବ ?

ଶ୍ରୀରାମକୃଷ୍ଣ—ନା, କର୍ମ କାହିଁକି ତ୍ୟାଗ କରିବ ? ଈଶ୍ୱରଙ୍କର ଚିନ୍ତା, ତାଙ୍କର ନାମ ଗୁଣଗାନ, ନିତ୍ୟକର୍ମ, ଏସବୁ କରିବାକୁ ହେବ ।

ବ୍ରାହ୍ମଭକ୍ତ—ସଂସାରର କର୍ମ ? ବିଷୟ-କର୍ମ ?

ଶ୍ରୀରାମକୃଷ୍ଣ—ହଁ, ତା' ବି କରିବ, ସଂସାର-ଯାତ୍ରା ପାଇଁ ଯେତିକି ଦରକାର; କିନ୍ତୁ ନିର୍ଜ୍ଜନରେ ତାଙ୍କ ନିକଟରେ ପ୍ରାର୍ଥନା କରିବାକୁ ହେବ, ଯେପରି ଏହି କର୍ମସବୁ ନିଷ୍କାମ ଭାବରେ କରିପାରିବ । ଆଉ କହିବ—ହେ ଈଶ୍ୱର, ମୋର ବିଷୟ-କର୍ମ କମାଇ ଦିଅ; କାରଣ, ହେ ପ୍ରଭୁ, ବେଶୀ କାମ ଜୁଟିଲେ ତୁମକୁ ଭୁଲିଯାଏ । ମନେ ମନେ ଭାବୁଛି ନିଷ୍କାମ କର୍ମ କରୁଛି, କିନ୍ତୁ ସକାମ ହୋଇଯାଏ । ହୁଏତ ଦାନ ସଦାବ୍ରତ ବେଶୀ କରିବାକୁ ଯାଇ ଯଶ-ଲୋକମାନ୍ୟର ଇଚ୍ଛା ଆସିଯାଏ ।

"**କର୍ମଯୋଗ ଖୁବ୍ କଠିନ** । ଶାସ୍ତ୍ରରେ ଯେଉଁସବୁ କର୍ମ କରିବାକୁ କହିଛି, କଳିକାଳରେ ସେସବୁ କରିବା କଷ୍ଟକର । ଅନ୍ନଗତ ପ୍ରାଣ । ବେଶୀ କର୍ମ କରି ହୁଏ ନାହିଁ । ଜ୍ୱରର କବିରାଜୀ ଚିକିତ୍ସା କରିବାକୁ ଗଲେ ଏଆଡ଼େ ରୋଗୀର ହୋଇଯାଏ । ବେଶୀ ଡେରି ସହେ ନାହିଁ । ବର୍ତ୍ତମାନ ଡି.ଗୁପ୍ତ । କଳିଯୁଗରେ ଭକ୍ତିଯୋଗ, ଭଗବାନଙ୍କର ନାମ ଗୁଣଗାନ ଆଉ ପ୍ରାର୍ଥନା । **ଭକ୍ତିଯୋଗ ହିଁ ଯୁଗଧର୍ମ** । (ବ୍ରାହ୍ମଭକ୍ତମାନଙ୍କ ପ୍ରତି) ତୁମମାନଙ୍କର ବି ଭକ୍ତିଯୋଗ, ତୁମେ ସବୁ ହରିନାମ କର, ମାଆଙ୍କ ନାମ-ଗୁଣଗାନ କର । ତୁମେମାନେ ଧନ୍ୟ ! ତୁମର ଭାବଟି ବେଶ୍ । ବେଦାନ୍ତବାଦୀଙ୍କ ପରି ତୁମେ ଜଗତକୁ ସ୍ୱପ୍ନବତ୍ କୁହ ନାହିଁ । ସେପରି ବ୍ରହ୍ମଜ୍ଞାନୀ ତୁମେ ନୁହଁ, ତୁମେସବୁ ଭକ୍ତ । ତୁମେମାନେ ଈଶ୍ୱରଙ୍କୁ ବ୍ୟକ୍ତି (Person) କୁହ, ଏହା ମଧ୍ୟ ଖୁବ୍ ଭଲ୍ । ବ୍ୟାକୁଳ ହୋଇ ଡାକିଲେ ତାଙ୍କୁ ଅବଶ୍ୟ ପାଇବ ।"

# ନବମ ପରିଚ୍ଛେଦ

## (୧)

## ଉତ୍ସବ-ମନ୍ଦିରରେ

(ସିଁଥି ବ୍ରାହ୍ମସମାଜ ଦର୍ଶନ ଓ ଶ୍ରୀଯୁକ୍ତ ଶିବନାଥ ଇତ୍ୟାଦି ବ୍ରାହ୍ମଭକ୍ତମାନଙ୍କ ସହିତ କଥୋପକଥନ ଓ ଆନନ୍ଦ ।)

ଶ୍ରୀଶ୍ରୀରାମକୃଷ୍ଣପରମହଂସଦେବ ସିଁଥିର ବ୍ରାହ୍ମସମାଜ ଦର୍ଶନ କରିବାକୁ ଆସିଛନ୍ତି । ୨୮ ଅକ୍ଟୋବର ୧୮୮୨, ଶନିବାର, ଆଶ୍ୱିନ କୃଷ୍ଣଦ୍ୱିତୀୟା ।

ଆଜି ଏଠାରେ ବ୍ରାହ୍ମସମାଜର ଷାଣ୍ମାସିକ ମହୋତ୍ସବ । ତେଣୁ ଭଗବାନ ଶ୍ରୀରାମକୃଷ୍ଣଙ୍କୁ ଏଠାକୁ ନିମନ୍ତ୍ରଣ । ଅପରାହ୍ଣ ତିନିଟା ଚାରିଟାବେଳେ ସେ କେତେଜଣ ଭକ୍ତଙ୍କ ସହିତ ଗାଡ଼ିରେ ଦକ୍ଷିଣେଶ୍ୱର କାଳୀମନ୍ଦିରରୁ ଆସି ଶ୍ରୀଯୁକ୍ତ ବେଣୀମାଧବ ପାଲଙ୍କର ମନୋହର ଉଦ୍ୟାନବାଟୀରେ ଉପସ୍ଥିତ ହେଲେ । ଏହି ଉଦ୍ୟାନବାଟୀରେ ବ୍ରାହ୍ମସମାଜର ଅଧିବେଶନ ହୋଇଥାଏ । ବ୍ରାହ୍ମସମାଜକୁ ସେ ଭାରି ଭଲ ପାଆନ୍ତି । ବ୍ରାହ୍ମଭକ୍ତମାନେ ତାଙ୍କୁ ସାତିଶୟ ଭକ୍ତିଶ୍ରଦ୍ଧା କରନ୍ତି ।

ଏହାର ପୂର୍ବଦିନ ଅର୍ଥାତ୍ ଶୁକ୍ରବାର ଉପରଓଳି କେତେ ଆନନ୍ଦ କରି କରି ସଶିଷ୍ୟ ଶ୍ରୀଯୁକ୍ତ କେଶବଚନ୍ଦ୍ର ସେନ୍‌ଙ୍କ ସହିତ ଭାଗୀରଥି-ବକ୍ଷରେ କାଳୀମନ୍ଦିରରୁ କଲିକତା ପର୍ଯ୍ୟନ୍ତ ଭକ୍ତଙ୍କ ସହିତ ଷ୍ଟିମର ଚଢ଼ି ବୁଲି ଆସିଥିଲେ ।

ସିଁଥି ପାଇକପଡ଼ା ନିକଟରେ । କଲିକତାଠାରୁ ଦେଢ଼କୋଶ ଉତ୍ତରରେ । ଉଦ୍ୟାନବାଟୀଟି ମନୋହର ବୋଲି କୁହାଯାଇଛି । ସ୍ଥାନଟି ଅତ୍ୟନ୍ତ ନିଭୃତ । ଭଗବାନଙ୍କ ଉପାସନା ପକ୍ଷରେ ବିଶେଷ ଉପଯୋଗୀ । ଉଦ୍ୟାନସ୍ୱାମୀ ବର୍ଷରେ ଦୁଇଥର ମହୋତ୍ସବ କରିଥାନ୍ତି । ଥରେ ଶରତ୍‌କାଳରେ, ଆଉଥରେ ବସନ୍ତରେ । ଏହି ମହୋତ୍ସବ ଉପଲକ୍ଷରେ ସେ କଲିକତା ଓ ସିଁଥିର ନିକଟବର୍ତ୍ତୀ ଗ୍ରାମର ଅନେକ ଭକ୍ତଙ୍କୁ ନିମନ୍ତ୍ରଣ କରିଛନ୍ତି । ତେଣୁ ଆଜି କଲିକତାରୁ ଶିବନାଥାଦି ଅନେକ ଭକ୍ତ ଆସିଛନ୍ତି । ସେମାନଙ୍କ ମଧ୍ୟରୁ ଅନେକେ ସକାଳ ଉପସାନାରେ ଯୋଗଦାନ କରିଛନ୍ତି । ପୁଣି ସନ୍ଧ୍ୟାକାଳୀନ ଉପାସନା ହେବ, ସେଥିପାଇଁ ପ୍ରତୀକ୍ଷା କରିଛନ୍ତି । ବିଶେଷତଃ ସେମାନେ ଶୁଣିଛନ୍ତି ଯେ, ଅପରାହ୍ଣରେ ମହାପୁରୁଷଙ୍କର ଆଗମନ ହେବ ଓ ସେମାନେ ତାଙ୍କର ଆନନ୍ଦମୂର୍ତ୍ତି ଦେଖିପାରିବେ, ତାଙ୍କର ହୃଦୟମୁଗ୍ଧକାରୀ କଥାମୃତ ପାନ କରିବାକୁ ପାଇବେ, ତାଙ୍କର ସେହି ମଧୁର ସଂକୀର୍ତ୍ତନ ଶୁଣିବାକୁ ଓ ଦେବଦୁର୍ଲ୍ଲଭ ହରି-ପ୍ରେମମୟ ନୃତ୍ୟ ଦେଖିବାକୁ ପାଇବେ ।

ଅପରାହ୍ଣରେ ଉଦ୍ୟାନଟି ବହୁଲୋକରେ ସମାକୀର୍ଣ୍ଣ ହୋଇଛି । କେହି ଲତାମଣ୍ଡପ ଛାୟାରେ କାଷ୍ଠାସନରେ ଉପବିଷ୍ଟ । କେହି ଅବା ସୁନ୍ଦର ବାପୀତଟରେ ବନ୍ଧୁମାନଙ୍କ ଗହଣରେ ବିଚରଣ କରୁଛନ୍ତି । ଅନେକେ ସମାଜ-ଗୃହରେ

ଶ୍ରୀରାମକୃଷ୍ଣଙ୍କର ଆଗମନ ପ୍ରତୀକ୍ଷା କରି ପୂର୍ବରୁ ଉତ୍ତମ ଆସନ ଅଧିକାର କରି ବସିଛନ୍ତି । ଉଦ୍ୟାନର ପ୍ରବେଶ-ଦ୍ୱାରରେ ପାନ ଦୋକାନ । ପ୍ରବେଶ କଲେ ବୋଧହୁଏ ଯେପରି ପୂଜାଘର—ରାତ୍ରିକାଳରେ ଯାତ୍ରା ହେବ । ଚତୁର୍ଦ୍ଦିଗ ଆନନ୍ଦରେ ପରିପୂର୍ଣ୍ଣ । ଶରତ୍‌ର ନୀଳ-ଆକାଶରେ ଆନନ୍ଦ ପ୍ରତିଭାସିତ । ଉଦ୍ୟାନର ବୃକ୍ଷ, ଲତା, ଗୁଳ୍ମ ମଧ୍ୟରେ ପ୍ରଭାତରୁ ଆନନ୍ଦ-ସମୀରଣ ବହୁଥିଲା । ଆକାଶ, ଜୀବଜନ୍ତୁ, ବୃକ୍ଷଲତା ଯେପରି ଏକତାନରେ ସଙ୍ଗୀତ ଗାନ କରୁଛନ୍ତି—

'ଆଜି କି ହରଷ ସମୀର ବହେ ପ୍ରାଣେ,
ଭାଗବତ ମଙ୍ଗଳ କିରଣେ ।'

ସମସ୍ତେ ଯେପରି ଭଗବତ୍-ଦର୍ଶନ-ପିପାସୁ । ଏପରି ସମୟରେ ପରମହଂସଦେବଙ୍କର ଗାଡ଼ି ଆସି ସମାଜଗୃହ ସମ୍ମୁଖରେ ଉପସ୍ଥିତ ହେଲା । ସମସ୍ତେ ଗାତ୍ରୋତ୍‌ଥାନ କରି ମହାପୁରୁଷଙ୍କର ଅଭ୍ୟର୍ଥନା କଲେ । ସେ ଆସିଛନ୍ତି । ଚାରିଆଡ଼ୁ ଲୋକମାନେ ତାଙ୍କୁ ମଣ୍ଡଳାକାରରେ ଘେରିବାକୁ ଲାଗିଲେ ।

ସମାଜ-ଗୃହର ପ୍ରଧାନ ପ୍ରକୋଷ୍ଠମଧ୍ୟରେ ବେଦୀ ନିର୍ମାଣ କରାଯାଇଛି । ସେହି ସ୍ଥାନ ଲୋକରେ ପରିପୂର୍ଣ୍ଣ । ସମ୍ମୁଖରେ ବାରଣ୍ଡା, ସେଠାରେ ପ୍ରଭୁ ପରମହଂସଦେବ ସମାସୀନ, ସେଠାରେ ମଧ୍ୟ ଲୋକ । ବାରଣ୍ଡାର ଦୁଇପାର୍ଶ୍ୱରେ ଦୁଇଟି ଘର—ସେ ଘରେ ମଧ୍ୟ ଲୋକ—ଘରର ଦ୍ୱାରଦେଶରେ ଉଦ୍‌ଗ୍ରୀବ ହୋଇ ଲୋକେ ଦଣ୍ଡାୟମାନ । ବାରଣ୍ଡାକୁ ଉଠିବାର ସୋପାନ-ପରମ୍ପରା ଏକପ୍ରାନ୍ତରୁ ଅପରପ୍ରାନ୍ତ ପର୍ଯ୍ୟନ୍ତ ବିସ୍ତୃତ । ସେହି ପାହାଚ ମଧ୍ୟ ଲୋକରେ ପରିପୂର୍ଣ୍ଣ; ସୋପାନର ଅନତିଦୂରରେ ଦୁଇ ତିନୋଟି ବୃକ୍ଷ, ପାର୍ଶ୍ୱରେ ଲତାମଣ୍ଡପ, ସେଠାରେ କେତେ ଖଣ୍ଡ କାଷ୍ଠାସନ । ସେଠାରେ ମଧ୍ୟ ଲୋକେ ଉଦ୍‌ଗ୍ରୀବ ଓ ଉତ୍କର୍ଣ୍ଣ ହୋଇ ମହାପୁରୁଷଙ୍କ ଆଡ଼କୁ ଦୃଷ୍ଟିପାତ କରୁଛନ୍ତି । ଧାଡ଼ି ଧାଡ଼ି ଫଳ ଓ ଫୁଲର ଗଛ ମଧ୍ୟରେ ପଥ । ବୃକ୍ଷଗୁଡ଼ିକ ସମୀରଣରେ ଅଳ୍ପ ଅଳ୍ପ ହଲୁଛନ୍ତି—ଯେପରି କି ଆନନ୍ଦରେ ମସ୍ତକ ଅବନତ କରି ତାଙ୍କୁ ଅଭ୍ୟର୍ଥନା କରୁଛନ୍ତି ।

ଠାକୁର ପରମହଂସଦେବ ହସି ହସି ଆସନ ଗ୍ରହଣ କଲେ । ବର୍ତ୍ତମାନ ସମସ୍ତଙ୍କର ଚକ୍ଷୁ ଏକାବେଳକେ ତାଙ୍କର ଆନନ୍ଦମୂର୍ତ୍ତି ଉପରେ ପତିତ ହେଲା । ଯେତେବେଳେ ପର୍ଯ୍ୟନ୍ତ ନାଟ୍ୟଶାଳାରେ ଅଭିନୟ ଆରମ୍ଭ ହୋଇ ନାହିଁ, ସେପର୍ଯ୍ୟନ୍ତ ଦର୍ଶକମାନଙ୍କ ମଧ୍ୟରୁ କେହି ହସୁଛି, କେହି ବିଷୟକର୍ମର କଥା କହୁଛି, କେହି ଏକାକୀ ଅଥବା ବନ୍ଧୁସଙ୍ଗରେ ପଦଚାରଣ କରୁଛି, କେହି ପାନ ଖାଉଛି, କେହି ଅବା ତମାଖୁ ସେବନ କରୁଛି, କିନ୍ତୁ ଡ୍ରପ୍‌ସିନ୍ ଯେତେବେଳେ ଉଠେ ସେତେବେଳେ ସମସ୍ତେ କଥାବାର୍ତ୍ତା ବନ୍ଦ କରି ଅନନ୍ୟମନା ହୋଇ ଏକଦୃଷ୍ଟିରେ ନାଟ୍ୟରଙ୍ଗ ଦେଖିବାକୁ ଲାଗନ୍ତି । ଯେପରି ନାନାପୁଷ୍ପ-ପରିଭ୍ରମଣକାରୀ ଷଟ୍‌ପଦବୃନ୍ଦ ପଦ୍ମର ସନ୍ଧାନ ପାଇଲେ ଅନ୍ୟ କୁସୁମ ତ୍ୟାଗ କରି ପଦ୍ମମଧୁ ପାନ କରିବାକୁ ଛୁଟି ଆସନ୍ତି ।

## (୨)

ମାଞ୍ଚ ଯୋଽବ୍ୟଭିଚାରେଣ ଭକ୍ତିଯୋଗେନ ସେବତେ ।
ସ ଗୁଣାନ୍ ସମତୀତୈତାନ୍ ବ୍ରହ୍ମଭୂୟାୟ କଳ୍ପତେ ॥—ଗୀତା, ୧୪/୨୬

### ଭକ୍ତ–ସମ୍ଭାଷଣ

ସହାସ୍ୟବଦନରେ ଠାକୁର ଶ୍ରୀଯୁକ୍ତ ଶିବନାଥ ଆଦି ଭକ୍ତମାନଙ୍କ ଆଡ଼କୁ ଦୃଷ୍ଟି ନିକ୍ଷେପ କରି କହିଲେ, ''ଏଇ ଯେ ଶିବନାଥ ! ଦେଖ, ତୁମେମାନେ ଭକ୍ତ, ତୁମମାନଙ୍କୁ ଦେଖିଲେ ଭାରୀ ଆନନ୍ଦ ହୁଏ । ଗଞ୍ଜେଇଖୋର୍‌ର ସ୍ୱଭାବ, ଆଉ ଜଣେ ଗଞ୍ଜେଇଖୋର୍‌କୁ ଦେଖିଲେ ଭାରୀ ଖୁସି ହୁଏ । ହୁଏତ ତାକୁ କୁଣ୍ଢାକୁଣ୍ଢି କରେ ।'' (ଶିବନାଥଙ୍କର ଓ ସମସ୍ତଙ୍କର ହାସ୍ୟ)

**ସଂସାରୀ ଲୋକର ସ୍ୱଭାବ—ନାମ ମାହାତ୍ମ୍ୟ**

ଶ୍ରୀରାମକୃଷ୍ଣ—ଯେଉଁମାନଙ୍କୁ ଦେଖେ ଈଶ୍ୱରଙ୍କଠାରେ ମନ ନାହିଁ, ସେମାନଙ୍କୁ ମୁଁ କହେ, 'ତୁମେମାନେ ଟିକିଏ ସେଠାରେ ଯାଇ ବସ ।' ଅଥବା କହେ, 'ଯାଅ, ବିଲ୍‌ଡ଼ିଂ (ଅର୍ଥାତ୍ କାଳୀମନ୍ଦିର ପ୍ରଭୃତି) ଯାଇ ଦେଖ ।' (ସମସ୍ତଙ୍କର ହାସ୍ୟ)

''ପୁଣି ଦେଖିଛି ଯେ, ଭକ୍ତମାନଙ୍କ ସଙ୍ଗରେ ସ୍ରୋତରେ ଲୋକେ ଚାଲି ଆସନ୍ତି । ସେମାନଙ୍କର ଭାରୀ ବିଷୟ-ବୁଦ୍ଧି; ଈଶ୍ୱରଙ୍କର କଥା ଭଲ ଲାଗେ ନାହିଁ । ଏମାନେ ହୁଏତ ମୋ ସହିତ ବହୁ ସମୟ ଧରି ଈଶ୍ୱରଙ୍କ କଥା କହୁଛନ୍ତି । ତେଣେ ସେମାନେ ଆଉ ବସି ରହିପାରନ୍ତି ନାହିଁ; ଛଟ୍‌ପଟ୍ ହୁଅନ୍ତି । ଥରକୁ ଥର ଏମାନଙ୍କ କାନରେ ଫୁସ୍‌ଫୁସ୍ କରି କହନ୍ତି, 'କେତେବେଳେ ଯିବ—କେତେବେଳେ ଯିବ ?' ଏମାନେ ହୁଏତ କହନ୍ତି, 'ରହ ନା, ଆଉ ଟିକେ ପରେ ଯିବା ।' ସେତେବେଳେ ସେମାନେ ବିରକ୍ତ ହୋଇ କହନ୍ତି, 'ତେବେ ତୁମେମାନେ କଥା କୁହ, ଆମେ ଡଙ୍ଗାରେ ଯାଇ ବସୁଛୁ । (ସମସ୍ତଙ୍କର ହାସ୍ୟ) ''ସଂସାରୀ ଲୋକମାନଙ୍କୁ ଯଦି କହ ଯେ, ସବୁ ତ୍ୟାଗକରି ଈଶ୍ୱରଙ୍କ ପାଦପଦ୍ମରେ ମଗ୍ନ ହୁଅ, ସେମାନେ କେବେହେଲେ ତାହା ଶୁଣିବେ ନାହିଁ । ସେଥିପାଇଁ ବିଷୟୀ ଲୋକମାନଙ୍କୁ ଟାଣିବା ପାଇଁ ଗୌର ନିତାଇ ଦୁଇଭାଇ ମିଳି ପରାମର୍ଶ କରି ଏହି ବ୍ୟବସ୍ଥା କରିଥିଲେ—'ମାଗୁର ମାଛର ଝୋଳ, ଯୁବତୀ ଝିଅର କୋଳ, ବୋଲ ହରି ବୋଲ ।' ପ୍ରଥମ ଦୁଇଟିର ଲୋଭରେ ଅନେକେ ହରିବୋଲ କହିବାକୁ ଆସୁଥିଲେ । ହରିନାମ-ସୁଧାର ଟିକିଏ ଆସ୍ୱାଦ ପାଇଲେ ସେମାନେ ବୁଝିପାରୁଥିଲେ ଯେ, 'ମାଗୁର ମାଛର ଝୋଳ' ଆଉ କିଛି ନୁହେଁ, ହରିପ୍ରେମରେ ଯେଉଁ ଅଶ୍ରୁ ପଡ଼େ ତାହା; ଆଉ 'ଯୁବତୀ ସ୍ତ୍ରୀ' ହେଉଛି—ପୃଥିବୀ ! 'ଯୁବତୀ ସ୍ତ୍ରୀର କୋଳ' ଅର୍ଥାତ୍—ଧୂଳିରେ ହରିପ୍ରେମରେ ଗଡ଼ାଗଡ଼ି ।

''ନିତାଇ କୌଣସି ପ୍ରକାରରେ **ହରିନାମ** କରାଇ ନିଅନ୍ତି । ଚୈତନ୍ୟଦେବ କହୁଥିଲେ, 'ଈଶ୍ୱରଙ୍କ ନାମର ଭାରୀ ମାହାତ୍ମ୍ୟ । ଶୀଘ୍ର ଫଳ ନ ହୋଇପାରେ; କିନ୍ତୁ କେବେ ନା କେବେ ଏହାର ଫଳ ହେବ ହିଁ ହେବ ।' ଯେପରି କେହି ଘରର କାର୍ଣ୍ଣିସ୍ ଉପରେ ମଞ୍ଜି ରଖିଦେଇଥିଲା । ଅନେକ ଦିନ ପରେ ଘର ଭୂମିସାତ୍ ହୋଇଗଲା; ସେତେବେଳେ ସେହି ମଞ୍ଜି ମାଟିରେ ପଡ଼ି ଗଛ ହେଲା ଓ ତାହାର ଫଳ ମଧ୍ୟ ହେଲା ।''

**ମନୁଷ୍ୟପ୍ରକୃତି ଓ ଗୁଣତ୍ରୟ—ଭକ୍ତିର ସତ୍ତ୍ୱ, ରଜଃ, ତମଃ**

ଶ୍ରୀରାମକୃଷ୍ଣ—ଯେପରି ସଂସାରୀମାନଙ୍କ ଭିତରେ ସତ୍ତ୍ୱ, ରଜଃ, ତମଃ ତିନିଗୁଣ ଅଛି, ସେହିପରି ଭକ୍ତିର ମଧ୍ୟ ସତ୍ତ୍ୱ, ରଜଃ, ତମଃ, ତିନିଗୁଣ ଅଛି ।

ସଂସାରୀର ସତ୍ତ୍ୱଗୁଣ କିପରି ଜାଣିଛ ? ଘରଟି ଏଠି ସେଠି ଭଙ୍ଗା ମରାମତି କରେ ନାହିଁ । ମନ୍ଦିର ବାରଣ୍ଡାରେ ପାରାଗୁଡ଼ିକ ହଗୁଛନ୍ତି । ଅଗଣାରେ ଶିଉଳି ଜମିଛି, ଖିଆଲ ନାହିଁ । ସରଞ୍ଜାମଗୁଡ଼ିକ ପୁରୁଣା, ଫିଟ୍‌ଫାଟ୍ କରିବାର ଚେଷ୍ଟା ନାହିଁ । ଲୁଗା ଯାହା ତାହା ଖଣ୍ଡେ ହେଲେ ମଧ୍ୟ ହେଲା । ଲୋକଟି ଖୁବ୍ ଶାନ୍ତ, ଶିଷ୍ଟ, ଦୟାଳୁ, ଅମାୟିକ, କାହାରି କୌଣସି ଅନିଷ୍ଟ କରେ ନାହିଁ ।

''ସଂସାରୀ ରଜୋଗୁଣର ମଧ୍ୟ ଲକ୍ଷଣ ଅଛି । ଘଡ଼ି, ଘଡ଼ିର ଚେନ୍, ହାତରେ ଦୁଇ ତିନିଟା ମୁଦି । ଘରର ଜିନିଷପତ୍ର ଖୁବ୍ ଫିଟ୍‌ଫାଟ୍ । ଘର-କାନ୍ଥରେ କୁଇନ୍‌ଙ୍କ (ରାଣୀଙ୍କର) ଛବି, ରାଜପୁତ୍ରଙ୍କ ଛବି, କୌଣସି ବଡ଼ ଲୋକର ଛବି । ଘରଟିରେ ଚୂନ କାମ ହୋଇଛି, କେଉଁଠାରେ ହେଲେ ଟିକିଏ ଦାଗ ନାହିଁ । ନାନା ପ୍ରକାରର ଭଲ ଭଲ ପୋଷାକ, ଚାକରମାନଙ୍କର ମଧ୍ୟ ଭଲ ପୋଷାକ । ଏହିପରି ସମସ୍ତ ।

''ସଂସାରୀ ତମୋଗୁଣର ଲକ୍ଷଣ—ନିଦ୍ରା, କାମ, କ୍ରୋଧ, ଅହଂକାର ଏହିସବୁ ।

''ଆଉ ଭକ୍ତିର ସତ୍ତ୍ୱ ଅଛି । ଯେଉଁ ଭକ୍ତର ସତ୍ତ୍ୱଗୁଣ, ସେ ଅତି ଗୋପନରେ ଧ୍ୟାନ କରେ । ସେ ହୁଏତ ମଶାରି ଭିତରେ ଧ୍ୟାନ କରେ—ସମସ୍ତେ ଜାଣନ୍ତି, ବୋଧହୁଏ ଶୋଇଛନ୍ତି । ବୋଧହୁଏ ରାତିରେ ନିଦ ହୋଇ ନାହିଁ, ତେଣୁ ଉଠିବାକୁ ଏତେ ଡେରି ହେଉଛି । ଏଣେ ଦେହ ଉପରେ ଆଦର କେବଳ ପେଟ ଚଳିବା ପର୍ଯ୍ୟନ୍ତ, ଶାକାନ୍ନ ପାଇଲେ ହେଲା, ଖାଇବାର ଆଡ଼ମ୍ବର ନାହିଁ । ପୋଷାକରେ ଜାକଜମକ ନାହିଁ । ଘରର ଜିନିଷପତ୍ରର ଜାକଜମକ ନାହିଁ । ଆଉ ସତ୍ତ୍ୱଗୁଣୀ ଭକ୍ତ କେତେବେଳେ ହେଲେ ଖୋସାମତ୍ କରି ଧନ ନିଏ ନାହିଁ ।

''ଭକ୍ତିର ରଜଃ ଥିଲେ ସେ ଭକ୍ତର ହୁଏତ ତିଳକ ଅଛି, ରୁଦ୍ରାକ୍ଷମାଳ ଅଛି । ସେହି ମାଳାର ମଝିରେ ପୁଣି ଗୋଟିଏ ଗୋଟିଏ ସୁନାର ଦାନା (ସମସ୍ତଙ୍କର ହାସ୍ୟ) । ଯେତେବେଳେ ପୂଜା କରେ, ସେତେବେଳେ ପାଟଲୁଗା ପିନ୍ଧି ପୂଜା କରେ ।

"ଭକ୍ତିର ତମଃ ଯାହାର ହୁଏ, ତାହାର ବିଶ୍ୱାସ ଜ୍ୱଳନ୍ତ । ଈଶ୍ୱରଙ୍କ ପାଖରେ ସେପରି ଭକ୍ତ ଜୋର୍ କରେ । ଯେପରି ଡକାୟତି କରି ଧନ କାଢ଼ିନେବା । 'ମାର୍, କାଟ, ବାନ୍ଧ'—ଏହିପରି ଡକାୟତି କରିବା ଭାବ ।"

## (୩)

କ୍ଳୈବ୍ୟଂ ମା ସ୍ମ ଗମଃ ପାର୍ଥ ନୈତତ୍ତ୍ୱୟ୍ୟୁପପଦ୍ୟତେ ।
କ୍ଷୁଦ୍ରଂ ହୃଦୟଦୌର୍ବଲ୍ୟଂ ତ୍ୟକ୍ତ୍ୱୋତ୍ତିଷ୍ଠ ପରନ୍ତପ ॥—ଗୀତା, ୨/୩

ଠାକୁରେ ତାଙ୍କର ପ୍ରେମରସାଭିଷିକ୍ତ କଣ୍ଠରେ ଊର୍ଦ୍ଧ୍ୱଦୃଷ୍ଟି ହୋଇ ଗାଇବାକୁ ଲାଗିଲେ—

"ଗୟା ଗଙ୍ଗା ପ୍ରଭାସାଦି କାଶୀ କାଞ୍ଚୀ କେବା ଚାୟ ।
କାଲୀ କାଲୀ କାଲୀ ବଲେ ଅଜପା ଯଦି ଫୁରାୟ ॥
ତ୍ରିସନ୍ଧ୍ୟା ଯେ ବଲେ କାଲୀ, ପୂଜା ସନ୍ଧ୍ୟା ସେ କି ଚାୟ ।
ସନ୍ଧ୍ୟା ତାର ସନ୍ଧାନେ ଫେରେ କଭୁ ସନ୍ଧି ନାହିଁ ପାୟ ॥.."

ଠାକୁର ଭାବୋନ୍ମତ୍ତ, ଯେପରି ଅଗ୍ନିମନ୍ତ୍ରରେ ଦୀକ୍ଷିତ ହୋଇ ଗାଉଛନ୍ତି—

### ନାମ-ମାହାତ୍ମ୍ୟ ଓ ପାପ—ତିନି ପ୍ରକାର ଆଚାର୍ଯ୍ୟ

"ଆମି ଦୁର୍ଗା ଦୁର୍ଗା ବଲେ ମା ଯଦି ମରି ।..."

"କ'ଣ ! ମୁଁ ତାଙ୍କର ନାମ ନେଇଛି—ମୋର ପୁଣି ପାପ ! ମୁଁ ତାଙ୍କର ପୁଅ, ତାଙ୍କ ଐଶ୍ୱର୍ଯ୍ୟର ଅଧିକାରୀ । ଏହିପରି ଜିଦ୍ ଦରକାର !

"ତମୋଗୁଣର ଦିଗ ବଦଳେଇ ଦେଲେ ଈଶ୍ୱର ଲାଭ ହୁଏ । ତାଙ୍କ ପାଖରେ ଜୋର୍ କର, ସେ ତ ପର ନୁହନ୍ତି, ସେ ତ ଆପଣାର ଲୋକ !

"ପୁଣି ଦେଖ, ଏହି ତମୋଗୁଣକୁ ପରର ମଙ୍ଗଳ ସକାଶେ ମଧ୍ୟ ବ୍ୟବହାର କରାଯାଏ । ବୈଦ୍ୟ ତିନି ପ୍ରକାର—ଉତ୍ତମ ବୈଦ୍ୟ, ମଧ୍ୟମ ବୈଦ୍ୟ, ଅଧମ ବୈଦ୍ୟ । ଯେଉଁ ବୈଦ୍ୟ ଆସି ନାଡ଼ି ଚିପେ ଓ 'ଔଷଧ ଖାଅ ହେ' ଏହି କଥା କହି ଚାଲିଯାଏ, ସେ ଅଧମ ବୈଦ୍ୟ—ରୋଗୀ ଖାଇଲା କି ନାହିଁ, ଏ ଖବର ସେ ନିଏ ନାହିଁ । ଯେଉଁ ବୈଦ୍ୟ ରୋଗୀକୁ ଔଷଧ ଖାଇବାକୁ ବହୁତ କରି ବୁଝାଏ—ମିଠା କଥାରେ କହେ, 'ହଇ ହେ, ଔଷଧ ନ ଖାଇଲେ କିପରି ଭଲ ହେବ ? ସୁନାଟି ପରା, ଖାଅ; ମୁଁ ନିଜେ ଔଷଧ ଘୋରି ଦେଉଛି, ଖାଅ'—ସେ ମଧ୍ୟମ ବୈଦ୍ୟ । ଆଉ ଯେଉଁ ବୈଦ୍ୟ, ରୋଗୀ କୌଣସିମତେ ଖାଇଲା ନାହିଁ ଦେଖି, ଛାତିରେ ଆଣ୍ଠୁ ଦେଇ ଜୋର୍ କରି ଔଷଧ ଖୁଆଇ ଦିଏ—ସେ ଉତ୍ତମ ବୈଦ୍ୟ । ଏଇଟି ବୈଦ୍ୟର ତମୋଗୁଣ, କିନ୍ତୁ ଏ ଗୁଣରେ ରୋଗୀର ମଙ୍ଗଳ ହୁଏ, ଅପକାର ହୁଏ ନାହିଁ ।

''ବୈଦ୍ୟପରି ଆଚାର୍ଯ୍ୟ ମଧ୍ଯ ତିନି ପ୍ରକାର । ଯେ ଧର୍ମ ଉପଦେଶ ଦେଇ ଶିଷ୍ୟ ମାନଙ୍କର ଆଉ କୌଣସି ଖବର ନିଅନ୍ତି ନାହିଁ—ସେ ଅଧମ ଆଚାର୍ଯ୍ୟ । ଯେ ଶିଷ୍ୟମାନଙ୍କ ମଙ୍ଗଳ ପାଇଁ ସେମାନଙ୍କୁ ଥରକୁ ଥର ବୁଝାନ୍ତି, ଯେଉଁଥିରେ ସେମାନଙ୍କ ଉପଦେଶଗୁଡ଼ିକ ଧାରଣା କରିପାରିବେ, ଅନେକ ଅନୁନୟ ବିନୟ କରନ୍ତି, ଭଲ ପାଆନ୍ତି—ସେ ମଧ୍ୟମ ସ୍ତରର ଆଚାର୍ଯ୍ୟ । ଆଉ ଯେତେବେଳେ ଶିଷ୍ୟମାନେ କୌଣସିମତେ ଶୁଣୁନାହାନ୍ତି ଦେଖି କୌଣସି ଆଚାର୍ଯ୍ୟ ଜୋର୍ ପର୍ଯ୍ୟନ୍ତ କରନ୍ତି, ତାଙ୍କୁ କହେ—ଉତ୍ତମ ଆଚାର୍ଯ୍ୟ'' ।''

## (୪)

ଯତୋ ବାଚୋ ନିବର୍ତନ୍ତେ ଅପ୍ରାପ୍ୟ ମନସା ସହ ।

—ତୈ. ଉପନିଷଦ୍ ୨/୪

## ବ୍ରହ୍ମଙ୍କର ସ୍ୱରୂପ ମୁଖରେ କହିହୁଏ ନାହିଁ

ଜଣେ ବ୍ରାହ୍ମଭକ୍ତ ପଚାରିଲେ—ଈଶ୍ୱର ସାକାର ନା ନିରାକାର ?

ଶ୍ରୀରାମକୃଷ୍ଣ—ତାଙ୍କର ଇତି କରାଯାଏ ନାହିଁ । ସେ ନିରାକାର, ପୁଣି ସାକାର । ଭକ୍ତଙ୍କ ପାଇଁ ସେ ସାକାର । ଯେଉଁମାନେ ଜ୍ଞାନୀ ଅର୍ଥାତ୍ ଜଗତକୁ ସ୍ୱପ୍ନପରି ମନେକରନ୍ତି, ସେମାନଙ୍କ ପାଇଁ ସେ ନିରାକାର । ଭକ୍ତ ଜାଣେ, ମୁଁ ଗୋଟିଏ ଜିନିଷ, ଜଗତ ଗୋଟିଏ ଜିନିଷ । ସେଥିପାଇଁ ଭକ୍ତଙ୍କ ନିକଟରେ ଈଶ୍ୱର 'ବ୍ୟକ୍ତି' ହୋଇ ଦେଖାଦିଅନ୍ତି । ଜ୍ଞାନୀ—ଯେପରି ବେଦାନ୍ତବାଦୀ—କେବଳ ନେତି ନେତି ବିଚାର କରେ । ବିଚାର କରି ଜ୍ଞାନୀର ଠିକ୍ ଠିକ୍ ବୋଧହୁଏ ଯେ, 'ମୁଁ ମିଥ୍ୟା, ଜଗତ ବି ମିଥ୍ୟା—ସ୍ୱପ୍ନବତ୍' । ଜ୍ଞାନୀ ବ୍ରହ୍ମଙ୍କୁ ଅନୁଭବ କରନ୍ତି; ସେ ଯେ କଅଣ, ତାହା ମୁଖରେ କହିପାରନ୍ତି ନାହିଁ ।

''କିପରି ଜାଣ ? ଯେପରି ସଚ୍ଚିଦାନନ୍ଦ ସମୁଦ୍ର—ଥଳ କୂଳ ନାହିଁ—ଭକ୍ତିହିମରେ ସ୍ଥାନେ ସ୍ଥାନେ ଜଳ ବରଫ ହୋଇଯାଏ । ବରଫ ଆକାରରେ ଜମାଟ ବାନ୍ଧେ; ଅର୍ଥାତ୍ ଭକ୍ତ ନିକଟରେ ସେ ବ୍ୟକ୍ତି ଭାବରେ କେବେ କେବେ ସାକାର ରୂପ ଧରି ଦେଖା ଦିଅନ୍ତି । ଜ୍ଞାନ-ସୂର୍ଯ୍ୟ ଉଠିଲେ ବରଫ ତରଳିଯାଏ; ସେତେବେଳେ ଆଉ ଈଶ୍ୱରଙ୍କୁ ବ୍ୟକ୍ତି ବୋଲି ବୋଧହୁଏ ନାହିଁ, ତାଙ୍କର ରୂପ ମଧ୍ୟ ଦର୍ଶନ ହୁଏ ନାହିଁ । ସେ କଅଣ, ମୁଖରେ କୁହାଯାଇ ପାରେ ନାହିଁ । କିଏ କହିବ ? ଯେ କହିବେ, ସେ ନାହାନ୍ତି; ତାଙ୍କର 'ମୁଁ' ଆଉ ଖୋଜି ପାଇପାରନ୍ତି ନାହିଁ ।

''ବିଚାର କରୁ କରୁ ମୁଁ ଫୁଁ ଆଉ କିଛି ରହେ ନାହିଁ । ଯେପରି ପିଆଜର ପ୍ରଥମେ ନାଲି ଚୋପା ତୁମେ ଛଡ଼ାଇଲ, ତା'ପରେ ଫିକା ମୋଟା ଚୋପା—ଏହିପରି ବରାବର ଛଡ଼ାଇ ଛଡ଼ାଇ କିଛି ଖୋଜି ମିଳେ ନାହିଁ ।

''ଯେଉଁଠାରେ ନିଜର 'ମୁଁ' ଖୋଜି ମିଳେ ନାହିଁ—ଆଉ ଖୋଜିବ ବା କିଏ ? —ସେଠାରେ ବ୍ରହ୍ମଙ୍କର ସ୍ୱରୂପ ଅନୁଭୂତ ହୁଏ; କିପରି ହୁଏ, ସେକଥା କିଏ କହିବ ?

''ଗୋଟିଏ ଲୁଣର ପିତୁଳା ସମୁଦ୍ର ମାପିବାକୁ ଯାଇଥିଲା । ସମୁଦ୍ରରେ ଯେମିତି ପଶିଛି, ସଙ୍ଗେ ସଙ୍ଗେ ମିଳେଇ ମିଶିଗଲା । ସେତେବେଳେ କିଏ ଖବର ଦେବ ?

''ପୂର୍ଣ୍ଣ ଜ୍ଞାନର ଲକ୍ଷଣ—ପୂର୍ଣ୍ଣ ଜ୍ଞାନ ହେଲେ ମନୁଷ୍ୟ ଚୁପ୍ ହୋଇଯାଏ । ସେତେବେଳେ ମୁଁ-ରୂପକ ଲୁଣର ପିତୁଳା ସଚ୍ଚିଦାନନ୍ଦ—ସାଗରରେ ମିଶି ଏକ ହୋଇଯାଏ, ଆଉ ଟିକିଏ ହେଲେ ଭେଦବୁଦ୍ଧି ରହେ ନାହିଁ ।

''ଚାଷୀମାନେ ପୋଖରୀରୁ ଚାଷ ପାଇଁ ପଡ଼ିଆକୁ ପାଣି ଆଣନ୍ତି । ଯେତେବେଳେ ପୋଖରୀର ପାଣି ଓ ପଡ଼ିଆର ପାଣି ସମାନ ହୋଇଯାଏ, ସେତେବେଳେ ଆଉ ଶବ୍ଦ ହୁଏ ନାହିଁ ।

''ବିଚାର କରିବା ଯେପର୍ଯ୍ୟନ୍ତ ଶେଷ ନ ହୁଏ, ଲୋକମାନେ ସେତେବେଳଯାଏ ଫଡ୍ ଫଡ୍ କରି ତର୍କ କରନ୍ତି । ବିଚାର ଶେଷ ହେଲେ ଚୁପ୍ ହୋଇଯାଆନ୍ତି । ମାଠିଆ ପୂର୍ଣ୍ଣ ହେଲେ, ମାଠିଆର ପାଣି ଓ ପୋଖରୀର ପାଣି ସମାନ ହେଲେ, ଆଉ ଶବ୍ଦ ହୁଏ ନାହିଁ । ଯେପର୍ଯ୍ୟନ୍ତ ମାଠିଆ ପୂର୍ଣ୍ଣ ନ ହୁଏ, ସେପର୍ଯ୍ୟନ୍ତ ଶବ୍ଦ ।

''ଆଗ କାଳରେ ଲୋକେ କହୁଥିଲେ—କଳାପାଣିକୁ ଜାହାଜ ଗଲେ ଆଉ ଫେରେ ନାହିଁ ।

## ମୁଁ କିନ୍ତୁ ଯାଏ ନାହିଁ

''ମୁଁ ମଲେ ଘୁଞ୍ଚିବ ଜଞ୍ଜାଳ (ସମସ୍ତଙ୍କର ହାସ୍ୟ)—କିନ୍ତୁ ହଜାର ବିଚାର କର, 'ମୁଁ' ଯାଏ ନାହିଁ । ତେଣୁ ତୁମ ଆମ ପକ୍ଷରେ 'ଭକ୍ତ ମୁଁ' ଏ ଅଭିମାନ ଭଲ ।

''ଭକ୍ତ ପକ୍ଷରେ ସଗୁଣ ବ୍ରହ୍ମ, ଅର୍ଥାତ୍ ସେ ସଗୁଣ—ଜଣେ ବ୍ୟକ୍ତି ହୋଇ, ରୂପ ନେଇ ଦେଖା ଦିଅନ୍ତି । ସେ ହିଁ ପ୍ରାର୍ଥନା ଶୁଣନ୍ତି । ତୁମେମାନେ ଯେଉଁ ପ୍ରାର୍ଥନା କର, ତାଙ୍କୁ ହିଁ କର । ତୁମେମାନେ ବେଦାନ୍ତବାଦୀ ନୁହଁ, ଜ୍ଞାନୀ ନୁହଁ, ତୁମେମାନେ ଭକ୍ତ । ସାକାର ରୂପ ମାନ ବା ନ ମାନ, କିଛି ଯାଏ ଆସେ ନାହିଁ । ଈଶ୍ୱର ଜଣେ ବ୍ୟକ୍ତି ବୋଲି ବୋଧ ହେଲେ ହେଲା—ଯେ ବ୍ୟକ୍ତି ପ୍ରାର୍ଥନା ଶୁଣନ୍ତି, ସୃଷ୍ଟି ସ୍ଥିତି ପ୍ରଳୟ କରନ୍ତି, ଯେ ବ୍ୟକ୍ତି ଅନନ୍ତ-ଶକ୍ତି । ଭକ୍ତି-ପଥରେ ହିଁ ସେ ସହଜରେ ମିଳନ୍ତି ।''

(୫)

ଭକ୍ତ୍ୟା ତ୍ୱନନ୍ୟୟା ଶକ୍ୟ ଅହମେବଂବିଧୋଽର୍ଜୁନ ।
ଜ୍ଞାତୁଂ ଦ୍ରଷ୍ଟୁଂ ଚ ତତ୍ତ୍ୱେନ ପ୍ରବେଷ୍ଟୁଂ ଚ ପରନ୍ତପ ॥—ଗୀତା, ୧୧/୫୪

## ଈଶ୍ୱରଦର୍ଶନ—ସାକାର ନା ନିରାକାର ?

ଜଣେ ବ୍ରାହ୍ମଭକ୍ତ—ମହାଶୟ ! ଈଶ୍ୱରଙ୍କୁ କ'ଣ ଦେଖାଯାଏ ? ଯଦି ଦେଖାଯାଏ, ଆମେ କାହିଁକି ଦେଖିପାରୁ ନାହିଁ ?

ଶ୍ରୀରାମକୃଷ୍ଣ—ହଁ, ଅବଶ୍ୟ ଦେଖାଯାଆନ୍ତି—ସାକାର ରୂପ ଦେଖାଯାଏ ଆଉ ଅରୂପ ମଧ୍ୟ ଦେଖାଯାଏ । ସେକଥା ତୁମକୁ କିପରି ବୁଝାଇବି ?

ବ୍ରାହ୍ମଭକ୍ତ—କି ଉପାୟରେ ଦେଖା ମିଳିପାରେ ?

ଶ୍ରୀରାମକୃଷ୍ଣ—ବ୍ୟାକୁଳ ହୋଇ ତାଙ୍କ ପାଇଁ କାନ୍ଦିପାର ?

"ଲୋକମାନେ ପୁଅ ପାଇଁ, ସ୍ତ୍ରୀ ପାଇଁ, ଟଙ୍କା ପାଇଁ ମାଠିଆ ମାଠିଆ କାନ୍ଦନ୍ତି ! କିନ୍ତୁ ଈଶ୍ୱରଙ୍କ ପାଇଁ କିଏ କାନ୍ଦୁଛି ? ଯେପର୍ଯ୍ୟନ୍ତ ପୁଅ ଚୁଚୁମା ନେଇ ଭୁଲିଥାଏ, ମା ରନ୍ଧାବଢ଼ା ଓ ଘରର ଅନ୍ୟାନ୍ୟ କାମଦାମ କରେ । ଯେତେବେଳେ ଆଉ ଚୁଚୁମା ଭଲ ଲାଗେ ନାହିଁ—ପିଲାଟି ଚୁଚୁମା ଫିଙ୍ଗି ପାଟିକରି କାନ୍ଦେ—ସେତେବେଳେ ମା ଭାତହାଣ୍ଡି ଓହ୍ଲାଇ ଧଡ଼୍‌ପଡ଼୍ ହୋଇ ଆସି ପିଲାକୁ କୋଳକୁ ନିଏ ।"

ବ୍ରାହ୍ମଭକ୍ତ—ମହାଶୟ ! ଈଶ୍ୱରଙ୍କର ସ୍ୱରୂପ ନେଇ ଏତେ ଭିନ୍ନ ଭିନ୍ନ ମତ କାହିଁକି ? କିଏ କହେ ସାକାର, କିଏ କହେ ନିରାକାର—ପୁଣି ସାକାର-ବାଦୀମାନଙ୍କ ନିକଟରୁ ନାନା ରୂପର କଥା ଶୁଣିବାକୁ ମିଳେ । ଏତେ ଗଣ୍ଡଗୋଳ କାହିଁକି ?

ଶ୍ରୀରାମକୃଷ୍ଣ—ଯେଉଁ ଭକ୍ତ ଯେପରି ଦେଖେ, ସେ ସେହିପରି ମନେକରେ; ବାସ୍ତବିକ୍ କୌଣସି କିଛି ଗଣ୍ଡଗୋଳ ନାହିଁ । ତାଙ୍କୁ କୌଣସି ପ୍ରକାରେ ଯଦି ଥରେ ଲାଭ କରାଯାଇପାରେ, ତାହା ହେଲେ ସେ ସବୁ ବୁଝାଇ ଦିଅନ୍ତି । ସେ ସାହିକୁ ତ ଗଲ ନାହିଁ—ସବୁ ଖବର ପାଇବ କିପରି !

"ଗୋଟିଏ ଗପ ଶୁଣ । ଜଣେ ଶୌଚ ଯାଇଥିଲା । ସେ ଦେଖିଲା ଯେ ଗଛ ଉପରେ ଗୋଟିଏ ଜନ୍ତୁ ଅଛି । ସେ ଆସି ଜଣକୁ କହିଲା—ଶୁଣ, ଅମୁକ ଗଛରେ ସୁନ୍ଦର ଲାଲ ରଙ୍ଗର ଜନ୍ତୁଟିଏ ଦେଖି ଆସିଲି । ଲୋକଟି ଉତ୍ତର ଦେଲା—ମୁଁ ଯେତେବେଳେ ଶୌଚ ଯାଇଥିଲି, ମୁଁ ମଧ୍ୟ ଦେଖିଛି; ତେବେ ସେ ଲାଲ ରଙ୍ଗ କାହିଁକି ହେବ ? ସେ ତ ସବୁଜ ରଙ୍ଗ ! ଆଉ ଜଣେ କହିଲା—ନା, ନା, ମୁଁ ଦେଖିଛି ହଳଦିଆ । ଏହିପରି ଆଉ କେହି କେହି କହିଲେ—ନା, ଜରଦା, ବାଇଗଣି, ନୀଳ ଇତ୍ୟାଦି । ଶେଷରେ ଝଗଡ଼ା । ତା'ପରେ ସେମାନେ ଗଛ ତଳକୁ

ଯାଇ ଦେଖନ୍ତି, ଜଣେ ଲୋକ ବସିଛି । ତାକୁ ପଚାରିବାରୁ ସେ କହିଲା, 'ମୁଁ ଏହି ଗଛ ତଳେ ଥାଏ; ମୁଁ ସେ ଜନ୍ତୁଟିକୁ ଖୁବ୍ ଭଲ କରି ଜାଣେ — ତୁମେମାନେ ଯାହା ଯାହା କହୁଛ, ସବୁ ସତ — ସେ କେତେବେଳେ ଲାଲ, କେତେବେଳେ ସବୁଜ, କେତେବେଳେ ହଳଦିଆ, କେତେବେଳେ ନୀଳ, ଆଉ ମଧ୍ୟ କେତେ କ'ଣ ହୁଏ । ବହୁରୂପୀ । ଆଉ କେତେବେଳେ ଦେଖେ, କୌଣସି ରଙ୍ଗ ନାହିଁ । କେତେବେଳେ ସଗୁଣ, କେତେବେଳେ ବା ନିର୍ଗୁଣ ।'

''ଅର୍ଥାତ୍ ଯେଉଁ ବ୍ୟକ୍ତି ସଦା ସର୍ବଦା ଈଶ୍ୱରଚିନ୍ତା କରେ, ସେହି କେବଳ ଜାଣିପାରେ, ତାଙ୍କର ସ୍ୱରୂପ କଅଣ ? ସେହି ବ୍ୟକ୍ତି ହିଁ ଜାଣେ ଯେ, ସେ ନାନା ରୂପରେ ଦେଖା ଦିଅନ୍ତି, ନାନା ଭାବରେ ଦେଖା ଦିଅନ୍ତି — ସେ ସଗୁଣ, ପୁଣି ସେ ନିର୍ଗୁଣ । ଯେ ଗଛତଳେ ରହେ, ସେ ଜାଣେ ସେ ବହୁରୂପୀର ନାନାରଙ୍ଗ — ଆଉ ବେଳେ ବେଳେ କୌଣସି ରଙ୍ଗ ନ ଥାଏ । ଅନ୍ୟ ଲୋକମାନେ କେବଳ କଳିକଜିଆ କରି କଷ୍ଟ ପାଆନ୍ତି ।

''କବୀର କହୁଥିଲେ — 'ନିରାକାର ମୋର ବାପ, ସାକାର ମୋର ମା ।'

''ଭକ୍ତ ଯେଉଁ ରୂପକୁ ଭଲପାଏ, ସେହି ରୂପରେ ସେ ଦେଖାଦିଅନ୍ତି — ସେ ଯେ ଭକ୍ତବତ୍ସଳ ! ପୁରାଣରେ ଅଛି, ଭକ୍ତବୀର ହନୁମାନଙ୍କ ପାଇଁ ସେ ରାମ-ରୂପ ଧରିଥିଲେ ।

**କାଳୀରୂପ ଓ ଶ୍ୟାମରୂପର ବ୍ୟାଖ୍ୟା — ଅନନ୍ତଙ୍କୁ ଜଣାଯାଏ ନାହିଁ**

''ବେଦାନ୍ତ-ବିଚାର ପାଖରେ ରୂପ କୁଆଡ଼େ ଉଡ଼ିଯାଏ । ସେହି ବିଚାରର ଶେଷ ସିଦ୍ଧାନ୍ତ ଏହି ଯେ — ବ୍ରହ୍ମ ସତ୍ୟ, ଆଉ ନାମରୂପଯୁକ୍ତ ଜଗତ ମିଥ୍ୟା । ଯେପର୍ଯ୍ୟନ୍ତ 'ମୁଁ ଭକ୍ତ' ଏହି ଅଭିମାନ ରହିଥାଏ, କେବଳ ସେପର୍ଯ୍ୟନ୍ତ ଈଶ୍ୱରଙ୍କର ରୂପ ଦର୍ଶନ ହୁଏ ଏବଂ ଈଶ୍ୱରଙ୍କୁ ବ୍ୟକ୍ତି ବୋଲି ବୋଧ ହୁଏ । ବିଚାର ଦୃଷ୍ଟିରୁ ଦେଖିଲେ ଭକ୍ତର 'ମୁଁ'-ଅଭିମାନ ଭକ୍ତକୁ ଟିକିଏ ଦୂରରେ ରଖିଛି ।

''କାଳୀରୂପ ବା ଶ୍ୟାମରୂପ ଚଉଦ ପାଆ କାହିଁକି ? ଦୂରରେ ବୋଲି । ଦୂର ବୋଲି ସୂର୍ଯ୍ୟ ଛୋଟ ଦେଖାଯାଏ । ପାଖକୁ ଯାଅ — ସେତେବେଳେ ଏତେ ବଡ଼ ଦେଖା ଯିବ ଯେ, ଧାରଣା କରିପାରିବ ନାହିଁ । ଆଉ କାଳୀରୂପ ବା ଶ୍ୟାମରୂପ ଶ୍ୟାମବର୍ଣ୍ଣ କାହିଁକି ? ତାହା ମଧ୍ୟ ଦୂର ବୋଲି । ଯେପରି ହ୍ରଦର ଜଳ ଦୂରରୁ ସବୁଜ, ନୀଳ ବା କଳା ରଙ୍ଗ ଦେଖାଯାଏ; ପାଖକୁ ଯାଇ ହାତରେ ଉଠାଇ ଦେଖ, ପାଣିର କୌଣସି ରଙ୍ଗ ନାହିଁ । ଆକାଶ ଦୂରରୁ ଦେଖିଲେ ନୀଳବର୍ଣ୍ଣ; ପାଖରେ ଦେଖ, କୌଣସି ରଙ୍ଗ ନାହିଁ ।

''ତେଣୁ କହୁଛି, ବେଦାନ୍ତ-ଦର୍ଶନ-ବିଚାରରେ ବ୍ରହ୍ମ ନିର୍ଗୁଣ । ତାଙ୍କର ସ୍ୱରୂପ କ'ଣ ତାହା କଥାରେ କହି ହୁଏ ନାହିଁ । କିନ୍ତୁ ଯେପର୍ଯ୍ୟନ୍ତ ନିଜେ ସତ୍ୟ

ସେପର୍ଯ୍ୟନ୍ତ ଜଗତ ମଧ୍ଯ ସତ୍ୟ, ଈଶ୍ୱରଙ୍କର ନାନା ରୂପ ମଧ୍ୟ ସତ୍ୟ । ଈଶ୍ୱରଙ୍କୁ ବ୍ୟକ୍ତି ବୋଲି ବୋଧ କରିବା ମଧ୍ୟ ସତ୍ୟ ।

''ତୁମମାନଙ୍କର ଭକ୍ତିପଥ । ଏ ଖୁବ୍ ଭଲ, ସହଜ ପଥ । ଅନନ୍ତ ଈଶ୍ୱରଙ୍କୁ କ'ଣ ଜଣାଯାଏ ? ଆଉ ତାଙ୍କୁ ଜାଣିବା ମଧ୍ୟ କଅଣ ଦରକାର ? ଏହି ଦୁର୍ଲ୍ଲଭ ମନୁଷ୍ୟ-ଜନ୍ମ ପାଇ ମୋର ଦରକାର—ତାଙ୍କ ପାଦ-ପଦ୍ମରେ ଯେପରି ଭକ୍ତି ହୁଏ ।

''ମୋର ଯଦି ଲୋଟାଏ ପାଣିରେ ଶୋଷ ମରେ, ପୋଖରୀରେ କେତେ ପାଣି ଅଛି ଏହା ମାପିବା ମୋର କ'ଣ ଦରକାର ? ମୁଁ ଅଧବୋତଲ ମଦରେ ମାତାଲ ହୋଇଯାଏ, ଶୁଣ୍ଡି ଦୋକାନରେ କେତେ ମହଣ ମଦ ଅଛି, ଏ ହିସାବରେ ମୋର କ'ଣ ଦରକାର ? ଅନନ୍ତଙ୍କୁ ଜାଣିବା ଦରକାର କ'ଣ ?

(୬)

ଯସ୍ତ୍ୱାତ୍ମରତିରେବ ସ୍ୟାଦାତ୍ମତୃପ୍ତଶ୍ଚ ମାନବଃ ।
ଆତ୍ମନ୍ୟେବ ଚ ସନ୍ତୁଷ୍ଟସ୍ତସ୍ୟ କାର୍ଯ୍ୟଂ ନ ବିଦ୍ୟତେ ॥—ଗୀତା, ୩/୧୭

## ଈଶ୍ୱରଲାଭର ଲକ୍ଷଣ—ସପ୍ତଭୂମି ଓ ବ୍ରହ୍ମଜ୍ଞାନ

ଶ୍ରୀରାମକୃଷ୍ଣ—ବେଦରେ ବ୍ରହ୍ମଜ୍ଞାନୀର ନାନା ପ୍ରକାର ଅବସ୍ଥାର ବର୍ଣ୍ଣନା ଅଛି । ଜ୍ଞାନପଥ ଅତ୍ୟନ୍ତ କଠିନ ପଥ । ବିଷୟବୁଦ୍ଧି, କାମିନୀ-କାଞ୍ଚନରେ ଆସକ୍ତିର ଲେଶମାତ୍ର ରହିଲେ ସେ ଜ୍ଞାନ ହୁଏ ନାହିଁ । ଏ ପଥ କଳିଯୁଗ ପାଇଁ ନୁହେଁ ।

''ଏ ସମ୍ବନ୍ଧରେ ବେଦରେ ସପ୍ତଭୂମିର କଥା ଅଛି । ଏହି ସାତଟି ଭୂମି ମନର ସ୍ଥାନ । ଯେତେବେଳେ ସଂସାରରେ ମନ ରହେ, ସେତେବେଳେ ଲିଙ୍ଗ, ଗୁହ୍ୟ ଓ ନାଭି ମନର ସ୍ଥାନ । ମନର ସେତେବେଳେ ଊର୍ଦ୍ଧ୍ୱଦୃଷ୍ଟି ନ ଥାଏ—କେବଳ କାମିନୀକାଞ୍ଚନରେ ମନ ରହେ । ମନର ଚତୁର୍ଥ ଭୂମି ହୃଦୟ । ସେତେବେଳେ ପ୍ରଥମ ଚୈତନ୍ୟ ହୋଇଛି; ଆଉ ଚାରିଆଡ଼େ ଜ୍ୟୋତି ଦର୍ଶନ ହୁଏ । ସେତେବେଳେ ସେ ବ୍ୟକ୍ତି ଐଶ୍ୱରିକ ଜ୍ୟୋତି ଦେଖି ଅବାକ୍ ହୋଇ କହେ, 'ଏ କ'ଣ ! ଏ କ'ଣ !' ସେତେବେଳେ ଆଉ ତଳ ଆଡ଼କୁ (ସଂସାର ଆଡ଼କୁ) ମନ ଯାଏ ନାହିଁ ।

''ମନର ପଞ୍ଚମ ଭୂମି କଣ୍ଠ । ମନ ଯାହାର କଣ୍ଠରୁ ଉଠିଛି, ତାହାର ଅବିଦ୍ୟା ଅଜ୍ଞାନ ସବୁ ଯାଇଛି; ଈଶ୍ୱରୀୟ କଥା ଭିନ୍ନ ଅନ୍ୟ କୌଣସି କଥା ଶୁଣିବାକୁ ବା କହିବାକୁ ଭଲ ଲାଗେ ନାହିଁ । ଯଦି କେହି ଅନ୍ୟ କଥା କହେ, ତେବେ ସେଠାରୁ ସେ ଉଠିଯାଏ ।

''ମନର ଷଷ୍ଠ ଭୂମି କପାଳ । ମନ ସେଠାକୁ ଗଲେ ଅହର୍ନିଶ ଈଶ୍ୱରୀୟ ରୂପ ଦର୍ଶନ ହୁଏ । ସେତେବେଳେ ମଧ୍ୟ ଟିକିଏ 'ମୁଁ' ରହିଥାଏ । ସେ ବ୍ୟକ୍ତି ସେହି ନିରୂପମ ରୂପ ଦର୍ଶନ କରି ଉନ୍ମତ୍ତ ହୋଇ ସେହି ରୂପକୁ ସ୍ପର୍ଶ କରି ଆଲିଙ୍ଗନ

କରିବାକୁ ଯାଏ; କିନ୍ତୁ ପାରେ ନାହିଁ । ଯେପରି ଲଣ୍ଠନ ଭିତରେ ଆଲୁଅ ଅଛି, ମନେହୁଏ ହେଇଟି ଆଲୁଅ ଛୁଇଁଲି, କିନ୍ତୁ କାଚ ବ୍ୟବଧାନ ଅଛି ବୋଲି ଛୁଇଁ ହୁଏ ନାହିଁ । ''ଶିରୋଦେଶରେ ସପ୍ତମ ଭୂମି । ସେଠାକୁ ମନ ଗଲେ ସମାଧି ହୁଏ ଓ ବ୍ରହ୍ମଜ୍ଞାନୀ ବ୍ରହ୍ମଙ୍କୁ ପ୍ରତ୍ୟକ୍ଷ ଦର୍ଶନ କରେ । କିନ୍ତୁ ସେହି ଅବସ୍ଥାରେ ଶରୀର ଅଧିକ ଦିନ ରହେ ନାହିଁ । ସର୍ବଦା ବେହୋସ୍; କିଛି ଖାଇପାରେ ନାହିଁ, ପାଟିରେ ଦୁଧ ଦେଲେ ବୋହିପଡ଼େ । ଏହି ସପ୍ତମ ଭୂମିରେ ଏକୋଇଶ ଦିନରେ ମୃତ୍ୟୁ ହୁଏ । ବ୍ରହ୍ମଜ୍ଞାନୀର ଏହି ଅବସ୍ଥା । ତୁମମାନଙ୍କର ଭକ୍ତିପଥ । ଭକ୍ତିପଥ ଖୁବ୍ ଭଲ ଆଉ ସହଜ ।

**ସମାଧି ଓ କର୍ମତ୍ୟାଗ**

''ମୋତେ ଜଣେ କହିଥିଲା, 'ମହାଶୟ ! ମୋତେ ସମାଧିଟା ଶିଖାଇ ଦେଇ ପାରିବେ ? (ସମସ୍ତଙ୍କର ହାସ୍ୟ)

''ସମାଧି ହେଲେ ସମସ୍ତ କର୍ମ ତ୍ୟାଗ ହୋଇଯାଏ । ପୂଜା-ଜପାଦି କର୍ମ, ବିଷୟକର୍ମ ସବୁ ତ୍ୟାଗ ହୁଏ । ପ୍ରଥମେ କର୍ମର ଭାରୀ ହଟ୍ଟଗୋଳ ଥାଏ । ଯେତେ ଈଶ୍ୱରଙ୍କ ଆଡ଼କୁ ଆଗେଇବ, କାମର ଭିଡ଼ ସେତେ କମିଯିବ । ଏପରିକି ତାଙ୍କର ନାମ-ଗୁଣ-ଗାନ ମଧ୍ୟ ବନ୍ଦ ହୋଇଯାଏ । (ଶିବନାଥଙ୍କ ପ୍ରତି) ଯେପର୍ଯ୍ୟନ୍ତ ତୁମେ ସଭାକୁ ଆସିନାହଁ, ସେପର୍ଯ୍ୟନ୍ତ ତୁମର ନାମ, ଗୁଣର କଥା ବହୁତ ହେଉଛି । ଯେତେବେଳେ ତୁମେ ଆସି ପହଞ୍ଚିଲ, ସଙ୍ଗେ ସଙ୍ଗେ ସେସବୁ କଥା ବନ୍ଦ ହୋଇଗଲା । ସେତେବେଳେ ତୁମର ଦର୍ଶନରେ ହିଁ ଆନନ୍ଦ । ସେତେବେଳେ ଲୋକେ କହନ୍ତି, 'ହେଇ ଯେ ଶିବନାଥବାବୁ ଆସିଛନ୍ତି !' ତୁମ ବିଷୟରେ ଅନ୍ୟ ସବୁ କଥା ବନ୍ଦ ହୋଇଯାଏ ।

''ମୋର ଏହି ଅବସ୍ଥା ପରେ ଗଙ୍ଗାଜଳରେ ତର୍ପଣ କରିବାକୁ ଯାଇ ଦେଖେ ଯେ, ହାତର ଆଙ୍ଗୁଠି-ଫାଙ୍କବାଟେ ପାଣି ଗଡ଼ିଯାଉଛି । ସେତେବେଳେ ହଳଧାରୀଙ୍କୁ କାନ୍ଦି କାନ୍ଦି ପଚାରିଲି, 'ଭାଇ, ମୋର ଏ କଅଣ ହେଲା ?' ହଳଧାରୀ କହିଲା—ଏହାକୁ 'ଗଳିତ ହସ୍ତ' କୁହାଯାଏ । ଈଶ୍ୱର-ଦର୍ଶନ ପରେ ତର୍ପଣାଦି କର୍ମ ରହେ ନାହିଁ ।

''ସଂକୀର୍ତ୍ତନରେ ପ୍ରଥମେ କହନ୍ତି, 'ନିତାଇ ଆମାର ମାତା (ମତ୍ତ) ହାତୀ'—'ନିତାଇ ଆମାର ମାତା ହାତୀ' । ଭାବ ଗାଢ଼ ହେଲେ କେବଳ କହନ୍ତି, 'ହାତୀ ! ତା'ପରେ କେବଳ 'ହାତୀ'—ଏହି କଥାଟି ମୁଖରେ ରହେ । ଶେଷରେ 'ହା' କହୁ କହୁ ଭାବ-ସମାଧି ହୁଏ । ସେତେବେଳେ ଯିଏ ଏତେ ସମୟ ଧରି କୀର୍ତ୍ତନ କରୁଥିଲା, ସେ ଚୁପ୍ ହୋଇଯାଏ ।

''ଯେପରି ବ୍ରହ୍ମଣ-ଭୋଜନରେ ପ୍ରଥମେ ଖୁବ୍ ପାଟିତୁଣ୍ଡ । ଯେତେବେଳେ ସମସ୍ତେ ପତ୍ର ପାଖରେ ବସିଲେ, ସେତେବେଳେ ଗୋଳମାଳ ବହୁ ପରିମାଣରେ

କମିଗଲା—କେବଳ 'ଲୁଚି ଆଣ' 'ଲୁଚି ଆଣ' ଶବ୍ଦ ହେଉଥାଏ । ତାହାପରେ ଯେତେବେଳେ ଲୁଚି ତରକାରୀ ଖାଇବାକୁ ଆରମ୍ଭ କଲେ, ସେତେବେଳେ ବାରଅଣା ଶବ୍ଦ କମିଯାଇଛି । ଯେତେବେଳେ ଦହି ଆସିଲା, ସେତେବେଳେ କେବଳ ସୁପ୍‌ସାପ୍ (ସମସ୍ତଙ୍କର ହାସ୍ୟ)ଶବ୍ଦ ନାହିଁ କହିଲେ ବି ହେବ । ଖାଇବା ପରେ ନିଦ୍ରା । ସେତେବେଳେ ସବୁ ଚୁପ୍ ।

''ତେଣୁ କହୁଛି, ପ୍ରଥମେ ପ୍ରଥମେ କର୍ମର ଭାରୀ ହଟ୍ଟଗୋଳ ଥାଏ । **ଈଶ୍ୱରଙ୍କ ପଥରେ ଯେତେ ଆଗେଇବ ସେତେ କର୍ମ କମିଯିବ ।** ଶେଷରେ କର୍ମତ୍ୟାଗ ଆଉ ସମାଧି ।

''ଗୃହସ୍ଥ ଘରର ବୋହୂ ଅନ୍ତଃସତ୍ତ୍ୱା ହେଲେ ଶାଶୁ କର୍ମ କମେଇ ଦିଏ; ଦଶ ମାସରେ କର୍ମ ପ୍ରାୟ କରିବାକୁ ହୁଏ ନାହିଁ । ପିଲା ହେଲେ ଏକାବେଳକେ କର୍ମତ୍ୟାଗ । ମା ପିଲାଟିକୁ ନେଇ କେବଳ ହଲାହଲି କରେ । ଘରକରଣା କାମ—ଶାଶୁ, ନଣନ୍ଦ, ଯାଆ, —ଏମାନେ ସବୁ କରନ୍ତି ।

**ସମାଧିପରେ ଅବତାରାଦିଙ୍କର ଶରୀର—ଲୋକଶିକ୍ଷା ପାଇଁ**

ସମାଧିସ୍ଥ ହେବା ପରେ ଦେହ ପ୍ରାୟ ରହେ ନାହିଁ । କାହାରି କାହାରି ଲୋକଶିକ୍ଷା ପାଇଁ ଦେହ ରହେ—ଯେପରି ନାରଦାଦିଙ୍କର, ଆଉ ଚୈତନ୍ୟଦେବଙ୍କ ପରି ଅବତାରମାନଙ୍କର । କୂଅ ଖୋଳା ହୋଇଗଲେ କେହି କେହି ଟୋକେଇ କୋଡ଼ି ଆଉ ରଖନ୍ତି ନାହିଁ । କେହି କେହି ରଖି ଦିଅନ୍ତି—ଭାବନ୍ତି ଯଦି ସାହିରେ କାହାର କେବେ ଦରକାର ହୁଏ । ଏପରି ମହାପୁରୁଷ ଜୀବର ଦୁଃଖରେ କାତର । ଏମାନେ ସ୍ୱାର୍ଥପର ନୁହଁନ୍ତି ଯେ ନିଜର ଜ୍ଞାନ ହେଲେ ହେଲା । ସ୍ୱାର୍ଥପର ଲୋକର କଥା ତ ଜାଣ । ଏଠାରେ ମୂତ ବୋଲି କହିଲେ ମୂତିବେ ନାହିଁ—କାଳେ ତୁମର ଉପକାର ହେବ । (ସମସ୍ତଙ୍କର ହାସ୍ୟ) ପଇସାକର ସନ୍ଦେଶ ଦୋକାନରୁ ଆଣିବାକୁ ଦେଲେ ଚୁଚୁମି ଚୁଚୁମି ଆଣିଦିଏ । (ସମସ୍ତଙ୍କର ହାସ୍ୟ)

''କିନ୍ତୁ ଶକ୍ତି ବିଶେଷ । ସାମାନ୍ୟ ଆଧାର ଲୋକଶିକ୍ଷା ଦେବାକୁ ଭୟ କରେ । ହାଲୁକା କାଠ ନିଜେ କୌଣସି ପ୍ରକାରେ ଭାସିଯାଏ, ମାତ୍ର ଗୋଟିଏ ପକ୍ଷୀ ଆସି ବସିଲେ ବୁଡ଼ିଯାଏ । କିନ୍ତୁ ନାରଦାଦି ବାହାଦୂର କାଠ । ଏ କାଠ ନିଜେ ବି ଭାସିଯାଏ, ଆହୁରି ମଧ୍ୟ ଉପରେ କେତେ ମନୁଷ୍ୟ, ହାତୀ, ଗୋରୁ ନେଇଯାଇପାରେ ।''

## (୭)

ଅଦୃଷ୍ଟପୂର୍ବଂ ହୃଷିତୋଽସ୍ମି ଦୃଷ୍ଟ୍ୱା, ଭୟେନ ଚ ପ୍ରବ୍ୟଥିତଂ ମନୋ ମେ ।
ତଦେବ ମେ ଦର୍ଶୟ ଦେବରୂପଂପ୍ରସୀଦ ଦେବେଶ ଜଗନ୍ନିବାସ ॥
—ଗୀତା, ୧୧/୪୫

## ବ୍ରାହ୍ମସମାଜରେ ପ୍ରାର୍ଥନା-ପଦ୍ଧତି ଓ ଈଶ୍ୱରଙ୍କର ଐଶ୍ୱର୍ଯ୍ୟ ବର୍ଣ୍ଣନା

### ପୂର୍ବକଥା — ଦକ୍ଷିଣେଶ୍ୱରରେ ରାଧାକାନ୍ତଙ୍କ ଘରୁ ଗହଣା ଚୋରୀ — ୧୮୬୯

ଶ୍ରୀରାମକୃଷ୍ଣ (ଶିବନାଥାଦିଙ୍କ ପ୍ରତି) — ହଇହେ, ତୁମେ ଈଶ୍ୱରଙ୍କର ଐଶ୍ୱର୍ଯ୍ୟ ଏତେ ବର୍ଣ୍ଣନା କର କାହିଁକି ? ମୁଁ କେଶବ ସେନ୍‌ଙ୍କୁ ଏହି କଥା କହିଥିଲି । ଦିନେ ସେମାନେ ସବୁ ସେଠାକୁ (କାଳୀମନ୍ଦିରକୁ) ଯାଇଥିଲେ । ମୁଁ କହିଲି — ତୁମେମାନେ କିପରି ଲେକ୍‌ଚର ଦିଅ ମୁଁ ଶୁଣିବି । ତେଣୁ ଗଙ୍ଗାଘାଟରେ ଚଉତରା ଉପରେ ସଭା ହେଲା । ଆଉ କେଶବ ବକ୍ତୃତା ଦେବାକୁ ଲାଗିଲା । ମୋର ଭାବ ହୋଇଯାଇଥିଲା । ପରେ କେଶବକୁ ମୁଁ କହିଲି, ତୁମେ ଏଗୁଡ଼ାକ ଏତେ କହ କାହିଁକି ? — 'ହେ ଈଶ୍ୱର, ତୁମେ କି ସୁନ୍ଦର ଫୁଲ କରିଛ, ଆକାଶ କରିଛ, ତୁମେ ତାରା କରିଛ, ତୁମେ ସମୁଦ୍ର କରିଛ' — ଏଇସବୁ ? ଯେଉଁମାନେ ନିଜେ ଐଶ୍ୱର୍ଯ୍ୟ ଭଲ ପାଆନ୍ତି, ସେମାନେ ଈଶ୍ୱରଙ୍କର ଐଶ୍ୱର୍ଯ୍ୟ ବର୍ଣ୍ଣନା କରିବାକୁ ଭଲ ପାଆନ୍ତି । ଯେତେବେଳେ ରାଧାକାନ୍ତଙ୍କର ଗହଣା ଚୋରିହେଲା, ସେଜୋବାବୁ (ମଥୁରବାବୁ) ରାଧାକାନ୍ତଙ୍କ ମନ୍ଦିରକୁ ଯାଇ ଦିଅଁକୁ କହିବାକୁ ଲାଗିଲା — 'ଛି ଠାକୁରେ ! ତୁମେ ତୁମର ଗହଣା ରକ୍ଷା କରିପାରିଲ ନାହିଁ ।' ମୁଁ ସେଜୋବାବୁଙ୍କୁ କହିଲି, 'ଏ ତୁମର କି ବୁଦ୍ଧି ! ସ୍ୱୟଂ ଲକ୍ଷ୍ମୀ ଯାହାଙ୍କର ଦାସୀ, ପଦସେବା କରନ୍ତି, ତାଙ୍କର କଅଣ ଐଶ୍ୱର୍ଯ୍ୟର ଅଭାବ ! ଏ ଗହଣା ତୁମ ପାଇଁ ଭାରୀ ବଡ଼; କିନ୍ତୁ ଈଶ୍ୱରଙ୍କର ପକ୍ଷରେ କେତେଗୁଡ଼ିଏ ମାଟିର ଟେଲା । ଛି ! ଏପରି ହୀନ ବୁଦ୍ଧିର କଥା କହିବ ନାହିଁ । ତୁମେ ତାଙ୍କୁ କି ଐଶ୍ୱର୍ଯ୍ୟ ଦେଇପାରିବ ?' ତେଣୁ କହେ — ଯାହାଙ୍କୁ ନେଇ ଆନନ୍ଦ ହୁଏ, ତାଙ୍କୁ ହିଁ କେବଳ ଲୋକେ ଚାହାଁନ୍ତି, ତାଙ୍କର ଘର କେଉଁଠି, କେତେ ଖଣ୍ଡ ଘର, କେତେଟା ବଗିଚା, କେତେ ଧନ ଜନ ଦାସ ଦାସୀ, ଏ ଖବରରେ କଅଣ ଦରକାର ? ନରେନ୍ଦ୍ରକୁ ଯେତେବେଳେ ଦେଖେ ସେତେବେଳେ ସବୁ ଭୁଲିଯାଏ । ତାହାର ଘର କେଉଁଠି, ତାହାର ବାପା କ'ଣ କରନ୍ତି, ତାହାର କେତୋଟି ଭାଇ, ଏସବୁ କଥା ଭୁଲରେ ବି ଦିନେ ପଚାରି ନାହିଁ । ଈଶ୍ୱରଙ୍କର ମାଧୁର୍ଯ୍ୟ-ରସରେ ବୁଡ଼ି ଯାଅ । ତାଙ୍କର ଅନନ୍ତ ସୃଷ୍ଟି, ଅନନ୍ତ ଐଶ୍ୱର୍ଯ୍ୟ । ଏତେ ଖବର ଆମମାନଙ୍କର କଅଣ ଦରକାର !

ପୁଣି ସେହି ଗନ୍ଧର୍ବବିନିନ୍ଦିତ କଣ୍ଠରେ ଠାକୁର ମଧୁର ସଙ୍ଗୀତ ଗାଇଲେ —

''ଡୁବ୍ ଡୁବ୍ ଡୁବ୍ ରୂପସାଗରେ ଆମାର ମନ
ତଲାତଲ ପାତାଲ ଖୁଁଜଲେ ପାବିରେ ପ୍ରେମ-ରତ୍ନଧନ ।...

''ତେବେ ଦର୍ଶନ ପରେ ଭକ୍ତର ଇଚ୍ଛା ହୁଏ, କିପରି ତାଙ୍କର ଲୀଳା ଦେଖିବ । ରାମଚନ୍ଦ୍ର ରାବଣବଧ ପରେ ରାକ୍ଷସପୁରୀରେ ପ୍ରବେଶ କଲେ, ବୁଢ଼ୀ ନିକଷା ଦୌଡ଼ି ପଳାଇଗଲା । ଲକ୍ଷ୍ମଣ କହିଲେ — ରାମ ! ଏ କଅଣ କହନ୍ତୁ

ଦେଖ୍, ଏ ନିକିଷା ଏତେ ବୁଢ଼ୀ, ଏତେ ପୁତ୍ରଶୋକ ପାଇଛି — ତାହାର ପୁଣି ଏତେ ପ୍ରାଣଭୟ ! ପଳାଉଛି ! ରାମଚନ୍ଦ୍ର ନିକିଷାକୁ ଅଭୟ ପ୍ରଦାନ କରି ସମ୍ମୁଖକୁ ଆଣି ପଚାରିବାରୁ ନିକିଷା କହିଲା, 'ରାମ ଏତେ ଦିନ ବଞ୍ଚିଛି ବୋଲି ତୁମର ଏତେ ଲୀଳା ଦେଖିଲି; ତେଣୁ ଆଉ ବଞ୍ଚିବାକୁ ଇଚ୍ଛା ଅଛି । ତୁମର ଆହୁରି କେତେ ଲୀଳା ଦେଖିବି ।' (ସମସ୍ତଙ୍କର ହାସ୍ୟ)

(ଶିବନାଥଙ୍କ ପ୍ରତି) ''ତୁମକୁ ଦେଖିବାକୁ ଇଚ୍ଛା ହୁଏ । ଶୁଦ୍ଧାତ୍ମାମାନଙ୍କୁ ନ ଦେଖିଲେ କଅଣ ନେଇ ରହିବି ? ଶୁଦ୍ଧାତ୍ମାମାନଙ୍କୁ ପୂର୍ବଜନ୍ମର ବନ୍ଧୁ ବୋଲି ବୋଧହୁଏ ।

**ଜନ୍ମାନ୍ତର — 'ବହୂନି ମେ ବ୍ୟତିତାନି ଜନ୍ମାନି ତବ ଚାର୍ଜୁନ'**

ଜଣେ ବ୍ରାହ୍ମଭକ୍ତ ପଚାରିଲେ — ଆପଣ ଜନ୍ମାନ୍ତର ମାନନ୍ତି ?

ଶ୍ରୀରାମକୃଷ୍ଣ — ହଁ, ମୁଁ ଶୁଣିଛି ଜନ୍ମାନ୍ତର ଅଛି । ଈଶ୍ୱରଙ୍କର କାମ ଆମେମାନେ କ୍ଷୁଦ୍ର ବୁଦ୍ଧିରେ କଅଣ ବୁଝିବା ? ଅନେକ କହି ଯାଇଛନ୍ତି, ତେଣୁ ଅବିଶ୍ୱାସ କରିପାରେ ନାହିଁ । ଭୀଷ୍ମଦେବ ଦେହତ୍ୟାଗ କରିବେ, ଶରଶଯ୍ୟାରେ ଶୋଇଛନ୍ତି; ପାଣ୍ଡବମାନେ ଶ୍ରୀକୃଷ୍ଣଙ୍କ ସହିତ ଠିଆ ହୋଇଛନ୍ତି । ସେମାନେ ଦେଖିଲେ ଯେ, ଭୀଷ୍ମଦେବଙ୍କ ଆଖିରେ ଲୁହ । ଅର୍ଜୁନ ଶ୍ରୀକୃଷ୍ଣଙ୍କୁ କହିଲେ, 'ଭାଇ, କି ଆଶ୍ଚର୍ଯ୍ୟ ! ପିତାମହ, ଯେ ସ୍ୱୟଂ ଭୀଷ୍ମଦେବ, ସତ୍ୟବାଦୀ, ଜିତେନ୍ଦ୍ରିୟ, ଜ୍ଞାନୀ, ଅଷ୍ଟବସୁଙ୍କ ମଧ୍ୟରେ ଗୋଟିଏ ବସୁ, ସେ ମଧ୍ୟ ଦେହତ୍ୟାଗ ସମୟରେ ମାୟାରେ କାନ୍ଦୁଛନ୍ତି !' ଶ୍ରୀକୃଷ୍ଣ ଭୀଷ୍ମଦେବଙ୍କୁ ଏକଥା କହିବାରୁ ସେ କହିଲେ, 'କୃଷ୍ଣ ! ତୁମେ ବେଶ୍ ଜାଣ, ମୁଁ ସେଥିପାଇଁ କାନ୍ଦୁନାହିଁ । ଯେତେବେଳେ ଭାବୁଛି, ଯେଉଁ ପାଣ୍ଡବମାନଙ୍କର ସ୍ୱୟଂ ଭଗବାନ ନିଜେ ସାରଥୀ, ସେମାନଙ୍କର ମଧ୍ୟ ଦୁଃଖ-ବିପଦର ଶେଷ ନାହିଁ — ସେତେବେଳେ ଏହି କଥା ଭାବି କାନ୍ଦୁଛି ଯେ, ଭଗବାନଙ୍କର କାର୍ଯ୍ୟ କିଛି ହେଲେ ବୁଝିପାରିଲି ନାହିଁ ।'

**ଭକ୍ତଙ୍କ ସଙ୍ଗରେ କୀର୍ତ୍ତନାନନ୍ଦ**

ସମାଜ-ଗୃହରେ ବର୍ତ୍ତମାନ ସନ୍ଧ୍ୟାକାଳୀନ ଉପାସନା ଆରମ୍ଭ ହେଲା । ରାତ୍ରିପ୍ରାୟ ସାଢ଼େ ଆଠଟା ହୋଇଛି । ସନ୍ଧ୍ୟାର ଚାରି ପାଞ୍ଚ ଦଣ୍ଡ ପରେ ରାତ୍ରି ଜ୍ୟୋତ୍ସ୍ନାମୟୀ ହେଲା । ଉଦ୍ୟାନର ବୃକ୍ଷରାଜି ଲତାପଲ୍ଲବ ଶରଚ୍ଚନ୍ଦ୍ରର ବିମଳ କିରଣରେ ଯେପରି ଭାସି ଉଠିଲା, ଏଣେ ସମାଜ-ଗୃହରେ ସଂକୀର୍ତ୍ତନ ଆରମ୍ଭ ହୋଇଛି । ଭଗବାନ ଶ୍ରୀରାମକୃଷ୍ଣ ହରିପ୍ରେମରେ ମତୁଆଲା ହୋଇ ନାଚୁଛନ୍ତି, ଆଉ ବ୍ରାହ୍ମଭକ୍ତମାନେ ଖୋଳ କରତାଳ ଧରି ତାଙ୍କୁ ଘେରି ନାଚୁଛନ୍ତି । ସମସ୍ତେ ଭାବରେ ମତ୍ତ, ଯେପରି କି ଭଗବାନଙ୍କର ସାକ୍ଷାତ୍‌ଲାଭ କରିଛନ୍ତି । ହରିନାମରେ ଶବ୍ଦ ଉତ୍ତରୋତ୍ତର ବଢ଼ିବାକୁ ଲାଗିଲା । ଚାରିଆଡ଼େ ଗ୍ରାମବାସୀଗଣ ହରିନାମ

ଶୁଣିବାକୁ ପାଉଛନ୍ତି, ଆଉ ମନେ ମନେ ଉଦ୍ୟାନସ୍ୱାମୀ ଭକ୍ତ ବେଣୀମାଧବଙ୍କୁ କେତେ ଧନ୍ୟବାଦ ଦେଉଛନ୍ତି !

କୀର୍ତ୍ତାନାନ୍ତେ ଶ୍ରୀରାମକୃଷ୍ଣ ଭୂମିଷ୍ଠ ହୋଇ ଜଗନ୍ମାତାଙ୍କୁ ପ୍ରଣାମ କଲେ । ପ୍ରଣାମ କରୁ କରୁ କହୁଛନ୍ତି, ‘‘ଭାଗବତ-ଭକ୍ତ-ଭଗବାନ; ଜ୍ଞାନୀ ଚରଣରେ ପ୍ରଣାମ, ଭକ୍ତ ଚରଣରେ ପ୍ରଣାମ ! ସାକାରବାଦୀ ଭକ୍ତ ଚରଣରେ, ନିରାକାରବାଦୀ ଭକ୍ତ ଚରଣରେ ପ୍ରଣାମ; ଆଗର ବ୍ରହ୍ମଜ୍ଞାନୀମାନଙ୍କ ଚରଣରେ ପ୍ରଣାମ, ବ୍ରାହ୍ମସମାଜର ଇଦାନୀଂ ବ୍ରହ୍ମଜ୍ଞାନୀମାନଙ୍କ ଚରଣରେ ପ୍ରଣାମ ।’’

ବେଣୀମାଧବ ନାନାବିଧ ଉପାଦେୟ ଖାଦ୍ୟ ଆୟୋଜନ କରିଥିଲେ ଓ ସମବେତ ସମସ୍ତ ଭକ୍ତଙ୍କୁ ପରିତୋଷ କରି ଖୁଆଇଲେ । ଶ୍ରୀରାମକୃଷ୍ଣ ମଧ୍ୟ ଭକ୍ତମାନଙ୍କ ସଙ୍ଗରେ ବସି ଆନନ୍ଦ କରୁ କରୁ ପ୍ରସାଦ ଗ୍ରହଣ କଲେ ।

# ଦଶମ ପରିଚ୍ଛେଦ

## (୧)

## ସର୍କସ ରଙ୍ଗାଳୟରେ—ଗୃହସ୍ଥର ଓ ଅନ୍ୟାନ୍ୟ କର୍ମୀମାନଙ୍କର କଠିନ ସମସ୍ୟା ଓ ଶ୍ରୀରାମକୃଷ୍ଣ

ଶ୍ୟାମପୁକୁରରେ ବିଦ୍ୟାସାଗରଙ୍କ ସ୍କୁଲ ଦ୍ୱାରରେ ଶ୍ରୀରାମକୃଷ୍ଣ ଗାଡ଼ି କରି ଆସି ଉପସ୍ଥିତ । ସମୟ ୩ଟା ହେବ । ଗାଡ଼ିରେ ମାଷ୍ଟରଙ୍କୁ ଉଠାଇ ନେଲେ । ରାଖାଲ ଓ ଆଉ ଜଣେ ଦୁଇଜଣ ଭକ୍ତ ଗାଡ଼ିରେ ଅଛନ୍ତି । ଆଜି ବୁଧବାର, ୧୫ ନଭେମ୍ବର ୧୮୮୨, ୩୦ କାର୍ତ୍ତିକ ଶୁକ୍ଳା ପଞ୍ଚମୀ । ଗାଡ଼ି କ୍ରମେ ଚିତ୍‌ପୁର ରାସ୍ତାବାଟେ 'ଗଡ଼େର ମାଠ' ଆଡ଼କୁ ଯାଉଛି ।

ଶ୍ରୀରାମକୃଷ୍ଣ ଆନନ୍ଦମୟ—ମାତାଲଙ୍କ ପରି ଗାଡ଼ିର ଥରେ ଏପଟେ ତ ଥରେ ସେପଟେ ମୁହଁ ବଢ଼ାଇ ବାଳକ ପରି ଦେଖୁଛନ୍ତି । ଆଉ ପଥିକମାନଙ୍କ ସମ୍ବନ୍ଧରେ ଭକ୍ତଙ୍କୁ କହୁଛନ୍ତି । ମାଷ୍ଟରଙ୍କୁ କହୁଛନ୍ତି, ''ଦେଖ, ସବୁ ଲୋକ ଦେଖୁଛି ନିମ୍ନଦୃଷ୍ଟି । ପେଟ ପାଇଁ ସବୁ ଯାଉଛନ୍ତି । ଈଶ୍ୱରଙ୍କ ପ୍ରତି ଦୃଷ୍ଟି ନାହିଁ ।''

ଶ୍ରୀରାମକୃଷ୍ଣ ଆଜି 'ଗଡ଼େର ମାଠ'ରେ ଉଇଲ୍‌ସନଙ୍କର ସର୍କସ ଦେଖିବାକୁ ଯାଉଛନ୍ତି । ସେଠାରେ ପହଞ୍ଚି ଟିକଟ କିଣା ହେଲା । ଆଠ ଅଣାର ଅର୍ଥାତ୍ ଶେଷ ଶ୍ରେଣୀର ଟିକଟ । ଭକ୍ତମାନେ ଠାକୁରଙ୍କୁ ନେଇ ଉଚ୍ଚ ସ୍ଥାନରେ ଉଠି ଏକ ବେଞ୍ଚ ଉପରେ ବସିଲେ । ଠାକୁର ଆନନ୍ଦରେ କହୁଛନ୍ତି, ''ବାଃ, ଏଠାରୁ ବେଶ୍ ଦେଖାଯାଏ !''

ରଙ୍ଗସ୍ଥଳରେ ନାନା ପ୍ରକାର ଖେଳ ବହୁ ସମୟ ଧରି ଦେଖାହେଲା । ଗୋଲାକାର ରାସ୍ତାରେ ଘୋଡ଼ା ଦୌଡୁଛି । ଘୋଡ଼ା ପିଠିରେ ଗୋଟିଏ ଗୋଡ଼ରେ ବିବି ଠିଆ ହୋଇଛି । ପୁଣି ମଝିରେ ମଝିରେ ବଡ଼ ବଡ଼ ଲୁହାର ରିଙ୍ଗ୍ (ଚକ୍ର) ଅଛି । ରିଙ୍ଗ୍ ପାଖକୁ ଆସି ଘୋଡ଼ା ଯେତେବେଳେ ରିଙ୍ଗ୍ ତଳେ ଦୌଡୁଛି ବିବି ଘୋଡ଼ା ପିଠିରୁ ଡେଇଁ ରିଙ୍ଗ୍ ଭିତର ଦେଇ ପୁନରାୟ ଘୋଡ଼ା ପିଠିରେ ଏକ ପାଦରେ ଠିଆ ହେଉଛି । ଘୋଡ଼ା ବାରମ୍ବାର ସାଇଁ ସାଇଁ କରି ଏହି ଗୋଲାକାର ପଥରେ ଦୌଡ଼ିଲା, ବିବି ମଧ୍ୟ ପୁଣି ସେହିପରି ତା' ପିଠିରେ ଠିଆ ହେଲା ।

ସର୍କସ ଖେଳ ଶେଷ ହେଲା । ଠାକୁର ଭକ୍ତଙ୍କ ସହ ଓହ୍ଲାଇ ଆସି ପଡ଼ିଆରେ ଥିବା ଗାଡ଼ି ପାଖକୁ ଆସିଲେ । ଶୀତ ପଡ଼ିଛି । ଦେହରେ ସବୁଜ ଶାଲ ପକାଇ ପଡ଼ିଆରେ ଠିଆ ହୋଇ କଥା କହୁଛନ୍ତି, ପାଖରେ ଭକ୍ତମାନେ ଠିଆ ହୋଇଛନ୍ତି । ଜଣେ ଭକ୍ତର ହାତରେ ବଟୁଆଟି ଅଛି । ସେଥିରେ ମସଲା, ବିଶେଷତଃ କବାବଚିନି ଅଛି ।

### ଆଗେ ସାଧନ, ତା'ପରେ ସଂସାର—ଅଭ୍ୟାସଯୋଗ

ଶ୍ରୀରାମକୃଷ୍ଣ ମାଷ୍ଟରଙ୍କୁ କହୁଛନ୍ତି, ''ଦେଖିଲ ! ବିବି କିପରି ଗୋଟିଏ ଗୋଡ଼ରେ ଘୋଡ଼ା ଉପରେ ଠିଆ ହୋଇଛି, ଆଉ ଘୋଡ଼ା ସାଇଁ ସାଇଁ ଦୌଡୁଛି ! କେତେ କଷ୍ଟ ! ବହୁଦିନ ଧରି ଅଭ୍ୟାସ କରିଛି, ତେବେ ତ ହୋଇଛି । ଟିକିଏ ଅସାବଧାନ ହେଲେ ହାତ, ଗୋଡ଼ ଭାଙ୍ଗିଯିବ; ପୁଣି ମୃତ୍ୟୁ ମଧ୍ୟ ହୋଇପାରେ । ସଂସାର କରିବା ଏହିପରି କଠିନ । ଅନେକ ସାଧନଭଜନ କଲେ ଈଶ୍ୱରଙ୍କ କୃପାରୁ କେହି କେହି ପାରନ୍ତି । ଅଧିକାଂଶ ଲୋକ ପାରନ୍ତି ନାହିଁ । ସଂସାର କରିବାକୁ ଯାଇ ଆହୁରି ବଦ୍ଧ ହୋଇଯାଆନ୍ତି, ଆହୁରି ବୁଡ଼ିଯାଆନ୍ତି, ମୃତ୍ୟୁଯନ୍ତ୍ରଣା ହୁଏ । କେହି କେହି ଯେପରି ଜନକାଦି, ବହୁ ତପସ୍ୟାବଳରେ ସଂସାର କରିଥିଲେ । ତେଣୁ ସାଧନ-ଭଜନ ଖୁବ୍ ଦରକାର, ତାହା ନ ହେଲେ ସଂସାରରେ ଠିକ୍ ରହି ହୁଏ ନାହିଁ ।''

### ବଳରାମ-ମନ୍ଦିରରେ ଶ୍ରୀରାମକୃଷ୍ଣ

ଶ୍ରୀରାମକୃଷ୍ଣ ଗାଡ଼ିରେ ଉଠିଲେ । ଗାଡ଼ି ବାଗ୍‌ବଜାରର ବସୁପଡ଼ାରେ ବଳରାମଙ୍କ ଘରର ଦ୍ୱାରଦେଶରେ ଉପସ୍ଥିତ ହେଲା । ଠାକୁର ଭକ୍ତଙ୍କ ସହିତ ଦୋତାଲାର ବୈଠକଖାନାରେ ଯାଇ ବସିଲେ । ସନ୍ଧ୍ୟାବତୀ ଜଳା ହୋଇଛି । ଠାକୁର ସର୍କସ କଥା କହୁଛନ୍ତି । ବହୁଭକ୍ତ ସମବେତ ହୋଇଛନ୍ତି । ସେମାନଙ୍କ ସହିତ ଈଶ୍ୱରୀୟ କଥା କହୁଛନ୍ତି । ମୁଖରେ ଅନ୍ୟ କଥା କିଛି ନାହିଁ, କେବଳ ଈଶ୍ୱରଙ୍କ କଥା ।

### ଜାତିପ୍ରଥା—ଅସ୍ପୃଶ୍ୟତା ସମସ୍ୟାର ସମାଧାନ

ଜାତିଭେଦ ସମ୍ବନ୍ଧରେ କଥା ପଡ଼ିଲା । ଠାକୁର କହିଲେ, ''ଗୋଟିଏ ଉପାୟରେ ଜାତିଭେଦ ଉଠିଯାଇପାରେ । ତାହା ହେଲା ଭକ୍ତି । ଭକ୍ତର ଜାତି ନାହିଁ । ଭକ୍ତି ହେଲେ ଦେହ, ମନ, ପ୍ରାଣ ସବୁ ଶୁଦ୍ଧ ହୁଏ । ଗୌର ନିତାଇ ହରିନାମ ଦେବାକୁ ଲାଗିଲେ ଏବଂ ଆଚଣ୍ଡାଳକୁ କୋଳ କଲେ । ଭକ୍ତି ନ ଥିଲେ ବ୍ରାହ୍ମଣ ବ୍ରାହ୍ମଣ ନୁହେଁ । ଭକ୍ତି ଥିଲେ ଚଣ୍ଡାଳ ଚଣ୍ଡାଳ ନୁହେଁ । ଭକ୍ତି ଥିଲେ ଅସ୍ପୃଶ୍ୟ ମଧ୍ୟ ଶୁଦ୍ଧ ପବିତ୍ର ହୁଏ ।''

### ସଂସାରୀ—ବଦ୍ଧ ଜୀବ

ଶ୍ରୀରାମକୃଷ୍ଣ ସଂସାରୀ ବଦ୍ଧ ଜୀବର କଥା କହୁଛନ୍ତି—''ସେମାନେ ଯେପରି ଏଣ୍ଡିପୋକ, ମନେକଲେ କାଟି ବାହାରି ଆସିପାରନ୍ତି, କିନ୍ତୁ ବହୁ ଯତ୍ନରେ ଖୋସା ତିଆରି କରିଛନ୍ତି, ଛାଡ଼ି ଆସିପାରନ୍ତି ନାହିଁ, ସେଥିରେ ହିଁ ମୃତ୍ୟୁ ହୁଏ । ପୁଣି ଯେପରି ବଜା ଭିତରେ ମାଛ; ଯେଉଁ ବାଟ ଦେଇ ପଶିଛି, ସେହି ବାଟେ ବାହାରି ଆସିପାରେ; କିନ୍ତୁ ଜଳର ମଧୁର ଶବ୍ଦ ଆଉ ଅନ୍ୟ ମାଛଙ୍କ ସଙ୍ଗରେ ଖେଳ—

ସେଥିରେ ଭୁଲି ରହେ, ବାହାରି ଆସିବାକୁ ଚେଷ୍ଟା କରେ ନାହିଁ । ପିଲାପିଲିଙ୍କର ଦରୋଟି କଥାବାର୍ତ୍ତା ଯେପରି ଜଳ-କଲ୍ଲୋଳର ମଧୁର ଶବ୍ଦ । ମାଛ ଅର୍ଥାତ୍ ଜୀବ, ପରିବାରବର୍ଗ । ତେବେ ଗୋଟିଏ ଦୁଇଟା ଦୌଡ଼ି ପଳାନ୍ତି, ସେମାନଙ୍କୁ ମୁକ୍ତ ଜୀବ କୁହାଯାଏ ।''

ଠାକୁର ଗାଉଛନ୍ତି —

''ଏମନି ମହାମାୟାର ମାୟା ରେଖେଛେ କି କୁହକ କରେ ।
ବ୍ରହ୍ମା ବିଷ୍ଣୁ ଅଚୈତନ୍ୟ ଜୀବେ କି ଜାନିତେ ପାରେ ॥
ବିଲ୍ କରେ ଘୁର୍ଣିପାତେ ମୀନ ପ୍ରବେଶ କରେ ତାତେ ।
ଯାତାୟାତେର ପଥ ଆଛେ, ତବୁ ମୀନ ପାଲାତେ ନାରେ ॥''

ଠାକୁର ପୁଣି କହୁଛନ୍ତି, ''ଜୀବ ଯେପରି ଡାଲି, ଚକି ଭିତରେ ପଡ଼ିଛି, ପେଷି ହୋଇଯିବ । ତେବେ ଯେଉଁ କେତୋଟି ଡାଲି ଖୁଣ୍ଟି ପାଖରେ ଥାଏ, ସେଗୁଡ଼ିକ ପେଷି ହୋଇଯାଏ ନାହିଁ । ତେଣୁ ଖୁଣ୍ଟି ଅର୍ଥାତ୍ ଈଶ୍ୱରଙ୍କର ଶରଣାଗତ ହେବାକୁ ହୁଏ । ତାଙ୍କୁ ଡାକ, ତାଙ୍କର ନାମ ନିଅ, ତେବେ ମୁକ୍ତି । ତାହା ନ ହେଲେ କାଳରୂପ ଚକିରେ ପେଷି ହୋଇଯିବ ।''

ଠାକୁର ପୁଣି ଗାଉଛନ୍ତି —

''ପଡ଼ିୟେ ଭବସାଗରେ ଡୁବେ ମା ତନୁର ତରୀ ।
ମାୟା-ଝଡ଼ ମୋହତୁଫାନ କ୍ରମେ ବାଢ଼େ ଗୋ ଶଙ୍କରୀ ॥...''

**ସ୍ତ୍ରୀ ଓ ସନ୍ତାନ ପ୍ରତି କର୍ତ୍ତବ୍ୟ**

ବିଶ୍ୱାସ ବାବୁ ଅନେକ ସମୟ ବସିଥିଲେ, ବର୍ତ୍ତମାନ ଉଠିଗଲେ । ତାଙ୍କର ଅନେକ ଟଙ୍କା ଥିଲା; କିନ୍ତୁ ଚରିତ୍ର ମଳିନ ହେବାରୁ ସମସ୍ତ ଉଡ଼ିଯାଇଛି । ବର୍ତ୍ତମାନ ସ୍ତ୍ରୀ, କନ୍ୟା ପ୍ରଭୃତି କାହାରିକୁ ଦେଖନ୍ତି ନାହିଁ । ବଳରାମ ତାଙ୍କ କଥା ପକାଇବାରୁ ଠାକୁର କହିଲେ, ''ସେଇଟା ଲକ୍ଷ୍ମୀଛଡ଼ା ଦରିଦ୍ର । ଗୃହସ୍ଥର କର୍ତ୍ତବ୍ୟ ଅଛି, ଋଣ ଅଛି; ଦେବ-ଋଣ, ପିତୃ-ଋଣ, ଋଷି-ଋଣ, ଆଉ ପରିବାର ପ୍ରତି ଋଣ । ସତୀ ସ୍ତ୍ରୀ ହେଲେ ତାହାକୁ ପ୍ରତିପାଳନ, ସନ୍ତାନମାନଙ୍କୁ ପ୍ରତିପାଳନ, ଯେପର୍ଯ୍ୟନ୍ତ ସେମାନେ ଯୋଗ୍ୟ ନ ହୁଅନ୍ତି ।

''କେବଳ ସାଧୁ ସଞ୍ଚୟ କରନ୍ତି ନାହିଁ । 'ପଞ୍ଛି (ପକ୍ଷୀ) ଔର୍ ଦରବେଶ୍' ସଞ୍ଚୟ କରନ୍ତି ନାହିଁ; କିନ୍ତୁ ପକ୍ଷୀର ଛୁଆ ହେଲେ ସଞ୍ଚୟ କରେ । ଛୁଆ ପାଇଁ ମୁହଁରେ ଆହାର ନେଇ ଆସେ ।''

ବଳରାମ — ବର୍ତ୍ତମାନ ବିଶ୍ୱାସଙ୍କର ସାଧୁସଙ୍ଗ କରିବାକୁ ଇଚ୍ଛା ।

ଶ୍ରୀରାମକୃଷ୍ଣ (ସହାସ୍ୟ) — ସାଧୁର କମଣ୍ଡଳୁ ଚାରିଧାମ ବୁଲିଆସେ, କିନ୍ତୁ ଯେଉଁ ପିତାକୁ ସେହି ପିତା ରହିଯାଏ । ମଳୟ ପବନ ଯେଉଁ ଗଛରେ ଲାଗେ ସବୁ ଚନ୍ଦନ ହୋଇଯାଏ । କିନ୍ତୁ ଶିମିଳୀ, ଅଶ୍ୱତ୍ଥ, ଆମ୍ବଡ଼ା, ଏଗୁଡ଼ିକ ଚନ୍ଦନ

ହୁଏ ନାହିଁ । କେହି କେହି ସାଧୁସଙ୍ଗ କରନ୍ତି, ଗଞ୍ଜେଇ ଖାଇବା ପାଇଁ (ହାସ୍ୟ) । ସାଧୁମାନେ ତ ଗଞ୍ଜେଇ ଖାଆନ୍ତି, ତେଣୁ ସେମାନଙ୍କ ପାଖକୁ ଆସି ଗଞ୍ଜେଇ ସଜେଇ ଦିଅନ୍ତି, ଆଉ ପ୍ରସାଦ ପାଆନ୍ତି । (ସମସ୍ତଙ୍କର ହାସ୍ୟ)

## (୨)

## ଷଡ଼ଭୁଜ ଦର୍ଶନ ଓ ଶ୍ରୀରାଜମୋହନଙ୍କର ଘରକୁ ଶୁଭାଗମନ— ନରେନ୍ଦ୍ର

ଠାକୁର ଶ୍ରୀରାମକୃଷ୍ଣ 'ଗଡ଼େର ମାଠ'ରେ ଯେଉଁଦିନ ସର୍କସ ଦର୍ଶନ କଲେ; ତା'ପର ଦିନ ପୁଣି କଲିକତାକୁ ଶୁଭାଗମନ କରିଛନ୍ତି । ଗୁରୁବାର, ୧୬ ନଭେମ୍ବର ୧୮୮୨; କାର୍ତ୍ତିକ ଶୁକ୍ଳା ଷଷ୍ଠୀ । ଆସି ପ୍ରଥମେ ଗରାଣହାଟରେ (ଅଧୁନା ନିମତଲା ଷ୍ଟ୍ରୀଟ୍) ଷଡ଼ଭୁଜ ମହାପ୍ରଭୁଙ୍କୁ ଦର୍ଶନ କଲେ । ବୈଷ୍ଣବ ସାଧୁମାନଙ୍କର ଆଖଡ଼ା, ମହନ୍ତ ଶ୍ରୀଗିରିଧାରୀ ଦାସ । ଷଡ଼ଭୁଜ ମହାପ୍ରଭୁଙ୍କର ସେବା ଅନେକ ଦିନରୁ ଚାଲିଆସିଛି, ଠାକୁର ଉପରଓଳି ଦର୍ଶନ କଲେ ।

ସନ୍ଧ୍ୟାର କିଛିକ୍ଷଣ ପରେ ଠାକୁର ସିମୁଳିଆ ନିବାସୀ ଶ୍ରୀଯୁକ୍ତ ରାଜମୋହନଙ୍କ ଘରେ ଗାଡ଼ି କରି ଆସି ଉପସ୍ଥିତ । ଠାକୁରେ ଶୁଣିଛନ୍ତି ଯେ, ଏଠାରେ ନରେନ୍ଦ୍ର ପ୍ରଭୃତି ଯୁବକମାନେ ମିଶି ବ୍ରାହ୍ମସମାଜର ଉପାସନା କରନ୍ତି । ତେଣୁ ଦେଖିବାକୁ ଆସିଛନ୍ତି । ମାଷ୍ଟର ଏବଂ ଆଉ ଜଣେ ଦୁଇ ଜଣ ଭକ୍ତ ମଧ୍ୟ ସଙ୍ଗରେ ଅଛନ୍ତି । ଶ୍ରୀଯୁକ୍ତ ରାଜମୋହନ ପୁରାତନ ବ୍ରାହ୍ମଭକ୍ତ ।

### ବ୍ରାହ୍ମଭକ୍ତ ଓ ସର୍ବତ୍ୟାଗ ବା ସନ୍ନ୍ୟାସ

ଠାକୁରେ ନରେନ୍ଦ୍ରଙ୍କୁ ଦେଖି ଆନନ୍ଦିତ ହେଲେ । ଆଉ କହିଲେ, ''ତୁମମାନଙ୍କର ଉପାସନା ଦେଖିବି ।'' ନରେନ୍ଦ୍ର ଗୀତ ଗାଇଲେ । ଶ୍ରୀଯୁକ୍ତ ପ୍ରିୟ ପ୍ରଭୃତି ଯୁବକମାନେ କେହି କେହି ଉପସ୍ଥିତ ଥିଲେ ।

ଏଥର ଉପାସନା ହେଉଅଛି । ପିଲାମାନଙ୍କ ମଧ୍ୟରୁ ଜଣେ ଉପାସନା କରୁଛନ୍ତି । ସେ ପ୍ରାର୍ଥନା କରୁଛନ୍ତି—ପ୍ରଭୁ, ଯେପରି ସବୁ ଛାଡ଼ି ତୁମଠାରେ ମଗ୍ନ ହୁଏ ! ଠାକୁର ଶ୍ରୀରାମକୃଷ୍ଣଙ୍କୁ ଦେଖି ବୋଧହୁଏ ତାଙ୍କର ଉଦ୍ଦୀପନ ହୋଇଛି, ତେଣୁ ସର୍ବତ୍ୟାଗର କଥା କହୁଛନ୍ତି । ଠାକୁରଙ୍କର ଖୁବ୍ ପାଖରେ ମାଷ୍ଟର ବସିଥିଲେ; କେବଳ ସେ ଶୁଣିବାକୁ ପାଇଲେ—ଠାକୁରେ ଅତି ମୃଦୁସ୍ୱରରେ କହୁଛନ୍ତି, ''ତା'ଆଉ ହେଉଛି !''

ଶ୍ରୀଯୁକ୍ତ ରାଜମୋହନ ଠାକୁରଙ୍କୁ ଜଳଖିଆ ଦେବା ପାଇଁ ଘର ଭିତରକୁ ନେଇଯାଉଛନ୍ତି ।

## (୩)

## ଶ୍ରୀଯୁକ୍ତ ମନମୋହନ ଓ ଶ୍ରୀଯୁକ୍ତ ସୁରେନ୍ଦ୍ରଙ୍କ ଘରେ ଶ୍ରୀରାମକୃଷ୍ଣ

ତା'ପର ରବିବାର ଦିନ ଓ ଜଗଦ୍ଧାତ୍ରୀ ପୂଜା ପାଇଁ ସୁରେନ୍ଦ୍ର ନିମନ୍ତ୍ରଣ କରିଛନ୍ତି । ସେ କେବଳ ଘର ବାହାର ହେଉଛନ୍ତି—କେତେବେଳେ ଠାକୁର ଆସିବେ । ମାଷ୍ଟରଙ୍କୁ ଦେଖି ସେ କହୁଛନ୍ତି, ''ତୁମେ ଆସିଛ, ଆଉ ସେ କେଉଁଠି ?'' ଏପରି ସମୟରେ ଠାକୁରଙ୍କ ଗାଡ଼ି ଆସି ପହଞ୍ଚିଲା । ପାଖରେ ଶ୍ରୀଯୁକ୍ତ ମନମୋହନଙ୍କର ଘର, ଠାକୁର ପ୍ରଥମେ ସେଠାରେ ଓହ୍ଲାଇଲେ; ସେଠାରେ ଟିକିଏ ବିଶ୍ରାମ କରି ସୁରେନ୍ଦ୍ରଙ୍କ ଘରକୁ ଆସିବେ ।

ମନମୋହନଙ୍କର ବୈଠକଖାନାରେ ଠାକୁର କହୁଛନ୍ତି, ''ଯେ ଅକିଞ୍ଚନ, ଯେ ଦୀନ, ତାହାର ଭକ୍ତି ଈଶ୍ୱରଙ୍କର ଅତି ପ୍ରିୟ ଜିନିଷ—ପିଡ଼ିଆ ମିଶା ଦାନା ଯେପରି ଗୋରୁର ପ୍ରିୟ । ଦୁର୍ଯ୍ୟୋଧନ ଏତେ ଟଙ୍କା ଏତେ ଐଶ୍ୱର୍ଯ୍ୟ ଦେଖାଇଲା, କିନ୍ତୁ ତା'ଘରକୁ ପ୍ରଭୁ ଗଲେ ନାହିଁ; ବିଦୁରଙ୍କ ଘରକୁ ଗଲେ । ସେ ଭକ୍ତବତ୍ସଳ; ବାଛୁରୀ ପଛରେ ଯେପରି ଗାଈ ଧାଏଁ, ସେହିପରି ସେ ଭକ୍ତର ପଛେ ପଛେ ଯାଆନ୍ତି ।'' ଠାକୁର ଗୀତ ଗାଉଛନ୍ତି—

''ସେ ଭାବ ଲାଗି ପରମ ଯୋଗୀ, ଯୋଗ କରେ ଯୁଗଯୁଗାନ୍ତରେ ।
ହେଲେ ଭାବର ଉଦୟ ସେ ଯେପରି ଲୁହାକୁ ଚୁମ୍ବକ ଧରେ ।''

''ଚୈତନ୍ୟଦେବଙ୍କର କୃଷ୍ଣ-ନାମରେ ଅଶ୍ରୁ ପଡୁଥିଲା । ଈଶ୍ୱର ହିଁ ବସ୍ତୁ; ଆଉ ସବୁ ଅବସ୍ତୁ । ମନୁଷ୍ୟ ମନେ କଲେ ଈଶ୍ୱରଲାଭ କରିପାରେ, କିନ୍ତୁ କାମିନୀ-କାଞ୍ଚନ ଭୋଗ କରିବାରେ ହିଁ ମତ୍ତ । ମୁଣ୍ଡରେ ମଣି ରହିଛି, ତଥାପି ସାପ ବେଙ୍ଗ ଖାଇ ମରେ ।

''**ଭକ୍ତି ହିଁ ସାର** ! ବିଚାର କରି ଈଶ୍ୱରଙ୍କୁ କିଏ ଜାଣିପାରିବ ! ମୋର ଭକ୍ତି ଦରକାର । ତାଙ୍କର ଅନନ୍ତ ଐଶ୍ୱର୍ଯ୍ୟ—ଏତେ କଥା ଜାଣିବା ମୋର କ'ଣ ଦରକାର ? ଗୋଟିଏ ବୋତଲ ମଦରେ ଯଦି ମାତାଲ ହୁଏ, ଶୁଣ୍ଡୀ ଦୋକାନରେ କେତେ ମହଣ ମଦ ଅଛି ସେ ଖବରରେ ମୋର କ'ଣ ଦରକାର ! ଢାଳେ ପାଣିରେ ମୋର ଶୋଷ ମରିପାରେ, ପୃଥିବୀରେ କେତେ ପାଣି ଅଛି ସେ ଖବରରେ ମୋର ପ୍ରୟୋଜନ ନାହିଁ ।''

### ସୁରେନ୍ଦ୍ରଙ୍କର ବଡ଼ ଭାଇ ଓ ବିଚାରପତି ପଦ—ଜାତିଭେଦ ସମସ୍ୟା

ଶ୍ରୀରାମକୃଷ୍ଣ ଏଥର ସୁରେନ୍ଦ୍ରଙ୍କ ଘରକୁ ଆସିଛନ୍ତି । ଆସି ଦୋତାଲାର ବୈଠକଖାନାରେ ବସିଛନ୍ତି । ସୁରେନ୍ଦ୍ରଙ୍କର ମଝିଆଁ ଭାଇ ବିଚାରପତି, ସେ ମଧ୍ୟ ଉପସ୍ଥିତ ଥିଲେ । ଅନେକ ଭକ୍ତ ଘରେ ସମବେତ ହୋଇଛନ୍ତି । ଠାକୁର ସୁରେନ୍ଦ୍ରଙ୍କ ବଡ଼ ଭାଇଙ୍କୁ କହୁଛନ୍ତି, 'ଆପଣ ଜଜ୍, ଏ ବେଶ୍, ଜାଣିବେ ଯେ ସବୁ

ହିଁ ଈଶ୍ୱରଙ୍କର ଶକ୍ତି । ବଡ଼ ପଦ ସେ ହିଁ ଦେଇଛନ୍ତି, ତେଣୁ ମିଳିଛି । ଲୋକେ ମନେକରନ୍ତି, ଆମେମାନେ ବଡ଼ ଲୋକ । ଛାତର ପାଣି ସିଂହର ମୁହଁଲଗା ନଳଦେଇ ପଡ଼େ, ମନେହୁଏ ସିଂହ ତା' ମୁହଁ ଭିତରୁ ପାଣି ବାହାର କରୁଛି; କିନ୍ତୁ ଦେଖ — କେଉଁଠାରେ ପାଣି, କେଉଁଠାରେ ଆକାଶରେ ମେଘ ହୁଏ, ସେହି ପାଣି ଛାତରେ ପଡୁଛି, ତାହାପରେ ଗଡ଼ି ନଳକୁ ଯାଉଛି, ତା'ପରେ ସିଂହ — ମୁହଁବାଟେ ବାହାରୁଛି !''

ସୁରେନ୍ଦ୍ରଙ୍କ ଭ୍ରାତା — ମହାଶୟ, ବ୍ରାହ୍ମସମାଜରେ କହନ୍ତି ସ୍ତ୍ରୀ-ସ୍ୱାଧୀନତା ଆଣ, ଜାତି ଭେଦ ଉଠାଇ ଦିଅ — ଏସବୁ ଆପଣଙ୍କର କ'ଣ ମନେହୁଏ ?

ଶ୍ରୀରାମକୃଷ୍ଣ — ଈଶ୍ୱରଙ୍କ ଉପରେ ନୂଆ ନୂଆ ଅନୁରାଗ ହେଲେ ଏହି ପ୍ରକାର ହୁଏ । ଝଡ଼ ହେଲେ ଧୂଳି ଉଡ଼େ, କେଉଁଟା ଆମ୍ବଡ଼ା ଆଉ କେଉଁଟା ତେନ୍ତୁଳି ଗଛ, କେଉଁଟା ଆମ୍ବଗଛ ଜଣାପଡ଼େ ନାହିଁ । ଝଡ଼ କମିଗଲେ ବୁଝାଯାଏ । ନବାନୁରାଗର ଝଡ଼ କଟିଗଲେ କ୍ରମେ ବୁଝାଯାଏ ଯେ ଈଶ୍ୱର ହିଁ ଶ୍ରେୟଃ ନିତ୍ୟ ପଦାର୍ଥ, ଆଉସବୁ ଅନିତ୍ୟ । **ସାଧୁସଙ୍ଗ, ତପସ୍ୟା** ନ କଲେ ଏସବୁ ଧାରଣା ହୁଏ ନାହିଁ । ପଖୋଜର ତାଳ ମୁହଁରେ କହିଲେ କଅଣ ହେବ, ହାତରେ ବଜାଇବା ବଡ଼ କଷ୍ଟ । କେବଳ ଲେକ୍‌ଚର୍ ଦେଲେ କଅଣ ହେବ ? ତପସ୍ୟା ଦରକାର, ତେବେ ଧାରଣା ହେବ ।

''ଜାତିଭେଦ ? କେବଳ ଗୋଟିଏ ଉପାୟରେ ଜାତିଭେଦ ଉଠିଯାଇପାରେ । ସେହିଟି **ଭକ୍ତି** । ଭକ୍ତର ଜାତି ନାହିଁ । ଭକ୍ତିରେ ଅସ୍ପୃଶ୍ୟ ଜାତି ଶୁଦ୍ଧ ହୋଇଯାଏ । ଚଣ୍ଡାଳ ଭକ୍ତ ହେଲେ ଆଉ ଚଣ୍ଡାଳ ରହେ ନାହିଁ । ଚୈତନ୍ୟଦେବ ଆଚଣ୍ଡାଳଙ୍କୁ କୋଳ ଦେଇଥିଲେ !

''ବ୍ରହ୍ମଜ୍ଞାନୀମାନେ ହରିନାମ କରନ୍ତି, ଖୁବ୍ ଭଲ । ବ୍ୟାକୁଳ ହୋଇ ଡାକିଲେ ତାଙ୍କର କୃପା ହେବ, ଈଶ୍ୱରଲାଭ ହେବ ।

''ସବୁ ପଥଦେଇ ତାଙ୍କୁ ଲାଭ କରାଯାଏ । ଏକ ଈଶ୍ୱରଙ୍କୁ ନାନା ନାମରେ ଡାକନ୍ତି । ଯେପରି ଗୋଟିଏ ଘାଟରେ ହିନ୍ଦୁମାନେ ପାଣି ପିଅନ୍ତି, କହନ୍ତି 'ଜଳ'; ଅନ୍ୟ ଗୋଟିଏ ଘାଟରେ ଖ୍ରୀଷ୍ଟାନ୍‌ମାନେ ପିଅନ୍ତି, କହନ୍ତି, 'ୱାଟର'(Water); ଆଉ ଗୋଟିଏ ଘାଟରେ ମୁସଲମାନମାନେ ପିଅନ୍ତି, କହନ୍ତି 'ପାନି' ।''

ସୁରେନ୍ଦ୍ରଙ୍କ ଭ୍ରାତା — ମହାଶୟ, ଥିଓସଫି କିପରି ବୋଧ ହୁଏ ?

ଶ୍ରୀରାମକୃଷ୍ଣ — ଶୁଣିଛି ସେଥିରେ କୁଆଡ଼େ **ଅଲୌକିକ ଶକ୍ତି** (miracles) ହୁଏ । ଦେବ ମୋଡ଼ଲର ଘରେ ଦେଖିଥିଲି ଜଣେ ପିଶାଚସିଦ୍ଧ । ପିଶାଚ କେତେ କ'ଣ ଜିନିଷ ଆଣି ଦିଏ । ଅଲୌକିକ ଶକ୍ତି ନେଇ କଅଣ କରିବି ? ତାହାଦ୍ୱାରା କ'ଣ ଈଶ୍ୱରଲାଭ ହୁଏ ? ଈଶ୍ୱର-ଲାଭ ଯଦି ନ ହେଲା, ତେବେ ସବୁ ହିଁ ମିଥ୍ୟା ।

## (୪)

## ମଣି ମଲ୍ଲିକଙ୍କ ବ୍ରାହ୍ମୋତ୍ସବରେ ଠାକୁର ଶ୍ରୀରାମକୃଷ୍ଣ

ଠାକୁରେ ଶ୍ରୀରାମକୃଷ୍ଣ କଲିକତାରେ ଶ୍ରୀଯୁକ୍ତ ମଣିଲାଲ ମଲ୍ଲିକଙ୍କର ସିନ୍ଦୁରୀୟାପଟୀର ଘରକୁ ଭକ୍ତଙ୍କ ସହିତ ଶୁଭାଗମନ କରିଥିଲେ । ସେଠାରେ ବ୍ରାହ୍ମସମାଜର ପ୍ରତିବର୍ଷ ଉତ୍ସବ ହୁଏ । ଉପରଓଳି, ସମୟ ଚାରିଟା ହେବ । ଏଠାରେ ଆଜି ବ୍ରାହ୍ମସମାଜର ସାମ୍ବତ୍ସରିକ ଉତ୍ସବ । ୨୬ ନଭେମ୍ବର ୧୮୮୨ । ଶ୍ରୀଯୁକ୍ତ ବିଜୟକୃଷ୍ଣ ଗୋସ୍ୱାମୀ ଓ ଅନେକ ବ୍ରାହ୍ମଭକ୍ତ ଏବଂ ଶ୍ରୀ ପ୍ରେମଚାନ୍ଦ ବଡ଼ାଳ ଓ ଗୃହସ୍ୱାମୀଙ୍କର ଅନ୍ୟାନ୍ୟ ବନ୍ଧୁ ଗଣ ଆସିଛନ୍ତି । ମାଷ୍ଟର ପ୍ରଭୃତି ସଙ୍ଗରେ ଅଛନ୍ତି ।

ଶ୍ରୀଯୁକ୍ତ ମଣିଲାଲ ଭକ୍ତମାନଙ୍କର ସେବା ପାଇଁ ବହୁତ କିଛି ଆୟୋଜନ କରିଛନ୍ତି । ପ୍ରହ୍ଲାଦ-ଚରିତ ଆଲୋଚନା ହେବ । ତତ୍ପରେ ବ୍ରାହ୍ମ-ସମାଜର ଉପାସନା ହେବ । ଅବଶେଷରେ ଭକ୍ତଗଣ ପ୍ରସାଦ ପାଇବେ ।

ଶ୍ରୀଯୁକ୍ତ ବିଜୟ ବର୍ତ୍ତମାନ ମଧ୍ୟ ବ୍ରାହ୍ମସମାଜଭୁକ୍ତ ଅଛନ୍ତି । ସେ ଆଜିର ଉପାସନା କରିବେ । ସେ ବର୍ତ୍ତମାନ ମଧ୍ୟ ଗୈରିକବସ୍ତ୍ର ଧାରଣ କରିନାହାନ୍ତି ।

କଥକ ମହାଶୟ ପ୍ରହ୍ଲାଦଚରିତ କଥା କହୁଛନ୍ତି । ପିତା ହିରଣ୍ୟକଶିପୁ ହରିଙ୍କର ନିନ୍ଦା କରୁଛନ୍ତି ଓ ପୁତ୍ର ପ୍ରହ୍ଲାଦକୁ ବାରମ୍ବାର ନିର୍ଯାତନା ଦେଉଛନ୍ତି । ପ୍ରହ୍ଲାଦ କରଯୋଡ଼ି ହରିଙ୍କୁ ପ୍ରାର୍ଥନା କରୁଛନ୍ତି ଏବଂ କହୁଛନ୍ତି, 'ହେ ହରି, ପିତାଙ୍କୁ ସୁମତି ଦିଅ ।' ଠାକୁର ଶ୍ରୀରାମକୃଷ୍ଣ ଏହି କଥା ଶୁଣି କାନ୍ଦୁଛନ୍ତି । ଶ୍ରୀଯୁକ୍ତ ବିଜୟ ପ୍ରଭୃତି ଭକ୍ତମାନେ ଠାକୁରଙ୍କ ପାଖରେ ବସିଛନ୍ତି । ଠାକୁରଙ୍କର ଭାବାବସ୍ଥା ହୋଇଛି ।

(ଶ୍ରୀ ବିଜୟ ଗୋସ୍ୱାମୀ ପ୍ରଭୃତି ବ୍ରାହ୍ମଭକ୍ତମାନଙ୍କୁ ଉପଦେଶ)

**ଈଶ୍ୱର-ଦର୍ଶନ ଓ ଆଦେଶପ୍ରାପ୍ତି—ତେବେ ଲୋକଶିକ୍ଷା**

କିଛି ସମୟ ପରେ ବିଜୟାଦି ଭକ୍ତମାନଙ୍କୁ କହୁଛନ୍ତି, "ଭକ୍ତି ହିଁ ସାର । ସର୍ବଦା ତାଙ୍କର ନାମଗୁଣ କୀର୍ତ୍ତନ କରୁ କରୁ ଭକ୍ତିଲାଭ ହୁଏ । ଆହା ! ଶିବନାଥର କି ଭକ୍ତି ! ଯେପରି ରସରେ ପଡ଼ିଥିବା ଛେନାବରା !

"ଏ ପ୍ରକାର ମନେକରିବା ଭଲ ନୁହେଁ ଯେ—ମୋର ଧର୍ମ ହିଁ ଠିକ୍, ଆଉ ଅନ୍ୟ ସମସ୍ତଙ୍କର ଧର୍ମ ଭୁଲ । ସବୁପଥ ଦେଇ ତାଙ୍କୁ ଲାଭ କରାଯାଏ । ଆନ୍ତରିକ ବ୍ୟାକୁଳତା ଥିଲେ ହେଲା । ଅନନ୍ତ ପଥ—ଅନନ୍ତ ମତ ।

"ଦେଖ ! **ଈଶ୍ୱରଙ୍କୁ ଦେଖାଯାଏ** । 'ଅବାଙ୍‌ମନସଗୋଚର' ବୋଲି ବେଦରେ କହିଛି । ଏହାର ମାନେ ବିଷୟାସକ୍ତ ମନର ଅଗୋଚର । ବୈଷ୍ଣବଚରଣ କହେ—ଶୁଦ୍ଧ ମନ ଶୁଦ୍ଧ ବୁଦ୍ଧିର ଗୋଚର ।[୧] ସେଥିପାଇଁ ସାଧୁସଙ୍ଗ, ପ୍ରାର୍ଥନା,

---

୧. ମନ ଏବ ମନୁଷ୍ୟାଣାଂ କାରଣଂ ବନ୍ଧମୋକ୍ଷୟୋଃ ।
ବନ୍ଧାୟ ବିଷୟାସଙ୍ଗି ମୋକ୍ଷେ ନିର୍ବିଷୟଂ ସ୍ମୃତମିତି ॥—ମୈତ୍ରାୟଣୀ ଉପନିଷଦ୍ ୬/୩୪

ଗୁରୁଙ୍କର ଉପଦେଶ ଏହିସବୁ ଦରକାର, ତେବେ ଚିତ୍ତ ଶୁଦ୍ଧ ହୁଏ; ସେତେବେଳେ ତାଙ୍କର ଦର୍ଶନ ହୁଏ । ଗୋଳିଆ ପାଣିରେ ଫିଟିକିରି ପକାଇଲେ ପରିଷ୍କାର ହୁଏ । ସେତେବେଳେ ମୁହଁ ଦେଖାଯାଏ । ମଇଳା ଦର୍ପଣରେ ମୁହଁ ଦେଖାଯାଏ ନାହିଁ ।

''ଚିତ୍ତଶୁଦ୍ଧି ପରେ ଭକ୍ତିଲାଭ ହେଲେ, ତେବେ ତାଙ୍କ କୃପାରୁ ତାଙ୍କର ଦର୍ଶନ ମିଳେ । ଦର୍ଶନ ପରେ ଆଦେଶ ପାଇଲେ ତେବେ ଲୋକଶିକ୍ଷା ଦିଆଯାଏ । ଆଗରୁ ଲେକ୍‌ଚର୍ ଦେବା ଭଲ ନୁହେଁ । ଗୋଟିଏ ଗୀତରେ ଅଛି—

''ଭାବଛୋ କି ମନ ଏକଲା ବସେ,
ଅନୁରାଗ ବିନେ କି ଚାନ୍ଦ ଗୌର ମିଳେ !
ମନ୍ଦିରେ ତୋର ନାଇକୋ ମାଧବ
ପୋଦୋ ଶାଁକ ଫୁଁକେ ତୁଇ କରଲି ଗୋଲ ।
ତାୟ ଚାମିଚିକେ ଏଗାରଜନା, ଦିବା ନିଶି ଦିଛେ ଥାନା ।...

''ହୃଦୟ-ମନ୍ଦିର ଆଗେ ପରିଷ୍କାର କରିବାକୁ ହୁଏ, ଦେବ-ପ୍ରତିମା ଆଣିବାକୁ ହୁଏ, ପୂଜାର ଆୟୋଜନ କରିବାକୁ ହୁଏ, କୌଣସି ଆୟୋଜନ ନାହିଁ, ଭୋଁ ଭୋଁ କରି ଶଙ୍ଖ ଫୁଙ୍କିଲେ କଅଣ ହେବ ?''

ଏଥର ଶ୍ରୀଯୁକ୍ତ ବିଜୟ ଗୋସ୍ୱାମୀ ବେଦୀରେ ବସି ବ୍ରାହ୍ମସମାଜର ପଦ୍ଧତି ଅନୁସାରେ ଉପାସନା କରୁଛନ୍ତି । ଉପାସନାନ୍ତେ ସେ ଠାକୁରଙ୍କ ପାଖରେ ଆସି ବସିଲେ ।

ଶ୍ରୀରାମକୃଷ୍ଣ (ବିଜୟଙ୍କ ପ୍ରତି)—ଆଚ୍ଛା, ତୁମେମାନେ ଏତେ ପାପ ପାପ କହିଲ କାହିଁକି ? ଶହେ ଥର 'ମୁଁ ପାପୀ' କହିଲେ ତାହା ହିଁ ହୋଇଯାଏ । ଏପରି ବିଶ୍ୱାସ ହେବା ଦରକାର ଯେ—ତାଙ୍କ ନାମ ନେଇଛି, ମୋର ପୁଣି ପାପ କଅଣ ? ସେ ଆମମାନଙ୍କର ବାପ ମା—ତାଙ୍କୁ କହ ଯେ, ପାପ କରିଛି, ଆଉ କେବେ ହେଲେ କରିବି ନାହିଁ । ଆଉ ତାଙ୍କର ନାମ କର, ତାଙ୍କ ନାମରେ ସମସ୍ତ ଦେହ ମନ ପବିତ୍ର କର—ଜିହ୍ୱାକୁ ପବିତ୍ର କର ।

# ଏକାଦଶ ପରିଚ୍ଛେଦ

## (୧)

## ଶ୍ରୀଯୁକ୍ତ ବିଜୟକୃଷ୍ଣ ଗୋସ୍ୱାମୀ ଓ ଅନ୍ୟାନ୍ୟ ବ୍ରାହ୍ମଭକ୍ତଙ୍କ ପ୍ରତି ଠାକୁର ଶ୍ରୀରାମକୃଷ୍ଣଙ୍କ ଉପଦେଶ

ନ ଜାୟତେ ମ୍ରିୟତେ ବା କଦାଚିନ୍ନାୟଂ ଭୂତ୍ୱା ଭବିତା ବା ନ ଭୂୟଃ ।
ଅଜୋ ନିତ୍ୟଃ ଶାଶ୍ୱତୋଽୟଂ ପୁରାଣୋ ନ ହନ୍ୟତେ ହନ୍ୟମାନେ ଶରୀରେ ॥

—ଗୀତା, ୨/୨୦

**ମୁକ୍ତପୁରୁଷଙ୍କର ଶରୀରତ୍ୟାଗ କ'ଣ ଆତ୍ମହତ୍ୟା ?**

ଶ୍ରୀଯୁକ୍ତ ବିଜୟକୃଷ୍ଣ ଗୋସ୍ୱାମୀ ଦକ୍ଷିଣେଶ୍ୱର କାଳୀମନ୍ଦିରରେ ଭଗବାନ୍ ଶ୍ରୀରାମକୃଷ୍ଣଙ୍କୁ ଦର୍ଶନ କରିବାକୁ ଆସିଛନ୍ତି । ସଙ୍ଗରେ ତିନି ଚାରିଜଣ ବ୍ରାହ୍ମଭକ୍ତ । ମାର୍ଗଶୀର ଶୁକ୍ଳ ଚତୁର୍ଥୀ ତିଥି, ଗୁରୁବାର, ୧୪ ଡିସେମ୍ବର ୧୮୮୨ । ପରମହଂସଦେବଙ୍କର ପରମଭକ୍ତ ଶ୍ରୀଯୁକ୍ତ ବଳରାମଙ୍କ ସହିତ ଏମାନେ ନୌକା କରି କଲିକତାଠାରୁ ଆସିଛନ୍ତି । ମଧ୍ୟାହ୍ନରେ ଶ୍ରୀରାମକୃଷ୍ଣ ଅଳ୍ପ ସମୟ ହେଲା ବିଶ୍ରାମ କରୁଛନ୍ତି । ରବିବାର ଦିନ ବେଶୀ ଲୋକ ସମାଗମ ହୁଏ । ଯେଉଁ ସମସ୍ତ ଭକ୍ତ ଏକାନ୍ତରେ ତାଙ୍କ ସହିତ କଥୋପକଥନ କରିବାକୁ ଚାହାଁନ୍ତି, ସେମାନେ ପ୍ରାୟ ଅନ୍ୟ ଦିନ ଆସନ୍ତି ।

ପରମହଂସଦେବ ଖଟ ଉପରେ ବସିଛନ୍ତି । ବିଜୟ, ବଳରାମ, ମାଷ୍ଟର ଓ ଅନ୍ୟାନ୍ୟ ଭକ୍ତ ପଶ୍ଚିମାଭିମୁଖ ହୋଇ, ତାଙ୍କ ଆଡ଼କୁ ମୁଖ କରି କେହି ମଶିଣା ଉପରେ କେହି ଖାଲି ତଳେ ବସିଛନ୍ତି । ଘରର ପଶ୍ଚିମ ଦିଗରେ ଖୋଲା ଦ୍ୱାରବାଟେ ଭାଗୀରଥୀ ଦେଖାଯାଉଛନ୍ତି । ଶୀତକାଳର ସ୍ଥିରା ସ୍ୱଚ୍ଛସଳିଳା ଭାଗିରଥୀ । ଦ୍ୱାରକୁ ଲାଗି ପଶ୍ଚିମର ଅର୍ଦ୍ଧମଣ୍ଡଳାକାର ବାରଣ୍ଡା, ତତ୍ପରେ ପୁଷ୍ପୋଦ୍ୟାନ, ତା'ପରେ ବନ୍ଧ; ବନ୍ଧର ପଶ୍ଚିମ ଭାଗରେ ପୁଣ୍ୟସଳିଳା କଳୁଷହାରିଣୀ ଗଙ୍ଗା ଯେପରି ଈଶ୍ୱରଙ୍କ ମନ୍ଦିରର ପାଦମୂଳ ଆନନ୍ଦରେ ଧୌତ କରି କରି ବହିଯାଉଛନ୍ତି ।

ବିଜୟ ବର୍ତ୍ତମାନ ମଧ୍ୟ ସାଧାରଣ ବ୍ରାହ୍ମସମାଜର ଜଣେ ବେତନଭୋଗୀ ଆଚାର୍ଯ୍ୟ । ସେଥିପାଇଁ ସ୍ୱାଧୀନଭାବରେ କଥାବାର୍ତ୍ତା ବା କାର୍ଯ୍ୟ କରିପାରନ୍ତି ନାହିଁ । ବିଜୟ ଅତି ପବିତ୍ର ବଂଶ—ଅଦ୍ୱୈତ ଗୋସ୍ୱାମୀଙ୍କ ବଂଶରେ ଜନ୍ମଗ୍ରହଣ କରିଛନ୍ତି । ଅଦ୍ୱୈତ ଗୋସ୍ୱାମୀ ପରମ ଜ୍ଞାନୀ ଥିଲେ—ନିରାକାର ପରଂବ୍ରହ୍ମଙ୍କର ଚିନ୍ତା କରୁଥିଲେ ଏବଂ ଭକ୍ତିର ପରାକାଷ୍ଠା ଦେଖାଇ ଯାଇଛନ୍ତି । ସେ ଭଗବାନ ଚୈତନ୍ୟଦେବଙ୍କର ଜଣେ ପ୍ରଧାନ ପାର୍ଷଦ—ହରିପ୍ରେମରେ ମତୁଆଲା ହୋଇ ନୃତ୍ୟ କରୁଥିଲେ—ଏତେ ଆତ୍ମହରା ହେଉଥିଲେ ଯେ ନୃତ୍ୟ କରୁ କରୁ ପରିଧାନ-

ବସ୍ତ୍ର ଖସି ପଡୁଥିଲା । ବିଜୟ ମଧ୍ୟ ବ୍ରାହ୍ମସମାଜକୁ ଆସିଛନ୍ତି — ନିରାକାର ନିର୍ଗୁଣ ପରଂବ୍ରହ୍ମଙ୍କର ଚିନ୍ତା କରନ୍ତି, କିନ୍ତୁ ମହାଭକ୍ତ ପୂର୍ବପୁରୁଷ ଶ୍ରୀ ଅଦ୍ୱୈତଙ୍କର ଶୋଣିତ ତାଙ୍କ ଧମନୀ ମଧ୍ୟରେ ପ୍ରବାହିତ ହେଉଛି । ଶରୀର ମଧ୍ୟସ୍ଥିତ ହରିପ୍ରେମର ବୀଜ ବର୍ତ୍ତମାନ ପ୍ରକାଶୋନ୍ମୁଖ — କେବଳ କାଳ ପ୍ରତୀକ୍ଷା କରୁଛି ।

ସେଥିପାଇଁ ସେ ଭଗବାନ ଶ୍ରୀରାମକୃଷ୍ଣଙ୍କର ଦେବଦୁର୍ଲ୍ଲଭ ହରିପ୍ରେମରେ 'ଗର୍ଗର ମତୁଆଲା' ଅବସ୍ଥା ଦେଖି ମୁଗ୍ଧ ହୋଇଛନ୍ତି । ମନ୍ତ୍ରମୁଗ୍ଧ ସର୍ପ ଯେପରି ଫଣା ଟେକି ସାପୁଆକେଳା ପାଖରେ ଖେଳୁଥାଏ, ବିଜୟ ମଧ୍ୟ ପରମହଂସଦେବଙ୍କର ଶ୍ରୀମୁଖନିଃସୃତ ଭାଗବତ ଶୁଣୁ ଶୁଣୁ ମୁଗ୍ଧ ହୋଇ ତାହାଙ୍କ ନିକଟରେ ବସିଥାଆନ୍ତି । ଆଉ ଯେତେବେଳେ ସେ ହରି ପ୍ରେମରେ ବାଳକ ପରି ନୃତ୍ୟ କରନ୍ତି, ବିଜୟ ମଧ୍ୟ ତାଙ୍କ ସଙ୍ଗରେ ନାଚନ୍ତି ।

ଗୋଟିଏ ବାଳକ, 'ଏଁଡ଼େଦ'ରେ ଘର, ଗଳାରେ କ୍ଷୁର ଦେଇ ଦେହତ୍ୟାଗ କରିଛି । ଆଜି ପ୍ରଥମେ ତାହାରି କଥା ହେଉଥିଲା । ବାଳକଟିର ନାମ ବିଷ୍ଣୁ ।

ଶ୍ରୀରାମକୃଷ୍ଣ (ବିଜୟ, ମାଷ୍ଟର ଓ ଅନ୍ୟାନ୍ୟ ଭକ୍ତଙ୍କ ପ୍ରତି) — ଦେଖ ଏହି ବାଳକଟି ଦେହତ୍ୟାଗ କରିଛି ଶୁଣିଲି, ତେଣୁ ମନଟା ଖରାପ ହୋଇ ରହିଛି । ଏଠାକୁ ଆସୁଥିଲା, ସ୍କୁଲରେ ପଢୁଥିଲା, କିନ୍ତୁ କହୁଥିଲା — ସଂସାର ଭଲ ଲାଗେ ନାହିଁ । ପଶ୍ଚିମକୁ ଯାଇ କୌଣସି ଆତ୍ମୀୟ ପାଖରେ କିଛିଦିନ ଥିଲା — ସେଠାରେ ନିର୍ଜନରେ ପଡ଼ିଆରେ, ବଣରେ, ପାହାଡ଼ରେ ସର୍ବଦା ବସି ଧ୍ୟାନ କରୁଥିଲା । କହିଥିଲା ଯେ କେତେ କଅଣ ଈଶ୍ୱରୀୟ ରୂପ ଦର୍ଶନ କରେ ।

''ବୋଧହୁଏ ଶେଷ ଜନ୍ମ । ପୂର୍ବ ଜନ୍ମରେ ଅନେକ କାମ ହୋଇଯାଇଥିଲା, ଟିକିଏ ବାକି ଥିଲା, ସେଇ ଟିକକ ବୋଧହୁଏ ଏଥର ହୋଇଗଲା ।

''ପୂର୍ବ ଜନ୍ମର ସଂସ୍କାର ମାନିବାକୁ ହୁଏ । ଶୁଣିଛି — ଜଣେ ଶବ-ସାଧନ କରୁଥିଲା, ଗଭୀର ବଣରେ ଭଗବତୀଙ୍କର ଆରାଧନା କରୁଥିଲା; କିନ୍ତୁ ସେ ନାନା ବିଭୀଷିକା ଦେଖିବାକୁ ଲାଗିଲା, ଶେଷରେ ତାକୁ ବାଘ ନେଇଗଲା । ଆଉ ଜଣେ ବାଘ ଭୟରେ ପାଖରେ ଥିବା ଗୋଟିଏ ଗଛ ଉପରେ ବସିଥିଲା । ଶବ ଆଉ ଅନ୍ୟାନ୍ୟ ପୂଜାର ଉପକରଣ ତିଆରି ଦେଖି, ସେ ଓହ୍ଲାଇ ଆସି ଆଚମନ କରି ଶବ ଉପରେ ବସିଗଲା । ଟିକିଏ ଜପ କରୁ କରୁ ମା' ସାକ୍ଷାତ୍କାର ହେଲେ ଓ କହିଲେ, 'ମୁଁ ତୋ ଉପରେ ପ୍ରସନ୍ନ ହୋଇଛି, ତୁ ବର ନେ ।' ମା'ଙ୍କ ପାଦପଦ୍ମରେ ପ୍ରଣତ ହୋଇ ସେ କହିଲା, 'ମା, ଗୋଟିଏ କଥା ପଚାରେ, ତୁମର କାଣ୍ଡ ଦେଖି ଅବାକ୍ ହୋଇଛି । ସେ ବ୍ୟକ୍ତି ଏତେ ଖଟି, ଏତେ ଆୟୋଜନ କରି, ଏତେ ଦିନ ଧରି ତୁମର ସାଧନ କରିଥିଲା । ତାକୁ ତୁମର ଦୟା ହେଲା ନାହିଁ ! ଆଉ ମୁଁ କିଛି ଜାଣେ ନାହିଁ, ଶୁଣେ ନାହିଁ, ଭଜନହୀନ, ସାଧନହୀନ, ଜ୍ଞାନହୀନ, ଭକ୍ତିହୀନ — ମୋ ଉପରେ ଏତେ କୃପା ହେଲା !' ଭଗବତୀ ହସି ହସି କହିଲ, 'ବାପ ! ତୁମର

ଜନ୍ମାନ୍ତରର କଥା ମନେ ନାହିଁ । ତୁମେ ଜନ୍ମ ଜନ୍ମ ମୋର ତପସ୍ୟା କରିଥିଲ । ସେହି ସାଧନ ବଳରେ ତୁମ ପାଇଁ ଏପରି ଯୋଗାଡ଼ଯନ୍ତ୍ର ହୋଇଛି; ତେଣୁ ମୋର ଦର୍ଶନ ପାଇଲ । ବର୍ତ୍ତମାନ କହ, କେଉଁ ବର ଚାହଁ' ?''

ଜଣେ ଭକ୍ତ—ଆତ୍ମହତ୍ୟା କଥା ଶୁଣି ଭୟ ହୁଏ ।

ଶ୍ରୀରାମକୃଷ୍ଣ—ଆତ୍ମହତ୍ୟା କରିବା ମହାପାପ, ପୁଣି ସଂସାରକୁ ଫେରି ଆସିବାକୁ ହେବ, ଆଉ ସଂସାର-ଯନ୍ତ୍ରଣା ଭୋଗ କରିବାକୁ ହେବ ।

''ତେବେ ଯଦି ଈଶ୍ୱରଙ୍କୁ ଦର୍ଶନ କରି କେହି ଦେହ ତ୍ୟାଗ କରେ, ତାକୁ ଆତ୍ମହତ୍ୟା କୁହାଯାଏ ନାହିଁ । ସେ ଦେହତ୍ୟାଗରେ ଦୋଷ ନାହିଁ । ଜ୍ଞାନଲାଭ ପରେ କେହି କେହି ଶରୀର ତ୍ୟାଗ କରନ୍ତି । ଯେତେବେଳେ ସୁନାର ପ୍ରତିମା ମାଟିଛାଞ୍ଚରେ ଥରେ ଢଳାଇ ହୋଇଯାଏ, ସେତେବେଳେ ମାଟିର ଛାଞ୍ଚ ରଖିପାର କିମ୍ବା ଭାଙ୍ଗିଦେଇ ବି ପାର ।

''କେତେ ବର୍ଷ ପୂର୍ବେ ବରାହନଗରଠାରୁ ଗୋଟିଏ ପିଲା ଆସୁଥିଲା—ବୟସ କୋଡ଼ିଏ ବର୍ଷ ହେବ । ଗୋପାଳ ସେନ । ଯେତେବେଳେ ଏଠାକୁ ଆସେ ସେତେବେଳେ ଏତେ ଭାବ ହୁଏ ଯେ ହୃଦୁକୁ ଧରିବାକୁ ପଡ଼େ, କାଳେ ପଡ଼ିଯାଇ ହାତ-ଗୋଡ଼ ଭାଙ୍ଗିଯିବ । ସେ ପିଲାଟି ଦିନେ ମୋ ଗୋଡ଼ରେ ହାତ ଦେଇ କହିଲା—ଆଉ ଆସିପାରିବି ନାହିଁ—ମୁଁ ଚାଲିଲି । କିଛିଦିନ ପରେ ଶୁଣିଲି ଯେ ସେ ଦେହତ୍ୟାଗ କରିଛି ।''

## (୨)

ଅନିତ୍ୟମସୁଖଂ ଲୋକମିମଂ ପ୍ରାପ୍ୟ ଭଜସ୍ୱ ମାମ୍ ।—ଗୀତା, ୯/୩୩

## ମୁକ୍ତିର ବ୍ୟାଘାତ—କାମିନୀ-କାଞ୍ଚନ

ଶ୍ରୀରାମକୃଷ୍ଣ—ଜୀବ ଚାରି ଶ୍ରେଣୀର ଅଛନ୍ତି—ବଦ୍ଧ, ମୁମୁକ୍ଷୁ, ମୁକ୍ତ, ନିତ୍ୟ । ସଂସାର ଗୋଟିଏ ଜାଲପରି, ଜୀବ ଯେପରି ମାଛ, ଈଶ୍ୱର (ଯାହାଙ୍କର ମାୟା ଏହି ସଂସାର) ଯେପରି କେଉଟ । କେଉଟର ଜାଲରେ ଯେତେବେଳେ ମାଛ ପଡ଼େ, ସେତେବେଳେ କେତେଗୁଡ଼ିଏ ମାଛ ଜାଲ ଛିଣ୍ଡାଇ ପଳାଇବାକୁ ଚେଷ୍ଟା କରନ୍ତି, ଅର୍ଥାତ୍ ମୁକ୍ତ ହେବା ପାଇଁ ଚେଷ୍ଟା କରନ୍ତି । ଏମାନଙ୍କୁ ମୁମୁକ୍ଷୁ ଜୀବ କୁହାଯାଏ । ଯେଉଁମାନେ ପଳାଇବାକୁ ଚେଷ୍ଟା କରନ୍ତି, ସେମାନଙ୍କ ଭିତରୁ ସମସ୍ତେ ପଳାଇପାରନ୍ତି ନାହିଁ । ଦୁଇ ଚାରିଟା ମାଛ ଧପାଙ୍ଗ୍ ଶବ୍ଦ କରି ପଳାନ୍ତି । ସେତେବେଳେ ଲୋକମାନେ କହନ୍ତି, 'ଏଃ ବଡ଼ ମାଛଟାଏ ଖସିଗଲା !' ଏହି ଦୁଇ ଚାରିଜଣ ଲୋକ ମୁକ୍ତଜୀବ । କେତେଗୁଡ଼ିଏ ମାଛ ସ୍ୱଭାବତଃ ଏତେ ସାବଧାନ ଯେ, କେବେ ହେଲେ ଜାଲରେ ପଡ଼ନ୍ତି ନାହିଁ । ନାରଦାଦି ନିତ୍ୟଜୀବ କେବେ ହେଲେ ସଂସାର-ଜାଲରେ ପଡ଼ନ୍ତି ନାହିଁ । କିନ୍ତୁ ଅଧିକାଂଶ ମାଛ ଜାଲରେ ପଡ଼ନ୍ତି,

ଅଥଚ ଏ ବୋଧ ନାହିଁ ଯେ, ଜାଲରେ ପଡ଼ିଛି, ମରିବାକୁ ହେବ । ସେମାନେ ଜାଲରେ ପଡ଼ିଲାମାତ୍ରେ ଜାଲ ସହିତ ଦୌଡ଼ନ୍ତି ଓ ଏକାବେଳକେ ପଙ୍କରେ ଯାଇ ଲୁଚିବାକୁ ଚେଷ୍ଟା କରନ୍ତି । ପଳାଇବା ପାଇଁ କୌଣସି ଚେଷ୍ଟା ନାହିଁ, ବରଂ ଆହୁରି ପଙ୍କରେ ଯାଇ ପଡ଼ନ୍ତି । ଏମାନେ ହିଁ ବଦ୍ଧଜୀବ । ଏମାନେ ଜାଲରେ ରହିଛନ୍ତି, କିନ୍ତୁ ମନେ ମନେ ଭାବନ୍ତି—ଆମେମାନେ ଏଠାରେ ବେଶ୍ ଅଛୁ । ବଦ୍ଧଜୀବ—ସଂସାରରେ ଅର୍ଥାତ୍ କାମିନୀ-କାଞ୍ଚନରେ ଆସକ୍ତ ହୋଇଅଛି, କଳଙ୍କ-ସାଗରରେ ମଗ୍ନ । କିନ୍ତୁ ଭାବେ ଯେ, ବେଶ୍ ଅଛି । ଯେଉଁମାନେ ମୁମୁକ୍ଷୁ ବା ମୁକ୍ତ, ସଂସାର ସେମାନଙ୍କୁ ଗଭୀର କୂପ ପରି ବୋଧହୁଏ, ଭଲ ଲାଗେ ନାହିଁ । ସେଥିପାଇଁ କେହି କେହି ଜ୍ଞାନଲାଭ ପରେ, ଭଗବାନଲାଭ ପରେ ଦେହତ୍ୟାଗ କରନ୍ତି । କିନ୍ତୁ ସେପରି ଦେହତ୍ୟାଗ ବହୁଦୂରର କଥା ।

''ବଦ୍ଧଜୀବର—ସଂସାରୀ-ଜୀବର କୌଣସି ପ୍ରକାରରେ ହୋସ୍ ହୁଏ ନାହିଁ । ଏତେ ଦୁଃଖ, ଏତେ ଦଗା ପାଏ, ଏତେ ବିପଦରେ ପଡ଼େ, ତେବେ ବି ଚୈତନ୍ୟ ହୁଏ ନାହିଁ ।

''ଓଟ କଣ୍ଟାଘାସକୁ ଭାରୀ ଭଲପାଏ । କିନ୍ତୁ ଯେତେବେଳେ ଖାଏ ମୁହଁରୁ ରକ୍ତ ଝର୍ ଝର୍ କରି ପଡ଼େ, ତଥାପି ସେହି କଣ୍ଟାଘାସ ଖାଇବ, ଛାଡ଼ିବ ନାହିଁ । ସଂସାରୀ-ଲୋକ ଏତେ ଶୋକ-ତାପ ପାଏ, ପୁଣି କିଛିଦିନ ପରେ ଯାହା ଥିଲା ସେଇଆ ! ସ୍ତ୍ରୀ ମରିଗଲା, ନୋହିଲେ ଅସତୀ ହେଲା, ତେବେ ବି ପୁଣି ବିବାହ କରେ । ପୁଅ ମରିଗଲା, କେତେ ଶୋକ କଲା, କିନ୍ତୁ କିଛିଦିନ ପରେ ସବୁ ଭୁଲିଗଲା । ସେହି ପୁଅର ମା, ଯେ ଶୋକରେ ଅଧୀର ହୋଇଥିଲା, ପୁଣି କିଛିଦିନ ପରେ ମୁଣ୍ଡ ବାନ୍ଧିଲା, ଗହଣା ପିନ୍ଧିଲା । ଏହିପରି ଲୋକ ଝିଅର ବିବାହରେ ସର୍ବସ୍ୱାନ୍ତ ହୁଏ, ପୁଣି ବର୍ଷକୁ ବର୍ଷ ତାହାର ପିଲାପିଲି ବି ହୁଅନ୍ତି । ମୋକଦ୍ଦମା କରି ସର୍ବସ୍ୱାନ୍ତ ହୁଏ, ପୁଣି ମୋକଦ୍ଦମା କରେ । ଯେଉଁ ପିଲାଗୁଡ଼ିକ ହୋଇଛନ୍ତି, ସେମାନଙ୍କୁ ଖୁଆଇପାରେ ନାହିଁ, ପଢ଼ାଇପାରେ ନାହିଁ, ଭଲ ଘରେ ରଖିପାରେ ନାହିଁ; କିନ୍ତୁ ପୁଣି ବର୍ଷକୁ ବର୍ଷ ପିଲା ହେଉଥାଆନ୍ତି ।

''ପୁଣି ବେଳେବେଳେ ସାପ ଚୁଚୁନ୍ଦ୍ରାକୁ ଧରିଲା ପରି ଅବସ୍ଥା ହୁଏ । ଗିଳିପାରେ ନାହିଁ ବାହାର ବି କରିପାରେ ନାହିଁ । ବଦ୍ଧଜୀବ ହୁଏତ ବୁଝୁଛି ଯେ, ସଂସାରରେ କିଛିମାତ୍ର ସାର ନାହିଁ—ଆମ୍ବଡ଼ାର କେବଳ ଟାକୁଆ ଓ ଚୋପା; ତଥାପି ଛାଡ଼ିପାରେ ନାହିଁ; ତେବେ ବି ସୁଦ୍ଧା ଈଶ୍ୱରଙ୍କ ଆଡ଼କୁ ମନ ଦେଇପାରେ ନାହିଁ ।

''କେଶବ ସେନ୍‌ର ଜଣେ ଆତ୍ମୀୟ—ପଚାଶ ବର୍ଷ ବୟସ—ଦେଖେ ତାସ୍ ଖେଳୁଛି ! ଈଶ୍ୱରଙ୍କ ନାମ ନେବା ପାଇଁ ଯେପରି ତା'ର ବେଳ ଆସି ନାହିଁ !

''ବଦ୍ଧଜୀବର ଆଉ ଗୋଟିଏ ଲକ୍ଷଣ ଅଛି । ତାକୁ ଯଦି ସଂସାରରୁ କାଢ଼ିନେଇ ଭଲ ଜାଗାରେ ରଖାଯାଏ, ତାହାହେଲେ ଝୁରି ଝୁରି ମରିଯିବ । ବିଷ୍ଠାପୋକର ବିଷ୍ଠାରେ ହିଁ ବେଶ୍ ଆନନ୍ଦ । ଏଥିରେ ବେଶ୍ ହୃଷ୍ଟପୁଷ୍ଟ ହୁଏ । ଯଦି ସେହି ପୋକକୁ ଭାତହାଣ୍ଡିରେ ରଖ, ତାହା ହେଲେ ମରିଯିବ ।'' (ସମସ୍ତେ ସ୍ତବ୍ଧ)

## (୩)

ଅସଂଶୟଂ ମହାବାହୋ ମନୋ ଦୁର୍ନିଗ୍ରହଂ ଚଲମ୍ ।
ଅଭ୍ୟାସେନ ତୁ କୌନ୍ତେୟ ବୈରାଗ୍ୟେଣ ଚ ଗୃହ୍ୟତେ ॥

—ଗୀତା, ୬/୩୫

## ତୀବ୍ର ବୈରାଗ୍ୟ

ବିଜୟ—ବଦ୍ଧ ଜୀବର ମନର କିପରି ଅବସ୍ଥା ହେଲେ ମୁକ୍ତି ମିଳିବ ?

ଶ୍ରୀରାମକୃଷ୍ଣ—ଈଶ୍ୱରଙ୍କ କୃପାରୁ ତୀବ୍ର ବୈରାଗ୍ୟ ହେଲେ ଏହି କାମିନୀ-କାଞ୍ଚନର ଆସକ୍ତିରୁ ନିସ୍ତାର ମିଳିପାରେ । ତୀବ୍ର ବୈରାଗ୍ୟ କାହାକୁ କୁହନ୍ତି ? ହେଉଛି, ହେବ, ଈଶ୍ୱରଙ୍କ ନାମ କରାଯାଉ—ଏସବୁ ମନ୍ଦ ବୈରାଗ୍ୟ । ଯାହାର ତୀବ୍ର ବୈରାଗ୍ୟ, ତାହାର ପ୍ରାଣ ଭଗବାନଙ୍କ ପାଇଁ ବ୍ୟାକୁଳ; ମାଆର ପ୍ରାଣ ଯେପରି ନିଜ ପିଲା ପାଇଁ ବ୍ୟାକୁଳ । ଯାହାର ତୀବ୍ର ବୈରାଗ୍ୟ, ସେ ଭଗବାନଙ୍କ ବ୍ୟତୀତ ଅନ୍ୟ କିଛି ଚାହେଁ ନାହିଁ; ସଂସାରକୁ କୂଅ ପରି ଦେଖେ; ତା'ର ମନେହୁଏ ଯେପରି ସେ ବୁଡ଼ିଯିବ । ଆତ୍ମୀୟମାନଙ୍କୁ କାଳସର୍ପ ପରି ଦେଖେ; ପାଖରୁ ପଳାଇଯିବାକୁ ଇଚ୍ଛା ହୁଏ, ଆଉ ପଳାଏ ମଧ୍ୟ । 'ଘରର ବନ୍ଦୋବସ୍ତ କରି ତା'ପରେ ଈଶ୍ୱର ଚିନ୍ତା କରିବି'—ଏକଥା ଭାବେ ନାହିଁ । ଭିତରେ ଖୁବ୍ ଜିଦ୍ ।

''ତୀବ୍ର ବୈରାଗ୍ୟ କାହାକୁ କୁହାଯାଏ ? ଗୋଟିଏ ଗପ ଶୁଣ । ଗୋଟିଏ ଦେଶରେ ଅନାବୃଷ୍ଟି ହୋଇଛି । ଚାଷୀମାନେ ନାଳକାଟି ଦୂରରୁ ପାଣି ଆଣୁଛନ୍ତି । ଜଣେ ଚାଷୀର ଖୁବ୍ ଜିଦ୍ । ସେ ଦିନେ ପ୍ରତିଜ୍ଞା କଲା, 'ଯେପର୍ଯ୍ୟନ୍ତ ପାଣି ନ ଆସେ, ନାଳ ଆଉ ନଦୀ ସମାନ ନ ହୁଏ, ସେପର୍ଯ୍ୟନ୍ତ ନାଳ ଖୋଳି ଯିବି ।' ଏପଟେ ଗାଧୋଇବା ବେଳ ହେଲା । ଝିଅ ହାତରେ ଘରଣୀ ତେଲ ପଠାଇ ଦେଲା । ଝିଅ କହିଲା, 'ବାପା ! ବେଳ ହେଲାଣି, ତେଲ ଲଗାଇ ଗାଧୋଇପଡ଼ ।' ସେ କହିଲା, 'ତୁ ଯାଆ, ମୋର ବର୍ତ୍ତମାନ କାମ ଅଛି ।' ବେଳ ଗୋଟାଏ ଦୁଇଟା ହେଲା, ସେତେବେଳେ ବି ଚାଷୀ ବିଲରେ କାମ କରୁଛି; ଗାଧୋଇବାର ନାଆଁ ନାହିଁ; ସେତେବେଳେ ତା'ର ସ୍ତ୍ରୀ ପଡ଼ିଆ ପାଖକୁ ଆସି କହିଲା, 'ବର୍ତ୍ତମାନ ସୁଦ୍ଧା ଗାଧୋଉ ନାହଁ କାହିଁକି ? ଭାତ ଶୁଖିଗଲାଣି, ତୁମର ସବୁଥିରେ ବଳାବଳି ! ନ ହେଲେ କାଲି କରିବ କିମ୍ବା ଖାଇପିଇ କରିବ ।' ଏକଥା ଶୁଣି ଚାଷୀ ଗାଳି

ଫାଳି ଦେଇ କୋଦାଳ ଧରି ତାକୁ ଗୋଡ଼ାଇ ଆସିଲା, ଆଉ କହିଲା, 'ତୋର ଅକଲ ନାହିଁ ? ବର୍ଷା ହେଉ ନାହିଁ, ଚାଷବାସ କିଛି ହେଲା ନାହିଁ; ଆଉ ପିଲାପିଲି କଅଣ ଖାଇବେ ? ନ ଖାଇ ସମସ୍ତେ ମରିବା ! ମୁଁ ପ୍ରତିଜ୍ଞା କରିଛି, ବିଲକୁ ଆଜି ପାଣି ଆଣିବି, ତେବେ ଗାଧୋଇବା ଖାଇବା ଭାବିବି ।' ସ୍ତ୍ରୀ ଅବସ୍ଥା ଦେଖି ଦୌଡ଼ି ପଳାଇଲା । ଚାଷୀ ସମସ୍ତ ଦିନ ହାଡ଼ଭଙ୍ଗା ପରିଶ୍ରମ କରି ସନ୍ଧ୍ୟା ବେଳକୁ ନାଳସଙ୍ଗେ ନଦୀକୁ ଯୋଗ କରିଦେଲା । ସେତେବେଳେ ଗୋଟିଏ ପାଖରେ ବସି ଦେଖିଲା ଯେ, ବିଲକୁ କଳ କଳ ହୋଇ ନଦୀରୁ ପାଣି ଆସୁଛି । ତା'ର ମନ ସେତେବେଳେ ଶାନ୍ତ, ଆନନ୍ଦରେ ପୂର୍ଣ୍ଣ ହେଲା । ସେତେବେଳେ ଘରକୁ ଯାଇ ସ୍ତ୍ରୀକୁ ଡାକି କହିଲା, 'ଆଣ, ବର୍ତ୍ତମାନ ତେଲ ଦେ, ଆଉ ଟିକିଏ ତମାଖୁ ସଜେଇ ଦେ ।' ତା'ପରେ ନିଶ୍ଚିନ୍ତରେ ଗାଧୋଇ, ଖାଇ, ସୁଖରେ ଘୁଙ୍ଗୁଡ଼ି ମାରି ଶୋଇଲା । ଏହାକୁ କହନ୍ତି ଜିଦ୍—ତୀବ୍ର ବୈରାଗ୍ୟର ଉପମା ।

''ଆଉ ଜଣେ ଚାଷୀ, ସେ ମଧ୍ୟ ବିଲକୁ ପାଣି ଆଣୁଥିଲା । ତା'ର ସ୍ତ୍ରୀ ଯେତେବେଳେ ଗଲା ଆଉ କହିଲା, 'ବହୁତ ବେଳ ହେଲାଣି, ବର୍ତ୍ତମାନ ଆସ, ଏତେ ଆଉ ଖଟ ନାହିଁ'—ସେତେବେଳେ ସେ ବେଶୀ କିଛି କଥା ନ କହି କୋଦାଳ ରଖିଦେଇ ସ୍ତ୍ରୀକୁ କହିଲା, 'ତୁ ଯେତେବେଳେ କହୁଛୁ, ତାହା ହେଲେ ଚାଲ' । (ସମସ୍ତଙ୍କର ହାସ୍ୟ) । ସେ ଚାଷୀର ଆଉ ବିଲକୁ ପାଣି ଆଣିବା ହେଲା ନାହିଁ । ଏଇଟି ମନ୍ଦ ବୈରାଗ୍ୟର ଉପମା ।

''ଖୁବ୍ ଜିଦ୍ ନ ହେଲେ ଚାଷୀର ଯେପରି ବିଲକୁ ପାଣି ଆସେ ନାହିଁ, ସେହିପରି ମନୁଷ୍ୟର ଈଶ୍ୱରଲାଭ ହୁଏ ନାହିଁ ।''

## (୪)

ଆପୂର୍ୟମାଣମଚଲପ୍ରତିଷ୍ଠଂ ସମୁଦ୍ରମାପଃ ପ୍ରବିଶନ୍ତି ଯଦ୍ୱତ୍ ।
ତଦ୍ୱତ୍କାମା ୟଂ ପ୍ରବିଶନ୍ତି ସର୍ବେ ସ ଶାନ୍ତିମାପ୍ନୋତି ନ କାମକାମୀ ॥
—ଗୀତା, ୨/୭୦

## ଦାସତ୍ୱ ଓ କାମିନୀ-କାଞ୍ଚନ

ଶ୍ରୀରାମକୃଷ୍ଣ (ବିଜୟଙ୍କ ପ୍ରତି)—ଆଗେ ଏତେ ଆସୁଥିଲ, ବର୍ତ୍ତମାନ ଆସୁନାହଁ କାହିଁକି ?

ବିଜୟ—ଏଠାକୁ ଆସିବାକୁ ଖୁବ୍ ଇଚ୍ଛା; କିନ୍ତୁ ମୁଁ ସ୍ୱାଧୀନ ନୁହେଁ । ସମାଜର କାର୍ଯ୍ୟ ସ୍ୱୀକାର କରିଛି ।

ଶ୍ରୀରାମକୃଷ୍ଣ—କାମିନୀ-କାଞ୍ଚନ ଜୀବକୁ ବଦ୍ଧ କରେ, ଜୀବର ସ୍ୱାଧୀନତା ଯାଏ । କାମିନୀରୁ ହିଁ କାଞ୍ଚନ ଦରକାର ! ସେଥିପାଇଁ ପରର ଦାସତ୍ୱ କରିବାକୁ ପଡ଼େ । ସ୍ୱାଧୀନତା ଚାଲିଯାଏ । ତୁମ ମନ ମୁତାବକ କାମ କରିପାର ନାହିଁ ।

''ଜୟପୁରରେ ଗୋବିନ୍ଦଜୀଙ୍କର ପୂଜକମାନେ ପ୍ରଥମେ ପ୍ରଥମେ ବିବାହ କରି ନ ଥିଲେ । ସେତେବେଳେ ଖୁବ୍ ତେଜସ୍ୱୀ ଥିଲେ । ରାଜା ଥରେ ଡାକି ପଠାଇଥିଲେ, ସେତେବେଳେ ସେମାନେ ଯାଇ ନ ଥିଲେ । କହିଥିଲେ— 'ରାଜାଙ୍କୁ ଆସିବାକୁ କହ ।' ତା'ପରେ ରାଜା ଓ ପାଞ୍ଚଜଣ ମିଶି ସେମାନଙ୍କୁ ବିବାହ ଦେଇଦେଲେ । ସେତେବେଳେ ରାଜାଙ୍କ ସଙ୍ଗରେ ଦେଖା କରିବା ପାଇଁ ଆଉ କାହାରିକୁ ଡାକିବାକୁ ପଡ଼ିଲା ନାହିଁ । ନିଜେ ନିଜେ ଯାଇ ଉପସ୍ଥିତ । 'ମହାରାଜ ଆଶୀର୍ବାଦ କରିବାକୁ ଆସିଛି, ଏଇ ନିର୍ମାଲ୍ୟ ଆଣିଛି, ଧାରଣ କରନ୍ତୁ ।' ଆପେ ଆପେ ଆସିବାକୁ ପଡ଼େ—ଆଜି ଘର ତୋଳିବାକୁ ହେବ, ଆଜି ପୁଅର ଅନ୍ନପ୍ରାଶନ, ଆଜି ବିଦ୍ୟାରମ୍ଭ, ଏଇସବୁ ।

''ବାରଶହ ନେଡ଼ା, ତେରଶହ ନେଡ଼ୀ, ତାର ସାକ୍ଷୀ ଉଦମ ସାଡ଼ୀ—ଏ ଗଳ୍ପଟି ତ ଜାଣ । ନିତ୍ୟାନନ୍ଦ ଗୋସ୍ୱାମୀଙ୍କର ପୁଅ ବୀରଭଦ୍ରଙ୍କର ତେରଶ ନେଡ଼ା (ଲଣ୍ଡା, ବୈଷ୍ଣବ) ଶିଷ୍ୟ ଥିଲେ—ସେମାନେ ଯେତେବେଳେ ସିଦ୍ଧ ହୋଇଗଲେ, ବୀରଭଦ୍ରଙ୍କର ଭୟ ହେଲା । ସେ ଭାବିଲେ, 'ଏମାନେ ସିଦ୍ଧ ହେଲେ, ଲୋକଙ୍କୁ ଯାହା କହିବେ ତାହା ଫଳିବ; ଯେଉଁଆଡ଼େ ଯିବେ ସେଆଡ଼େ ଭୟ; କାରଣ ଲୋକେ ନ ଜାଣି ମଧ ଯଦି ଅପରାଧ କରନ୍ତି, ତାଙ୍କର ଅନିଷ୍ଟ ହେବ ।' ଏହା ଭାବି ବୀରଭଦ୍ର ସେମାନଙ୍କୁ ଡାକି କହିଲେ—ତୁମେମାନେ ଗଙ୍ଗାକୁ ଯାଇ ସନ୍ଧ୍ୟା ଆହ୍ନିକ କରିଆସ । ନେଡ଼ାମାନଙ୍କର ଏତେ ତେଜ ଯେ ସନ୍ଧ୍ୟା କରୁ କରୁ ସମାଧି ହେଲା । କେତେବେଳେ ଜୁଆର ମୁଣ୍ଡ ଉପରଦେଇ ଚାଲିଯାଇଛି ହୋସ୍ ନାହିଁ । ପୁଣି ଭଙ୍ଗା ପଡ଼ିଛି, ତେବେ ବି ଧ୍ୟାନ ଭାଙ୍ଗୁନାହିଁ । ତେରଶହ ମଧ୍ୟରୁ ଶହେ ଜଣ ବୁଝିଥିଲେ—ବୀରଭଦ୍ର କଅଣ କହିବେ । ଗୁରୁ-ବାକ୍ୟ ଲଙ୍ଘନ କରିବେ ନାହିଁ; ସେଥିପାଇଁ ସେମାନେ ଅନ୍ତର ହୋଇଗଲେ; ଆଉ ବୀରଭଦ୍ରଙ୍କ ସହିତ ଦେଖା କଲେ ନାହିଁ । ବାକି ବାରଶହ ଦେଖାକଲେ । ବୀରଭଦ୍ର କହିଲେ, 'ଏହି ତେରଶହ ନେଡ଼ୀ (ଲାଣ୍ଡୀ—ସ୍ତ୍ରୀ-ବୈଷ୍ଣବ) ତୁମମାନଙ୍କର ସେବା କରିବେ ତୁମେମାନେ ଏମାନଙ୍କୁ ବିବାହ କର ।' ସେମାନେ କହିଲେ, 'ଯେ ଆଜ୍ଞା, କିନ୍ତୁ ଆମମାନଙ୍କ ମଧ୍ୟରୁ ଶହେ ଜଣ କୁଆଡ଼େ ଚାଲି ଯାଇଛନ୍ତି ।' ବର୍ତ୍ତମାନ ଏହି ବାରଶହ ନେଡ଼ାଙ୍କର—ପ୍ରତ୍ୟେକର ସେବାଦାସୀ ସଙ୍ଗେ ସଙ୍ଗେ ରହିଲେ । ସେତେବେଳେ ଆଉ ସେ ତେଜ ନାହିଁ, ତପସ୍ୟାର ସେପରି ବଳ ନାହିଁ । ସ୍ତ୍ରୀଲୋକ ସଙ୍ଗରେ ରହିବାରୁ ସେ ବଳ ରହିଲା ନାହିଁ; କାରଣ, ସେପରି ସଙ୍ଗରେ ସ୍ୱାଧୀନତା ଲୋପ ପାଇଯାଏ । (ବିଜୟଙ୍କ ପ୍ରତି) ତୁମେମାନେ ନିଜେ ନିଜେ ତ ଦେଖୁଛ, ପରର କର୍ମ ସ୍ୱୀକାର କରି କିପରି ହୋଇ ରହିଛ ! ଆଉ ଦେଖ, ଏତେ ପାଶ୍ କରିବା ଲୋକ, କେତେ ଇଂରେଜୀ ପଢ଼ା ପଣ୍ଡିତ, ସାହେବଙ୍କ ଚାକିରୀ ସ୍ୱୀକାର କରି ସେମାନଙ୍କ ବୁଟ୍‌ଜୋତାର ଗୋଇଠା ଦୁଇଓଳି ଖାଆନ୍ତି । ଏହାର କାରଣ କେବଳ 'କାମିନୀ' ।

ବିବାହ କରି ନଦିଆର ହାଟ ବସାଇ ବର୍ତ୍ତମାନ ଆଉ ହାଟ ଉଠାଇବାର ଉପାୟ ନାହିଁ । ତେଣୁ ଏତେ ଅପମାନବୋଧ, ଏତେ ଦାସତ୍ୱ—ଯନ୍ତ୍ରଣା !

**ଈଶ୍ୱରଲାଭ ପରେ କାମିନୀଙ୍କୁ ମାତୃଭାବରେ ପୂଜା**

''ଯଦି ଥରେ ଏହିପରି ତୀବ୍ର ବୈରାଗ୍ୟ ହୋଇ ଈଶ୍ୱରଲାଭ ହୁଏ, ତାହା ହେଲେ ଆଉ ସ୍ତ୍ରୀ-ଲୋକଠାରେ ଆସକ୍ତି ରହେ ନାହିଁ । ଘରେ ରହିଲେ ମଧ୍ୟ ସ୍ତ୍ରୀ-ଲୋକଙ୍କଠାରେ ଆସକ୍ତି ରହେ ନାହିଁ, ସେମାନଙ୍କ ଆଡୁ ଭୟ ରହେ ନାହିଁ । ଯଦି ଗୋଟିଏ ଚୁମ୍ବକ ପଥର ଖୁବ୍ ବଡ଼ ହୁଏ, ଆଉ ଗୋଟିଏ ଛୋଟ ହୁଏ, ତାହାହେଲେ ଲୁହାକୁ କିଏ ଟାଣିନେବ ? ବଡ଼ଟା ହିଁ ଟାଣି ନେବ । ଈଶ୍ୱର ବଡ଼ ଚୁମ୍ବକ ପଥର; ତାଙ୍କ ନିକଟରେ କାମିନୀ ଛୋଟ ଚୁମ୍ବକ ପଥର । କାମିନୀ କଅଣ କରିବ ?''

ଜଣେ ଭକ୍ତ—ମହାଶୟ ! ସ୍ତ୍ରୀଲୋକକୁ କ'ଣ ଘୃଣା କରିବୁ ?

ଶ୍ରୀରାମକୃଷ୍ଣ—ଯେ ଈଶ୍ୱରଲାଭ କରିଛନ୍ତି, ସେ କାମିନୀକୁ ଆଉ ଅନ୍ୟ ଚକ୍ଷୁରେ ଦେଖନ୍ତି ନାହିଁ ଯେ ଭୟ ହେବ । ସେ ଠିକ୍ ଦେଖନ୍ତି ଯେ ସ୍ତ୍ରୀ-ଲୋକମାନେ ମା ବ୍ରହ୍ମମୟୀଙ୍କର ଅଂଶ, ଆଉ ମା'-ବୋଧରେ ସମସ୍ତଙ୍କୁ ପୂଜା କରନ୍ତି ।

ଶ୍ରୀରାମକୃଷ୍ଣ (ବିଜୟଙ୍କ ପ୍ରତି)—ତୁମେ ମଝିରେ ମଝିରେ ଆସିବ, ତୁମକୁ ଦେଖିବାକୁ ଭାରୀ ଇଚ୍ଛା ହୁଏ ।

(୫)

## ଗୁରୁ କିଏ ? ଆଦେଶବାଦ ଓ ଅଧିକାରୀ ନିର୍ଣ୍ଣୟ

ବିଜୟ—ବ୍ରାହ୍ମସମାଜର କାର୍ଯ୍ୟ କରିବାକୁ ହୁଏ; ତେଣୁ ସବୁବେଳେ ଆସିପାରେ ନାହିଁ । ସୁବିଧା ହେଲେ ଆସିବି ।

ଶ୍ରୀରାମକୃଷ୍ଣ (ବିଜୟଙ୍କ ପ୍ରତି)—ଦେଖ, ଆଚାର୍ଯ୍ୟଙ୍କର କର୍ମ ଖୁବ୍ କଠିନ; ଈଶ୍ୱରଙ୍କର ସାକ୍ଷାତ୍ ଆଦେଶ ବ୍ୟତୀତ ଲୋକଶିକ୍ଷା ଦିଆଯାଏ ନାହିଁ ।

''ଯଦି ଆଦେଶ ନ ପାଇ ଉପଦେଶ ଦିଅ ଲୋକ ଶୁଣିବେ ନାହିଁ । ସେପରି ଉପଦେଶର କୌଣସି ଶକ୍ତି ନାହିଁ । ଆଗେ ସାଧନ କରି କିମ୍ବା ଯେକୌଣସି ପ୍ରକାରେ ହେଉ ଈଶ୍ୱରଙ୍କୁ ଲାଭ କରିବାକୁ ହୁଏ । ତାଙ୍କର ଆଦେଶ ପାଇଲେ ଲେକ୍‌ଚର୍ ଦେଇପାର ।

''ସେଦେଶରେ (ଶ୍ରୀରାମକୃଷ୍ଣଙ୍କ ଜନ୍ମଭୂମି କାମାରପୁକୁର ଗ୍ରାମରେ) ଗୋଟିଏ ପୋଖରୀ ଅଛି; ତାହାର ନାମ ହାଲଦାର ପୋଖରୀ । ତା' କୂଳରେ ପ୍ରତିଦିନ ଲୋକେ ଝାଡ଼ା ଫେରନ୍ତି । ସକାଳେ ଯେଉଁମାନେ ଘାଟକୁ ଆସନ୍ତି ସେମାନେ ଖୁବ୍ ଗାଳି ଦେଇ ଗୋଳମାଳ କରନ୍ତି । ଗାଳିରେ କୌଣସି ଫଳ ହୁଏ ନାହିଁ—ତା'ପରଦିନ ପୁଣି ସେହି ମଳତ୍ୟାଗ । ଶେଷରେ କମ୍ପାନୀର ଚପରାଶୀ ଆସି ନୋଟିସ୍ ଟାଙ୍ଗି ଦେଲା ଯେ, 'ଏଠାରେ କେହି ଏପରି କାର୍ଯ୍ୟ କରିପାରିବେ

ନାହିଁ; ଯଦି କରନ୍ତି, ତାହା ହେଲେ ଶାସ୍ତି ପାଇବେ ।' ଏହି ନୋଟିସ୍ ପରେ ଆଉ କେହି କୂଳରେ ଝାଡ଼ା ଫେରିଲେ ନାହିଁ । (ହାସ୍ୟ)

''ତାଙ୍କର ଆଦେଶ ପରେ ଯେକୌଣସି ସ୍ଥାନରେ ଆଚାର୍ଯ୍ୟ ହୋଇପାର ଓ ଲେକ୍‌ଚର ଦେଇପାର । ଯିଏ ତାଙ୍କର ଆଦେଶ ପାଏ, ସେ ତାଙ୍କଠାରୁ ଶକ୍ତି ପାଏ । ସେତେବେଳେ ସେ ଏହି କଠିନ ଆଚାର୍ଯ୍ୟଙ୍କର କାର୍ଯ୍ୟ କରିପାରେ ।

''ଜଣେ ବଡ଼ ଜମିଦାରଙ୍କ ସଙ୍ଗରେ ଗୋଟିଏ ସାମାନ୍ୟ ପ୍ରଜା ବଡ଼ ଅଦାଲତରେ ମୋକଦ୍ଦମା କରିଥିଲା । ସେତେବେଳେ ଲୋକେ ବୁଝିଥିଲେ ଯେ, ଏହି ପ୍ରଜା ପଛରେ ଜଣେ ବଳବାନ୍ ଲୋକ ଅଛି—ହୁଏତ ଆଉ ଜଣେ ବଡ଼ ଜମିଦାର ତାହା ପଛରେ ରହି ମୋକଦ୍ଦମା ଚଳାଉଛି । ମନୁଷ୍ୟ ସାମାନ୍ୟ ଜୀବ, ଈଶ୍ୱରଙ୍କର ସାକ୍ଷାତ୍ ଶକ୍ତି ନ ପାଇଲେ ଆଚାର୍ଯ୍ୟ ଏପରି କଠିନ କାର୍ଯ୍ୟ କରିପାରନ୍ତି ନାହିଁ ।''

ବିଜୟ—ମହାଶୟ ! ବ୍ରାହ୍ମସମାଜରେ ଯେଉଁ ଉପଦେଶାଦି ଦିଆଯାଏ, ସେଥିରେ କ'ଣ ଲୋକର ପରିତ୍ରାଣ ହୁଏ ନାହିଁ ?

**ସଚ୍ଚିଦାନନ୍ଦ ଗୁରୁ ଓ ମୁକ୍ତି**

ଶ୍ରୀରାମକୃଷ୍ଣ—ମନୁଷ୍ୟର କି ସାଧ୍ୟ ଯେ ଅପରକୁ ସଂସାର-ବନ୍ଧନରୁ ମୁକ୍ତ କରିବ ! ଯାହାଙ୍କର ଏହି ଭୁବନମୋହିନୀ ମାୟା, କେବଳ ସେ ହିଁ ଏହି ମାୟାରୁ ମୁକ୍ତ କରିପାରନ୍ତି ! ସଚ୍ଚିଦାନନ୍ଦ ଗୁରୁ ଭିନ୍ନ ଆଉ ଗତି ନାହିଁ । ଯେଉଁମାନେ ଈଶ୍ୱରଲାଭ କରିନାହାନ୍ତି, ଯେଉଁମାନେ ତାଙ୍କର ଆଦେଶ ପାଇନାହାନ୍ତି, ଯେଉଁମାନେ ଈଶ୍ୱରଙ୍କର ଶକ୍ତିରେ ଶକ୍ତିମାନ ହୋଇ ନାହାନ୍ତି, ସେମାନଙ୍କର କି ସାଧ୍ୟ ଯେ ଜୀବର ଭବବନ୍ଧନ ମୋଚନ କରିବେ । ମୁଁ ଦିନେ ପଞ୍ଚବଟୀ[୧] ପାଖ ଦେଇ ଝାଉଁତଳକୁ ଶୌଚ ପାଇଁ ଯାଉଥିଲି, ଶୁଣିଲି ଯେ ଗୋଟିଏ ବ୍ରାହ୍ମଣୀବେଙ୍ଗ ଖୁବ୍ ବୋବାଉଛି । ବୋଧ ହେଲା ସାପ ଧରିଛି । ଅନେକ ସମୟ ପରେ ଯେତେବେଳେ ଫେରି ଆସୁଛି, ସେତେବେଳେ ବି ଦେଖେ ବେଙ୍ଗଟା ଖୁବ୍ ବୋବାଉଛି । ଏଥର ଉଙ୍କିମାରି ଦେଖିଲି କଅଣ ହୋଇଛି । ଦେଖେ ଯେ ଗୋଟିଏ ଧଣ୍ଡ ବେଙ୍ଗକୁ ଧରିଛି—ଛାଡ଼ିପାରୁ ନାହିଁ କି ଗିଳିପାରୁ ନାହିଁ; ବେଙ୍ଗର ଯନ୍ତ୍ରଣା ଯାଉନାହିଁ । ସେତେବେଳେ ଭାବିଲି—ଆରେ ! ଯଦି ଜାତିଆ ସାପ ଧରିଥାଆନ୍ତା, ତାହାହେଲେ ତିନି ଡାକରେ ବେଙ୍ଗଟା ଚୁପ୍ ହୋଇ ଯାଇଥାନ୍ତା; ଏ ଗୋଟାଏ ଧଣ୍ଡ ଧରିଛି, ତେଣୁ ସାପଟାର ଯନ୍ତ୍ରଣା, ଆଉ ବେଙ୍ଗଟାର ମଧ୍ୟ ଯନ୍ତ୍ରଣା !

''ଯଦି ସଦ୍‌ଗୁରୁ ହୁଅନ୍ତି, ତାହା ହେଲେ ଜୀବର ଅହଂକାର ତିନି ଡାକରେ ଘୁଞ୍ଚିଯାଏ । ଗୁରୁ କଞ୍ଚା ହେଲେ ଗୁରୁର ଯନ୍ତ୍ରଣା ଆଉ ଶିଷ୍ୟର ମଧ୍ୟ

୧. ଦକ୍ଷିଣେଶ୍ୱର କାଳୀମନ୍ଦିର ପାଖରେ ପଞ୍ଚବଟୀ ।

ଯନ୍ତ୍ରଣା—ଶିଷ୍ୟର ଅହଂକାର ଆଉ ଘୁଞ୍ଚେ ନାହିଁ, ସଂସାର-ବନ୍ଧନ ଆଉ କଟେ ନାହିଁ; କଞ୍ଚା ଗୁରୁର ପାଲରେ ପଡ଼ିଲେ ଶିଷ୍ୟ ଆଉ ମୁକ୍ତ ହୁଏ ନାହିଁ ।''

(୬)

ଅହଂକାରବିମୂଢ଼ାତ୍ମା କର୍ତ୍ତାହମିତି ମନ୍ୟତେ । —ଗୀତା, ୩/୨୭

## ମୁକ୍ତି ବା ଈଶ୍ୱରଲାଭର ଉପାୟ

ବିଜୟ—ମହାଶୟ, ଆମେମାନେ ଏପରି ବଦ୍ଧ ହୋଇଛୁ କାହିଁକି ? କାହିଁକି ଈଶ୍ୱରଙ୍କୁ ଦେଖିପାରୁ ନାହୁଁ ?

ଶ୍ରୀରାମକୃଷ୍ଣ—ଜୀବର ଅହଂକାର ହିଁ ମାୟା । ଏହି ଅହଂକାର ହିଁ ସବୁ ଘୋଡ଼ାଇ ରଖିଛି । 'ମୁଁ ମଲେ ଘୁଞ୍ଚିବ ଜଞ୍ଜାଳ'—ଯଦି ଈଶ୍ୱରଙ୍କ କୃପାରୁ 'ମୁଁ ଅକର୍ତ୍ତା' ଏହି ବୋଧ ହୁଏ, ତାହା ହେଲେ ସେ ବ୍ୟକ୍ତି ତ ଜୀବନ୍ମୁକ୍ତ ହୋଇଗଲା । ତା'ର ଆଉ ଭୟ ନାହିଁ ।

''ଏହି ମାୟା ବା ଅହଂ ଯେପରି ମେଘ ସଦୃଶ । ସାମାନ୍ୟ ମେଘ ସକାଶେ ସୂର୍ଯ୍ୟ ଆଉ ଦେଖାଯାଆନ୍ତି ନାହିଁ; ମେଘ ଚାଲିଗଲେ ସୂର୍ଯ୍ୟ ପୁଣି ଦେଖାଯାଆନ୍ତି । ଯଦି ଗୁରୁଙ୍କ କୃପାରୁ ଥରେ ଅହଂବୁଦ୍ଧି ଯାଏ, ତାହା ହେଲେ ଈଶ୍ୱରଙ୍କର ଦର୍ଶନ ହୁଏ ।

''ଅଢ଼େଇ ହାତ ଦୂରରେ ଶ୍ରୀରାମଚନ୍ଦ୍ର, ସେ ସାକ୍ଷାତ୍ ଈଶ୍ୱର; ମଝିରେ ସୀତା ରୂପିଣୀ ମାୟା ବ୍ୟବଧାନ ଅଛି ବୋଲି ଲକ୍ଷ୍ମଣରୂପକ ଜୀବ ସେହି ଈଶ୍ୱରଙ୍କୁ ଦେଖିପାରୁ ନାହାନ୍ତି ।

''ହେଇ ଦେଖ, ମୁଁ ଏହି ଗାମୁଛା ଖଣ୍ଡିକ ଦ୍ୱାରା ମୁହଁକୁ ଆଢୁଆଳରେ ରଖିଛି; ତୁମେ ଆଉ ମୋତେ ଦେଖିପାରୁ ନାହଁ; ତଥାପି ମୁଁ ଏତେ ପାଖରେ । ସେହିପରି ଭଗବାନ ସବୁଠାରୁ ପାଖରେ, ତଥାପି ଏହି ମାୟା-ଆବରଣ ଥିବାରୁ ତାହାଙ୍କୁ ଦେଖାଯାଇପାରୁ ନାହିଁ ।

''ଜୀବ ତ ସଚ୍ଚିଦାନନ୍ଦସ୍ୱରୂପ, କିନ୍ତୁ ଏହି ମାୟା ବା ଅହଂକାରରେ ସେମାନଙ୍କର ନାନା ଉପାଧି ହୋଇପଡ଼ିଛି, ଆଉ ସେମାନେ ନିଜର ସ୍ୱରୂପ ଭୁଲିଯାଇଛନ୍ତି ।

''ଗୋଟିଏ ଗୋଟିଏ ଉପାଧି ହୁଏ, ଆଉ ଜୀବର ସ୍ୱଭାବ ବଦଳି ଯାଏ । ଯେ କଳା ଧଡ଼ିର ଲୁଗା ପିନ୍ଧିଛି, ସଙ୍ଗେ ସଙ୍ଗେ ଦେଖିବ, ତାହାର 'ନିଧୁର ଟପ୍ପା' ସ୍ୱର ଆସି ଜୁଟିବ; ଆଉ ତାସ୍ ଖେଳିବା, ବୁଲିବାକୁ ଗଲାବେଳେ ହାତରେ ବାଡ଼ି, ଏସବୁ ଆସି ଜୁଟେ । ରୋଗା ଲୋକ ଯଦି ବୁଟ୍ ଜୋତା ପିନ୍ଧେ, ସେ ସଙ୍ଗେ ସଙ୍ଗେ ସୁସୂରି ମାରିବାକୁ ଆରମ୍ଭ କରେ, ଆଉ ପାହାଚ ଉଠିବା ବେଳେ ସାହେବମାନଙ୍କ ପରି କୁଦାମାରି ଉଠେ । ମଣିଷ ହାତରେ ଯଦି କଲମ ଥାଏ, କଲମର ଏପରି ଗୁଣ

ଯେ, ଯଦି ଖଣ୍ଡେ କାଗଜ ଫାଗଜ ପାଏ, ତାହା ହେଲେ ତା' ଉପରେ ସରସର୍ କରି ଗାର ଟାଣିବାକୁ ଲାଗେ ।

"ଟଙ୍କା ମଧ୍ୟ ଗୋଟିଏ ବିଲକ୍ଷଣ ଉପାଧି । ଟଙ୍କା ହେଲା କ୍ଷଣି ମନୁଷ୍ୟ ଅନ୍ୟ ପ୍ରକାରର ହୋଇଯାଏ, ଆଉ ପୂର୍ବ ମଣିଷ ହୋଇ ରହେ ନାହିଁ ।

"ଏଠାକୁ ଜଣେ ବ୍ରାହ୍ମଣ ଯିବାଆସିବା କରୁଥିଲା । ସେ ବାହାରକୁ ବେଶ୍ ବିନୟୀ ଦେଖାଯାଉଥିଲା; କିନ୍ତୁ କିଛିଦିନ ପରେ ଆମେମାନେ କୋନ୍ନଗର ଯାଇଥିଲୁ । ହୃଦୁ ସଙ୍ଗରେ ଥିଲା । ନୌକାରୁ ଓହ୍ଲାଇ ଦେଖେ ସେହି ବ୍ରାହ୍ମଣ ଗଙ୍ଗାକୂଳରେ ବସିଛି । ବୋଧହୁଏ ପବନ ଖାଉଥିଲା । ଆମମାନଙ୍କୁ ଦେଖି କହିଲା, 'କି ଠାକୁରେ କିପରି ଅଛ ?' ତା' କଥାର ସ୍ୱର ଶୁଣି ମୁଁ ହୃଦୁକୁ କହିଲି, 'ଆରେ ହୃଦୁ ! ଏ ଲୋକଟିର ଟଙ୍କା ହୋଇଛି, ତେଣୁ ଏପରି କଥା ।' ହୃଦୁ ହସିବାକୁ ଲାଗିଲା ।

"ଗୋଟିଏ ବେଙ୍ଗର ଗୋଟାଏ ଟଙ୍କା ଥିଲା । ତା'ର ଗାତ ଭିତରେ ଟଙ୍କାଟି ଥିଲା । ଗୋଟିଏ ହାତୀ ସେହି ଗାତ ଡେଇଁ ଯାଉଥିଲା; ତହୁଁ ବେଙ୍ଗଟି ବାହାରି ଆସି ଖୁବ୍ ରାଗିଯାଇ ହାତୀକୁ ଗୋଇଠା ମାରିବାକୁ ବାହାରିଲା, ଏବଂ କହିଲା, 'ତୋର ଏତେ ଦିମାକ୍ ଯେ ମୋତେ ଡେଇଁ କରି ଯାଉଛୁ ?' ଟଙ୍କାର ଏତେ ଅହଂକାର !"

**ସପ୍ତଭୂମି — ଅହଂକାର କେତେବେଳେ ଯାଏ — ବ୍ରହ୍ମଜ୍ଞାନର ଅବସ୍ଥା**

'ଜ୍ଞାନଲାଭ ହେଲେ ଅହଂକାର ଯାଇପାରେ । ଜ୍ଞାନଲାଭ ହେଲେ ସମାଧିସ୍ଥ ହୁଅନ୍ତି । ସମାଧିସ୍ଥ ହେଲେ ଅହଂ ଚାଲିଯାଏ । ସେହି ଜ୍ଞାନଲାଭ ଖୁବ୍ କଠିନ ।

"ବେଦରେ ଅଛି ଯେ, ସପ୍ତମ ଭୂମିକୁ ମନ ଗଲେ ଯାଇ ସମାଧି ହୁଏ, ସମାଧି ହେଲେ ତେବେ ଅହଂ ଯାଇପାରେ । ମନର ସଚରାଚର ବାସ କେଉଁଠାରେ ? ପ୍ରଥମ ତିନି ଭୂମିରେ; ଲିଙ୍ଗ, ଗୁହ୍ୟ, ନାଭି — ସେହି ତିନି ଭୂମି ସେତେବେଳେ ମନର ଆସକ୍ତି କେବଳ ସଂସାରରେ, କାମିନୀ-କାଞ୍ଚନରେ । ହୃଦୟରେ ଯେତେବେଳେ ମନର ବାସ ହୁଏ, ସେତେବେଳେ ଈଶ୍ୱରୀୟ ଜ୍ୟୋତି ଦର୍ଶନ ହୁଏ । ସେହି ବ୍ୟକ୍ତି ଜ୍ୟୋତି ଦର୍ଶନ କରି କହେ, 'ଏ କଅଣ ? ଏ କଅଣ ?' ତା'ପରେ କଣ୍ଠ — ସେଠାରେ ଯେତେବେଳେ ମନର ବାସ ହୁଏ, ସେତେବେଳେ କେବଳ ଈଶ୍ୱରୀୟ କଥା କହିବାକୁ ଓ ଶୁଣିବାକୁ ଇଚ୍ଛା ହୁଏ । କପାଳରେ — ଭ୍ରୂମଧ୍ୟକୁ ମନ ଗଲେ ସେତେବେଳେ ସଚ୍ଚିଦାନନ୍ଦ ରୂପ ଦର୍ଶନ ହୁଏ, ସେହି ରୂପ ସଙ୍ଗରେ ଆଲିଙ୍ଗନ କରିବାକୁ ଇଚ୍ଛା ହୁଏ, କିନ୍ତୁ ପାରେ ନାହିଁ । ଲଣ୍ଠନ ଭିତରେ ଆଲୋକର ଦର୍ଶନ ହୁଏ, କିନ୍ତୁ ସ୍ପର୍ଶ ହୁଏ ନାହିଁ; ଛୁଇଁବା ପରି ବୋଧହୁଏ, କିନ୍ତୁ ଛୁଆଁ ହୁଏ ନାହିଁ । ସପ୍ତମ ଭୂମିକୁ ମନ ଯେତେବେଳେ ଯାଏ, ସେତେବେଳେ ଅହଂ ଆଉ ରହେ ନାହିଁ, ସମାଧି ହୁଏ ।"

ବିଜୟ—ସେଠାରେ ପହଞ୍ଚିବା ପରେ, ଯେତେବେଳେ ବ୍ରହ୍ମଜ୍ଞାନ ହୁଏ, ମନୁଷ୍ୟ କଅଣ ଦେଖେ ?

ଶ୍ରୀରାମକୃଷ୍ଣ—ସପ୍ତମଭୂମିରେ ମନ ପହଞ୍ଚିଲେ କଅଣ ହୁଏ ମୁହଁରେ କହିହୁଏ ନାହିଁ ।

''ଜାହାଜ ଥରେ କଳାପାଣିକୁ ଗଲେ ଆଉ ଫେରେ ନାହିଁ । ଜାହାଜର ଖବର ଆଉ ମିଳେ ନାହିଁ ।

**ଅହଂ ଯାଏ ନାହିଁ—''ବଜ୍ଜାତ୍ ମୁଁ''—''ଦାସ ମୁଁ''**

''ଯେଉଁ 'ମୁଁ' ସଂସାରୀ କରେ, କାମିନୀ-କାଞ୍ଚନରେ ଆସକ୍ତ କରେ, ସେହି 'ମୁଁ' ବଜ୍ଜାତ 'ମୁଁ' । ଏହି 'ମୁଁ' ମଝିରେ ଅଛି ବୋଲି ଜୀବ ଓ ଆତ୍ମା ଅଲଗା ବୋଲି ବୋଧହୁଏ । ପାଣି ଉପରେ ଯଦି ଖଣ୍ଡେ ବାଡ଼ି ପକାଇ ଦିଆଯାଏ ତାହା ହେଲେ ଦୁଇଭାଗ ଦେଖାଯାଏ । ବସ୍ତୁତଃ ଏକା ପାଣି, ଲାଠି ପାଇଁ ଦୁଇଭାଗ ଦେଖାଯାଉଛି ।

''ଅହଂ କେବଳ ଏହି ବାଡ଼ି । ବାଡ଼ିଟି ଉଠାଇ ନିଅ, ସେହି ଏକା ଜଳ ରହିବ ।

''ବଜ୍ଜାତ 'ମୁଁ' କିଏ ? ଯେଉଁ 'ମୁଁ' କହେ—'ମୋତେ ଜାଣୁନା ! ମୋର ଏତେ ଟଙ୍କା; ମୋ ଠାରୁ କିଏ ବଡ଼ ଲୋକ ଅଛି ?' ଯଦି କେହି ତାର ଦଶ ଟଙ୍କା ଚୋରି କରେ, ତେବେ ସେ ପ୍ରଥମେ ତା' ଠାରୁ ଟଙ୍କା କାଢ଼ିନିଏ, ତା'ପରେ ଚୋରକୁ ଖୁବ୍ ମାରେ; ସେତିକିରେ ମଧ୍ୟ ଛାଡ଼େ ନାହିଁ; ପହରାବାଲା ଡାକି ପୋଲିସ୍‌ରେ ଦିଏ ଓ ଜେଲ୍ ଖଟାଏ । ବଜ୍ଜାତ୍ 'ମୁଁ' କହେ—ଜାଣେ ନା, ମୋର ଦଶଟଙ୍କା ନେଇଛି ! ଏତେ ସାହସ !''

ବିଜୟ—ଯଦି ଅହଂ ନ ଗଲେ ସଂସାର-ଆସକ୍ତି ଯିବ ନାହିଁ, ସମାଧି ହେବ ନାହିଁ; ତାହା ହେଲେ ବ୍ରହ୍ମଜ୍ଞାନ-ପଥ ଅବଲମ୍ବନ କରିବା ହିଁ ଭଲ—ଯେଉଁଥିରେ ସମାଧି ହୁଏ । ଆଉ ଭକ୍ତିଯୋଗର ଯଦି ଅହଂ ରହେ, ତେବେ ଜ୍ଞାନଯୋଗ ହିଁ ଭଲ ।

ଶ୍ରୀରାମକୃଷ୍ଣ—ଜଣେ ଦୁଇଜଣଙ୍କର ସମାଧି ହୋଇ 'ଅହଂ' ଯାଏ ସତ, କିନ୍ତୁ ପ୍ରାୟ ଯାଏ ନାହିଁ । ହଜାରେ ବିଚାର କର, 'ଅହଂ' ବୁଲି ବୁଲି ଆସି ପୁଣି ପହଞ୍ଚିବ । ଆଜି ଅଶ୍ୱତ୍ଥ ଗଛ କାଟି ଦିଅ, କାଲି ସକାଳେ ଦେଖିବ, ପୁଣି କୁଆଁ ବାହାରିଛି । **ମୁଁ ଯଦି ଏକାନ୍ତ ନ ଯାଏ, ତେବେ ଥାଉ ଶଳା 'ଦାସ ମୁଁ' ହୋଇ ।** 'ହେ ଈଶ୍ୱର ! ତୁମେ ପ୍ରଭୁ, ମୁଁ ଦାସ'—ଏହି ଭାବରେ ରହ । 'ମୁଁ ଦାସ', 'ମୁଁ ଭକ୍ତ' ଏପରି 'ମୁଁ' ରେ ଦୋଷ ନାହିଁ । ମିଠା ଖାଇଲେ ଅମ୍ଳ ହୁଏ; କିନ୍ତୁ ମିଶ୍ରି ମିଠା ଭିତରେ ଯାଏ ନାହିଁ ।

''ଜ୍ଞାନଯୋଗ ଖୁବ୍ କଠିନ । ଦେହାତ୍ମବୁଦ୍ଧି ନ ଗଲେ ଜ୍ଞାନ ହୁଏ ନାହିଁ । କଳି ଯୁଗରେ ଭକ୍ତିଯୋଗ । ଭକ୍ତିପଥ ସହଜ ପଥ । ଆନ୍ତରିକ ବ୍ୟାକୁଳ ହୋଇ ତାଙ୍କର ନାମଗୁଣ ଗାନ କର, ପ୍ରାର୍ଥନା କର—ଭଗବାନଙ୍କୁ ଲାଭ କରିବ, କୌଣସି ସନ୍ଦେହ ନାହିଁ ।

''ମନେକର ଜଳରାଶି ଉପରେ ବାଉଁଶ ନ ରଖି ଗୋଟିଏ ରେଖା ଟଣାଯାଇଛି—ଯେପରି ଦୁଇଭାଗ ଜଳ—ଏ ରେଖା ବେଶୀ ସମୟ ରହେ ନାହିଁ । 'ଦାସ ମୁଁ' , 'ଭକ୍ତ ମୁଁ' ଆଉ 'ବାଳକ ମୁଁ'—ଏମାନେ ଯେପରି 'ମୁଁ'ର ରେଖା ମାତ୍ର ।''

## (୭)

କ୍ଳେଶୋଽଧିକତରସ୍ତେଷାମବ୍ୟକ୍ତାସକ୍ତଚେତସାମ୍ ।
ଅବ୍ୟକ୍ତା ହି ଗତିର୍ଦୁଃଖଂ ଦେହବଦ୍ଭିରବାପ୍ୟତେ ॥—ଗୀତା, ୧୨/୫

## ଭକ୍ତିଯୋଗ ଓ ଜ୍ଞାନଯୋଗ

ବିଜୟ (ଶ୍ରୀରାମକୃଷ୍ଣଙ୍କ ପ୍ରତି)—ମହାଶୟ ! ଆପଣ 'ବଜ୍ଜାତ୍ ମୁଁ' ତ୍ୟାଗ କରିବାକୁ କହୁଛନ୍ତି । 'ଦାସ ମୁଁ' ରେ ଦୋଷ ନାହିଁ ?

ଶ୍ରୀରାମକୃଷ୍ଣ—ହଁ, 'ଦାସ ମୁଁ' ଅର୍ଥାତ୍ 'ମୁଁ ଈଶ୍ୱରଙ୍କର ଦାସ', 'ମୁଁ ତାଙ୍କର ଭକ୍ତ' —ଏହି ଅଭିମାନ—ଏଥିରେ ଦୋଷ ନାହିଁ; ବରଂ ଏଥିରେ ଈଶ୍ୱରଙ୍କୁ ଲାଭ କରାଯାଏ ।

ବିଜୟ—ଆଚ୍ଛା, ଯାହାର 'ଦାସ ମୁଁ' , ତାହାର କାମକ୍ରୋଧାଦି କିପରି ?

ଶ୍ରୀରାମକୃଷ୍ଣ—ଠିକ୍ ଭାବ ଯଦି ହୁଏ, ତାହା ହେଲେ କାମ-କ୍ରୋଧର କେବଳ ଆକାର ମାତ୍ର ରହେ । ଯଦି ଈଶ୍ୱରଲାଭ ପରେ 'ଦାସ ମୁଁ' ବା 'ଭକ୍ତ ମୁଁ' ଥାଏ, ସେ ବ୍ୟକ୍ତି କାହାର ଅନିଷ୍ଟ କରିପାରେ ନାହିଁ । ପରଶମଣି ଛୁଇଁବା ପରେ ତରବାରି ସୁନା ହୋଇଯାଏ, ତରବାରିର ଆକାର ରହେ; କିନ୍ତୁ କାହାକୁ ହିଂସା କରେ ନାହିଁ ।

''ନଡ଼ିଆ ଗଛର ବାହୁଙ୍ଗା ଶୁଖି ଝଡ଼ି ପଡ଼ିଲେ କେବଳ ଦାଗମାତ୍ର ରହେ । ସେହି ଦାଗରୁ ଜଣାପଡ଼େ ଯେ ଦିନେ ଏହି ଜାଗାରେ ବାହୁଙ୍ଗା ଥିଲା । ସେହିପରି ଯା'ର ଈଶ୍ୱର ଲାଭ ହୋଇଛି, ତାହାର ଅହଂକାରର ଦାଗମାତ୍ର ରହେ, କାମ-କ୍ରୋଧର ଆକାର କେବଳ ରହେ, ବାଳକର ଅବସ୍ଥା ହୁଏ । ବାଳକର ସତ୍ତ୍ୱ, ରଜଃ, ତମଃ ଗୁଣ ମଧ୍ୟରୁ କୌଣସି ଗୁଣ ଉପରେ ଆଣ୍ଟ ନାହିଁ । ବାଳକ କୌଣସି ଜିନିଷ ଉପରେ ଜିଦ୍ କରିବାକୁ ଯେତେ ସମୟ, ଛାଡ଼ିବାକୁ ବି ସେତିକି ସମୟ । ଖଣ୍ଡେ ପାଞ୍ଚଟଙ୍କାର ଲୁଗା ତୁମେ ଅଧଲାକର କଣ୍ଢେଇ ଦେଇ ଭୁଲାଇ ନେଇପାର; କିନ୍ତୁ ପ୍ରଥମେ ଖୁବ୍ ଜୋର୍ କରି କହିବ—'ନା, ମୁଁ ଦେବି ନାହିଁ, ମୋ ବାପା

କିଣି ଦେଇଛନ୍ତି ।' ବାଳକର ପୁଣି ସବୁ ସମାନ—ଏ ବଡ଼, ସେ ଛୋଟ, ଏପରି ବୋଧ ନାହିଁ । ସେଥିପାଇଁ ଜାତିବିଚାର ନାହିଁ । ମାଆ କହି ଦେଇଛି 'ସେ ତୋର ବଡ଼ଭାଇ'—ସେ ଅସ୍ପୃଶ୍ୟ ହେଲେ ମଧ୍ୟ ଏକା ପତ୍ରରେ ବସି ଭାତ ଖାଇବ । ବାଳକର ଘୃଣା ନାହିଁ, ଶୁଚି-ଅଶୁଚି ବୋଧ ନାହିଁ, ପାଇଖାନାକୁ ଯାଇ ମାଟିହାତ କରେ ନାହିଁ ।

**ଭକ୍ତିଯୋଗ ଯୁଗଧର୍ମ, ଜ୍ଞାନଯୋଗ ଅତି କଠିନ**

''କେହି କେହି ସମାଧି ପରେ ମଧ୍ୟ 'ଭକ୍ତ ମୁଁ' 'ଦାସ ମୁଁ' ଭାବ ନେଇ ରହନ୍ତି । 'ମୁଁ ଦାସ, ତୁମେ ପ୍ରଭୁ', 'ମୁଁ ଭକ୍ତ, ତୁମେ ଭଗବାନ'—ଏହି ଅଭିମାନ ଭକ୍ତର ରହେ । ଈଶ୍ୱରଲାଭ ପରେ ମଧ୍ୟ ରହେ; 'ମୁଁ' ସମ୍ପୂର୍ଣ୍ଣରୂପେ ଯାଏ ନାହିଁ । ପୁଣି ଏହି ଅଭିମାନ ଅଭ୍ୟାସ କରୁ କରୁ ଈଶ୍ୱରଲାଭ ହୁଏ । ଏହାର ନାମ ଭକ୍ତିଯୋଗ ।

''ଭକ୍ତିପଥରେ ଗଲେ ମଧ୍ୟ ବ୍ରହ୍ମଜ୍ଞାନ ହୁଏ । ଭଗବାନ ସର୍ବଶକ୍ତିମାନ, ଇଚ୍ଛା କଲେ ବ୍ରହ୍ମଜ୍ଞାନ ମଧ୍ୟ ଦେଇପାରନ୍ତି । ଭକ୍ତମାନେ ପ୍ରାୟ ବ୍ରହ୍ମଜ୍ଞାନ ଚାହାଁନ୍ତି ନାହିଁ । 'ମୁଁ ଦାସ; ତୁମେ ପ୍ରଭୁ', 'ମୁଁ ପୁଅ, ତୁମେ ମାଆ'—ଏହି ଅଭିମାନ ରଖିବାକୁ ଚାହାଁନ୍ତି ।''

ବିଜୟ—ଯେଉଁମାନେ ବେଦାନ୍ତ ବିଚାର କରନ୍ତି, ସେମାନେ ବି ତ ତାଙ୍କୁ ପାଆନ୍ତି ?

ଶ୍ରୀରାମକୃଷ୍ଣ—ହଁ, ବିଚାରପଥରେ ମଧ୍ୟ ସେ ମିଳନ୍ତି । ଏହାକୁ ଜ୍ଞାନଯୋଗ କହନ୍ତି । ବିଚାରପଥ ଅତ୍ୟନ୍ତ କଠିନ । ତୁମକୁ ତ ସପ୍ତଭୂମିର କଥା କହିଛି । ସପ୍ତମ ଭୂମିରେ ମନ ପହଞ୍ଚିଗଲେ ସମାଧି ହୁଏ; କିନ୍ତୁ କଳିରେ ଜୀବ ଅନ୍ନଗତ-ପ୍ରାଣ 'ବ୍ରହ୍ମ ସତ୍ୟ ଜଗତ୍ ମିଥ୍ୟା' କିପରି ବୋଧ ହେବ ? ଦେହବୁଦ୍ଧି ନ ଗଲେ ଏ ବୋଧ ହୁଏ ନାହିଁ । ମୁଁ ଦେହ ନୁହେଁ, ମୁଁ ମନ ନୁହେଁ, ଚତୁର୍ବିଂଶତି ତତ୍ତ୍ୱ ନୁହେଁ, ମୁଁ ସୁଖ-ଦୁଃଖର ଅତୀତ—ମୋର ପୁଣି ରୋଗ, ଶୋକ, ଜରା, ମୃତ୍ୟୁ କଅଣ ? ଏପରି ବୋଧ କଳିରେ ହେବା କଠିନ । ଯେତେ ବିଚାର କରନା କାହିଁକି କେଉଁ ବାଟେ ହେଲେ ଦେହାତ୍ମବୁଦ୍ଧି ଆସି ଦେଖାଦିଏ । ଅଶ୍ୱତ୍ଥ ଗଛ ଏବେ କାଟିଦେଲ, ଭାବିଲ ମୂଳସୁଦ୍ଧା ଉଠିଗଲା; କିନ୍ତୁ ତା'ପରଦିନ ସକାଳେ ଦେଖ, ଗୋଟିଏ କୁଆଁ ବାହାରିଛି ! ଦେହାଭିମାନ ଯାଏ ନାହିଁ; ତେଣୁ କଳିଯୁଗରେ ଭକ୍ତିଯୋଗ ଭଲ, ସହଜ ।

''ଆଉ ମୁଁ ଚିନି ହେବାକୁ ଚାହେଁ ନାହିଁ, ଚିନି ଖାଇବାକୁ ଭଲପାଏ । ମୋର କେବେ ହେଲେ ଏପରି କହିବାକୁ ଇଚ୍ଛା ହୁଏ ନାହିଁ ଯେ 'ମୁଁ ବ୍ରହ୍ମ'—କହେ 'ତୁମେ ଭଗବାନ୍, ମୁଁ ତୁମର ଦାସ ।' ପଞ୍ଚମ ଭୂମି ଆଉ ଷଷ୍ଠ ଭୂମିର ମଝିରେ ଭ୍ରମଣ ...ବା ଭଲ । ଷଷ୍ଠ ଭୂମି ପାର ହୋଇ ସପ୍ତମ ଭୂମିରେ ବେଶୀ ସମୟ ରହିବାକୁ ଇଚ୍ଛା ହୁଏ ନାହିଁ । ମୁଁ ତାଙ୍କର ନାମ-ଗୁଣ ଗାନ କରିବି, ଏହି ମୋର ଇଚ୍ଛା ।

ସେବ୍ୟ-ସେବକ ଭାବ ଖୁବ୍ ଭଲ । ଆଉ ଦେଖ ଗଙ୍ଗାର ହିଁ ଢେଉ, ଢେଉର ଗଙ୍ଗା ବୋଲି କେହି କହନ୍ତି ନାହିଁ ।

''ମୁଁ ସେହି ବ୍ରହ୍ମ (ସୋଽହଂ) —ଏ ଅଭିମାନ ଭଲ ନୁହେଁ । ଦେହାତ୍ମବୁଦ୍ଧି ଥାଇ ଯେ ଏ ଅଭିମାନ କରେ, ତାହାର ବିଶେଷ ହାନି ହୁଏ, ଆଗେଇପାରେ ନାହିଁ, କ୍ରମେ ଅଧଃପତନ ହୁଏ । ଅନ୍ୟକୁ ଠକାଏ; ଆଉ ନିଜକୁ ମଧ୍ୟ ଠକାଏ ନିଜର ଅବସ୍ଥା ବୁଝିପାରେ ନାହିଁ ।

**ଦ୍ୱିବିଧା ଭକ୍ତି**

''କିନ୍ତୁ ସାଧାରଣ ଭକ୍ତିରେ ଈଶ୍ୱର ମିଳନ୍ତି ନାହିଁ । **ପ୍ରେମାଭକ୍ତି ନ ହେଲେ ଈଶ୍ୱରଲାଭ ହୁଏ ନାହିଁ** । ପ୍ରେମାଭକ୍ତିର ଆଉ ଗୋଟିଏ ନାମ ରାଗଭକ୍ତି । ପ୍ରେମ ଅନୁରାଗ ନ ହେଲେ ଭଗବାନଙ୍କୁ ଲାଭ କରାଯାଏ ନାହିଁ । ଈଶ୍ୱରଙ୍କୁ ଭଲ ନ ପାଇଲେ ସେ ମିଳନ୍ତି ନାହିଁ ।

''ଆଉ ଏକ ପ୍ରକାର ଭକ୍ତି ଅଛି, ତାହାର ନାମ ବୈଧୀ ଭକ୍ତି । ଏତେ ଜପ କରିବାକୁ ହେବ, ଉପବାସ କରିବାକୁ ହେବ, ତୀର୍ଥ ଯିବାକୁ ହେବ, ଏତେ ଉପଚାରରେ ପୂଜା କରିବାକୁ ହେବ, ଏତେଗୁଡ଼ିଏ ବଳିଦାନ ଦେବାକୁ ହେବ— ଏସବୁ ବୈଧୀ ଭକ୍ତି । ଏହିସବୁ କରୁ କରୁ କ୍ରମେ ରାଗଭକ୍ତି ଆସେ; କିନ୍ତୁ ରାଗଭକ୍ତି ଯେପର୍ଯ୍ୟନ୍ତ ନ ହୋଇଛି, ସେପର୍ଯ୍ୟନ୍ତ ଈଶ୍ୱରଲାଭ ହେବ ନାହିଁ । ତାଙ୍କୁ ଭଲ ପାଇବା ଦରକାର । ସଂସାର ବୁଦ୍ଧି ଏକାବେଳକେ ଚାଲିଯିବ, ଆଉ ତାଙ୍କ ଉପରେ ଷୋଳଅଣା ମନ ଯିବ, ତେବେ ଯାଇ ତାଙ୍କୁ ପାଇବ ।

''କିନ୍ତୁ କାହାର କାହାର ରାଗଭକ୍ତି ଆପେ ଆପେ ହୁଏ । ସ୍ୱତଃସିଦ୍ଧ । ପିଲାବେଳୁ ଅଛି । ପିଲାଦିନୁ ଈଶ୍ୱରଙ୍କ ପାଇଁ କାନ୍ଦେ; ଯେପରି ପ୍ରହ୍ଲାଦ । ବୈଧୀ ଭକ୍ତି, ଯେପରି ପବନ ପାଇଁ ପଙ୍ଖାରେ ବିଞ୍ଚିବା । ପବନ ପାଇଁ ପଙ୍ଖାର ଦରକାର । ଈଶ୍ୱରଙ୍କ ପ୍ରତି ଭକ୍ତି ହେବ ବୋଲି ଜପ, ତପ, ଉପବାସ; କିନ୍ତୁ ଯଦି ଦକ୍ଷିଣା ପବନ ବହେ, ତେବେ ପଙ୍ଖାଟିକୁ ଲୋକେ ପକାଇ ଦିଅନ୍ତି । ଈଶ୍ୱରଙ୍କ ଉପରେ ଅନୁରାଗ, ପ୍ରେମ ମନକୁ ଆସିଲେ ଜପ, ତପ, କର୍ମ ତ୍ୟାଗ ହୋଇଯାଏ । ହରିପ୍ରେମରେ ମତୁଆଲା ହେଲେ ବୈଧୀ କର୍ମ କିଏ କରିବ ?

''ଯେପର୍ଯ୍ୟନ୍ତ ତାଙ୍କଠାରେ ପ୍ରେମାଭକ୍ତି ହୋଇ ନାହିଁ, ସେପର୍ଯ୍ୟନ୍ତ ଭକ୍ତି କଞ୍ଚା ଭକ୍ତି । ତାଙ୍କ ଉପରେ ପ୍ରେମ ହେଲେ, ସେତେବେଳେ ସେହି ଭକ୍ତି ପକ୍କା ଭକ୍ତି ।

**ଉତ୍ତମ ଅଧିକାରୀ**

''ଯାହାର କଞ୍ଚା ଭକ୍ତି, ସେ ଈଶ୍ୱରଙ୍କ କଥା, ଉପଦେଶ ଧାରଣା କରିପାରେ ନାହିଁ । ଭକ୍ତି ପାଚିଲେ ଧାରଣା କରିପାରେ । ଫଟୋଗ୍ରାଫ୍ କାଚରେ

୧. Silver Nitrate.

ବୋଳା ଥାଏ, ତାହା ହେଲେ ଯେଉଁ ଛବି ପଡ଼େ ତାହା ରହିଯାଏ, କିନ୍ତୁ ଖାଲି କାଚ ଉପରେ ହଜାରେ ଛବି ପଡୁ, ଗୋଟିଏ ମଧ୍ୟ ରହେ ନାହିଁ—ଟିକିଏ ଘୁଞ୍ଚିଗଲେ ଯେଉଁ କାଚକୁ ସେହି କାଚ । ଈଶ୍ୱରଙ୍କ ଉପରେ ପ୍ରେମ ନ ଥିଲେ ଉପଦେଶ ଧାରଣା ହୁଏ ନାହିଁ ।''

**ଈଶ୍ୱରଦର୍ଶନର ଉପାୟ**

ବିଜୟ—ମହାଶୟ, ଈଶ୍ୱରଙ୍କୁ ଲାଭ କରିବାକୁ ଗଲେ, ତାଙ୍କୁ ଦର୍ଶନ କରିବାକୁ ଗଲେ, କେବଳ ଭକ୍ତି ହେଲେ ହେବ ?

ଶ୍ରୀରାମକୃଷ୍ଣ—ହଁ, ଭକ୍ତିଦ୍ୱାରା ତ ତାଙ୍କର ଦର୍ଶନ ମିଳେ କିନ୍ତୁ ପକ୍କା ଭକ୍ତି, ପ୍ରେମାଭକ୍ତି, ରାଗଭକ୍ତି ଦରକାର । ସେହି ଭକ୍ତି ହେଲେ ତାଙ୍କ ପ୍ରତି ଭଲ ପାଇବା ଆସେ ଯେପରି ପୁଅର ମା ପ୍ରତି ଓ ମା'ର ପୁଅ ପ୍ରତି ଭଲ ପାଇବା—ସ୍ତ୍ରୀର ସ୍ୱାମୀ ପ୍ରତି ଭଲ ପାଇବା ।

''ଏ ପ୍ରେମ, ଏ ରାଗଭକ୍ତି ଆସିଲେ ସ୍ତ୍ରୀ, ପୁତ୍ର, ଆତ୍ମୀୟ, କୁଟୁମ୍ବ ଉପରେ ସେ ମାୟାର ଟାଣ ରହେ ନାହିଁ । ଦୟା ଥାଏ । ସଂସାର ବିଦେଶ ବୋଧ ହୁଏ, ଗୋଟିଏ କର୍ମ ଭୂମି ବୋଲି ବୋଧ ହୁଏ । ଯେପରି ମଫସଲରେ ଘର, କିନ୍ତୁ କଲିକତା କର୍ମଭୂମି—କଲିକତାରେ ବସା ନେଇ ରହିବାକୁ ହୁଏ, କର୍ମ କରିବା ପାଇଁ । ଈଶ୍ୱରଙ୍କୁ ଭଲ ପାଇ ପାରିଲେ ସଂସାରାସକ୍ତି, ବିଷୟବୁଦ୍ଧି ଏକାବେଳକେ ଚାଲିଯାଏ ।

''ବିଷୟବୁଦ୍ଧିରେ ଲେଶମାତ୍ର ରହିଲେ ତାଙ୍କର ଦର୍ଶନ ହୁଏ ନାହିଁ । ଦିଆସିଲିର କାଠି ଯଦି ଓଦା ଥାଏ, ହଜାରେ ଘଷ, କୌଣସି ପ୍ରକାରେ ଜଳେ ନାହିଁ—କେବଳ ପୁଳାଏ କାଠି ନଷ୍ଟ ହୁଏ । ବିଷୟାସକ୍ତ ମନ ଓଦା ଦିଆସିଲି । ''ଶ୍ରୀମତୀ (ରାଧିକା) ଯେତେବେଳେ କହିଲେ, 'ମୁଁ କୃଷ୍ଣମୟ ଦେଖୁଛି', ସଖୀମାନେ କହିଲେ, 'କାହିଁ, ଆମେ ତ ତାଙ୍କୁ ଦେଖିପାରୁ ନାହୁଁ ! ତୁମେ କଅଣ ପ୍ରଳାପ କରୁଛ ?' ଶ୍ରୀମତୀ କହିଲେ 'ସଖି ! ଆଖିରେ ଅନୁରାଗ ଅଞ୍ଜନ ଲଗାଅ, ତାହା ହେଲେ ତାଙ୍କୁ ଦେଖି ପାରିବ ।' (ବିଜୟଙ୍କ ପ୍ରତି) ତୁମ ବ୍ରାହ୍ମସମାଜର ଭଜନରେ ରହିଛି—

''ପ୍ରଭୁ ବିନା ଅନୁରାଗ, କରି ଯଜ୍ଞ ଯାଗ, ତୁମକୁ କି ଯାଏ ଜଣା !

''ଏହି ଅନୁରାଗ, ଏହି ପ୍ରେମ, ଏହି ପକ୍କା ଭକ୍ତି, ଏଇ ଭଲ ପାଇବା ଯଦି ଥରେ ହୁଏ, ତାହା ହେଲେ ସାକାର ନିରାକାର ଉଭୟ ସାକ୍ଷାତ୍‌କାର ହୁଏ ।''

**ଈଶ୍ୱରଦର୍ଶନ ଓ କୃପା**

ବିଜୟ—ଈଶ୍ୱରଦର୍ଶନ କିପରି ହୁଏ ?

ଶ୍ରୀରାମକୃଷ୍ଣ—ଚିତ୍ତଶୁଦ୍ଧି ନ ହେଲେ ହୁଏ ନାହିଁ । କାମିନୀ-କାଞ୍ଚନରେ ମନ ମଳିନ ହୋଇଅଛି, ମନରେ ମଇଳା ଜମିଛି । ଛୁଞ୍ଚିରେ କାଦୁଅ ବୋଳି ହୋଇଥିଲେ ଚୁମ୍ବକ ଆଉ ଟାଣେ ନାହିଁ । କାଦୁଅ ଧୋଇଦେଲେ ପୁଣି ଚୁମ୍ବକ ଟାଣେ । ସେହିପରି ମନର ମଇଳା ଆଖିଲୁହରେ ଧୋଇଯାଏ । 'ହେ ଈଶ୍ୱର, ଆଉ ଏପରି କାମ କରିବି ନାହିଁ' ବୋଲି ଯଦି କେହି ଅନୁତାପ କରି କାନ୍ଦେ, ତାହା ହେଲେ ମଇଳା ଧୋଇ ହୋଇଯାଏ । ସେତେବେଳେ ଈଶ୍ୱରରୂପକ ଚୁମ୍ବକପଥର ମନରୂପକ ଛୁଞ୍ଚିକୁ ଟାଣି ନିଅନ୍ତି । ସେତେବେଳେ ସମାଧି ହୁଏ, ଈଶ୍ୱରଦର୍ଶନ ହୁଏ ।

''କିନ୍ତୁ ହଜାରେ ଚେଷ୍ଟା କର, ତାଙ୍କର କୃପା ନ ହେଲେ କିଛି ହୁଏ ନାହିଁ । ତାଙ୍କର କୃପା ନ ହେଲେ ଦର୍ଶନ ହୁଏ ନାହିଁ ।

''କୃପା କଅଣ ସହଜରେ ହୁଏ ? ଅହଂକାର ଏକାବେଳକେ ତ୍ୟାଗ କରିବାକୁ ହେବ । 'ମୁଁ କର୍ତ୍ତା' ଏ ବୋଧ ଥିଲେ ଈଶ୍ୱରଦର୍ଶନ ହୁଏ ନାହିଁ । ଭଣ୍ଡାରରେ ଜଣେ ରହିଛି, ସେତେବେଳେ ଘରର ମାଲିକଙ୍କୁ ଯଦି କେହି କହେ, 'ମହାଶୟ, ଆପଣ ଆସି ଜିନିଷ ବାହାର କରିଦିଅନ୍ତୁ ।' —ସେତେବେଳେ ମାଲିକ କହନ୍ତି, 'ଭଣ୍ଡାରରେ ଜଣେ ରହିଛି, ମୁଁ ଯାଇ କଅଣ କରିବି ?' ଯେ ନିଜେ କର୍ତ୍ତା ହୋଇ ବସିଛି, ତାହାର ହୃଦୟ ମଧ୍ୟକୁ ଈଶ୍ୱର ସହଜରେ ଆସନ୍ତି ନାହିଁ ।

''କୃପା ହେଲାମାତ୍ରେ ଦର୍ଶନ ହୁଏ । ସେ ଜ୍ଞାନସୂର୍ଯ୍ୟ । ତାଙ୍କର ଗୋଟିଏ କିରଣରେ ଏ ଜଗତରେ ଜ୍ଞାନର ଆଲୋକ ପଡ଼ିଛି; ସେଥିପାଇଁ ସିନା ଆମେମାନେ ପରସ୍ପରକୁ ଜାଣି ପାରୁଛୁ, ଆଉ ଜଗତରେ କେତେପ୍ରକାର ବିଦ୍ୟା ଉପାର୍ଜନ କରୁଛୁ ! ତାଙ୍କର ଆଲୁଅ ଯଦି ଥରେ ସେ ନିଜେ ତାଙ୍କ ମୁହଁ ପାଖରେ ଧରନ୍ତି, ତାହା ହେଲେ ତାଙ୍କର ଦର୍ଶନଲାଭ ହୁଏ ।

''ସର୍ଜନ ସାହେବ ରାତି ଅନ୍ଧାରରେ ଲଣ୍ଠନ ହାତରେ ଧରି ବୁଲନ୍ତି । ତାଙ୍କର ମୁହଁ କେହି ଦେଖିପାରନ୍ତି ନାହିଁ; କିନ୍ତୁ ଏହି ଆଲୁଅରେ ସେ ସମସ୍ତଙ୍କର ମୁହଁ ଦେଖିପାରନ୍ତି, ଆଉ ଅନ୍ୟମାନେ ପରସ୍ପରକୁ ମଧ୍ୟ ଦେଖିପାରନ୍ତି ।

''ଯଦି କେହି ସର୍ଜନଙ୍କୁ ଦେଖିବାକୁ ଚାହେଁ, ତାହା ହେଲେ ତାଙ୍କୁ ପ୍ରାର୍ଥନା କରିବାକୁ ହୁଏ; କହିବାକୁ ହୁଏ ସାହେବ, ଦୟା କରି ଥରେ ଆଲୁଅଟି ନିଜ ମୁହଁ ପାଖକୁ ନିଅ, ତୁମକୁ ଥରେ ଦେଖେ ।

''ଈଶ୍ୱରଙ୍କୁ ପ୍ରାର୍ଥନା କରିବାକୁ ହୁଏ—ହେ ଈଶ୍ୱର, ଦୟାକରି ଜ୍ଞାନର ଆଲୋକଟି ତୁମ ନିଜ ଉପରକୁ ପକାଅ, ମୁଁ ତୁମକୁ ଦର୍ଶନ କରେ ।

''ଘରେ ଯଦି ଆଲୁଅ ନ ଜଳେ, ତାହା ଦାରିଦ୍ର୍ୟର ଚିହ୍ନ । ତେଣୁ ହୃଦୟ ମଧ୍ୟରେ ଜ୍ଞାନର ଆଲୁଅ ଜାଳିବାକୁ ହୁଏ । 'ଜ୍ଞାନ-ଦୀପ ଜାଳି ଘରେ ବ୍ରହ୍ମମୟୀର ମୁଖ ଦେଖ ନା' ।''

ବିଜୟ ସଙ୍ଗରେ ଔଷଧ ଆଣିଛନ୍ତି । ଠାକୁରଙ୍କ ସମ୍ମୁଖରେ ସେବନ କଲେ । ଔଷଧ ପାଣି ସହିତ ଖାଇବାକୁ ହୁଏ, ଠାକୁରେ ପାଣି ଅଣାଇ ଦେଲେ । ଠାକୁରେ ଅହେତୁକ କୃପାସିନ୍ଧୁ, ବିଜୟ ଗାଡ଼ି-ଭଡ଼ା, ନୌକା-ଭଡ଼ା ଦେଇ ଆସିପାରନ୍ତି ନାହିଁ । ଠାକୁର ମଝିରେ ମଝିରେ ଲୋକ ପଠାଇଦିଅନ୍ତି, ଆସିବାକୁ କହନ୍ତି । ଏଥର ବଳରାମଙ୍କୁ ପଠାଇ ଥିଲେ । ବଳରାମ ଭଡ଼ା ଦେବେ । ବଳରାମଙ୍କ ସଙ୍ଗରେ ବିଜୟ ଆସିଛନ୍ତି । ସନ୍ଧ୍ୟା ସମୟରେ ବିଜୟ, ନବକୁମାର ଓ ବିଜୟଙ୍କର ଅନ୍ୟାନ୍ୟ ସଙ୍ଗୀଗଣ ବଳରାମଙ୍କ ନୌକାରେ ପୁଣି ବସିଲେ । ବଳରାମ ସେମାନଙ୍କୁ ବାଗ୍‌ବଜାର ଘାଟରେ ପହଞ୍ଚାଇ ଦେବେ । ମାଷ୍ଟର ମଧ୍ୟ ଏହି ନୌକାରେ ବସିଲେ ।

ଡଙ୍ଗାଟି ବାଗ୍‌ବଜାରର ଅନ୍ନପୂର୍ଣ୍ଣା ଘାଟରେ ଆସି ପହଞ୍ଚିଲା । ଯେତେବେଳେ ବଳରାମଙ୍କର ବାଗ୍‌ବଜାର ଘର ପାଖରେ ସେମାନେ ପହଞ୍ଚିଲେ, ସେତେବେଳେ ଅଳ୍ପ ଜ୍ୟୋତ୍ସ୍ନା ପଡ଼ିଛି । ଆଜି ଶୁକ୍ଳପକ୍ଷର ଚତୁର୍ଥୀ ତିଥି । ଶୀତଦିନ, ଅଳ୍ପ ଶୀତ ହେଉଛି । ଠାକୁର ଶ୍ରୀରାମକୃଷ୍ଣଙ୍କର ଅମୃତୋପମ ଉପଦେଶ ସ୍ମରଣ କରି କରି ଓ ତାଙ୍କର ଆନନ୍ଦମୂର୍ତ୍ତି ହୃଦୟରେ ଧାରଣ କରି ବିଜୟ, ବଳରାମ, ମାଷ୍ଟର ଇତ୍ୟାଦି ଗୃହକୁ ପ୍ରତ୍ୟାବର୍ତ୍ତନ କଲେ ।

# ଦ୍ୱାଦଶ ପରିଚ୍ଛେଦ

## (୧)

## ବାବୁରାମ ପ୍ରଭୃତିଙ୍କ ସଙ୍ଗରେ ସ୍ୱାଧୀନ ଇଚ୍ଛା ସମ୍ବନ୍ଧରେ କଥା— ତୋତାପୁରୀଙ୍କର ଆତ୍ମହତ୍ୟାର ସଙ୍କଳ୍ପ

ଠାକୁର ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱର ମନ୍ଦିରରେ ଉପରଓଳି ନିଜ ଘରର ପଶ୍ଚିମ ଦିଗରେ ବାରଣ୍ଡାରେ କଥା କହୁଛନ୍ତି । ସଙ୍ଗରେ ବାବୁରାମ, ମାଷ୍ଟର, ରାମଦୟାଲ ପ୍ରଭୃତି ।

ଠାକୁରଙ୍କର ଘର ଭିତରେ ସଙ୍ଗୀତ ହେଉଛି । ଭକ୍ତମାନେ ଗାଉଛନ୍ତି—

'ହୃଦିବୃନ୍ଦାବନେ ବାସ ଯଦି କର କମଳାପତି !
ଓହେ ଭକ୍ତିପ୍ରିୟ ଆମାର ଭକ୍ତି ହବେ ରାଧା ସତୀ ॥...'

'ଆମାର ପ୍ରାଣ-ପିଞ୍ଜରେର ପାକ୍ଷୀ ଗାଓନା ରେ ।
ବ୍ରହ୍ମ କଳ୍ପତରୁମୂଲେ ବସେ ରେ ପାକ୍ଷୀ ବିଭୁଗୁଣ ଗାଓ ଦେଖି ।
ଆର୍ ଧର୍ମ ଅର୍ଥ, କାମ, ମୋକ୍ଷ ସୁପକ୍ୱ ଫଲ ଖାଓନା ରେ ।'

ନନ୍ଦନ-ଉଦ୍ୟାନରେ ଶ୍ରୀନାଥ ମିତ୍ର ବନ୍ଧୁଗଣଙ୍କ ସହିତ ଆସିଛନ୍ତି । ଠକୁରେ ତାଙ୍କୁ ଦେଖି କହୁଛନ୍ତି, ''ଏଇ ଯେ, ଏହାଙ୍କ ଆଖିବାଟେ ଭିତରଟା ସବୁ ଦେଖାଯାଉଛି । କାଚ-କବାଟ ଭିତର ଦେଇ ଯେପରି ଘର ଭିତରର ସବୁ ଜିନିଷ ଦେଖାଯାଏ ।'' ଶ୍ରୀନାଥ ଯଜ୍ଞନାଥ, ଏମାନେ ନନ୍ଦନ-ଉଦ୍ୟାନରେ ବ୍ରାହ୍ମ ପରିବାରଭୁକ୍ତ । ଏମାନଙ୍କ ଘରେ ପ୍ରତିବର୍ଷ ବ୍ରାହ୍ମସମାଜର ଉତ୍ସବ ହୁଏ । ଉତ୍ସବ ଦର୍ଶନ କରିବାକୁ ଠାକୁରେ ପରେ ଯାଇଥିଲେ ।

ସନ୍ଧ୍ୟା ପରେ ମନ୍ଦିରରେ ଆଳତି ହେଲା । ଘରେ ଛୋଟ ଖଟଟି ଉପରେ ବସି ଠାକୁରେ ଈଶ୍ୱରଚିନ୍ତା କରୁଛନ୍ତି । କ୍ରମେ ଭାବାବିଷ୍ଟ ହେଲେ । ଭାବ ଉପଶମ ପରେ କହୁଛନ୍ତି, ''ମା, ତାଙ୍କୁ ବି ଟାଣି ନିଅ । ସେ ଏତେ ଦୀନ ଭାବରେ ରହେ । ତୁମ ପାଖକୁ ଯିବା ଆସିବା କରୁଛି ।''

ଠାକୁର ଭାବରେ ବାବୁରାମଙ୍କର କଥା କଅଣ କହୁଛନ୍ତି ! ବାବୁରାମ, ମାଷ୍ଟର, ରାମଦୟାଲ ପ୍ରଭୃତି ବସିଛନ୍ତି । ରାତ୍ରି ୮ଟା ୯ଟା ହେବ । ଠାକୁରେ ସମାଧିତତ୍ତ୍ୱ କହୁଛନ୍ତି । ଜଡ଼ସମାଧି, ଚେତନସମାଧି, ସ୍ଥିତସମାଧି, ଉନ୍ମନାସମାଧି ।

### ବିଦ୍ୟାସାଗର ଓ ଚେଙ୍ଗିସ୍ ଖାଁ, ଈଶ୍ୱର କଅଣ ନିଷ୍ଠୁର ?

ସୁଖଦୁଃଖର କଥା ପଡ଼ିଛି । ଈଶ୍ୱର ଏତେ ଦୁଃଖ କାହିଁକି କରିଛନ୍ତି ?

ମାଷ୍ଟର—ବିଦ୍ୟାସାଗର ଅଭିମାନ କରି କହନ୍ତି, ''ଈଶ୍ୱରଙ୍କୁ ଡାକିବା କଅଣ ଦରକାର ! ଦେଖ, ଚେଙ୍ଗିସ୍ ଖାଁ ଯେତେବେଳେ ଲୁଟ୍‌ପାଟ ଆରମ୍ଭ

କଲେ, ସେତେବେଳେ ଅନେକ ଲୋକଙ୍କୁ ବନ୍ଦୀ କଲେ; କ୍ରମେ ପ୍ରାୟ ଏକଲକ୍ଷ ବନ୍ଦୀ ଜମିଗଲେ । ସେତେବେଳେ ସେନାପତିମାନେ ଆସି କହିଲେ, 'ମହାଶୟ, ଏମାନଙ୍କୁ କିଏ ଖୁଆଇବ ? ସଙ୍ଗରେ ଏମାନଙ୍କୁ ରଖିଲେ ଆମମାନଙ୍କର ବିପଦ । କ'ଣ କରାଯିବ ? ଛାଡ଼ିଦେଲେ ମଧ୍ୟ ବିପଦ ।' ସେତେବେଳେ ଚେଙ୍ଗିସ୍ ଖାଁ କହିଲେ, 'ତାହାହେଲେ କଅଣ କରିବା ? ସେମାନଙ୍କୁ ସବୁ ବଧ କର ।' ତେଣୁ କଚ୍ କଚ୍ କରି କାଟିବା ପାଇଁ ହୁକୁମ ହୋଇଗଲା । ଏହି ହତ୍ୟାକାଣ୍ଡ ତ ଈଶ୍ୱର ଦେଖିଲେ ? କାହିଁ ଟିକିଏ ତ ନିବାରଣ କଲେ ନାହିଁ ? ତେବେ ସେ ଯଦି ଥାଆନ୍ତି ଥାଆନ୍ତୁ; ମୋର ଦରକାର ବୋଧ ହେଉ ନାହିଁ । ମୋର ତ କୌଣସି ଉପକାର ହେଲା ନାହିଁ !"

ଶ୍ରୀରାମକୃଷ୍ଣ—ଈଶ୍ୱରଙ୍କର କାର୍ଯ୍ୟ କଅଣ ବୁଝାଯାଏ—ସେ କେଉଁ ଉଦ୍ଦେଶ୍ୟରେ କଅଣ କରନ୍ତି ? ସେ ସୃଷ୍ଟି, ପାଳନ, ସଂହାର ସବୁ କରୁଛନ୍ତି । ସେ କାହିଁକି ସଂହାର କରୁଛନ୍ତି, ଆମେମାନେ କ'ଣ ବୁଝିପାରିବା ? ମୁଁ କହେ—ମା', ମୋର ବୁଝିବା ଦରକାର ନାହିଁ, ତୁମର ପାଦପଦ୍ମରେ ଭକ୍ତି ଦିଅ । ମନୁଷ୍ୟ-ଜୀବନର ଉଦ୍ଦେଶ୍ୟ ଏହି ଭକ୍ତିଲାଭ । ଆଉ ସବୁ ମା ଜାଣନ୍ତି । ବଗିଚାକୁ ଆମ୍ବ ଖାଇବାକୁ ଆସିଛି; କେତେ ଗଛ, କେତେ ଡାଳ, କେତେ କୋଟି ପତ୍ର—ଏସବୁ ବସି ବସି ହିସାବ କରିବା ମୋର କଅଣ ଦରକାର ! ମୁଁ ଆମ୍ବ ଖାଏ, ଗଛପତ୍ରର ହିସାବରେ ମୋର ଦରକାର ନାହିଁ ।

ଠାକୁରଙ୍କ ଘରର ଚଟାଣରେ ଆଜି ରାତିରେ ବାବୁରାମ, ମାଷ୍ଟର ଓ ରାମଦୟାଲ ଶୟନ କଲେ ।

ଗଭୀର ରାତ୍ରି—୨ଟା ୩ଟା ହେବ । ଠାକୁରଙ୍କର ଘରେ ଆଲୁଅ ଲିଭିଯାଇଛି । ସେ ନିଜେ ବିଛଣାରେ ବସି ଭକ୍ତମାନଙ୍କ ସହିତ ମଝିରେ ମଝିରେ କଥା କହୁଛନ୍ତି ।

**ଶ୍ରୀରାମକୃଷ୍ଣ ଓ ବାବୁରାମ, ମାଷ୍ଟର ପ୍ରଭୃତି—ଦୟା ଓ ମାୟା—**
**କଠିନ ସାଧନ ଓ ଈଶ୍ୱରଦର୍ଶନ**

ଶ୍ରୀରାମକୃଷ୍ଣ—(ମାଷ୍ଟର ପ୍ରଭୃତି ଭକ୍ତମାନଙ୍କ ପ୍ରତି)—ଦେଖ, ଦୟା ଆଉ ମାୟା—ଏ ଦୁଇଟି ଅଲଗା ଜିନିଷ । **ମାୟା** ଅର୍ଥ ଆତ୍ମୀୟଙ୍କଠାରେ ମମତା; ଯେପରି ବାପ-ମା, ଭାଇ-ଭଉଣୀ, ସ୍ତ୍ରୀ-ପୁତ୍ର, ଏମାନଙ୍କୁ ଭଲ ପାଇବା । **ଦୟା** ସର୍ବଭୂତରେ ପ୍ରେମ, ସମଦୃଷ୍ଟି । କାହା ଭିତରେ ଯଦି ଦୟା ଦେଖ—ଯେପରି ବିଦ୍ୟାସାଗରଙ୍କର—ଜାଣିବ, ତାହା ଈଶ୍ୱରଙ୍କର **ଦୟା** । ଦୟାରୁ ସର୍ବଭୂତରେ ସେବା ହୁଏ । ମାୟା ମଧ୍ୟ ଈଶ୍ୱରଙ୍କର । ମାୟାଦ୍ୱାରା ସେ ଆତ୍ମୀୟମାନଙ୍କର ସେବା କରାଇ ନିଅନ୍ତି । ତେବେ ଗୋଟିଏ କଥା ଅଛି—ମାୟା ଅଜ୍ଞାନ କରି ରଖେ, ଆଉ ବଦ୍ଧ କରେ; କିନ୍ତୁ ଦୟାରେ ଚିତ୍ତଶୁଦ୍ଧି ହୁଏ, କ୍ରମେ ବନ୍ଧନ ମୁକ୍ତି ହୁଏ ।

''ଚିତ୍ତଶୁଦ୍ଧି ନ ହେଲେ ଭଗବାନଙ୍କର ଦର୍ଶନ ହୁଏ ନାହିଁ । କାମ, କ୍ରୋଧ, ଲୋଭ ଏସବୁ ଜୟ କଲେ ତେବେ ତାଙ୍କର କୃପା ହୁଏ; ସେତେବେଳେ ଦର୍ଶନ ହୁଏ । ତୁମମାନଙ୍କୁ **ଅତି ଗୁହ୍ୟ** କଥା କହୁଛି—କାମ ଜୟ କରିବା ପାଇଁ ମୁଁ ଅନେକ କାଣ୍ଡ କରିଥିଲି । ଏପରି କି ଆନନ୍ଦ-ଆସନର ଚାରିଦିଗରେ 'ଜୟ କାଳୀ' କହି ଅନେକ ଥର ପ୍ରଦକ୍ଷିଣ କରିଥିଲି । ଦଶ ଏଗାର ବର୍ଷ ବୟସରେ ଯେତେବେଳେ ସେଦେଶରେ (କାମାରପୁକୁରରେ) ଥିଲି, ସେହି ସମୟରେ ଏହି ଅବସ୍ଥାଟି (ସମାଧି ଅବସ୍ଥା) ହୋଇଥିଲା । କ୍ଷେତ ଦେଇ ଯାଉ ଯାଉ ଯାହା ଦର୍ଶନ କଲି ସେଥିରେ ବିହ୍ୱଳ ହୋଇଗଲି । ଈଶ୍ୱର-ଦର୍ଶନର କେତେଗୁଡ଼ିଏ ଲକ୍ଷଣ ଅଛି । ଜ୍ୟୋତି ଦେଖାଯାଏ, ଆନନ୍ଦ ହୁଏ, ଛାତି ଭିତରେ ଘଡ଼ିବାଣ ପରି ଗୁରୁ ଗୁରୁ କରି ମହାବାୟୁ ଉଠେ ।''

ପରଦିନ ବାବୁରାମ, ରାମଦୟାଲ ଘରକୁ ଫେରିଗଲେ । ମାଷ୍ଟର ସେହି ଦିନ ଓ ରାତି ଠାକୁରଙ୍କ ସଙ୍ଗରେ ଅତିବାହିତ କଲେ ଓ ମନ୍ଦିରରେ ପ୍ରସାଦ ପାଇଲେ ।

## (୨)

## ଦକ୍ଷିଣେଶ୍ୱରଠାରେ ମାରୁଆଡ଼ି ଭକ୍ତଙ୍କ ସହିତ

ଉପରଓଳି ହେଲା । ମାଷ୍ଟର ଓ ଜଣେ ଦୁଇଜଣ ଭକ୍ତ ବସିଛନ୍ତି । କେତେଗୁଡ଼ିଏ ମାରୁଆଡ଼ି ଭକ୍ତ ଆସି ପ୍ରଣାମ କଲେ । ସେମାନେ କଲିକତାରେ ବ୍ୟବସାୟ କରନ୍ତି । ସେମାନେ ଠାକୁରଙ୍କୁ କହୁଛନ୍ତି, 'ଆପଣ ଆମମାନଙ୍କୁ କିଛି ଉପଦେଶ ଦିଅନ୍ତୁ ।' ଠାକୁରେ ହସୁଛନ୍ତି ।

ଶ୍ରୀରାମକୃଷ୍ଣ (ମାରୁଆଡ଼ି ଭକ୍ତମାନଙ୍କ ପ୍ରତି)—ଦେଖ, 'ମୁଁ ଆଉ ମୋର' ଏ ଦୁଇଟି ଅଜ୍ଞାନ । ହେ ଈଶ୍ୱର, ତୁମେ କର୍ତ୍ତା ଆଉ ଏହିସବୁ ତୁମର—ଏହାର ନାମ ଜ୍ଞାନ । ଆଉ 'ମୋର' ବୋଲି କିପରି ବା କହିବ ? ବଗିଚାର କର୍ମଚାରୀ କହେ, 'ମୋର ବଗିଚା' କିନ୍ତୁ କୌଣସି ଦୋଷ କଲେ ମୁନିବ ଯେତେବେଳେ ତାକୁ ତଡ଼ିଦିଏ, ସେତେବେଳେ ତା'ର ଏତିକି ମଧ୍ୟ ସାହସ ହୁଏ ନାହିଁ ଯେ ନିଜ ଆମ୍ବକାଠର ସିନ୍ଦୁକଟା ବଗିଚାରୁ ବାହାର କରି ଆଣେ । କାମ, କ୍ରୋଧ ଆଦି ତ କେବେହେଲେ ଯାଏ ନାହିଁ, ଈଶ୍ୱରଙ୍କ ଆଡ଼କୁ ମୁହଁ ଫେରାଇ ଦିଅ । କାମନା-ଲୋଭ କରିବାକୁ ହୁଏ ତ ଈଶ୍ୱରଙ୍କୁ ପାଇବା ପାଇଁ କାମନା-ଲୋଭ କର । ବିଚାର କରି ସେସବୁକୁ ତଡ଼ିଦିଅ । ହାତୀ ପରର କଦଳୀ ଗଛ ଖାଇବାକୁ ଗଲେ ମାହୁନ୍ତ ଅଙ୍କୁଶ ମାରେ ।

''ତୁମେମାନେ ତ ବ୍ୟବସାୟ କର, କ୍ରମେ କ୍ରମେ ଉନ୍ନତି ହୁଏ ଜାଣ । କେହି କେହି ଆଗେ ଜଡ଼ାତେଲର ଘଣା କରନ୍ତି; ପୁଣି ବେଶୀ ଟଙ୍କା ହେଲେ ଲୁଗାଦୋକାନ ଦିଅନ୍ତି । ସେହିପରି ଈଶ୍ୱରଙ୍କ ପଥରେ ଆଗେଇ ଯିବାକୁ ହୁଏ ।

ଏବେ ହେଲା, ମଝିରେ ମଝିରେ କିଛିଦିନ ନିର୍ଜନରେ ରହି ବେଶୀ କରି ତାଙ୍କୁ ଡାକିଲ ।

''ତେବେ କଅଣ ଜାଣ ? ସମୟ ନ ହେଲେ କିଛି ହୁଏ ନାହିଁ । କାହାର କାହାର ଅନେକ ଭୋଗ କର୍ମ ବାକି ଥାଏ । ସେଥିପାଇଁ ଡେରିରେ ହୁଏ । ବଥ କଞ୍ଚା ଅବସ୍ଥାରେ ଅସ୍ତ୍ର କଲେ ହିତର ବିପରୀତ ହୁଏ । ପାଚି ମୁହଁ ବାହାରିଲେ ତେବେ ଯାଇ ଡାକ୍ତର ଅସ୍ତ୍ର କରେ । ପୁଅ କହିଲା — ମା, ବର୍ତ୍ତମାନ ମୁଁ ଶୋଉଛି, ମୋତେ ଝାଡ଼ା ମାଡ଼ିଲେ ତୁମେ ଉଠାଇବ । ମା କହିଲେ — ବାବା, ଝାଡ଼ା ତୋତେ ଉଠାଇବ, ମୋତେ ଉଠାଇବାକୁ ହେବ ନାହିଁ ।'' (ସମସ୍ତଙ୍କର ହାସ୍ୟ)

## ମାରୁଆଡ଼ି ଭକ୍ତ ଓ ବ୍ୟବସାୟରେ ମିଥ୍ୟା କଥା — ରାମନାମ କୀର୍ତ୍ତନ

ମାରୁଆଡ଼ି ଭକ୍ତମାନେ ମଝିରେ ମଝିରେ ଠାକୁରଙ୍କର ସେବା ପାଇଁ ମିଷ୍ଟାନ୍ନାଦି ଦ୍ରବ୍ୟ, ଫଳ ଓ ଖଣ୍ଡମିଶିରି ଇତ୍ୟାଦି ଆଣନ୍ତି । ଖଣ୍ଡମିଶିରିରେ ଗୋଲାପ ଜଳର ସୁଗନ୍ଧ । ଠାକୁରେ କିନ୍ତୁ ସେହିସବୁ ଜିନିଷ ପ୍ରାୟ ସେବା କରନ୍ତି ନାହିଁ । କହନ୍ତି, ବହୁ ମିଥ୍ୟାକଥା କହି ସେମାନଙ୍କୁ ଟଙ୍କା ରୋଜଗାର କରିବାକୁ ହୁଏ । ତେଣୁ ଉପସ୍ଥିତ ମାରୁଆଡ଼ିମାନଙ୍କୁ କଥାଛଳରେ ଉପଦେଶ ଦେଉଛନ୍ତି ।

ଶ୍ରୀରାମକୃଷ୍ଣ — ଦେଖ, ବ୍ୟବସାୟ କରିବାକୁ ଗଲେ ସତ୍ୟ କଥାର ଆଣ୍ଟ ରହେ ନାହିଁ । ବ୍ୟବସାୟରେ ତେଜୀ, ମାନ୍ଦା ଅଛି । ନାନକଙ୍କ ଗଳ୍ପରେ ଅଛି ଯେ — ସେ କହିଲେ, 'ଅସାଧୁର ଦ୍ରବ୍ୟ ଭୋଜନ କରିବାକୁ ଯାଇ ଦେଖିଲି ଯେ ସେସବୁରେ ରକ୍ତ ବୋଳା ହୋଇଛି ।' ସାଧୁମାନଙ୍କୁ ଶୁଦ୍ଧ ଜିନିଷ ଦେବାକୁ ହୁଏ, ମିଥ୍ୟା ଉପାୟରେ ରୋଜଗାର କରାଯାଇଥିବାର ଜିନିଷ ଦେବାର ନୁହେଁ । ସତ୍ୟ-ପଥରେ ଈଶ୍ୱରଙ୍କୁ ଲାଭ କରାଯାଏ ।[୧]

''ସବୁବେଳେ ତାଙ୍କର ନାମ ନେବାକୁ ହୁଏ । କାମବେଳେ ମନକୁ ତାଙ୍କ ପାଖରେ ପକାଇରଖିବାକୁ ହୁଏ । ମୋ ପିଠିରେ ବଥ ହୋଇଛି, ସବୁ କାମ କରୁଛି, କିନ୍ତୁ ମନ ବଥ ଉପରେ ରହିଛି । ରାମନାମ କରିବା ଭଲ — ଯେଉଁ ରାମ ଦଶରଥଙ୍କର ପୁଅ, ପୁଣି ଜଗତ ସୃଷ୍ଟି କରିଛନ୍ତି ଓ ସର୍ବଭୂତରେ ଅଛନ୍ତି, ସେ ହିଁ ନିକଟରେ ଅଛନ୍ତି — ଅନ୍ତରରେ ଓ ବାହାରେ ।

''ଓହି ରାମ ଦଶରଥକା ବେଟା, ଓହି ରାମ ଘଟ ଘଟମେଁ ଲେଟା,
ଓହି ରାମ ଜଗତ୍ ପଶେରା, ଓହି ରାମ ସବ୍‌ସେ ନ୍ୟାରା ।''

---

୧. ସତ୍ୟେନ ଲଭ୍ୟସ୍ତପସା ହ୍ୟେଷ ଆତ୍ମା ସମ୍ୟକ୍-ଜ୍ଞାନେନ ବ୍ରହ୍ମଚର୍ଯ୍ୟେଣ ନିତ୍ୟମ୍ ।
— ମୁଣ୍ଡକୋପନିଷଦ୍ ୩/୧/୫
ସତ୍ୟମେବ ଜୟତେ ନାନୃତମ୍ । — ମୁଣ୍ଡକୋପନିଷଦ୍ ୩/୧/୬

# ତ୍ରୟୋଦଶ ପରିଚ୍ଛେଦ

## (୧)

## ଦକ୍ଷିଣେଶ୍ୱରରେ ଠାକୁର ଶ୍ରୀରାମକୃଷ୍ଣ ଶ୍ରୀଯୁକ୍ତ ରାଖାଲ, ପ୍ରାଣକୃଷ୍ଣ, କେଦାର ପ୍ରଭୃତିଙ୍କ ସଙ୍ଗରେ

ଠାକୁର ଶ୍ରୀରାମକୃଷ୍ଣ କାଳୀମନ୍ଦିରର ସେହି ପୂର୍ବ ପରିଚିତ ଘରେ ଭକ୍ତଙ୍କ ସହିତ ବସିଛନ୍ତି । ନିଶିଦିନ ହରିପ୍ରେମରେ — ମାଆଙ୍କ ପ୍ରେମରେ — ମତୁଆଲା !

ତଳେ ସଉପ ପଡ଼ିଛି; ସେହି ସଉପରେ ସେ ଆସି ବସିଛନ୍ତି । ସମ୍ମୁଖରେ ପ୍ରାଣକୃଷ୍ଣ ଓ ମାଷ୍ଟର । ଶ୍ରୀଯୁକ୍ତ ରାଖାଲ ମଧ୍ୟ ଘରେ ଅଛନ୍ତି । ହାଜରା ମହାଶୟ ଘରର ବାହାରେ ଦକ୍ଷିଣ-ପୂର୍ବ ବାରଣ୍ଡାରେ ବସିଛନ୍ତି ।

ଶୀତଦିନ, ପୌଷ ମାସ; ଠାକୁରଙ୍କ ଦେହରେ ମୋଲେସ୍କିନ୍‌ର ଶାଲ । ସୋମବାର, ସମୟ ଆଠଟା । ମାର୍ଗଶୀର କୃଷ୍ଣା ଅଷ୍ଟମୀ । ୧ ଜାନୁଆରି ୧୮୮୩ ।

ବର୍ତ୍ତମାନ ବହୁ ଅନ୍ତରଙ୍ଗ ଭକ୍ତ ଆସି ଠାକୁରଙ୍କ ସହିତ ମିଳିତ ହୋଇଛନ୍ତି । ନ୍ୟୂନାଧିକ ଏକବର୍ଷ କାଳ ନରେନ୍ଦ୍ର, ରାଖାଲ, ଭବନାଥ, ବଳରାମ, ମାଷ୍ଟର, ବାବୁରାମ, ଲାଟୁ ପ୍ରଭୃତି ସର୍ବଦା ଯିବା ଆସିବା କରୁଛନ୍ତି । ସେମାନଙ୍କର ବର୍ଷାଧିକ ପୂର୍ବରୁ ରାମ, ମନମୋହନ, ସୁରେନ୍ଦ୍ର, କେଦାର ଆସିଛନ୍ତି ।

ପ୍ରାୟ ପାଞ୍ଚମାସ ହେଲା ଶ୍ରୀରାମକୃଷ୍ଣ ବିଦ୍ୟାସାଗରଙ୍କ 'ବାଦୁଡ଼ ବାଗାନ' ଘରକୁ ଶୁଭାଗମନ କରିଥିଲେ । ଦୁଇମାସ ହେଲା ଶ୍ରୀଯୁକ୍ତ କେଶବ ସେନ୍‌ଙ୍କ ସହିତ ବିଜୟାଦି ବ୍ରାହ୍ମଭକ୍ତଙ୍କ ସଙ୍ଗରେ ଷ୍ଟିମରରେ ଆନନ୍ଦ କରୁ କରୁ କଲିକତା ଯାଇଥିଲେ ।

ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ମୁଖୋପାଧ୍ୟାୟ କଲିକତାର ଶ୍ୟାମପୁକୁର ପଲ୍ଲୀରେ ବାସ କରନ୍ତି । ତାଙ୍କର ଆଦି ନିବାସ ଜନାଇ ଗ୍ରାମରେ । ଏକ୍‌ସଚେଞ୍ଜର ବଡ଼ବାବୁ । ନିଲାମ କାର୍ଯ୍ୟ ତଦାରଖ କରନ୍ତି । ପ୍ରଥମ ସ୍ତ୍ରୀଙ୍କର ସନ୍ତାନ ନ ହେବାରୁ ତାଙ୍କର ମତ ନେଇ ଦ୍ୱିତୀୟଥର ଦାରପରିଗ୍ରହ କରିଛନ୍ତି, ତାଙ୍କର ଏକମାତ୍ର ପୁତ୍ରସନ୍ତାନ ହୋଇଛି । ଠାକୁର ଶ୍ରୀରାମକୃଷ୍ଣଙ୍କୁ ପ୍ରାଣକୃଷ୍ଣ ଖୁବ୍ ଭକ୍ତି କରନ୍ତି । ଟିକିଏ ସ୍ଥୂଳକାୟ, ତେଣୁ ଠାକୁରେ ତାଙ୍କୁ 'ମୋଟା ବ୍ରାହ୍ମଣ' ବୋଲି କହନ୍ତି । ଅତି ସଜ୍ଜନ ବ୍ୟକ୍ତି । ପ୍ରାୟ ନଅମାସ ହେବ ଠାକୁରେ ତାଙ୍କ ଘରଠାରେ ଭକ୍ତଙ୍କ ସଙ୍ଗରେ ନିମନ୍ତ୍ରଣ ଗ୍ରହଣ କରିଥିଲେ । ପ୍ରାଣକୃଷ୍ଣ ନାନା ବ୍ୟଞ୍ଜନ ଓ ମିଷ୍ଟାନ୍ନାଦି କରି ଅନ୍ନଭୋଗ ଦେଇଥିଲେ ।

ଠାକୁରେ ଚଟାଣରେ ବସିଛନ୍ତି । ପାଖରେ ଏକ ଚାଙ୍ଗୁଡ଼ି ଜିଲିପି — କୌଣସି ଭକ୍ତ ଆଣିଛନ୍ତି । ସେ ଟିକିଏ ଜିଲିପି ଭାଙ୍ଗି ଖାଇଲେ ।

ଶ୍ରୀରାମକୃଷ୍ଣ (ପ୍ରାଣକୃଷ୍ଣାଦିଙ୍କ ପ୍ରତି, ସହାସ୍ୟ) — ଦେଖୁଛ, ମୁଁ ମାଆଙ୍କର ନାମ କରେ ବୋଲି ଖାଇବାକୁ ପାଉଛି । (ହାସ୍ୟ)

''କିନ୍ତୁ ସେ ଲାଉ କଖାରୁ ଦିଅନ୍ତି ନାହିଁ—ସେ ଅମୃତଫଳ ଦିଅନ୍ତି—ଜ୍ଞାନ, ପ୍ରେମ, ବିବେକ, ବୈରାଗ୍ୟ !—''

ଘରେ ଜଣେ ଛଅ ସାତବର୍ଷ ବୟସର ବାଳକ ପ୍ରବେଶ କଲା । ଠାକୁର ଶ୍ରୀରାମକୃଷ୍ଣଙ୍କର ବାଳକାବସ୍ଥା । ଜଣେ ପିଲା ଆଉ ଜଣେ ପିଲାଠାରୁ ଖାଦ୍ୟଦ୍ରବ୍ୟ ଲୁଚାଇ ରଖେ—କାଳେ ସେ ଖାଇଯିବ ! ଠାକୁରଙ୍କର ମଧ୍ୟ ଠିକ୍ ସେହି ଅପୂର୍ବ ବାଳକବତ୍ ଅବସ୍ଥା । ସେ ଜିଲିପିର ଚାଙ୍ଗୁଡ଼ିଟି ହାତ ଘୋଡ଼ାଇ ଲୁଚାଉଛନ୍ତି । କ୍ରମେ ସେ ଚାଙ୍ଗୁଡ଼ିଟି ଗୋଟିଏ ପାଖକୁ ଘୁଞ୍ଚାଇ ରଖିଦେଲେ ।

ପ୍ରାଣକୃଷ୍ଣ ଗୃହସ୍ଥ; କିନ୍ତୁ ସେ ବେଦାନ୍ତ ଚର୍ଚ୍ଚା କରନ୍ତି । କହନ୍ତି—ବ୍ରହ୍ମ ସତ୍ୟ, ଜଗତ୍ ମିଥ୍ୟା; ସେ ହିଁ ମୁଁ—ସୋଽହଂ । ଠାକୁରେ ତାଙ୍କୁ କହନ୍ତି—କଳିରେ ଅନ୍ନଗତ ପ୍ରାଣ, କଳିରେ ନାରଦୀୟ ଭକ୍ତି ।

'ସେ ଯେ ଭାବର ବିଷୟ, ଭାବ ବିନା ଅଭାବରେ କିଏ କ'ଣ ଧରିପାରେ !'

—ବାଳକ ପରି ହାତ ଘୋଡ଼ାଇ ମିଷ୍ଟାନ୍ନ ଲୁଚାଉ ଲୁଚାଉ ଠାକୁରେ ସମାଧିସ୍ଥ ହେଲେ ।

## (୨)

## ଭାବରାଜ୍ୟ ଓ ରୂପଦର୍ଶନ

ଠାକୁର ସମାଧିସ୍ଥ ! ବହୁକ୍ଷଣ ଭାବାବିଷ୍ଟ ହୋଇ ବସିଛନ୍ତି । ଦେହ ହଲୁନାହିଁ, ଚକ୍ଷୁ ସ୍ପନ୍ଦନହୀନ, ନିଃଶ୍ୱାସ ବହୁଛି କି ନାହିଁ ବୁଝାଯାଉ ନାହିଁ ।

ବହୁସମୟ ପରେ ଦୀର୍ଘନିଃଶ୍ୱାସ ପକାଇଲେ, ଯେପରି ଇନ୍ଦ୍ରିୟ-ରାଜ୍ୟକୁ ପୁଣି ଫେରି ଆସୁଛନ୍ତି ।

ଶ୍ରୀରାମକୃଷ୍ଣ (ପ୍ରାଣକୃଷ୍ଣଙ୍କ ପ୍ରତି)—ସେ କେବଳ ନିରାକାର ନୁହନ୍ତି, ସେ ପୁଣି ସାକାର । ତାଙ୍କର ରୂପ ଦର୍ଶନ କରାଯାଏ । ଭାବଭକ୍ତିଦ୍ୱାରା ତାଙ୍କର ସେହି ଅତୁଳନୀୟ ରୂପ ଦର୍ଶନ କରାଯାଏ । ମା ନାନା ରୂପରେ ଦର୍ଶନ ଦିଅନ୍ତି ।

### ଗୌରାଙ୍ଗ ଦର୍ଶନ—ରତିର ମା' ବେଶରେ ମା'

''କାଲି ମାଆଙ୍କୁ ଦେଖିଲି । ଗେରୁଆ ଜାମାପିନ୍ଧା, ଧଡ଼ି ସିଲାଇ ନାହିଁ, ମୋ ସଙ୍ଗରେ କଥା କହୁଛନ୍ତି ।

''ଆଉଦିନେ ମୁସଲମାନ ଝିଅ ରୂପରେ ମୋ ନିକଟକୁ ଆସିଥିଲେ—ମୁଣ୍ଡରେ ତିଳକ, କିନ୍ତୁ ଦିଗମ୍ବରୀ । ଛଅ ସାତବର୍ଷର କନ୍ୟା—ମୋ ସଙ୍ଗେ ସଙ୍ଗେ ବୁଲିବାକୁ ଲାଗିଲେ ଓ ଫେଚ୍‌କାମି କରିବାକୁ ଲାଗିଲେ ।

''ହୃଦୁର ଘରେ ଯେତେବେଳେ ଥିଲି—ଗୌରାଙ୍ଗ ଦର୍ଶନ ହୋଇଥିଲା—କଳାଧଡ଼ିର ଲୁଗା ପିନ୍ଧା ।

''ହଳଧାରୀ କହେ—ସେ ଭାବ ଓ ଅଭାବର ଅତୀତ । ମୁଁ ମାଆଙ୍କୁ ଯାଇ କହିଲି—ମା, ହଳଧାରୀ ଏ କଥା କହୁଛି, ତାହା ହେଲେ ରୂପ ଇତ୍ୟାଦି କଅଣ ସବୁ ମିଥ୍ୟା ? ମା ରତିର ମାଆ ବେଶରେ ମୋ ନିକଟକୁ ଆସି କହିଲେ, '**ତୁ ଭାବରେ ଥା ।**' ମୁଁ ମଧ୍ୟ ହଳଧାରୀକୁ ସେହି କଥା କହିଲି ।

''ଥରେ ଥରେ ସେହି କଥା ଭୁଲିଯାଏ ବୋଲି କଷ୍ଟ ହୁଏ । ଭାବରେ ନ ଥିବାରୁ ଦାନ୍ତ ଭାଙ୍ଗିଗଲା । **ତେଣୁ ଦୈବବାଣୀ ବା ପ୍ରତ୍ୟକ୍ଷ ନ ହେଲେ ଭାବରେ ରହିବି**—ଭକ୍ତ ନେଇ ରହିବି । କଅଣ କହୁଛ ?''

ପ୍ରାଣକୃଷ୍ଣ—ଆଜ୍ଞା ।

**ଭକ୍ତିର ଅବତାର କାହିଁକି ? ରାମଙ୍କ ଇଚ୍ଛା**

ଶ୍ରୀରାମକୃଷ୍ଣ—ଆଉ ତୁମକୁ ବା କାହିଁକି ପଚାରୁଛି ? ଏହା ଭିତରେ କିଏ ଜଣେ ଅଛି । ସେହି ମୋତେ ନେଇ ଏପରି କରୁଛି । ମଝିରେ ମଝିରେ ଦେବଭାବ ପ୍ରାୟ ହେଉଥିଲା —ପୂଜା ନ କଲେ ମୁଁ ଶାନ୍ତ ହେଉ ନ ଥିଲି ।

''ମୁଁ ଯନ୍ତ୍ର ସେ ଯନ୍ତ୍ରୀ । ସେ ଯେପରି କରାନ୍ତି ସେପରି କରେ । ଯେପରି କୁହାନ୍ତି ସେପରି କହେ ।

''ପ୍ରସାଦ ବଲେ ଭବ ସାଗରେ ବସେ ଆଛି ଭାସିୟେ ଭେଲା ।
ଜୋୟାର ଏଲେ ଉଜିୟେ ଯାବୋ, ଭାଟିୟେ ଯାବ ଭାଟାର ବେଲା ।।

''ଅଇଁଠାପତ୍ର ଝଡ଼ରେ ଉଡ଼ିଯାଇ କେତେବେଳେ ଭଲ ଜାଗାରେ ପଡ଼େ ତ କେତେବେଳେ ନର୍ଦ୍ଦମାରେ ଯାଇ ପଡ଼େ—ଝଡ଼ ଯେଉଁ ଦିଗକୁ ନେଇଯାଏ ।

''ତନ୍ତୀ କହିଲା—ରାମଙ୍କ ଇଚ୍ଛାରେ ଡକାୟତି ହେଲା, ରାମଙ୍କ ଇଚ୍ଛାରେ ମୋତେ ପୁଲିସ୍ ଧରିଲା, ପୁଣି ରାମଙ୍କ ଇଚ୍ଛାରେ ଛାଡ଼ିଦେଲା ।

''ହନୁମାନ କହିଲେ—ହେ ରାମ, ଶରଣାଗତ, ଶରଣାଗତ ! ଏହି ଆଶୀର୍ବାଦ କର, ଯେପରି ତୁମ ପାଦପଦ୍ମରେ ଶୁଦ୍ଧା ଭକ୍ତି ହୁଏ, ଆଉ ଯେପରି ତୁମର ଭୁବନମୋହିନୀ ମାୟାରେ ମୁଗ୍ଧ ନ ହୁଏ !

''ବ୍ରାହ୍ମଣୀ ବେଙ୍ଗ ମୁମୂର୍ଷୁ ଅବସ୍ଥାରେ କହିଲା—ରାମ, ଯେତେବେଳେ ସାପ ଧରେ ସେତେବେଳେ 'ରାମ ରକ୍ଷା କର' ବୋଲି ପାଟି କରେ, କିନ୍ତୁ ବର୍ତ୍ତମାନ ରାମଙ୍କ ଧନୁବିନ୍ଧାରେ ମରୁଛି, ତେଣୁ ଚୁପ୍ କରି ଅଛି ।

''ଆଗେ ପ୍ରତ୍ୟକ୍ଷ ଦର୍ଶନ ହେଉଥିଲା—ଏହି ଆଖିରେ ! —ଯେପରି ତୁମକୁ ଦେଖୁଛି । ବର୍ତ୍ତମାନ ଭାବାବସ୍ଥାରେ ଦର୍ଶନ ହୁଏ । ''ଈଶ୍ୱରଲାଭ ହେଲେ ବାଳକର ସ୍ୱଭାବ ହୁଏ । ଯେ ଯାହାକୁ ଚିନ୍ତା କରେ, ତାହାର ସତ୍ତା ସେ ପାଏ । ଈଶ୍ୱରଙ୍କର ସ୍ୱଭାବ ବାଳକ ପରି । ବାଳକ ଯେପରି ଖେଳଘର କରେ, ଭାଙ୍ଗେ, ଗଢ଼େ—ସେ ମଧ୍ୟ ସେହିପରି, ସୃଷ୍ଟି, ସ୍ଥିତି, ପ୍ରଳୟ କରୁଛନ୍ତି । ବାଳକ ଯେପରି

କୌଣସି ଗୁଣର ବଶ ନୁହେଁ—ସେ ମଧ୍ୟ ସେହିପରି ସତ୍ତ୍ୱ, ରଜଃ, ତମଃ ତିନି ଗୁଣର ଅତୀତ ।

''ସେଥିପାଇଁ ପରମହଂସମାନେ ଦଶ ପାଞ୍ଚ ଜଣ ବାଳକ ସଙ୍ଗରେ ରଖନ୍ତି, ସ୍ୱଭାବ ଆରୋପ କରିବା ପାଇଁ ।''

ଆଗରପଡ଼ାରୁ ଜଣେ କୋଡ଼ିଏ ବାଇଶ ବର୍ଷର ଯୁବକ ଆସିଛନ୍ତି । ଯୁବକ ଜଣକ ଯେତେବେଳେ ଆସନ୍ତି, ଠାକୁରଙ୍କୁ ଇସାରା କରି ନିରୋଳାକୁ ନେଇ ଯାଆନ୍ତି ଓ ଚୁପ୍ ଚୁପ୍ କରି ମନର କଥା କହନ୍ତି । ସେ ନୂଆ ଯାତାୟାତ କରୁଛନ୍ତି । ଆଜି ସେ ନିକଟକୁ ଆସି ତଳେ ବସିଛନ୍ତି ।

## ପ୍ରକୃତିଭାବ ଓ କାମଜୟ—ସରଳତା ଓ ଈଶ୍ୱରଲାଭ

ଶ୍ରୀରାମକୃଷ୍ଣ (ଯୁବକଙ୍କ ପ୍ରତି)—ଆରୋପ କଲେ ଭାବ ବଦଳି ଯାଏ । ପ୍ରକୃତିଭାବ ଆରୋପ କଲେ କ୍ରମେ କାମାଦି ରିପୁ ନଷ୍ଟ ହୋଇଯାଏ । ଠିକ୍ ସ୍ତ୍ରୀଲୋକଙ୍କ ପରି ବ୍ୟବହାର ହୋଇଯାଏ । ଯାତ୍ରାରେ ଯେଉଁମାନେ ସ୍ତ୍ରୀ-ବେଶ ହୁଅନ୍ତି ସେମାନଙ୍କୁ ଗାଧୋଇବା ସମୟରେ ଦେଖିଛି—ସ୍ତ୍ରୀଲୋକଙ୍କ ପରି ଦାନ୍ତ ମାଜନ୍ତି, କଥା କହନ୍ତି ।

''ତୁମେ ଦିନେ ଶନିବାର ବା ମଙ୍ଗଳବାର ଆସ ।''

(ପ୍ରାଣକୃଷ୍ଣଙ୍କ ପ୍ରତି) ''ବ୍ରହ୍ମ ଓ ଶକ୍ତି ଅଭେଦ । ଶକ୍ତିକୁ ନ ମାନିଲେ ଜଗତ୍ ମିଥ୍ୟା ହୋଇଯାଏ; ମୁଁ, ତୁମେ, ଘର, ଦ୍ୱାର, ପରିବାର—ସବୁ ମିଥ୍ୟା । ଏହି ଆଦ୍ୟାଶକ୍ତି ଅଛନ୍ତି ବୋଲି ଜଗତ ତିଷ୍ଠି ରହିଛି । ଖୁଣ୍ଟି ନ ଥିଲେ ପ୍ରତିମା ହୁଏ ନାହିଁ—ସୁନ୍ଦର ଦୁର୍ଗାଦେବୀଙ୍କ ପ୍ରତିମା ବି ହୁଏ ନାହିଁ ।

**''ବିଷୟବୁଦ୍ଧି ତ୍ୟାଗ ନ କଲେ ଚୈତନ୍ୟ ହୁଏ ନାହିଁ**—ଭଗବାନଙ୍କୁ ଲାଭ କରାଯାଏ ନାହିଁ । ବିଷୟବୁଦ୍ଧି ଥିଲେ କପଟତା ହୁଏ । ସରଳ ନ ହେଲେ ତାଙ୍କୁ ଲାଭ କରାଯାଏ ନାହିଁ—

''ଏଇସି ଭକ୍ତି କର ଘଟ୍ ଭିତର, ଛୋଡ଼୍ କପଟ ଚତୁରାଇ ।
ସେବା ବନ୍ଦି ଅଭର ଅଧୀନତା ସହଜେ ମିଳି ରଘୁରାଇ ।।

''ଯେଉଁମାନେ ବିଷୟ-କର୍ମ କରନ୍ତି—ଅଫିସ୍ କାମ କିମ୍ବା ବ୍ୟବସାୟ—ସେମାନେ ମଧ୍ୟ ସତ୍ୟରେ ରହିବା ଉଚିତ । **ସତ୍ୟକଥା କଳିର ତପସ୍ୟା ।''**

ପ୍ରାଣକୃଷ୍ଣ—ଅସ୍ମିନ୍ ଧର୍ମେ ମହେଶି ସ୍ୟାତ୍ ସତ୍ୟବାଦୀ ଜିତେନ୍ଦ୍ରିୟଃ ।
ପରୋପକାରନିରତୋ ନିର୍ବିକାରଃ ସଦାଶୟଃ ।।

''ଏହା ମହାନିର୍ବାଣତନ୍ତ୍ରରେ ଅଛି ।''

ଶ୍ରୀରାମକୃଷ୍ଣ—ହଁ, ଏଗୁଡ଼ିକୁ ଧାରଣା କରିବାକୁ ହୁଏ ।

## (୩)

## ଠାକୁର ଶ୍ରୀରାମକୃଷ୍ଣଙ୍କର ଯଶୋଦାଙ୍କ ପରି ଭାବ ଓ ସମାଧି

ଠାକୁର ଯାଇ ଛୋଟ ଖଟ ଉପରେ ନିଜ ଆସନରେ ଉପବିଷ୍ଟ ହୋଇଛନ୍ତି । ସଦାସର୍ବଦା ଭାବରେ ପୂର୍ଣ୍ଣ । ଭାବ-ଚକ୍ଷୁରେ ରାଖାଲଙ୍କୁ ଦର୍ଶନ କରୁଛନ୍ତି ।

ରାଖାଲଙ୍କୁ ଦେଖୁ ଦେଖୁ ବାତ୍ସଲ୍ୟ ରସରେ ଆପ୍ଲୁତ ହେଲେ । ଅଙ୍ଗରେ ପୁଲକ ହେଉଛି । ଏହି ଆଖିରେ କ'ଣ ଯଶୋଦା ଗୋପାଳଙ୍କୁ ଦେଖୁଥିଲେ ।

ଦେଖୁ ଦେଖୁ ପୁଣି ଠାକୁର ସମାଧିସ୍ଥ ହେଲେ । ଘରମଧ୍ୟସ୍ଥ ଭକ୍ତମାନେ ଅବାକ୍ ଓ ନିସ୍ତବ୍ଧ ହୋଇ ଠାକୁର ଶ୍ରୀରାମକୃଷ୍ଣଙ୍କର ଏହି ଅଦ୍ଭୁତ ଭାବାବସ୍ଥା ଦର୍ଶନ କରୁଛନ୍ତି ।

କିଞ୍ଚିତ୍ ପ୍ରକୃତିସ୍ଥ ହୋଇ କହୁଛନ୍ତି, "ରାଖାଲଙ୍କୁ ଦେଖି ଉଦ୍ଦୀପନ କାହିଁକି ହୁଏ ? ଯେତେ ଆଗେଇଯିବ ସେତେ ଐଶ୍ୱର୍ଯ୍ୟର ଭାଗ କମ ପଡ଼ିଯିବ । ସାଧକର ପ୍ରଥମ ଦର୍ଶନ ହୁଏ ଦଶଭୁଜା, ଈଶ୍ୱରୀ ମୂର୍ତ୍ତି । ସେ ମୂର୍ତ୍ତିରେ ଐଶ୍ୱର୍ଯ୍ୟର ବେଶୀ ପ୍ରକାଶ । ତା'ପରେ ଦର୍ଶନ ଦ୍ୱିଭୁଜା, ସେତେବେଳେ ଦଶହାତ ନାହିଁ—ଏତେ ଅସ୍ତ୍ରଶସ୍ତ୍ର ନାହିଁ । ତା'ପରେ ଗୋପାଳ ମୂର୍ତ୍ତିର ଦର୍ଶନ—କୌଣସି ଐଶ୍ୱର୍ଯ୍ୟ ନାହିଁ; କେବଳ ଛୋଟ ପିଲାର ମୂର୍ତ୍ତି । ଏହା ପରେ ମଧ୍ୟ ଅଛି—କେବଳ ଜ୍ୟୋତିଃ-ଦର୍ଶନ ।

### ସମାଧି ପରେ ଠିକ୍ ବ୍ରହ୍ମଜ୍ଞାନର ଅବସ୍ଥା—ବିଚାର ଓ ଆସକ୍ତି ତ୍ୟାଗ

"ତାଙ୍କୁ ଲାଭ କଲେ, ତାଙ୍କଠାରେ ସମାଧିସ୍ଥ ହେଲେ—ଜ୍ଞାନ-ବିଚାର ଆଉ ରହେ ନାହିଁ ।

"ଜ୍ଞାନ-ବିଚାର ଆଉ କେତେ ସମୟ ? ଯେପର୍ଯ୍ୟନ୍ତ ଅନେକ ବୋଲି ବୋଧହୁଏ—ଯେପର୍ଯ୍ୟନ୍ତ ଜୀବ, ଜଗତ୍, ମୁଁ, ତୁମେ ବୋଧ ରହେ । ଯେତେବେଳେ ଠିକ୍ ଠିକ୍ ଏକ-ଜ୍ଞାନ ହୁଏ, ସେତେବେଳେ ଚୁପ୍ ହୋଇଯାଏ । ଯେପରି ତ୍ରୈଲଙ୍ଗ ସ୍ୱାମୀ ।

"ବ୍ରାହ୍ମଣ-ଭୋଜନ ବେଳେ ଦେଖିନାହଁ, ପ୍ରଥମେ ଖୁବ୍ ହୋହା ଘୋଘା; ପେଟ ଯେତେ ପୂରିଆସୁଛି, ହାଉହାଉ ସେତେ କମିଯାଉଛି । ଯେତେବେଳେ ଦହିବସା ଆସିଲା, ସେତେବେଳେ କେବଳ ସୁପ୍‌ସାପ୍, ଆଉ କୌଣସି ଶବ୍ଦ ନାହିଁ । ତା'ପରେ ନିଦ୍ରା—ସମାଧି । ସେତେବେଳେ ଆଉ ହୋହା ଆଦୌ ନାହିଁ ।

(ମାଷ୍ଟର ଓ ପ୍ରାଣକୃଷ୍ଣଙ୍କ ପ୍ରତି) "ଅନେକେ ବ୍ରହ୍ମଜ୍ଞାନର କଥା କହନ୍ତି କିନ୍ତୁ ନୀଚ ଜିନିଷ ନେଇ ଥାଆନ୍ତି—ଘରଦ୍ୱାର, ଟଙ୍କା, ମାନ, ଇନ୍ଦ୍ରିୟସୁଖ । ମନୁମେଣ୍ଟ (Monument) ତଳେ ଯେତେ ସମୟ ରହିବ, ସେପର୍ଯ୍ୟନ୍ତ ଗାଡ଼ି, ଘୋଡ଼ା, ସାହେବ, ମେମ୍—ଏହିସବୁ ଦେଖାଯାଏ । ଉପରକୁ ଉଠିଲେ କେବଳ ଆକାଶ,

ସମୁଦ୍ର ଧୂ ଧୂ କରୁଛି !—ସେତେବେଳେ ଘର, ଘୋଡ଼ା, ଗାଡ଼ି, ମଣିଷ ଏସବୁ ଆଉ ଭଲ ଲାଗେ ନାହିଁ, ଏସବୁ ପିମ୍ପୁଡ଼ି ପରି ଦେଖାଯାଏ ।

''ବ୍ରହ୍ମଜ୍ଞାନ ହେଲେ ସଂସାରାସକ୍ତି, କାମିନୀ-କାଞ୍ଚନରେ ଉତ୍ସାହ—ସବୁ ଚାଲିଯାଏ; ସବୁ ଶାନ୍ତ ହୋଇଯାଏ । କାଠ ପୋଡ଼ିବା ବେଳେ ବହୁତ ଚଡ଼ଚଡ଼ ଶବ୍ଦ ଆଉ ନିଆଁର ଝାସ । ଯେତେବେଳେ ସବୁ ପୋଡ଼ିଗଲା, ପାଉଁଶ ହୋଇଗଲା—ସେତେବେଳେ ଆଉ ଶବ୍ଦ ରହେ ନାହିଁ । ଆସକ୍ତି ଗଲେ ଉତ୍ସାହ ଯାଏ—ଶେଷରେ ଶାନ୍ତି ।

''ଈଶ୍ୱରଙ୍କ ନିକଟକୁ ଯେତେ ଆଗେଇଯିବ ସେତେ ଶାନ୍ତି । **ଶାନ୍ତିଃ ଶାନ୍ତିଃ ଶାନ୍ତିଃ ପ୍ରଶାନ୍ତିଃ** । ଗଙ୍ଗା ନିକଟକୁ ଯେତେ ଯିବ ସେତେ ଶୀତଳ ଲାଗିବ । ଗାଧୋଇଲେ ଆହୁରି ଶାନ୍ତି ।

''ତେବେ ଜୀବଜଗତ୍, ଚତୁର୍ବିଂଶତି ତତ୍ତ୍ୱ—ଏସବୁ, ସେ ଅଛନ୍ତି ବୋଲି ଅଛି । ତାଙ୍କୁ ବାଦ୍ ଦେଲେ ଆଉ କିଛି ହିଁ ରହେ ନାହିଁ । ଏକ ପରେ ଶୂନ୍ୟ ଦେଇଗଲେ ସଂଖ୍ୟା ବଢ଼ିଯାଏ । ଏକକୁ ପୋଛିଦେଲେ ଶୂନ୍ୟର କୌଣସି ମୂଲ୍ୟ ରହେ ନାହିଁ ।''

ପ୍ରାଣକୃଷ୍ଣଙ୍କୁ କୃପା କରିବା ପାଇଁ ଠାକୁର କଅଣ ଏଥର ନିଜ ଅବସ୍ଥା ସମ୍ବନ୍ଧରେ ଇଙ୍ଗିତ କରୁଛନ୍ତି ?

### ଠାକୁରଙ୍କର ଅବସ୍ଥା—ବ୍ରହ୍ମଜ୍ଞାନ ପରେ 'ଭକ୍ତିର ମୁଁ'

ଠାକୁର କହୁଛନ୍ତି— ''ବ୍ରହ୍ମଜ୍ଞାନ ପରେ—ସମାଧି ପରେ—କେହି କେହି ଖସି ଆସି 'ବିଦ୍ୟାର ମୁଁ', 'ଭକ୍ତିର ମୁଁ' ନେଇ ରହନ୍ତି । ବଜାର ସରିଗଲେ କେହି କେହି ଆପଣା ଖୁସିରେ ବଜାରରେ ରହନ୍ତି । ଯେପରି ନାରଦାଦି । ସେମାନେ ଲୋକଶିକ୍ଷା ପାଇଁ 'ଭକ୍ତିର ମୁଁ' ନେଇ ରହନ୍ତି । ଶଙ୍କରାଚାର୍ଯ୍ୟ ଲୋକଶିକ୍ଷା ପାଇଁ 'ବିଦ୍ୟାର ମୁଁ' ରଖିଥିଲେ ।

''ଏତେ ଟିକିଏ ବି ଆସକ୍ତି ରହିଲେ ତାଙ୍କୁ ମିଳେ ନାହିଁ । ସୂତା ଭିତରେ ଟିକିଏ ନାଆଁକୁ ବି ଆଁସୁ ଥିଲେ ଛୁଞ୍ଚି ଭିତରେ ଯିବ ନାହିଁ ।

''ଯେ ଈଶ୍ୱରଲାଭ କରିଛନ୍ତି, ତାଙ୍କର କାମ-କ୍ରୋଧାଦି ନାମକୁ ମାତ୍ର । ଯେପରି ପୋଡ଼ା ଦଉଡ଼ି—ଦଉଡ଼ିର ଆକାର—କିନ୍ତୁ ଫୁଙ୍କି ଦେଲେ ଉଡ଼ିଯାଏ ।

''ମନ ଆସକ୍ତିଶୂନ୍ୟ ହେଲେ ତାଙ୍କର ଦର୍ଶନ ହୁଏ । ଶୁଦ୍ଧ ମନରେ ଯାହା ଉଠିବ, ତାହା ତାଙ୍କର ହିଁ ବାଣୀ । ଶୁଦ୍ଧ ମନ ଯାହା, ଶୁଦ୍ଧ ବୁଦ୍ଧି ମଧ ତାହା—ଶୁଦ୍ଧ ଆତ୍ମା ମଧ ତାହା; କାହିଁକି ନା, ତାଙ୍କ ଛଡ଼ା ଅନ୍ୟ କିଛି ଶୁଦ୍ଧ ନୁହେଁ ।

''ତାଙ୍କୁ କିନ୍ତୁ ଲାଭକଲେ ଧର୍ମାଧର୍ମର ପାର ହୋଇପାର ।''

ଏହା କହି ଠାକୁର ସେହି ଦେବଦୁର୍ଲ୍ଲଭ କଣ୍ଠରେ ରାମପ୍ରସାଦଙ୍କ ଗୀତ ଗାଇଲେ—

''ଆୟ ମନ୍ ବେଡ଼ାତେ ଯାବି ।
କାଲୀ-କଳ୍ପତରୁ ମୂଲେ ରେ ଚାରି ଫଳ କୁଡ଼ାୟେ ପାବି ।।
ପ୍ରବୃତ୍ତି ନିବୃତ୍ତି ଜାୟା ନିବୃତ୍ତିରେ ସଙ୍ଗେ ଲବି ।
ବିବେକ ନାମେ ତାର ବେଟାରେ ତତ୍ତ୍ୱକଥା ତାୟ ସୁଧାବି ।।''

## (୪)

## ଠାକୁର ଶ୍ରୀରାମକୃଷ୍ଣଙ୍କର ଶ୍ରୀରାଧା-ଭାବ

ଠାକୁର ଦକ୍ଷିଣ ପୂର୍ବ ବାରଣ୍ଡାରେ ଆସି ବସିଛନ୍ତି । ପ୍ରାଣକୃଷ୍ଣାଦି ଭକ୍ତଗଣ ମଧ୍ୟ ସଙ୍ଗେ ସଙ୍ଗେ ଆସିଛନ୍ତି । ହାଜରା ମହାଶୟ ବାରଣ୍ଡାରେ ବସିଛନ୍ତି । ଠାକୁର ହସି ହସି ପ୍ରାଣକୃଷ୍ଣଙ୍କୁ କହୁଛନ୍ତି—

''ହାଜରା କିଛି କମ୍ ଲୋକ ନୁହେଁ । ଯଦି ଏ (ନିଜେ) ବଡ଼ ଦାରୋଗା ହୁଏ, ତେବେ ହାଜରା ଛୋଟ ଦାରୋଗା ।'' (ସମସ୍ତଙ୍କର ହାସ୍ୟ)

ନବକୁମାର ବାରଣ୍ଡାରେ ଆସି ଠିଆ ହୋଇଛନ୍ତି । ଭକ୍ତମାନଙ୍କୁ ଦେଖି ଚାଲିଗଲେ । ଠାକୁର କହୁଛନ୍ତି—ଅହଂକାରର ମୂର୍ତ୍ତି ।

ସମୟ ସାଢ଼େ ନଅଟା ହୋଇଛି । ପ୍ରାଣକୃଷ୍ଣ ପ୍ରଣାମ କରି ବିଦାୟ ଗ୍ରହଣ କଲେ—କଲିକତା ଘରକୁ ଫେରିଯିବେ ।

ଜଣେ ବୈରାଗୀ ଗୋପୀଯନ୍ତ୍ରରେ ଠାକୁରଙ୍କ ଘରେ ଗାଉଛନ୍ତି—

'ନିତ୍ୟାନନ୍ଦେର ଜାହାଜ ଏସେଛେ ।
ତୋରା ପାରେ ଯାବି ତୋ ଧର ଏସେ ।।...''

''ଏଇ ବେଲା ନେ ଘରଛେୟେ ।
ଏବାରେ ବର୍ଷା ଭାରୀ, ହଓ ହୁଁ ଶାରୀ, ଲଗୋ ଆଦା ଜଲ ଖେୟେ ।''...

''କାର ଭାବେ ନଦେ ଏସେ, କାଙ୍ଗାଲ ବେଶେ, ହରି ହୟେ ବଲ୍ଛ ହରି ।
କାର ଭାବେ ଧରେଛ ଭାବ, ଏମନ ସ୍ୱଭାବ, ତାଓ ତ କିଛୁ ବୁଝତେ ନାରି ।''

ଠାକୁର ଗୀତ ଶୁଣୁଛନ୍ତି, ଏହି ସମୟରେ ଶ୍ରୀଯୁକ୍ତ କେଦାର ଚାଟାର୍ଜୀ ଆସି ପ୍ରଣାମ କଲେ । ସେ ଅଫିସ୍ ପୋଷାକ ପିନ୍ଧି ଆସିଛନ୍ତି—ଚାପକାନ୍, ଘଡ଼ି, ଘଡ଼ିର ଚେନ୍; କିନ୍ତୁ ଈଶ୍ୱରଙ୍କ କଥା ପଡ଼ିଲାମାତ୍ରେ ସେ ଆଖି-ଲୁହରେ ଭାସିଯାଆନ୍ତି । ଅତି ପ୍ରେମିକ ଲୋକ । ଅନ୍ତରରେ ଗୋପୀର ଭାବ ।

କେଦାରଙ୍କୁ ଦେଖି ଠାକୁରଙ୍କର ଏକାବେଳକେ ଶ୍ରୀବୃନ୍ଦାବନ-ଲୀଳା ଉଦ୍ଦୀପନ ହେଲା । ପ୍ରେମରେ ମତୁଆଲା ହୋଇ ଦଣ୍ଡାୟମାନ ହେଲେ ଓ କେଦାରଙ୍କୁ ସମ୍ବୋଧନ କରି ଗାଇଲେ—

''ସଖି, ସେ ବନ କତ ଦୂର ।

(ଯେଥା ଆମାର ଶ୍ୟାମସୁନ୍ଦର) (ଆର ଚଲିତେ ଯେ ନାରି) ।''

ଶ୍ରୀରାଧାଙ୍କ ଭାବରେ ଗୀତ ଗାଉ ଗାଉ ଠାକୁର ସମାଧିସ୍ଥ, ଚିତ୍ରାର୍ପିତ ପରି ଦଣ୍ଡାୟମାନ । କେବଳ ଚକ୍ଷୁର ଦୁଇ କୋଣରୁ ଆନନ୍ଦାଶ୍ରୁ ପଡୁଅଛି ।

କେଦାର ଭୂମିଷ୍ଠ । ଠାକୁରଙ୍କର ଚରଣସ୍ପର୍ଶ କରି ସ୍ତବ କରୁଛନ୍ତି—

ହୃଦୟ-କମଲମଧ୍ୟେ ନିର୍ବିଶେଷଂ ନିରୀହଂ ।
ହରିହରବିଧିବେଦ୍ୟଂ ଯୋଗିଭିର୍ଧ୍ୟାନଗମ୍ୟମ୍ ॥
ଜନନମରଣଭୀତିଭ୍ରଂଶି ସଚ୍ଚିତ୍‌ସ୍ୱରୂପମ୍ ।
ସକଲଭୁବନବୀଜଂ ବ୍ରହ୍ମଚୈତନ୍ୟମୀଡ଼େ ॥

କିଛିକ୍ଷଣ ପରେ ଠାକୁର ଶ୍ରୀରାମକୃଷ୍ଣ ପ୍ରକୃତିସ୍ଥ ହେଉଛନ୍ତି । କେଦାର ନିଜ ଘର ହାଲି ସହରଠାରୁ କଲିକତାର କର୍ମସ୍ଥଳକୁ ଯିବେ । ପଥରେ ଦକ୍ଷିଣେଶ୍ୱର କାଳୀମନ୍ଦିରରେ ଠାକୁର ଶ୍ରୀରାମକୃଷ୍ଣଙ୍କୁ ଦର୍ଶନ କରି ଯାଉଛନ୍ତି । ଟିକିଏ ବିଶ୍ରାମ କରି କେଦାର ବିଦାୟ ଗ୍ରହଣ କଲେ ।

ଏହିପରି ଭକ୍ତଙ୍କ ସଙ୍ଗରେ କଥା କହୁ କହୁ ସମୟ ପ୍ରାୟ ଦୁଇପ୍ରହର ହେଲା । ଶ୍ରୀଯୁକ୍ତ ରାମଲାଲ ଠାକୁରଙ୍କ ପାଇଁ ଥାଳିରେ ମା କାଳୀଙ୍କର ପ୍ରସାଦ ଆଣି ଦେଲେ । ଘର ଭିତରେ ଠାକୁର ଦକ୍ଷିଣାଭିମୁଖ ହୋଇ ଆସନରେ ବସିଲେ ଓ ପ୍ରସାଦ ପାଇଲେ । ଆହାର ବାଳକ ପରି—ଟିକିଏ ଟିକିଏ ସବୁ ମୁହଁରେ ଦେଲେ ।

ଆହାରାନ୍ତେ ଠାକୁର ଛୋଟ ଖଟଟିରେ ଟିକିଏ ବିଶ୍ରାମ ନେଉଛନ୍ତି । କିଛି ସମୟ ପରେ ମାରୁଆଡ଼ି ଭକ୍ତମାନେ ଆସି ଉପସ୍ଥିତ ହେଲେ ।

## (୫)

## ଅଭ୍ୟାସଯୋଗ—ଦୁଇ ପଥ—ବିଚାର ଓ ଭକ୍ତି

. ସମୟ ୩ଟା । ମାରୁଆଡ଼ି ଭକ୍ତମାନେ ତଳେ ବସି ଠାକୁରଙ୍କୁ ପ୍ରଶ୍ନ ପଚାରୁଛନ୍ତି । ମାଷ୍ଟର, ରାଖାଲ ଓ ଅନ୍ୟାନ୍ୟ ଭକ୍ତ ଘରେ ଅଛନ୍ତି ।

ମାରୁଆଡ଼ି ଭକ୍ତ—ମହାରାଜ, ଉପାୟ କଅଣ ?

ଶ୍ରୀରାମକୃଷ୍ଣ—ଦୁଇ ପ୍ରକାର ଅଛି । ବିଚାର-ପଥ, ଏବଂ ଅନୁରାଗ ବା ଭକ୍ତିର ପଥ ।

''ସତ୍ ଅସତ୍ ବିଚାର । ଏକମାତ୍ର ସତ୍ ବା ନିତ୍ୟବସ୍ତୁ ଈଶ୍ୱର, ଆଉ ସମସ୍ତ ଅସତ୍ ବା ଅନିତ୍ୟ, ବାଜୀକର ହିଁ ସତ୍ୟ, ଭେଳିକୀ ମିଥ୍ୟା—ଏହିଟି ବିଚାର । ''ବିବେକ ଆଉ ବୈରାଗ୍ୟ । ଏହି ସତ୍ ଅସତ୍ ବିଚାରର ନାମ ବିବେକ । ବୈରାଗ୍ୟ ଅର୍ଥାତ୍ ସଂସାରର ଦ୍ରବ୍ୟ ଉପରେ ବିରକ୍ତି । ଏହିଟି ଏକାଥରକେ ହୁଏ ନାହିଁ । ପ୍ରତିଦିନ ଅଭ୍ୟାସ କରିବାକୁ ହୁଏ । କାମିନୀ-କାଞ୍ଚନ ପ୍ରଥମେ ମନରୁ

ତ୍ୟାଗ କରିବାକୁ ହୁଏ; ତାହା ପରେ ତାଙ୍କ ଇଚ୍ଛାରେ ମନରୁ ତ୍ୟାଗ କରିବାକୁ ହୁଏ, ବାହାରେ ମଧ୍ୟ ତ୍ୟାଗ କରିବାକୁ ହୁଏ । କଲିକତାର ଲୋକମାନଙ୍କୁ କହିବାର ଶକ୍ତି ନାହିଁ, 'ଈଶ୍ୱରଙ୍କ ପାଇଁ ସବୁ ତ୍ୟାଗ କର' — କହିବାକୁ ହୁଏ 'ମନରେ ତ୍ୟାଗ କର' — ।

''ଅଭ୍ୟାସ-ଯୋଗ ଦ୍ୱାରା କାମିନୀ-କାଞ୍ଚନରେ ଆସକ୍ତି ତ୍ୟାଗ କରାଯାଏ । ଗୀତାରେ ଏ କଥା ଅଛି । ଅଭ୍ୟାସଦ୍ୱାରା ମନରେ ଅସାଧାରଣ ଶକ୍ତି ହୁଏ । ସେତେବେଳେ ଇନ୍ଦ୍ରିୟ ସଂଯମ କରିବାକୁ — କାମ, କ୍ରୋଧ ବଶ କରିବାକୁ କଷ୍ଟ ହୁଏ ନାହିଁ । ଯେପରି କଇଁଛ ହାତଗୋଡ଼ ଭିତରକୁ ଟାଣି ନେଲେ ଆଉ ବାହାର କରେ ନାହିଁ; କୁରାଢ଼ିରେ ଚାରିଖଣ୍ଡ କରି କାଟି ପକାଇଲେ ମଧ୍ୟ ଆଉ ବାହାର କରେ ନାହିଁ ।''

ମାରୁଆଡ଼ି ଭକ୍ତ — ମହାରାଜ, ଦୁଇଟା ପଥ ବୋଲି କହିଲେ ଆଉ ଗୋଟିଏ ପଥ କଅଣ ?

ଶ୍ରୀରାମକୃଷ୍ଣ — ଅନୁରାଗ ବା ଭକ୍ତିପଥ । **ବ୍ୟାକୁଳ ହୋଇ ଥରେ କାନ୍ଦ — ନିର୍ଜ୍ଜନରେ, ଗୋପନରେ — ଦେଖା ଦିଅ ବୋଲି ।**

''ଡାକ୍ ଦେଖି ମନ୍ ଡାକାର ମତନ୍, କେମନ୍ ଶ୍ୟାମା ଥାକ୍‌ତେ ପାରେ ।''

ମାରୁଆଡ଼ି ଭକ୍ତ — ମହାରାଜ, ସାକାର ପୂଜାର ଅର୍ଥ କଅଣ ? ଆଉ ନିରାକାର ନିର୍ଗୁଣ — ଏହାର ମାନେ କଅଣ ?

ଶ୍ରୀରାମକୃଷ୍ଣ — ଯେପରି ବାପର ଫଟୋଗ୍ରାଫ୍ ଦେଖିଲେ ବାପକୁ ମନେ ପଡ଼େ, ସେହିପରି ପ୍ରତିମା ପୂଜା କରୁ କରୁ ସତ୍ୟର ରୂପ ଉଦ୍ଦୀପନ ହୁଏ ।

''ସାକାର ରୂପ କିପରି ଜାଣ ? ଯେପରି ଜଳରାଶି ମଝିରୁ ଭୁଡ଼୍‌ଭୁଡ଼ି ଉଠେ ସେହିପରି । ମହାକାଶ ଚିଦାକାଶରୁ ଗୋଟିଏ ଗୋଟିଏ ରୂପ ଉଠୁଛି ଦେଖାଯାଏ । ଏ ଅବତାର ମଧ୍ୟ ଗୋଟିଏ ରୂପ । ଅବତାର-ଲୀଳା, ଆଦ୍ୟାଶକ୍ତିର ହିଁ ଖେଳା ।

**ପାଣ୍ଡିତ୍ୟ — ମୁଁ କିଏ ? — ମୁଁ ହିଁ ତୁମେ**

''ପାଣ୍ଡିତ୍ୟରେ କଅଣ ଅଛି ? ବ୍ୟାକୁଳ ହୋଇ ଡାକିଲେ ତାଙ୍କୁ ଲାଭ କରାଯାଏ । ନାନା ବିଷୟ ଜାଣିବା ଦରକାର ନାହିଁ ।

''ଯିଏ ଆଚାର୍ଯ୍ୟ, ତାଙ୍କର କେବଳ ପାଞ୍ଚଟା ଜାଣିବା ଦରକାର । ଅନ୍ୟକୁ ବଧ କରିବା ପାଇଁ ଢାଲ ତରବାରି ଦରକାର, ନିଜକୁ ବଧ କରିବା ପାଇଁ ଗୋଟିଏ ଛୁଞ୍ଚି ବା ନହୁରୁଣୀ ହେଲେ ଯଥେଷ୍ଟ ।

''ମୁଁ କିଏ — ଏହିଟି ଖୋଜିବାକୁ ଗଲେ ତାଙ୍କୁ ହିଁ ଲାଭ କରାଯାଏ । ମୁଁ କଅଣ ମାଂସ, ନା ହାଡ଼, ନା ରକ୍ତ, ନା ମଜ୍ଜା, ନା ମନ, ନା ବୁଦ୍ଧି ? ଶେଷରେ ବିଚାରଦ୍ୱାରା ଦେଖାଯାଏ ଯେ, ମୁଁ ଏସବୁ କିଛି ନୁହେଁ । 'ନେତି' 'ନେତି' । ଆତ୍ମାକୁ ଧରିବା ଛୁଇଁବାର ଶକ୍ତି ନାହିଁ । ସେ ନିର୍ଗୁଣ — ନିରୁପାଧି ।

''କିନ୍ତୁ ଭକ୍ତିମତରେ ସେ ସଗୁଣ । ଚିନ୍ମୟ ଶ୍ୟାମ, ଚିନ୍ମୟ ଧାମ — ସମସ୍ତ ଚିନ୍ମୟ !''

ମାରୁଆଡ଼ି ଭକ୍ତମାନେ ପ୍ରଣାମ କରି ବିଦାୟ ଗ୍ରହଣ କଲେ ।

**ଦକ୍ଷିଣେଶ୍ୱରଠାରେ ସନ୍ଧ୍ୟା ଓ ଆଳତି**

ସନ୍ଧ୍ୟା ହେଲା । ଠାକୁର ଗଙ୍ଗାଦର୍ଶନ କରୁଛନ୍ତି । ଘରେ ପ୍ରଦୀପ ଜଳା ହେଲା । ଶ୍ରୀରାମକୃଷ୍ଣ ଜଗନ୍ମାତାଙ୍କ ନାମ କରୁଛନ୍ତି ଓ ଖଟଟିରେ ବସି ତାଙ୍କର ଚିନ୍ତା କରୁଛନ୍ତି ।

ମନ୍ଦିରମାନଙ୍କରେ ଏଥର ଆଳତି ହେଉଛି । ଯେଉଁମାନେ ବନ୍ଧ ଉପରେ ବା ପଞ୍ଚବଟୀ ମଧ୍ୟରେ ପଦଚାରଣ କରୁଛନ୍ତି, ସେମାନେ ଦୂରରୁ ଆଳତିର ମଧୁର ଘଣ୍ଟାନିନାଦ ଶୁଣୁଛନ୍ତି । ଜୁଆର ଆସିଛି, ଭାଗୀରଥୀ କୁଳୁକୁଳୁ ଶବ୍ଦ କରି ଉତ୍ତରବାହିନୀ ହେଉଛନ୍ତି । ଆଳତିର ମଧୁର ଶବ୍ଦ ଏହି କୁଳୁକୁଳୁ ଶବ୍ଦ ସଙ୍ଗରେ ମିଶ୍ରିତ ହୋଇ ଆହୁରି ମଧୁର ହୋଇଛି । ଏହି ସକଳ ମଧ୍ୟରେ ପ୍ରେମୋନ୍ମତ୍ତ ଠାକୁର ଶ୍ରୀରାମକୃଷ୍ଣ ବସିଛନ୍ତି । ସମସ୍ତ ହିଁ ମଧୁର ! ହୃଦୟ ମଧୁମୟ ! ମଧୁ, ମଧୁ, ମଧୁ !

# ଚତୁର୍ଦ୍ଦଶ ପରିଚ୍ଛେଦ

## (୧)

## ବେଲଘରିଆର ଗୋବିନ୍ଦ ମୁଖୋପାଧ୍ୟାୟଙ୍କର ଗୃହରେ ନରେନ୍ଦ୍ର ପ୍ରଭୃତି ଭକ୍ତଙ୍କ ସହିତ କୀର୍ତ୍ତନାନନ୍ଦରେ

ଶ୍ରୀରାମକୃଷ୍ଣ ବେଲଘରିଆର ଶ୍ରୀଯୁକ୍ତ ଗୋବିନ୍ଦ ମୁଖାର୍ଜୀଙ୍କ ଗୃହକୁ ଶୁଭାଗମନ କରିଛନ୍ତି । ଆଜି ରବିବାର, ୧୮ ଫେବୃଆରୀ ୧୮୮୩, ମାଘ ଶୁକ୍ଳା ଦ୍ୱାଦଶୀ, ପୁଷ୍ୟା ନକ୍ଷତ୍ର । ନରେନ୍ଦ୍ର, ରାମ ପ୍ରଭୃତି ଭକ୍ତମାନେ ଆସିଛନ୍ତି; ପ୍ରତିବେଶୀଗଣ ମଧ୍ୟ ଆସିଛନ୍ତି । ୭/୮ଟା ବେଳେ ପ୍ରଥମେ ହିଁ ଠାକୁର ନରେନ୍ଦ୍ରାଦିଙ୍କ ସହିତ କୀର୍ତ୍ତନରେ ନୃତ୍ୟ କରିଥିଲେ ।

**ବେଲଘରିଆବାସୀଙ୍କୁ ଉପଦେଶ—କାହିଁକି ପ୍ରଣାମ—କାହିଁକି ଭକ୍ତିଯୋଗ**

କୀର୍ତ୍ତନ ଶେଷରେ ସମସ୍ତେ ଉପବେଶନ କଲେ । ଅନେକେ ଠାକୁରଙ୍କୁ ପ୍ରଣାମ କରୁଛନ୍ତି ! ଠାକୁର ମଝିରେ ମଝିରେ କହୁଛନ୍ତି, ''ଈଶ୍ୱରଙ୍କୁ ପ୍ରଣାମ କର ।'' ପୁଣି କହୁଛନ୍ତି, ସେ ହିଁ ସବୁ ହୋଇ ରହିଛନ୍ତି, ତେବେ ଗୋଟିଏ ଗୋଟିଏ ଜାଗାରେ ବେଶୀ ପ୍ରକାଶ; ଯେପରି ସାଧୁଙ୍କଠାରେ । ଯଦି କୁହ—ଦୁଷ୍ଟ ଲୋକ ତ ଅଛନ୍ତି, ବାଘ-ସିଂହ ମଧ୍ୟ ଅଛନ୍ତି—ତଥାପି ବାଘ-ନାରାୟଣଙ୍କୁ ଆଲିଙ୍ଗନ କରିବା ଦରକାର ନାହିଁ, ଦୂରରୁ ପ୍ରଣାମ କରି ଚାଲିଯିବାକୁ ହୁଏ । ପୁଣି ଦେଖ ପାଣି—କେଉଁ ପାଣି ପିଆଯାଏ, କେଉଁ ପାଣିରେ ପୂଜା କରାଯାଏ, କେଉଁ ପାଣିରେ ଗାଧୁଆଯାଏ ପୁଣି କେଉଁ ପାଣିରେ କେବଳ ଧୁଆଧୋଇ ଶୌଚ କର୍ମ ହୁଏ ।''

ପ୍ରତିବେଶୀ—ଆଜ୍ଞା, ବେଦାନ୍ତମତ କିପରି ?

ଶ୍ରୀରାମକୃଷ୍ଣ—ବେଦାନ୍ତବାଦୀମାନେ କହନ୍ତି—'ସୋଽହଂ', ବ୍ରହ୍ମ ସତ୍ୟ, ଜଗତ୍ ମିଥ୍ୟା; **ମୁଁ ମଧ୍ୟ ମିଥ୍ୟା,** କେବଳ ସେହି ପରଂବ୍ରହ୍ମ ହିଁ ଅଛନ୍ତି ।

''କିନ୍ତୁ ମୁଁ ତ ଯାଏ ନାହିଁ ତେଣୁ ମୁଁ ତାଙ୍କର ଦାସ, ମୁଁ ତାଙ୍କର ସନ୍ତାନ, ମୁଁ ତାଙ୍କର ଭକ୍ତ—ଏ ଅଭିମାନ ଖୁବ୍ ଭଲ ।

**''କଳି ଯୁଗରେ ଭକ୍ତିଯୋଗ ହିଁ** ଭଲ । ଭକ୍ତିଦ୍ୱାରା ମଧ୍ୟ ତାଙ୍କୁ ଲାଭ କରାଯାଏ । ଦେହବୁଦ୍ଧି ରହିଲେ ହିଁ ବିଷୟବୁଦ୍ଧି । ରୂପ, ରସ, ଗନ୍ଧ, ସ୍ପର୍ଶ, ଶବ୍ଦ ଏହି ସମସ୍ତ ବିଷୟ । ବିଷୟବୁଦ୍ଧି ଯିବା ଅତି କଠିନ । **ବିଷୟବୁଦ୍ଧି ରହିଲେ ସୋଽହଂ** ହୁଏ ନାହିଁ ।[୧]

''ତ୍ୟାଗୀମାନଙ୍କର ବିଷୟବୁଦ୍ଧି କମ୍, ସଂସାରୀମାନେ ସର୍ବଦା ବିଷୟଚିନ୍ତା ନେଇ ରହନ୍ତି, ତେଣୁ ସଂସାରୀ ପକ୍ଷରେ 'ଦାସୋଽହମ୍' ।''

---

୧. ଅବ୍ୟକ୍ତା ହି ଗତିର୍ଦୁଃଖଂ ଦେହିବଦ୍ଭିରବାପ୍ୟତେ । —ଗୀତା, ୧୨/୫

**ବେଲଘରିଆବାସୀ ଓ ପାପବାଦ**

ପ୍ରତିବେଶୀ—ଆମେମାନେ ପାପୀ, ଆମର କଅଣ ହେବ ?

ଶ୍ରୀରାମକୃଷ୍ଣ—ତାଙ୍କର ନାମଗୁଣ କୀର୍ତ୍ତନ କଲେ ଦେହର ସବୁ ପାପ ପଳାଇ ଯାଏ । ଦେହ-ବୃକ୍ଷରେ ପାପ-ପକ୍ଷୀ, ତାଙ୍କର ନାମ-କୀର୍ତ୍ତନ ଯେପରି ହାତତାଳି ଦେବା । ହାତତାଳି ଦେଲେ ଯେପରି ବୃକ୍ଷ ଉପରର ପକ୍ଷୀ ସବୁ ପଳାନ୍ତି, ସେହିପରି ସବୁ ପାପ ତାଙ୍କର ନାମ ଗୁଣ-କୀର୍ତ୍ତନରେ ଚାଲିଯାଏ ।[୧]

"ପୁଣି ଦେଖ, ଖୋଲା ଜାଗାରେ ପୋଖରୀ ସୂର୍ଯ୍ୟଙ୍କ ତାପରେ ନିଜେ ନିଜେ ଶୁଖିଯାଏ । ସେହିପରି ତାଙ୍କର ନାମ-ଗୁଣ-କୀର୍ତ୍ତନରେ ପାପ-ପୁଷ୍କରିଣୀର ଜଳ ନିଜେ ନିଜେ ଶୁଖିଯାଏ ।

"ପ୍ରତିଦିନ ଅଭ୍ୟାସ କରିବାକୁ ହୁଏ । ସର୍କସରେ ଦେଖି ଆସିଲି, ଘୋଡ଼ା ଦୌଡୁଛି, ତା' ଉପରେ ବିବି ଗୋଟିଏ ଗୋଡ଼ରେ ଠିଆ ହୋଇ ରହିଛି । କେତେ ଅଭ୍ୟାସରେ ଏହିଟି ହୋଇଛି !

"ଆଉ ତାଙ୍କୁ ଦେଖିବା ପାଇଁ ଅନ୍ତତଃ ଥରେ ଲେଖାଏ କାନ୍ଦ ।

"ଏହି **ଦୁଇଟି ଉପାୟ**—ଅଭ୍ୟାସ ଆଉ ଅନୁରାଗ, ଅର୍ଥାତ୍ ତାଙ୍କୁ ଦେଖିବା ପାଇଁ ବ୍ୟାକୁଳତା ।"

**ବେଲଘରିଆବାସୀର ଷଟ୍‌ଚକ୍ରର ଗୀତ ଓ ଶ୍ରୀରାମକୃଷ୍ଣଙ୍କର ସମାଧି**

ବୈଠକଖାନା-ଘର ଦୋତାଲାର ବାରଣ୍ଡାରେ ଠାକୁର ଭକ୍ତଙ୍କ ସଙ୍ଗରେ ପ୍ରସାଦ ପାଉଛନ୍ତି; ସମୟ ଗୋଟାଏ ହୋଇଛି । ସେବା ସମାପ୍ତ ହେଉ ନ ହେଉଣୁ ତଳ ପ୍ରାଙ୍ଗଣରେ ଜଣେ ଭକ୍ତ ଗାଇ ଉଠିଲେ ।—

'ଜାଗ ଜାଗ ଜନନୀ !

ମୂଳାଧାରେ ନିଦ୍ରାଗତ କେତେଦିନ ହେଲା ଗତ କୁଳକୁଣ୍ଡଳିନୀ ।'

ଠାକୁର ଗୀତ ଶୁଣି **ସମାଧିସ୍ଥ** । ଶରୀର ସମସ୍ତ ସ୍ଥିର, ହାତଟି ପ୍ରସାଦ-ପାତ୍ର ଉପରେ ଯେପରି ଥିଲା, ଚିତ୍ରାର୍ପିତ ପରି ରହିଲା । ଖାଇବା ଆଉ ହେଲା ନାହିଁ । ଅନେକ ସମୟ ପରେ ଭାବର କିଞ୍ଚିତ୍ ଉପଶମ ହେଲାରୁ କହୁଛନ୍ତି, "ମୁଁ ତଳକୁ ଯିବି, ମୁଁ ତଳକୁ ଯିବି !"

ଜଣେ ଭକ୍ତ ତାଙ୍କୁ ଅତି ସନ୍ତର୍ପଣରେ ତଳକୁ ନେଇ ଯାଉଛନ୍ତି ।

ପ୍ରାଙ୍ଗଣରେ ନାମ-ସଂକୀର୍ତ୍ତନ ଓ ପ୍ରେମାନନ୍ଦରେ ଠାକୁରଙ୍କର ନୃତ୍ୟ ହୋଇଥିଲା । ବର୍ତ୍ତମାନ ମଧ୍ୟ ସତରଞ୍ଜି ଓ ଆସନ ପଡ଼ି ରହିଛି । ଠାକୁର ଏବେ ବି ଭାବାବିଷ୍ଟ; ଗାୟକ ନିକଟରେ ଆସି ବସିଲେ । ଗାୟକ ସେତେବେଳେକୁ ଗୀତ

---

୧. ମାମେକଂ ଶରଣଂ ବ୍ରଜ, ଅହଂ ତ୍ୱା ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ।
—ଗୀତା, ୧୮/୬୬

ବନ୍ଦ କରିଥିଲେ । ଠାକୁର ଅତି ଦୀନ ଭାବରେ କହୁଛନ୍ତି, ''ବାବୁ, ଆଉଥରେ ମାଆଙ୍କର ନାମ ଶୁଣିବି ।''

ଗାୟକ ପୁଣି ଥରେ ଗାଉଛନ୍ତି—

'ଜାଗ ଜାଗ ଜନନୀ !

ମୂଳାଧାରେ ନିଦ୍ରାଗତ, କେତେ ଦିନ ହେଲା ଗତ କୁଳକୁଣ୍ଡଳିନୀ ।...'

ଗୀତ ଶୁଣୁଶୁଣୁ ଠାକୁର ପୁଣି ଭାବାବିଷ୍ଟ ।

## (୨)

(ଠାକୁର ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱର ମନ୍ଦିରରେ ରାଖାଲ, ରାମ, ନିତ୍ୟଗୋପାଳ, ଚୌଧୁରୀ ପ୍ରଭୃତି ଭକ୍ତଙ୍କ ସଙ୍ଗରେ)

## ନିର୍ଜ୍ଜନରେ ସାଧନ—ଦର୍ଶନ-ଶାସ୍ତ୍ର—ଈଶ୍ୱର-ଦର୍ଶନ

ଠାକୁର ଶ୍ରୀରାମକୃଷ୍ଣ ସେହି ପୂର୍ବ-ପରିଚିତ ଘରେ ମଧ୍ୟାହ୍ନ ସେବା ପରେ ଭକ୍ତଙ୍କ ସଙ୍ଗରେ ବସିଛନ୍ତି । ଆଜି ୨୫ ଫେବୃଆରି ୧୮୮୩ ।

ରାଖାଲ, ହରୀଶ, ଲାଟୁ, ହାଜରା ଆଜିକାଲି ଠାକୁରଙ୍କର ପଦ-ଛାୟାରେ ସର୍ବଦା ବାସ କରୁଛନ୍ତି । କଲିକତାରୁ ରାମ, କେଦାର, ନିତ୍ୟଗୋପାଳ, ମାଷ୍ଟର ପ୍ରଭୃତି ଭକ୍ତମାନେ ଆସିଛନ୍ତି । ଆଉ ଚୌଧୁରୀ ଆସିଛନ୍ତି ।

ଚୌଧୁରୀଙ୍କର ସଂପ୍ରତି ପତ୍ନୀ-ବିୟୋଗ ହୋଇଛି । ମନର ଶାନ୍ତି ପାଇଁ ସେ ଠାକୁରଙ୍କୁ ଦର୍ଶନ କରିବାକୁ ଅନେକ ଥର ଆସିଲେଣି । ତିନି ଚାରିଟା ପାଶ୍ କରିଛନ୍ତି, ରାଜ୍ୟସରକାରରେ ଚାକିରୀ କରନ୍ତି ।

ଶ୍ରୀରାମକୃଷ୍ଣ (ରାମ ପ୍ରଭୃତି ଭକ୍ତମାନଙ୍କ ପ୍ରତି)—ରାଖାଲ, ନରେନ୍ଦ୍ର, ଭବନାଥ ଏମାନେ ନିତ୍ୟସିଦ୍ଧ—ଜନ୍ମରୁ ଚୈତନ୍ୟ ଅଛି । ଲୋକଶିକ୍ଷା ପାଇଁ ଦେହ-ଧାରଣ ।

''ଆଉ ଏକ ସ୍ତର ଅଛନ୍ତି, କୃପାସିଦ୍ଧ । ହଠାତ୍ ତାଙ୍କର କୃପା ହେଲା—ସଙ୍ଗେ ସଙ୍ଗେ ଦର୍ଶନ ଆଉ ଜ୍ଞାନଲାଭ । ଯେପରି ହଜାର ବର୍ଷର ଅନ୍ଧାର ଘରକୁ ଆଲୁଅ ନେଇଗଲେ କ୍ଷଣକେ ଆଲୁଅ ହୋଇଯାଏ—ଟିକିଏ ଟିକିଏ କରି ହୁଏ ନାହିଁ ।

''ଯେଉଁମାନେ ସଂସାରରେ ଅଛନ୍ତି, ସେମାନଙ୍କୁ ସାଧନ କରିବାକୁ ହୁଏ । ନିର୍ଜ୍ଜନକୁ ଯାଇ ବ୍ୟାକୁଳ ହୋଇ ତାଙ୍କୁ ଡାକିବାକୁ ହୁଏ ।

(ଚୌଧୁରୀଙ୍କ ପ୍ରତି) ''ପାଣ୍ଡିତ୍ୟଦ୍ୱାରା ତାଙ୍କୁ ଲାଭ କରାଯାଏ ନାହିଁ ।

''ଆଉ ତାଙ୍କ ବିଷୟ କିଏ ବିଚାର କରି ବୁଝିବ ! —ଯାହାଦ୍ୱାରା ତାଙ୍କ ପାଦପଦ୍ମରେ ଭକ୍ତି ହୁଏ, ତାହା ହିଁ ସମସ୍ତଙ୍କର କରିବା ଉଚିତ ।

**ଭୀଷ୍ମଦେବଙ୍କର କ୍ରନ୍ଦନ—ହାରିବା ଜିଣିବା—ଦିବ୍ୟଚକ୍ଷୁ ଓ ଗୀତା**

''ତାଙ୍କର ଅନନ୍ତ ଐଶ୍ୱର୍ଯ୍ୟ—କଅଣ ବୁଝିବ ? ତାଙ୍କର କାର୍ଯ୍ୟ ବା କଅଣ ବୁଝିପାରିବ !

''ଭୀଷ୍ମଦେବ ଯେ ସାକ୍ଷାତ୍ ଅଷ୍ଟ ବସୁଙ୍କ ମଧ୍ୟରେ ଜଣେ ବସୁ—ସେ ମଧ୍ୟ ଶରଶଯ୍ୟାରେ ଶୋଇ କାନ୍ଦିବାକୁ ଲାଗିଲେ । କହିଲେ—କି ଆଶ୍ଚର୍ଯ୍ୟ ! ପାଣ୍ଡବମାନଙ୍କ ସଙ୍ଗରେ ସ୍ୱୟଂ ଭଗବାନ ସର୍ବଦା ରହିଛନ୍ତି, ତେବେ ମଧ୍ୟ ତାଙ୍କର ଦୁଃଖବିପଦର ଶେଷ ନାହିଁ !—ଭଗବାନଙ୍କର କାର୍ଯ୍ୟ କିଏ ବୁଝିବ !

''କେହି ମନେକରେ—ମୁଁ ଟିକିଏ ସାଧନ ଭଜନ କରିଛି, ମୁଁ ଜିତିଛି । କିନ୍ତୁ ହାରିବା ଜିଣିବା ତାଙ୍କ ହାତରେ । ଏଠାରେ ଜଣେ ବେଶ୍ୟା ମରିବାବେଳେ ସଜ୍ଞାନରେ ଗଙ୍ଗାଲାଭ କଲା ।''

ଚୌଧୁରୀ—ତାଙ୍କୁ କିପରି ଦର୍ଶନ କରାଯାଏ ?

ଶ୍ରୀରାମକୃଷ୍ଣ—ଏ ଚକ୍ଷୁରେ ଦେଖାଯାଏ ନାହିଁ । ସେ ଦିବ୍ୟଚକ୍ଷୁ ଦିଅନ୍ତି, ତେବେ ଦେଖାଯାଏ । ଅର୍ଜୁନଙ୍କୁ ବିଶ୍ୱରୂପ ଦର୍ଶନ ସମୟରେ ଠାକୁର ଦିବ୍ୟଚକ୍ଷୁ ଦେଇଥିଲେ ।

''ତୁମର ଫିଲୋସଫିରେ କେବଳ ହିସାବ-କିତାବ କରନ୍ତି ! କେବଳ ବିଚାର କରନ୍ତି ! ସେଥିରେ ତାଙ୍କୁ ଲାଭ କରାଯାଏ ନାହିଁ ।

**ଅହୈତୁକୀ ଭକ୍ତି—ମୂଳକଥା—ରାଗାନୁଗା ଭକ୍ତି**

''ଯଦି ରାଗଭକ୍ତି ହୁଏ—ଅନୁରାଗ ସହକାରେ ଭକ୍ତି—ତାହାହେଲେ ସେ ସ୍ଥିର ହୋଇ ରହିପାରନ୍ତି ନାହିଁ ।

''ଭକ୍ତି ତାଙ୍କର କିପରି ପ୍ରିୟ ?—ପିଡ଼ିଆ ମିଶା ଦାନା ଯେପରି ଗାଈର ପ୍ରିୟ, ଗାଉଁ ଗାଉଁ କରି ଖାଏ !

''ରାଗ-ଭକ୍ତି, ଶୁଦ୍ଧା-ଭକ୍ତି, ଅହୈତୁକୀ ଭକ୍ତି—ଯେପରି ପ୍ରହ୍ଲାଦଙ୍କର ।

''ତୁମେ ବଡ଼ଲୋକ ପାଖରୁ କିଛି ଚାହଁ ନାହିଁ—କିନ୍ତୁ ପ୍ରତିଦିନ ଆସ—ତାଙ୍କୁ ଦେଖିବାକୁ ଭଲପାଅ । ପଚାରିଲେ କହ—'ଆଜ୍ଞା, କିଛି ଦରକାର ନାହିଁ—ଆପଣଙ୍କୁ ଦେଖିବାକୁ ଆସିଛି ।' ଏହାର ନାମ ଅହୈତୁକୀ ଭକ୍ତି । ତୁମେ ଈଶ୍ୱରଙ୍କ ନିକଟରୁ କିଛି ଚାହଁ ନାହିଁ—କେବଳ ଭଲପାଅ ।''

ଏହା କହି ଠାକୁର ଗୀତ ଗାଉଛନ୍ତି—

''ଆମି ମୁକ୍ତି ଦିତେ କାତର ନଇ,
ଶୁଦ୍ଧା ଭକ୍ତି ଦିତେ କାତର ହଇ ।

''**ମୂଳକଥା**—ଈଶ୍ୱରଙ୍କଠାରେ ରାଗାନୁଗା ଭକ୍ତି । ଆଉ ବିବେକ-ବୈରାଗ୍ୟ ।''

ଚୌଧୁରୀ—ମହାଶୟ, ଗୁରୁ ନ ହେଲେ କଅଣ ହେବ ନାହିଁ ?

ଶ୍ରୀରାମକୃଷ୍ଣ — **ସଚ୍ଚିଦାନନ୍ଦ ହିଁ ଗୁରୁ ।**

''ଶବ ସାଧନ କରି ଇଷ୍ଟ-ଦର୍ଶନ ବେଳେ ଗୁରୁ ଆଗରେ ଆସି ଠିଆ ହୁଅନ୍ତି — ଆଉ କହନ୍ତି, 'ଦେଖ୍, ଇଏ ତୋର ଇଷ୍ଟ ।' — ତାହା ପରେ ଗୁରୁ ଇଷ୍ଟରେ ଲୀନ ହୋଇଯାଆନ୍ତି । ଯେ ଗୁରୁ ସେ ହିଁ ଇଷ୍ଟ । ଗୁରୁ ଖିଅ ଧରାଇ ଦିଅନ୍ତି ।

''ଅନନ୍ତବ୍ରତ କରନ୍ତି । କିନ୍ତୁ ପୂଜା କରନ୍ତି — ବିଷ୍ଣୁଙ୍କୁ । ତାଙ୍କରି ମଧ୍ୟରେ ଈଶ୍ୱରଙ୍କର ଅନନ୍ତ ରୂପ ।

**ଶ୍ରୀରାମକୃଷ୍ଣଙ୍କର ସର୍ବଧର୍ମ ସମନ୍ୱୟ**

(ରାମାଦି ଭକ୍ତମାନଙ୍କ ପ୍ରତି) — ଯଦି କହ କେଉଁ ମୂର୍ତ୍ତିର ଚିନ୍ତା କରିବି — ଯେଉଁ ମୂର୍ତ୍ତି ଭଲ ଲାଗେ ତାଙ୍କର ହିଁ ଧ୍ୟାନ କରିବ । କିନ୍ତୁ ଜାଣିବ ଯେ ସବୁ ଏକ ।

''କାହାରି ଉପରେ ବିଦ୍ୱେଷ କରିବା ଉଚିତ୍ ନୁହେଁ । ଶିବ, କାଳୀ, ହରି — ସବୁ 'ଏକ'ର ଭିନ୍ନ ଭିନ୍ନ ରୂପ । ଯେ 'ଏକ' କରିଛି ସେ ହିଁ ଧନ୍ୟ ।

''ବହିଃ ଶିବ, ହୃଦେ କାଳୀ, ମୁଖେ ହରିବୋଲ ।

''ଟିକିଏ କାମ କ୍ରୋଧ ନ ରହିଲେ ଦେହ ରହେ ନାହିଁ । ତେଣୁ ତୁମେମାନେ କେବଳ କମାଇବାକୁ ଚେଷ୍ଟା କରିବ ।''

ଠାକୁର କେଦାରକୁ ଦେଖି କହୁଛନ୍ତି —

''ଏ ବେଶ୍ । ନିତ୍ୟ ମାନନ୍ତି, ଲୀଳା ମଧ୍ୟ ମାନନ୍ତି ! ଏଣେ ବ୍ରହ୍ମ, ପୁଣି ଦେବ ଲୀଳା, ମନୁଷ୍ୟଲୀଳା ପର୍ଯ୍ୟନ୍ତ !''

କେଦାର କହନ୍ତି ଯେ ଭଗବାନ ମନୁଷ୍ୟ-ଦେହ ନେଇ ଶ୍ରୀରାମକୃଷ୍ଣ-ରୂପରେ ଅବତୀର୍ଣ୍ଣ ହୋଇଛନ୍ତି ।

**ସନ୍ନ୍ୟାସୀ ଓ କାମିନୀ — ଭକ୍ତ ସ୍ତ୍ରୀଲୋକ**

ନିତ୍ୟଗୋପାଳଙ୍କୁ ଦେଖି ଠାକୁର ଭକ୍ତମାନଙ୍କୁ କହୁଛନ୍ତି —

''ଏହାର ବେଶ୍ ଅବସ୍ଥା ।

(ନିତ୍ୟଗୋପାଳ ପ୍ରତି) ''ତୁ ସେଠାକୁ ବେଶୀ ଯାଆନା । କେତେବେଳେ ବା ଥରେ ଅଧେ ଗଲୁ । ଭକ୍ତ ହେଲେ ମଧ୍ୟ — ସ୍ତ୍ରୀଲୋକ କି ନା ! ତେଣୁ ସାବଧାନ !

''**ସନ୍ନ୍ୟାସୀର ଖୁବ୍ କଠିନ ନିୟମ** । ସ୍ତ୍ରୀଲୋକର ଚିତ୍ରପଟ ମଧ୍ୟ ଦେଖିବ ନାହିଁ । ଏହା ସଂସାରୀ ଲୋକଙ୍କ ପକ୍ଷରେ ନୁହେଁ ।

''ସ୍ତ୍ରୀଲୋକ ଯଦି ଖୁବ୍ ଭକ୍ତ ବି ହୁଏ, ତେବେ ମଧ୍ୟ ମିଳାମିଶା କରିବା ଉଚିତ ନୁହେଁ । ଜିତେନ୍ଦ୍ରିୟ ହେଲେ ମଧ୍ୟ ଲୋକଶିକ୍ଷା ପାଇଁ ତ୍ୟାଗୀର ଏସବୁ କରିବାକୁ ହୁଏ ।

"ସାଧୁର ଷୋଳଅଣା ତ୍ୟାଗ ଦେଖିଲେ ଅନ୍ୟ ଲୋକେ ତ୍ୟାଗ କରିବାକୁ ଶିଖିବେ । ତାହା ନ ହେଲେ ସେମାନେ ମଧ୍ୟ ପଡ଼ିଯିବେ । **ସନ୍ୟାସୀ ଜଗତ୍‌–ଗୁରୁ ।**"

ଏଥର ଠାକୁର ଓ ଭକ୍ତମାନେ ଉଠି ବୁଲୁଛନ୍ତି । ମାଷ୍ଟର ପ୍ରହ୍ଲାଦଙ୍କ ଛବି ସମ୍ମୁଖରେ ଠିଆ ହୋଇ ଛବି ଦେଖୁଛନ୍ତି । ପ୍ରହ୍ଲାଦଙ୍କର ଅହେତୁକ ଭକ୍ତି — ଠାକୁର କହିଛନ୍ତି ।

# ପଞ୍ଚଦଶ ପରିଚ୍ଛେଦ

## (୧)

## ଠାକୁର ଦକ୍ଷିଣେଶ୍ୱରଠାରେ ଅମାବାସ୍ୟାରେ ଭକ୍ତସଙ୍ଗରେ, ରାଖାଲଙ୍କ ପ୍ରତି ଗୋପାଳଭାବ

ଠାକୁର ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱର ମନ୍ଦିରରେ ନିଜ ଘରେ ରାଖାଲ ମାଷ୍ଟର ପ୍ରଭୃତି ଜଣେ ଦୁଇଜଣ ଭକ୍ତଙ୍କ ସଙ୍ଗରେ ବସିଛନ୍ତି । ଆଜି ଶୁକ୍ରବାର, ୯ ମାର୍ଚ୍ଚ ୧୮୮୩, ମାଘମାସ ଅମାବାସ୍ୟା, ସକାଳ ସମୟ ୮ଟା ୯ଟା ହେବ ।

ଅମାବାସ୍ୟା, ଠାକୁରଙ୍କର ସର୍ବଦା ଜଗନ୍ମାତାଙ୍କର ଉଦ୍ଦୀପନ ହେଉଅଛି । ସେ କହୁଛନ୍ତି, ''ଈଶ୍ୱର ହିଁ ବସ୍ତୁ, ଆଉସବୁ ଅବସ୍ତୁ । ମା' ତାଙ୍କର ମହାମାୟାରେ ମୁଗ୍ଧ କରି ରଖିଛନ୍ତି । ମନୁଷ୍ୟ ଭିତରେ ଦେଖ, ବଦ୍ଧଜୀବ ବେଶୀ । ଏତେ ଦୁଃଖକଷ୍ଟ ପାଆନ୍ତି, ତଥାପି କାମିନୀ-କାଞ୍ଚନରେ ଆସକ୍ତ । କଣ୍ଟାଘାସ ଖାଇ ଓଟ ମୁହଁରୁ ଝର ଝର ରକ୍ତ ପଡ଼େ, ତଥାପି ସେ କଣ୍ଟାଘାସ ଖାଏ । ପ୍ରସବ-ବେଦନା ସମୟରେ ସ୍ତ୍ରୀମାନେ କହନ୍ତି, 'ଓହୋ, ଆଉ ସ୍ୱାମୀ ପାଖକୁ ଯିବି ନାହିଁ' —ପୁଣି ଭୁଲିଯାଆନ୍ତି ।

''ଦେଖ ତାଙ୍କୁ କେହି ଖୋଜେ ନାହିଁ । ସପୁରୀ ଗଛର ଫଳ ଛାଡ଼ି ଲୋକେ ତାହାର ପତ୍ର ଖାଆନ୍ତି ।''

ଭକ୍ତ—ଆଜ୍ଞା, ସଂସାରରେ ସେ କାହିଁକି ରଖିଦିଅନ୍ତି ?

**ସଂସାର କାହିଁକି ? ନିଷ୍କାମ କର୍ମଦ୍ୱାରା ଚିତ୍ତଶୁଦ୍ଧି ପାଇଁ**

ଶ୍ରୀରାମକୃଷ୍ଣ—ସଂସାର କର୍ମକ୍ଷେତ୍ର, କର୍ମ କରୁ କରୁ ତେବେ ଜ୍ଞାନ ହୁଏ । ଗୁରୁ କହିଛନ୍ତି ଏହିସବୁ କର୍ମ କର, ଆଉ ଏହିସବୁ କର୍ମ କର ନାହିଁ । ପୁଣି ସେ ନିଷ୍କାମ କର୍ମର ଉପଦେଶ ଦିଅନ୍ତି ।[୧] କର୍ମ କରୁ କରୁ ମନର ମଇଳା ଚାଲିଯାଏ । ଭଲ ଡାକ୍ତର ହାତରେ ପଡ଼ିଲେ ଔଷଧ ଖାଉ ଖାଉ ଯେଉଁ ରୋଗ ହେଉ ନା କାହିଁକି, ଭଲ ହୋଇଯାଏ ।

''କାହିଁକି ସେ ସଂସାରରୁ ଛାଡ଼ନ୍ତି ନାହିଁ ? ରୋଗ ଭଲ ହେବ, ତେବେ ଛାଡ଼ିବେ । କାମିନୀ-କାଞ୍ଚନ ଭୋଗ କରିବାର ଇଚ୍ଛା ଯେତେବେଳେ ସଂପୂର୍ଣ୍ଣ ଚାଲିଯିବ, ସେତେବେଳେ ଛାଡ଼ିବେ । ହାସ୍‌ପାତାଳରେ ନାମ ଲେଖାଇଲେ ପଳାଇ ଆସିବାର ଯୁ ନାହିଁ । ରୋଗର ଆଶଙ୍କା ଥିଲେ ଡାକ୍ତର ସାହେବ ଛାଡ଼ିବେ ନାହିଁ ।

ଠାକୁର ଆଜିକାଲି ଯଶୋଦାଙ୍କ ପରି ବାତ୍ସଲ୍ୟରସରେ ସର୍ବଦା ଆପ୍ଳୁତ ହୋଇ ରହିଛନ୍ତି, ତେଣୁ ରାଖାଲଙ୍କୁ ନିଜ ପାଖରେ ସଙ୍ଗରେ ରଖିଛନ୍ତି । ଠାକୁରଙ୍କର

---

୧. କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ ।'' —ଗୀତା, ୨/୪୭

ରାଖାଲଙ୍କ ପ୍ରତି ଗୋପାଳଭାବ । ଯେପରି ମାଆଙ୍କ କୋଳ ପାଖରେ ଛୋଟ ପିଲା ଯାଇ ବସେ, ରାଖାଲ ମଧ୍ୟ ଠାକୁରଙ୍କ କୋଳ ଉପରେ ଭରାଦେଇ ବସନ୍ତି । ଯେପରି କ୍ଷୀର ପିଉଛନ୍ତି ।

**ଶ୍ରୀରାମକୃଷ୍ଣଙ୍କର ଭକ୍ତଙ୍କ ସହିତ ଗଙ୍ଗାରେ ଜୁଆର ଦର୍ଶନ**

ଠାକୁର ଏହି ଭାବରେ ବସିଛନ୍ତି, ଏପରି ସମୟରେ ଜଣେ ଆସି ସମ୍ବାଦ ଦେଲେ ଯେ, ଜୁଆର ଆସୁଛି । ଠାକୁରେ, ରାଖାଲ, ମାଷ୍ଟର ପ୍ରଭୃତି ସମସ୍ତେ ଜୁଆର ଦେଖିବା ପାଇଁ ପଞ୍ଚବଟୀ ଅଭିମୁଖରେ ଦୌଡ଼ିବାକୁ ଲାଗିଲେ । ପଞ୍ଚବଟୀ ମୂଳକୁ ଆସି ସମସ୍ତେ ଜୁଆର ଦେଖୁଛନ୍ତି । ସମୟ ପ୍ରାୟ ୧୦ଟା ହେବ । ଖଣ୍ଡେ ନୌକାର ଅବସ୍ଥା ଦେଖି ଠାକୁର କହୁଛନ୍ତି, ''ଦେଖ, ଦେଖ, ଏହି ଡଙ୍ଗାଟିର ଅବସ୍ଥା କି ଟଳମଳ !''

ଏଥର ଠାକୁର ପଞ୍ଚବଟୀ ରାସ୍ତା ଉପରେ ମାଷ୍ଟର, ରାଖାଲ ପ୍ରଭୃତିଙ୍କ ସହିତ ବସିଲେ ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)—ଆଚ୍ଛା, ଜୁଆର କାହିଁକି ହୁଏ ?

ମାଷ୍ଟର ମାଟିରେ ଅଙ୍କ କାଟି ପୃଥିବୀ, ଚନ୍ଦ୍ର, ସୂର୍ଯ୍ୟ, ମାଧ୍ୟାକର୍ଷଣ, ଜୁଆର, ଭଟ୍ଟା, ପୂର୍ଣ୍ଣିମା, ଅମାବାସ୍ୟା, ଗ୍ରହଣ ଇତ୍ୟାଦି ବୁଝାଇବାକୁ ଚେଷ୍ଟା କରୁଛନ୍ତି ।

**ଶ୍ରୀରାମକୃଷ୍ଣ ବାଲ୍ୟକାଳରେ ଓ ପାଠଶାଳାରେ**

(ଯୋଗୀ ସଂଖ୍ୟା, ପରିମାଣ ଓ କାର୍ଯ୍ୟକାରଣ ଆଦି ସମସ୍ତ ସୀମିତ ସମ୍ବନ୍ଧର ଅତୀତ ।)

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)—ଯା, ଥାଉ ! ବୁଝିପାରୁ ନାହିଁ, ମୁଣ୍ଡ ଘୂରିଯାଉଛି ! ଟଣ୍ ଟଣ୍ ହେଉଛି ! ଆଚ୍ଛା, ଏତେ ଦୂରର କଥା କିପରି ଜାଣିଲ ?

''ଦେଖ, ମୁଁ ପିଲାବେଳେ ବେଶ୍ ଚିତ୍ର ଆଙ୍କି ପାରୁଥିଲି, କିନ୍ତୁ ଶୁଭଙ୍କରୀ ଅଙ୍କ ଅଡୁଆ ଲାଗୁଥିଲା । ଗଣନା ଅଙ୍କ ପାରିଲି ନାହିଁ ।''

ଏଥର ଠାକୁର ନିଜ ଘରକୁ ଫେରି ଆସିଛନ୍ତି । କାନ୍ଥରେ ଟଙ୍ଗା ହୋଇଥିବା ଯଶୋଦାଙ୍କର ଛବି ଦେଖି କହୁଛନ୍ତି, ''ଛବି ଭଲ ହୋଇନାହିଁ, ଠିକ୍ ଯେପରି ମାଳିଆଣୀ ମାଉସୀ କରିଛି ।''

**ଶ୍ରୀ ଅଧର ସେନ୍‌ଙ୍କର ପ୍ରଥମ ଦର୍ଶନ ଓ ବଳିର କଥା**

ମଧ୍ୟାହ୍ନ ସେବା ପରେ ଠାକୁର ଟିକିଏ ବିଶ୍ରାମ କରୁଛନ୍ତି । ଅଧର ଓ ଅନ୍ୟାନ୍ୟ ଭକ୍ତମାନେ କ୍ରମେ କ୍ରମେ ଆସି ଜୁଟିଲେ । ଅଧର ସେନ୍ ଏହି ପ୍ରଥମ ଠାକୁରଙ୍କୁ ଦର୍ଶନ କରୁଛନ୍ତି । ଅଧରଙ୍କର ଘର କଲିକତା ବେନେଟୋଲାରେ । ସେ ଡେପୁଟି ମାଜିଷ୍ଟ୍ରେଟ, ବୟସ ୨୯/୩୦ ହେବ ।

**ଅବସ୍ଥା ଓ ଅହିଂସା**

ଅଧର (ଶ୍ରୀରାମକୃଷ୍ଣଙ୍କ ପ୍ରତି)—ମହାଶୟ, ମୋର ଗୋଟିଏ ପ୍ରଶ୍ନ ଅଛି, ବଳିଦାନ କଅଣ ଭଲ ? ଏଥିରେ ତ ଜୀବହିଂସା କରାଯାଏ ?

ଶ୍ରୀରାମକୃଷ୍ଣ—ବିଶେଷ ବିଶେଷ ଅବସ୍ଥାରେ ଶାସ୍ତ୍ରରେ ଅଛି, ବଳି ଦିଆଯାଇପାରେ । 'ବିଧିବାଦୀୟ' ବଳିରେ ଦୋଷ ନାହିଁ । ଯେପରି ଅଷ୍ଟମୀରେ ଗୋଟିଏ ବୋଦା; କିନ୍ତୁ ସବୁ ଅବସ୍ଥାରେ ହୁଏ ନାହିଁ । ମୋର ବର୍ତ୍ତମାନ ଏପରି ଅବସ୍ଥା, ଠିଆ ହୋଇ ବଳି ଦେଖିପାରେ ନାହିଁ । ମାଆଙ୍କର ପ୍ରସାଦୀ ମାଂସ ଏ ଅବସ୍ଥାରେ ଖାଇପାରେ ନାହିଁ, ତେଣୁ ଟିପରେ ଟିକିଏ ଛୁଇଁ ମୁଣ୍ଡରେ ଟୋପା ମାରେ, କାଳେ ମା ରାଗିବେ ।

''ପୁଣି ଏପରି ଅବସ୍ଥା ହୁଏ ଯେ, ଦେଖେ ସର୍ବଭୂତରେ ଈଶ୍ୱର, ପିମ୍ପୁଡ଼ିରେ ମଧ୍ୟ ସେ । ଏ ଅବସ୍ଥାରେ ହଠାତ୍ କୌଣସି ପ୍ରାଣୀ ମଲେ ଏହି ସାନ୍ତ୍ୱନା ଦିଏ ଯେ, ତାହାର ଦେହ ମାତ୍ର ବିନଷ୍ଟ ହେଲା । ଆତ୍ମାର ଜନ୍ମମୃତ୍ୟୁ ନାହିଁ ।

**ଅଧରଙ୍କୁ ଉପଦେଶ—'ବେଶୀ ବିଚାର କର ନାହିଁ ।**

''ବେଶୀ ବିଚାର କରିବା ଭଲ ନୁହେଁ । ମାଆଙ୍କ ପାଦପଦ୍ମରେ ଭକ୍ତି ରହିଲେ ହେଲା । ବେଶୀ ବିଚାର କରିବାକୁ ଗଲେ ସବୁ ଗୋଳମାଳ ହୋଇଯାଏ । ଏ ଦେଶରେ ପୋଖରୀର ପାଣି ଉପରୁ ଉପରୁ ପିଅ, ବେଶ୍ ପରିଷ୍କାର ପାଣି ପାଇବ । ବେଶୀ ତଳକୁ ହାତରେ ହଲାଇଲେ ପାଣି ଗୋଳିଆ ହୋଇଯାଏ । ତେଣୁ ତାଙ୍କ ନିକଟରେ ଭକ୍ତି ପ୍ରାର୍ଥନା କର । ଧ୍ରୁବଙ୍କର ଭକ୍ତି ସକାମ । ରାଜ୍ୟଲାଭ ପାଇଁ ତପସ୍ୟା କରିଥିଲେ । ପ୍ରହ୍ଲାଦଙ୍କର କିନ୍ତୁ ନିଷ୍କାମ ଅହୈତୁକୀ ଭକ୍ତି ।''

ଭକ୍ତ—ଈଶ୍ୱରଙ୍କୁ କିପରି ଲାଭ କରାଯାଏ ?

ଶ୍ରୀରାମକୃଷ୍ଣ—ଭକ୍ତିଦ୍ୱାରା । ତେବେ ତାଙ୍କ ପାଖରେ ଜୋର୍ କରିବାକୁ ହୁଏ । ଦେଖା ଦେବ ନାହିଁ ? ତଣ୍ଟିରେ ଛୁରୀ ଲଗାଇ ମରିବି—ଏହାର ନାମ ଭକ୍ତିର ତମଃ ।

ଭକ୍ତ—ଈଶ୍ୱରଙ୍କୁ କଅଣ ଦେଖାଯାଏ ?

ଶ୍ରୀରାମକୃଷ୍ଣ—ହଁ, ଅବଶ୍ୟ ଦେଖାଯାଏ । ନିରାକାର, ସାକାର ଉଭୟ ଦେଖାଯାଏ । ସାକାର ଚିନ୍ମୟରୂପ ଦର୍ଶନ ହୁଏ—ପୁଣି ସାକାର ମନୁଷ୍ୟ, ସେଥିରେ ମଧ୍ୟ ସେ ପ୍ରତ୍ୟକ୍ଷ । **ଅବତାରଙ୍କୁ ଦେଖିବା ଯାହା, ଈଶ୍ୱରଙ୍କୁ ଦେଖିବା ମଧ୍ୟ ତାହା ।** ଈଶ୍ୱର ହିଁ ଯୁଗେ ଯୁଗେ ମନୁଷ୍ୟ ରୂପରେ ଅବତୀର୍ଣ୍ଣ ହୁଅନ୍ତି ।[୧]

---

୧. ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ । —ଗୀତା, ୪/୮

# ଷୋଡ଼ଶ ପରିଚ୍ଛେଦ

## (ଦକ୍ଷିଣେଶ୍ୱରରେ ଠାକୁର ଶ୍ରୀରାମକୃଷ୍ଣଙ୍କର ଜନ୍ମୋତ୍ସବ)

## (୧)

### ପ୍ରଭାତରେ ଭକ୍ତଙ୍କ ସଙ୍ଗରେ

କାଳୀମନ୍ଦିରରେ ଆଜି ଶ୍ରୀରାମକୃଷ୍ଣଙ୍କର ଜନ୍ମମହୋତ୍ସବ—ଫାଲ୍‌ଗୁନ ଶୁକ୍ଳା ଦ୍ୱିତୀୟା, ରବିବାର, ୧୧ ମାର୍ଚ୍ଚ ୧୮୮୩ । ଆଜି ଠାକୁରଙ୍କର ଅନ୍ତରଙ୍ଗ ଭକ୍ତଗଣ ତାଙ୍କର ଜନ୍ମ ଉତ୍ସବ ପାଳନ କରୁଛନ୍ତି ।

ପ୍ରଭାତରୁ ଭକ୍ତମାନେ ଜଣେ ଜଣେ ଆସି ପହଞ୍ଚୁଛନ୍ତି । ସମ୍ମୁଖରେ ମା' ଭବତାରିଣୀଙ୍କର ମନ୍ଦିର । ମଙ୍ଗଳ-ଆଳତି ପରେ ପ୍ରଭାତୀ ରାଗରେ ନହବତ୍ ଖାନାରେ ମଧୁର ସ୍ୱରରେ ଜୋଡ଼ିନାଗରା ବାଜୁଛି । ଏକେ ବସନ୍ତକାଳ, ବୃକ୍ଷଲତା ସମସ୍ତ ନୂତନ ବେଶ ପରିଧାନ କରିଛନ୍ତି; ସେଥିରେ ଭକ୍ତହୃଦୟ ଠାକୁରଙ୍କର ଜନ୍ମଦିବସ ସ୍ମରଣ କରି ନୃତ୍ୟ କରୁଛି । ଚତୁର୍ଦ୍ଦିଗରେ ଆନନ୍ଦର ସମୀରଣ ପ୍ରବାହିତ । ମାଷ୍ଟର ଯାଇ ଦେଖୁଛନ୍ତି—ଭବନାଥ, ରାଖାଲ, ଭବନାଥଙ୍କର ବନ୍ଧୁ କାଳୀକୃଷ୍ଣ ଉପସ୍ଥିତ ଅଛନ୍ତି । ସେତେବେଳେ ଖୁବ୍ ସକାଳ । ଠାକୁର ଏମାନଙ୍କ ସଙ୍ଗରେ ପୂର୍ବଦିଗର ବାରଣ୍ଡାରେ ବସି ସହାସ୍ୟ ଗପ କରୁଛନ୍ତି । ମାଷ୍ଟର ପହଞ୍ଚି ଠାକୁରଙ୍କୁ ଭୂମିଷ୍ଠ ପ୍ରଣାମ କଲେ ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କୁ)—ତୁମେ ଆସିଛ ! (ଭକ୍ତମାନଙ୍କୁ) ଲଜ୍ଜା, ଘୃଣା, ଭୟ—ଏ ତିନୋଟି ଥିଲେ ହୁଏ ନାହିଁ ।[୧] ଆଜି କେତେ ଆନନ୍ଦ ହେବ; କିନ୍ତୁ ଯେଉଁ ଶଳାମାନେ ହରିନାମରେ ମତ୍ତ ହୋଇ ନୃତ୍ୟ-ଗୀତ କରିପାରିବେ ନାହିଁ, ସେମାନଙ୍କର କୌଣସି କାଳେ ହେବ ନାହିଁ । ଈଶ୍ୱରଙ୍କ କଥାରେ ଲଜ୍ଜା କଅଣ, ଭୟ କଅଣ ? ଆଚ୍ଛା, ବର୍ତ୍ତମାନ ତୁମେସବୁ ଗାଅ ।

ଭବନାଥ ଓ କାଳୀକୃଷ୍ଣ ଗାଉଛନ୍ତି—

ଧନ୍ୟ ଧନ୍ୟ ଧନ୍ୟ ଆଜି ଦିନ ଆନନ୍ଦକାରୀ,
ସବେ ମିଲେ ତବ ସତ୍ୟଧର୍ମ ଭାରତେ ପ୍ରଚାରି ।...
ତବ ପଦେ ପ୍ରଭୁ ଲଇନୁ ଶରଣ, କି ଭୟ ବିପଦେ କି ଭୟ ମରଣ,
ଅମୃତେର ଖନି ପାଇନୁ ଯଖନ ଜୟ ଜୟ ତୋମାରି ।

ଠାକୁର ବଦ୍ଧାଞ୍ଜଳି ହୋଇ ବସି ଏକ ମନରେ ଗୀତ ଶୁଣୁଛନ୍ତି । ଗୀତ ଶୁଣୁ ଶୁଣୁ ମନ ଏକାବେଳକେ ଭାବରାଜ୍ୟକୁ ଚାଲିଯାଇଛି । ଠାକୁରଙ୍କର ମନ ଶୁଷ୍କ ଦିଆସିଲି—ଥରେ ଘସିଲେ ହିଁ ଉଦ୍ଦୀପନ । ପ୍ରାକୃତ ଲୋକର ମନ ଓଦା ଦିଆସିଲି ପରି, ଯେତେ ଘଷ ଜଳେ ନାହିଁ—କାହିଁକି ନା, ମନ ବିଷୟାସକ୍ତ । ଠାକୁର

୧. 'ଲଜ୍ଜା, ଘୃଣା, ଭୟ, ତିନ୍ ଥାକତେ ନୟ ।'

ଅନେକ ସମୟ ଧ୍ୟାନରେ ନିମଗ୍ନ । କିଛି ସମୟ ପରେ କାଳୀକୃଷ୍ଣ ଭବନାଥଙ୍କ କାନରେ କଅଣ କହୁଛନ୍ତି ।

**ଆଗେ ହରିନାମ ନା ଶ୍ରମଜୀବୀମାନଙ୍କର ଶିକ୍ଷା**

କାଳୀକୃଷ୍ଣ ଠାକୁରଙ୍କୁ ପ୍ରଣାମ କରି ଗାତ୍ରୋତ୍ଥାନ କଲେ । ଠାକୁର ବିସ୍ମୟାବିଷ୍ଟ ହୋଇ ପଚାରିଲେ, 'କେଉଁଠାକୁ ଯିବ ?'

ଭବନାଥ — ଆଜ୍ଞା, ଟିକିଏ ଦରକାର ଅଛି, ତେଣୁ ଯିବେ ।

ଶ୍ରୀରାମକୃଷ୍ଣ — କ'ଣ ଦରକାର ?

ଭବନାଥ — ଆଜ୍ଞା, ସେ ଶ୍ରମଜୀବୀମାନଙ୍କର ଶିକ୍ଷାଳୟକୁ Baranagore Working Men's Institute ଯିବେ । (କାଳୀକୃଷ୍ଣଙ୍କର ପ୍ରସ୍ଥାନ) ।

ଶ୍ରୀରାମକୃଷ୍ଣ — ତା' କପାଳରେ ନାହିଁ । ଆଜି ହରିନାମରେ କେତେ ଆନନ୍ଦ ହେବ, କିନ୍ତୁ ତା' କପାଳରେ ନାହିଁ ।

## (୨)

## ଜନ୍ମୋତ୍ସବରେ ଭକ୍ତସଙ୍ଗରେ — ସନ୍ନ୍ୟାସୀର କଠିନ ନିୟମ

ସମୟ ପ୍ରାୟ ସାଢ଼େ ଆଠଟା ବା ନଅଟା ହେବ । ଠାକୁର ଆଜି ଅବଗାହନ କରି ଗଙ୍ଗାରେ ସ୍ନାନ କଲେ ନାହିଁ — ଦେହ ସେତେ ଭଲ ନୁହେଁ । ତାଙ୍କର ସ୍ନାନ-ଜଳ ଏହି ପୂର୍ବୋକ୍ତ ବାରଣ୍ଡାକୁ କଳସୀରେ ଅଣା ହେଲା । ଠାକୁର ସ୍ନାନ କରୁଛନ୍ତି, ଭକ୍ତମାନେ ସ୍ନାନ କରାଇଦେଲେ । ଠାକୁର ସ୍ନାନ କରୁ କରୁ କହିଲେ, ''ଡାଳେ ପାଣି ଅଲଗା କରି ରଖି ଦେ ।'' ଶେଷରେ ଏହି ଡାଳକ ପାଣି ମୁଣ୍ଡରେ ଦେଲେ । ଠାକୁର ଶ୍ରୀରାମକୃଷ୍ଣ ଆଜି ବଡ଼ ସାବଧାନ, ଡାଳେ ପାଣିରୁ ବେଶୀ ମୁଣ୍ଡରେ ଦେଲେ ନାହିଁ ।

ସ୍ନାନାନ୍ତେ ମଧୁର କଣ୍ଠରେ ଭଗବାନଙ୍କର ନାମ କରୁଛନ୍ତି । ଶୁଦ୍ଧବସ୍ତ୍ର ପରିଧାନ କରି ଜଣେ ଦୁଇଜଣ ଭକ୍ତଙ୍କ ସଙ୍ଗରେ ଦକ୍ଷିଣାସ୍ୟ ହୋଇ କାଳୀଘରର ପକ୍କା ଅଗଣା ବାଟେ ମା କାଳୀଙ୍କ ମନ୍ଦିର ଆଡ଼କୁ ଯାଉଛନ୍ତି । ମୁଖରେ ଅବିରତ ନାମ ଉଚ୍ଚାରଣ କରୁଛନ୍ତି, ଦୃଷ୍ଟି ଉଦାସୀନ (ଅନ୍ତର୍ମୁଖୀ) — ଡିମ୍ବ ଉଷୁମାଇବା ବେଳେ ପକ୍ଷୀର ଦୃଷ୍ଟି ଯେପରି ହୁଏ ।

ମା କାଳୀଙ୍କ ମନ୍ଦିରକୁ ଯାଇ ପ୍ରଣାମ ଓ ପୂଜା କଲେ । ପୂଜାର ନିୟମ ନାହିଁ — ଗନ୍ଧପୁଷ୍ପ କେତେବେଳେ ମାଆଙ୍କ ପାଦପଦ୍ମରେ ଦେଉଛନ୍ତି ତ କେତେବେଳେ ନିଜ ମସ୍ତକରେ ଧାରଣ କରୁଛନ୍ତି । ଅବଶେଷରେ ମାଆଙ୍କର ନିର୍ମାଲ୍ୟ ଧାରଣ କରି ଭବନାଥଙ୍କୁ କହୁଛନ୍ତି, ''ପଇଡ଼ ନେରେ ! ମାଆଙ୍କର ପ୍ରସାଦୀ ପଇଡ଼ ।''

ପୁଣି ପକ୍କା ଅଗଣା ବାଟେ ନିଜ ଘର ଆଡ଼କୁ ଆସୁଛନ୍ତି । ସଙ୍ଗରେ ମାଷ୍ଟର ଓ ଭବନାଥ । ଭବନାଥଙ୍କ ହାତରେ ପଇଡ଼ । ରାସ୍ତାର ଡାହାଣ ଦିଗରେ

ଶ୍ରୀଶ୍ରୀରାଧାକାନ୍ତଙ୍କ ମନ୍ଦିର; ଠାକୁରେ କହନ୍ତି 'ବିଷ୍ଣୁଘର'। ଏହି ଯୁଗଳ ରୂପ ଦର୍ଶନ କରି ଭୂମିଷ୍ଠ ହୋଇ ପ୍ରଣାମ କଲେ। ପୁଣି ବାମ ପାର୍ଶ୍ୱରେ ଦ୍ୱାଦଶ ଶିବ-ମନ୍ଦିର। ସଦାଶିବଙ୍କ ଉଦ୍ଦେଶ୍ୟରେ ପ୍ରଣାମ କଲେ।

ଠାକୁର ଏଥର ନିଜ କୋଠରୀକୁ ଆସିଲେ। ଦେଖିଲେ ଆହୁରି ଭକ୍ତଙ୍କର ସମାଗମ ହୋଇଛି। ରାମ, ନିତ୍ୟଗୋପାଳ, କେଦାର ଚାଟାର୍ଜୀ ଇତ୍ୟାଦି ଅନେକେ ଆସିଛନ୍ତି। ସେମାନେ ସମସ୍ତେ ତାଙ୍କୁ ଭୂମିଷ୍ଠ ହୋଇ ପ୍ରଣାମ କଲେ। ଠାକୁରେ ମଧ୍ୟ ସେମାନଙ୍କର କୁଶଳ ସମାଚାର ପଚାରିଲେ।

ଠାକୁରେ ନିତ୍ୟଗୋପାଳଙ୍କୁ ଦେଖି କହୁଛନ୍ତି, "ତୁ କିଛି ଖାଇବୁ ?" ଭକ୍ତଙ୍କର ସେତେବେଳେ ବାଳକ ଭାବ। ସେ ବିବାହ କରିନାହାନ୍ତି; ବୟସ ୨୩/୨୪ ହେବ। ସର୍ବଦା ଭାବରାଜ୍ୟରେ ବାସ କରନ୍ତି। ଠାକୁରଙ୍କ ପାଖକୁ କେତେବେଳେ ଏକାକୀ, କେତେବେଳେ ବା ରାମଙ୍କ ସଙ୍ଗରେ ପ୍ରାୟ ଆସନ୍ତି। ଠାକୁର ଶ୍ରୀରାମକୃଷ୍ଣ ତାଙ୍କର ଭାବାବସ୍ଥା ଦେଖି ତାଙ୍କୁ ସ୍ନେହ କରନ୍ତି। ତାଙ୍କର ପରମହଂସ ଅବସ୍ଥା—ଏକଥା ଠାକୁର ମଝିରେ ମଝିରେ କହନ୍ତି। ତେଣୁ ତାଙ୍କୁ ଗୋପାଳ-ଦୃଷ୍ଟିରେ ଦେଖୁଛନ୍ତି।

ଭକ୍ତଟି କହିଲେ, "ଖାଇବି।" କଥାଗୁଡ଼ିକ ଠିକ୍ ବାଳକ ପରି।

**ନିତ୍ୟଗୋପାଳଙ୍କୁ ଉପଦେଶ—ତ୍ୟାଗୀର ନାରୀସଙ୍ଗ ଏକାବେଳକେ ନିଷିଦ୍ଧ**

ଖାଇବା ପରେ ଠାକୁର ତାଙ୍କୁ ଘରର ପଶ୍ଚିମ ପାଖ ଗୋଲ ବାରଣ୍ଡାକୁ ନେଇଗଲେ ଓ ତାଙ୍କ ସହିତ କଥାବାର୍ତ୍ତା କହିବାକୁ ଲାଗିଲେ।

ଜଣେ ସ୍ତ୍ରୀଲୋକ, ଭକ୍ତିମତୀ, ବୟସ ୩୧/୩୨ ହେବ, ଠାକୁର ଶ୍ରୀରାମକୃଷ୍ଣଙ୍କ ପାଖକୁ ପ୍ରାୟ ଆସନ୍ତି ଓ ତାଙ୍କୁ ସାତିଶୟ ଭକ୍ତି କରନ୍ତି। ସେହି ସ୍ତ୍ରୀଲୋକଟି ମଧ୍ୟ ଏହି ଭକ୍ତଙ୍କର ଅଦ୍ଭୁତ ଭାବାବସ୍ଥା ଦେଖି ତାଙ୍କୁ ସନ୍ତାନ ପରି ସ୍ନେହ କରନ୍ତି ଓ ତାଙ୍କୁ ପ୍ରାୟ ନିଜ ଘରକୁ ନେଇଯାଆନ୍ତି।

ଶ୍ରୀରାମକୃଷ୍ଣ (ଭକ୍ତଙ୍କ ପ୍ରତି)—ସେଠାକୁ କଅଣ ତୁ ଯାଉ ?

ନିତ୍ୟଗୋପାଳ (ବାଳକ ପରି)—ହଁ, ଯାଏ। ନେଇଯାଏ।

ଶ୍ରୀରାମକୃଷ୍ଣ—ଆରେ, **ସାଧୁ ସାବଧାନ** ! ଥରେ ଅଧେ ଯିବୁ। ବେଶୀ ଯିବୁ ନାହିଁ—ପଡ଼ିଯିବୁ। କାମିନୀ-କାଞ୍ଚନ ହିଁ ମାୟା। **ସାଧୁକୁ ସ୍ତ୍ରୀଲୋକଠାରୁ ଅନେକ ଦୂରରେ ରହିବାକୁ ହୁଏ**। ସେଠାରେ ସମସ୍ତେ ବୁଡ଼ିଯାଆନ୍ତି। ସେଠାରେ **ବ୍ରହ୍ମା ବିଷ୍ଣୁ ପଡ଼ି ଲଟ୍‌ପଟ୍** ହୋଇଯାଆନ୍ତି।

ଭକ୍ତଟି ସମସ୍ତ ଶୁଣିଲେ।

ମାଷ୍ଟର (ସ୍ୱଗତଃ)— କି ଆଶ୍ଚର୍ଯ୍ୟ ! ଠାକୁର ମଝିରେ ମଝିରେ କହନ୍ତି—ଏହି ଭକ୍ତଙ୍କର ପରମହଂସ ଅବସ୍ଥା ! ଏପରି ଉଚ୍ଚ ଅବସ୍ଥା ସତ୍ତ୍ୱେ କଅଣ ଏହାଙ୍କର ବିପଦର ସମ୍ଭାବନା ! ସାଧୁ ପକ୍ଷରେ କି କଠିନ ନିୟମ ନ କଲେ ! ଭକ୍ତଙ୍କ ପ୍ରତି

ଠାକୁର ଶ୍ରୀରାମକୃଷ୍ଣଙ୍କର କିପରି ସ୍ନେହ ! କାଳେ ପରେ ତାଙ୍କର କୌଣସି ବିପଦ ହେବ—ତେଣୁ ପୂର୍ବରୁ ସାବଧାନ କରି ଦେଉଛନ୍ତି ।

(୩)

## ସାକାର ନିରାକାର—ଠାକୁର ଶ୍ରୀରାମକୃଷ୍ଣଙ୍କର ରାମନାମରେ ସମାଧି

ଏଥର ଠାକୁର ଶ୍ରୀରାମକୃଷ୍ଣ ଭକ୍ତଙ୍କ ସଙ୍ଗରେ ଘରର ଉତ୍ତର-ପୂର୍ବ ବାରଣ୍ଡାକୁ ଆସିଛନ୍ତି । ଭକ୍ତମାନଙ୍କ ମଧ୍ୟରେ ଦକ୍ଷିଣେଶ୍ୱରବାସୀ ଜଣେ ଗୃହସ୍ଥ ମଧ୍ୟ ବସିଛନ୍ତି । ସେ ଗୃହରେ ବେଦାନ୍ତ ଚର୍ଚ୍ଚା କରନ୍ତି । ଠାକୁରଙ୍କ ସମ୍ମୁଖରେ ଶ୍ରୀଯୁକ୍ତ କେଦାର ଚାଟାର୍ଜୀଙ୍କ ସହିତ ସେ ଶବ୍ଦବ୍ରହ୍ମ ସମ୍ବନ୍ଧରେ କହୁଛନ୍ତି ।

ଦକ୍ଷିଣେଶ୍ୱରନିବାସୀ—ଏହି ଅନାହତ ଶବ୍ଦ ଅନ୍ତରରେ ଓ ବାହାରେ ସର୍ବଦା ସ୍ପନ୍ଦିତ ହେଉଛି ।

ଶ୍ରୀରାମକୃଷ୍ଣ—କେବଳ ଶବ୍ଦ ହେଲେ ତ ହେବ ନାହିଁ, ଶବ୍ଦର ପ୍ରତିପାଦ୍ୟ ଗୋଟିଏ ଅଛି । କେବଳ ତୁମ ନାମରେ କଅଣ ମୋର ଆନନ୍ଦ ହୁଏ ? ତୁମକୁ ନ ଦେଖିଲେ ଷୋଳଅଣା ଆନନ୍ଦ ହୁଏ ନାହିଁ ।

ଦ. ନିବାସୀ—ସେହ ଶବ୍ଦ ହିଁ ବ୍ରହ୍ମ । ଏହି ଅନାହତ ଶବ୍ଦ ।

ଶ୍ରୀରାମକୃଷ୍ଣ (କେଦାରଙ୍କ ପ୍ରତି)—ଓଃ ବୁଝିଛ ! ଏହାଙ୍କର ଋଷିମାନଙ୍କ ମତ । ଋଷିମାନେ ରାମଚନ୍ଦ୍ରଙ୍କୁ କହିଲେ, 'ହେ ରାମ, ଆମେମାନେ ଜାଣୁ, ତୁମେ ଦଶରଥଙ୍କର ପୁଅ । ଭରଦ୍ୱାଜାଦି ଋଷିମାନେ ତୁମକୁ ଅବତାର ଜାଣି ପୂଜା କରନ୍ତୁ । ଆମେ ଅଖଣ୍ଡ ସଚ୍ଚିଦାନନ୍ଦଙ୍କୁ ଚାହୁଁ ।' ରାମ ଏହି କଥା ଶୁଣି ହସି ଦେଇ ଚାଲିଗଲେ ।

କେଦାର—ଋଷିମାନେ ରାମଙ୍କୁ ଅବତାର ବୋଲି ଜାଣି ନ ଥିଲେ । ସେମାନେ ବୋକା ଥିଲେ ।

ଶ୍ରୀରାମକୃଷ୍ଣ (ଗମ୍ଭୀର ଭାବରେ)—ଆପଣ ଏପରି କଥା କହନ୍ତୁ ନାହିଁ ! ଯାହାର ଯେପରି ରୁଚି । ପୁଣି ଯାହା ପେଟରେ ଯାହା ସହେ । ଗୋଟିଏ ମାଛ ଆଣି ମା' ପିଲାମାନଙ୍କୁ ନାନାରକମ କରି ଖୁଆନ୍ତି, କାହାକୁ ପଲାଉ କରି ଦିଅନ୍ତି; କିନ୍ତୁ ସମସ୍ତଙ୍କ ଦେହରେ ପଲାଉ ଯାଏ ନାହିଁ । ତେଣୁ କାହା ପାଇଁ ମାଛର ଝୋଳ କରି ଦିଅନ୍ତି । ଯାହା ପେଟରେ ଯାହା ସହେ । ପୁଣି କେହି ମାଛ ଭଜା, ମାଛର ଆମ୍ବିଳ ଭଲପାଏ । (ସମସ୍ତଙ୍କର ହାସ୍ୟ) । ଯାହାର ଯେପରି ରୁଚି !

''ଋଷିମାନେ ଜ୍ଞାନୀ ଥିଲେ, ତେଣୁ ସେମାନେ ସଚ୍ଚିଦାନନ୍ଦଙ୍କୁ ଚାହୁଁଥିଲେ । ଆଉ ଭକ୍ତମାନେ ଅବତାରଙ୍କୁ ଚାହାଁନ୍ତି—ଭକ୍ତି ଆସ୍ୱାଦନ କରିବା ପାଇଁ । ତାଙ୍କୁ ଦର୍ଶନ କଲେ ମନର ଅନ୍ଧକାର ଦୂର ହୋଇଯାଏ । ପୁରାଣରେ ଅଛି, ରାମଚନ୍ଦ୍ର

ଯେତେବେଳେ ସଭାକୁ ଆସିଲେ, ସେତେବେଳେ ଶତସୂର୍ଯ୍ୟ ଯେପରି ଉଦୟ ହେଲା ! ତେବେ ସଭାସଦ୍ ଲୋକମାନେ ପୋଡ଼ିଗଲେ ନାହିଁ କାହିଁକି ? ତାହାର ଉତ୍ତର—ତାଙ୍କର ଜ୍ୟୋତିଃ ଜଡ଼ ଜ୍ୟୋତିଃ ନୁହେଁ । ସଭାସ୍ଥ ସମସ୍ତଙ୍କର ହୃତ୍ପଦ୍ମ ପ୍ରସ୍ଫୁଟିତ ହେଲା । ସୂର୍ଯ୍ୟ ଉଠିଲେ ପଦ୍ମ ପ୍ରସ୍ଫୁଟିତ ହୁଏ ।''

ଠାକୁର ଶ୍ରୀରାମକୃଷ୍ଣ ଠିଆ ହୋଇ ଭକ୍ତମାନଙ୍କୁ ଏହି କଥା କହୁଛନ୍ତି । କହୁ କହୁ ଏକାବେଳକେ ବାହ୍ୟ ରାଜ୍ୟ ଛାଡ଼ି ମନ ଅନ୍ତର୍ମୁଖୀ ହୋଇଗଲା **'ହୃତ୍ପଦ୍ମ ପ୍ରସ୍ଫୁଟିତ ହେଲା'** ଏହି କଥାଟି ଉଚ୍ଚାରଣ କରୁ ନ କରୁଣୁ ଠାକୁର ଏକାବେଳକେ ସମାଧିସ୍ଥ ।

ଠାକୁର ସମାଧି-ଅବସ୍ଥାରେ ଦଣ୍ଡାୟମାନ । ଭଗବାନଙ୍କୁ ଦର୍ଶନ କରି ଶ୍ରୀରାମକୃଷ୍ଣଙ୍କର ହୃତ୍ପଦ୍ମ କଅଣ ପ୍ରସ୍ଫୁଟିତ ହେଲା ! ବାହ୍ୟଜ୍ଞାନଶୂନ୍ୟ । ଚିତ୍ରାର୍ପିତ ପରି ଏକ ଭାବରେ ଦଣ୍ଡାୟମାନ । ଶ୍ରୀମୁଖ ଉଜ୍ଜ୍ୱଳ ଓ ସହାସ୍ୟ । ଭକ୍ତମାନଙ୍କ ମଧ୍ୟରୁ କେହି ଦଣ୍ଡାୟମାନ, କେହି ଉପବିଷ୍ଟ । ଅବାକ୍ ହୋଇ ସେମାନେ ଏକଦୃଷ୍ଟିରେ ଏହି ଅଦ୍ଭୁତ ପ୍ରେମ-ରାଜ୍ୟର ଛବି, ଏହି ଅଦୃଷ୍ଟପୂର୍ବ ସମାଧିଚିତ୍ର ସନ୍ଦର୍ଶନ କରୁଛନ୍ତି ।

ବହୁ ସମୟ ପରେ ସମାଧିଭଙ୍ଗ ହେଲା ।

ଠାକୁର ଦୀର୍ଘନିଃଶ୍ୱାସ ପକାଇ 'ରାମ' ଏହି ନାମ ବାରମ୍ବାର ଉଚ୍ଚାରଣ କରୁଛନ୍ତି । ନାମର ପ୍ରତି ବର୍ଣ୍ଣରୁ ଯେପରି ଅମୃତ ଝରୁଛି । ଠାକୁର ଉପବିଷ୍ଟ ହେଲେ । ଭକ୍ତମାନେ ଚତୁର୍ଦ୍ଦିଗରେ ବସି ଏକଦୃଷ୍ଟିରେ ଦେଖୁଛନ୍ତି ।

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି)—ଅବତାର ଯେତେବେଳେ ଆସନ୍ତି, ସାଧାରଣ ଲୋକେ ଜାଣିପାରନ୍ତି ନାହିଁ—ଗୋପନରେ ଆସନ୍ତି । ଦୁଇ ଚାରିଜଣ ଅନ୍ତରଙ୍ଗ ଭକ୍ତ ଜାଣିପାରନ୍ତି । ରାମ ପୂର୍ଣ୍ଣବ୍ରହ୍ମ, ପୂର୍ଣ୍ଣ ଅବତାର, ଏକଥା କେବଳ ବାରଜଣ ଋଷି ଜାଣିଥିଲେ । ଅନ୍ୟାନ୍ୟ ଋଷିମାନେ କହିଥିଲେ, 'ହେ ରାମ, ଆମେମାନେ ତୁମକୁ ଦଶରଥଙ୍କର ପୁଅ ବୋଲି ଜାଣୁ ।''

''**ଅଖଣ୍ଡ ସଚ୍ଚିଦାନନ୍ଦଙ୍କୁ** କଅଣ ସମସ୍ତେ ଧରିପାରନ୍ତି ? କିନ୍ତୁ ନିତ୍ୟକୁ ଉଠି ବିଳାସ ପାଇଁ ଯେ ଲୀଳାରେ ଥାଏ, ତାହାର ପାଚିଲା ଭକ୍ତି । ବିଲାତରେ କୁଇନ୍(ରାଣୀ)ଙ୍କୁ ଦେଖି ଆସିବା ପରେ ଯାଇ କୁଇନ୍‌ଙ୍କ କଥା, ତାଙ୍କର କାର୍ଯ୍ୟ, ଏସମସ୍ତ ବର୍ଣ୍ଣନା କରାଯାଇପାରେ । କୁଇନ୍‌ଙ୍କ କଥା, ସେତେବେଳେ ଠିକ୍ ଠିକ୍ କହିହୁଏ । ଭରଦ୍ୱାଜାଦି ଋଷି ରାମଙ୍କୁ ସ୍ତବ କରିଥିଲେ, ଆଉ କହିଥିଲେ, 'ହେ ରାମ, ତୁମେ କେବଳ ସେହି ଅଖଣ୍ଡ ସଚ୍ଚିଦାନନ୍ଦ ! ତୁମେ ଆମମାନଙ୍କ ନିକଟରେ ମନୁଷ୍ୟ ରୂପରେ ଅବତୀର୍ଣ୍ଣ ହୋଇଛ । ବସ୍ତୁତଃ ତୁମେ ତୁମର ମାୟାକୁ ଆଶ୍ରୟ କରିଛ ବୋଲି ତୁମକୁ ମନୁଷ୍ୟ ପରି ଦେଖାଯାଉଛି ।' ଭରଦ୍ୱାଜାଦି ଋଷି ରାମଙ୍କର ପରମ ଭକ୍ତ । ସେମାନଙ୍କ ଭକ୍ତି ପାଚିଲା ଭକ୍ତି ।''

## (୪)

## କୀର୍ତ୍ତନାନନ୍ଦ ଓ ସମାଧିମନ୍ଦିରରେ

ଭକ୍ତଗଣ ଏହି ଅବତାର-ତତ୍ତ୍ୱ ଅବାକ୍ ହୋଇ ଶୁଣୁଛନ୍ତି । କେହି କେହି ଭାବୁଛନ୍ତି—କି ଆଶ୍ଚର୍ଯ୍ୟ ! ବେଦୋକ୍ତ ଅଖଣ୍ଡସଚ୍ଚିଦାନନ୍ଦ—ଯାହାଙ୍କୁ ବେଦରେ ବାକ୍ୟମନର ଅତୀତ କୁହାଯାଇଛି—ସେହି ପୁରୁଷ ଆମ ପାଖକୁ ଚଉଦପାଆର ମନୁଷ୍ୟ ହୋଇ ଆସନ୍ତି ! ଠାକୁର ଶ୍ରୀରାମକୃଷ୍ଣ ଯେତେବେଳେ କହୁଛନ୍ତି, ସେତେବେଳେ ଅବଶ୍ୟ ହୋଇପାରେ । ଯଦି ତାହା ନ ହୁଏ, ତାହା ହେଲେ, 'ରାମ', 'ରାମ', କରି ଏହି ମହାପୁରୁଷଙ୍କର କାହିଁକି ସମାଧି ହେବ ? ଏ ନିଶ୍ଚୟ ହୃତ୍‌ପଦ୍ମରେ ରାମରୂପ ଦର୍ଶନ କରୁଥିଲେ !

ଦେଖୁ ଦେଖୁ କୋନ୍ନଗରରୁ ଭକ୍ତମାନ ଖୋଳ କରତାଳ ନେଇ ସଂକୀର୍ତ୍ତନ କରୁ କରୁ ଉଦ୍ୟାନରେ ଆସି ଉପସ୍ଥିତ ହେଲେ । ମନମୋହନ, ନବାଇ ଓ ଅନ୍ୟାନ୍ୟ ଅନେକେ ନାମ ସଂକୀର୍ତ୍ତନ କରୁ କରୁ ଠାକୁରଙ୍କ ପାଖରେ ସେହି ଉତ୍ତର-ପୂର୍ବ ବାରଣ୍ଡାରେ ଉପସ୍ଥିତ । ଠାକୁର ଶ୍ରୀରାମକୃଷ୍ଣ ପ୍ରେମୋନ୍ମତ୍ତ ହୋଇ ସେମାନଙ୍କ ସହିତ ସଂକୀର୍ତ୍ତନ କରୁଛନ୍ତି ।

ନୃତ୍ୟ କରୁ କରୁ ମଝିରେ ସମାଧି । ସେତେବେଳେ ସଂକୀର୍ତ୍ତନ ଭିତରେ ଚିତ୍ରାର୍ପିତ ପରି ଠିଆ ହୋଇଛନ୍ତି । ସେହି ଅବସ୍ଥାରେ ଭକ୍ତମାନେ ତାଙ୍କୁ ପୁଷ୍ପମାଳ ଦେଇ ସଜାଇଲେ । ବଡ଼ ବଡ଼ ଗଜରାମାଳ ! ଭକ୍ତମାନେ ଦେଖୁଛନ୍ତି, ଯେପରି ଶ୍ରୀଗୌରାଙ୍ଗ ସମ୍ମୁଖରେ ଦଣ୍ଡାୟମାନ । ଗଭୀର ଭାବସମାଧିରେ ନିମଗ୍ନ ! ପ୍ରଭୁଙ୍କର କେତେବେଳେ **ଅନ୍ତର୍ଦ୍ଦଶା**—ସେତେବେଳେ ଜଡ଼ବତ୍, ଚିତ୍ରାର୍ପିତ ପରି ବାହ୍ୟଜ୍ଞାନଶୂନ୍ୟ ହୋଇ ପଡ଼ନ୍ତି । କେତେବେଳେ ବା **ଅର୍ଦ୍ଧବାହ୍ୟଦଶା**—ସେତେବେଳେ ପ୍ରେମାବିଷ୍ଟ ହୋଇ ନୃତ୍ୟ କରୁଥାଆନ୍ତି । ପୁଣି କେତେବେଳେ **ବାହ୍ୟଦଶା**—ସେତେବେଳେ ଭକ୍ତଙ୍କ ସଙ୍ଗରେ ସଂକୀର୍ତ୍ତନ କରନ୍ତି ।

ଠାକୁର ସମାଧିସ୍ଥ, ଦଣ୍ଡାୟମାନ । ଗଳାରେ ପୁଷ୍ପମାଳ । କାଳେ ପଡ଼ିଯିବେ, ଏହା ଭାବି ଜଣେ ଭକ୍ତ ତାଙ୍କୁ ଧରିଛନ୍ତି । ଚତୁର୍ଦ୍ଦିଗରେ ଭକ୍ତମାନେ ଠିଆ ହୋଇ କରତାଳ ନେଇ କୀର୍ତ୍ତନ କରୁଛନ୍ତି । ଠାକୁରଙ୍କର ଦୃଷ୍ଟି ସ୍ଥିର । ଚନ୍ଦ୍ରବଦନ ପ୍ରେମାନୁରଞ୍ଜିତ । ଠାକୁରେ ପଶ୍ଚିମାସ୍ୟ । ଏହି ଆନନ୍ଦମୂର୍ତ୍ତି ଭକ୍ତମାନେ ବହୁ ସମୟ ଧରି ଦେଖିଲେ ।

ସମାଧି ଭଙ୍ଗ ହେଲା । ସମୟ ହୋଇଯାଇଛି । କିୟତ୍‌କ୍ଷଣ ପରେ କୀର୍ତ୍ତନ ମଧ୍ୟ ବନ୍ଦ ହେଲା । ଭକ୍ତମାନେ ଠାକୁରଙ୍କୁ ଆହାର କରାଇବା ପାଇଁ ବ୍ୟସ୍ତ ହେଲେ ।

ଠାକୁର କିଛି ସମୟ ବିଶ୍ରାମ କରି, ନବ ପୀତାମ୍ବର ପରିଧାନ କରି ଛୋଟ ଖଟଟିରେ ବସିଲେ । ପୀତାମ୍ବରଧାରୀ ସେହି ଆନନ୍ଦମୟ ମହାପୁରୁଷଙ୍କର

ଜ୍ୟୋତିର୍ମୟ ଭକ୍ତଚିତ୍ତବିନୋଦନ ଅପରୂପ ରୂପ ଭକ୍ତମାନେ ଦର୍ଶନ କରୁଛନ୍ତି । ସେହି ଦେବଦୁର୍ଲ୍ଲଭ, ପବିତ୍ର, ମୋହନ ମୂର୍ତ୍ତି ଦର୍ଶନ କରି ନୟନର ତୃପ୍ତି ହେଲା ନାହିଁ । ଇଚ୍ଛା ଆଉ ଦେଖିବି, ଆହୁରି ଦେଖିବି, ସେହି ରୂପ-ସାଗରରେ ନିମଗ୍ନ ହେବି !

ଠାକୁର ଆହାରରେ ବସିଲେ । ଭକ୍ତମାନେ ଆନନ୍ଦରେ ପ୍ରସାଦ ପାଇଲେ ।

## (୫)

## ଗୋସ୍ୱାମୀଙ୍କ ସଙ୍ଗରେ ସର୍ବଧର୍ମ-ସମନ୍ୱୟ ପ୍ରସଙ୍ଗରେ

ଆହାରାନ୍ତେ ଠାକୁର ଶ୍ରୀରାମକୃଷ୍ଣ ଛୋଟ ଖଟଟିରେ ବିଶ୍ରାମ କରୁଛନ୍ତି । ଘରେ ଲୋକଙ୍କର ଭିଡ଼ କ୍ରମେ ବଢୁଛି । ବାହାରର ବାରଣ୍ଡାଗୁଡ଼ିକ ମଧ୍ୟ ଲୋକରେ ପରିପୂର୍ଣ୍ଣ । ଘର ଭିତରେ ଭକ୍ତମାନେ ତଳେ ବସିଛନ୍ତି ଓ ଠାକୁରଙ୍କ ଆଡ଼କୁ ଏକ ଦୃଷ୍ଟିରେ ଚାହିଁରହିଛନ୍ତି । କେଦାର, ସୁରେଶ, ରାମ, ମନମୋହନ, ଗିରୀନ୍ଦ୍ର, ରାଖାଲ, ଭବନାଥ, ମାଷ୍ଟର ଇତ୍ୟାଦି ଅନେକେ ଘରେ ଉପସ୍ଥିତ । ରାଖାଲଙ୍କର ବାପା ଆସିଛନ୍ତି; ସେ ମଧ୍ୟ ଏହି ଘରେ ବସିଛନ୍ତି ।

ଜଣେ ବୈଷ୍ଣବ ଗୋସ୍ୱାମୀ ମଧ୍ୟ ଏହି ଘରେ ଉପବିଷ୍ଟ । ଠାକୁର ତାଙ୍କୁ ସମ୍ବୋଧନ କରି କଥା କହୁଛନ୍ତି । ଗୋସ୍ୱାମୀମାନଙ୍କୁ ଦେଖିଲେ ହିଁ ଠାକୁର ମସ୍ତକ ଅବନତ କରି ପ୍ରଣାମ କରନ୍ତି—ବେଳେ ବେଳେ ସମ୍ମୁଖରେ ସାଷ୍ଟାଙ୍ଗ ପ୍ରଣିପାତ ହୁଅନ୍ତି ।

### ନାମ-ମାହାତ୍ମ୍ୟ ନା ଅନୁରାଗ—ଅଜାମିଳ

ଶ୍ରୀରାମକୃଷ୍ଣ—ଆଚ୍ଛା, ତୁମେ କଅଣ କହୁଛ ? ଉପାୟ କଅଣ ?

ଗୋସ୍ୱାମୀ—ଆଜ୍ଞା, ନାମରେ ହେବ । କଳିରେ ନାମ-ମାହାତ୍ମ୍ୟ ।

ଶ୍ରୀରାମକୃଷ୍ଣ—ହଁ, ନାମର ଖୁବ୍ ମାହାତ୍ମ୍ୟ ଅଛି ସତ, ତେବେ ଅନୁରାଗ ନ ଥିଲେ କଅଣ ହୁଏ ? ଈଶ୍ୱରଙ୍କ ପାଇଁ ପ୍ରାଣ ବ୍ୟାକୁଳ ହେବା ଦରକାର । କେବଳ ନାମ କରି ଯାଉଛି, କିନ୍ତୁ କାମିନୀ-କାଞ୍ଚନରେ ମନ ରହିଛି, ସେଥିରେ କ'ଣ ହୁଏ ?

''ବିଛା ବା ମାକଡ଼ସା କାମୁଡ଼ିଲେ ଖାଲି ମନ୍ତ୍ରରେ ଭଲ ହୁଏ ନାହିଁ—ଘଷିନିଆଁର ସେକ ଦେବାକୁ ହୁଏ ।''

ଗୋସ୍ୱାମୀ—ତାହାହେଲେ ଅଜାମିଳ ? ଅଜାମିଳ ମହାପାତକୀ, ଏପରି ପାପ ନାହିଁ, ଯାହା ସେ କରିନାହିଁ । କିନ୍ତୁ ମରିବାବେଳେ 'ନାରାୟଣ' ବୋଲି ପୁଅକୁ ଡାକିବାରେ ଉଦ୍ଧାର ପାଇଗଲା ।

ଶ୍ରୀରାମକୃଷ୍ଣ—ହୁଏତ ଅଜାମିଳର ପୂର୍ବ ଜନ୍ମରେ ବହୁତ କାମ ହୋଇଯାଇଥିଲା । ଆଉ ଅଛି ଯେ, ସେ ପରେ ତପସ୍ୟା କରିଥିଲା ।

''ଏପରି ମଧ୍ୟ କୁହାଯାଇପାରେ ଯେ, ତାହାର ସେତେବେଳେ ଅନ୍ତିମକାଳ । ହାତୀକୁ ଗାଧୋଇ ଦେଲେ କଅଣ ହେବ ? ପୁଣି ଧୂଳି-କାଦୁଅ ବୋଲି ହୋଇ ଯେମିତିକୁ ସେମିତି ! ତେବେ ହାତୀଶାଳରେ ପଶିବା ଆଗରୁ ଯଦି କେହି ଧୂଳି ଝାଡ଼ିଦିଏ ଓ ଗାଧୋଇଦିଏ ତାହା ହେଲେ ଦେହ ପରିଷ୍କାର ରହେ ।

''ନାମଦ୍ୱାରା ଥରେ ଶୁଦ୍ଧ ହେଲା; କିନ୍ତୁ ତା'ପରେ ହୁଏତ ମନ ପାପରେ ଲିପ୍ତ ହୁଏ । ମନରେ ବଳ ନାହିଁ; ପ୍ରତିଜ୍ଞା କରେ ନାହିଁ ଯେ, ଆଉ ପାପ କରିବି ନାହିଁ । ଗଙ୍ଗାସ୍ନାନରେ ପାପସବୁ ଚାଲିଯାଏ । ଚାଲିଗଲେ କ'ଣ ହେବ ? ଲୋକେ କହନ୍ତି, ପାପଗୁଡ଼ାକ ଗଛ ଉପରେ ଥାଆନ୍ତି । ଗଙ୍ଗାରେ ଗାଧୋଇ ସାରି ଜଣେ ଯେତେବେଳେ ଫେରେ, ସେତେବେଳେ ଏହି ପୁରୁଣା ପାପଗୁଡ଼ାକ ଗଛ ଉପରୁ ଡେଇଁ ତା' ବେକମୁଣ୍ଡାରେ ପଡ଼ନ୍ତି । (ସମସ୍ତଙ୍କର ହାସ୍ୟ) । ସେହି ପୁରୁଣା ପାପଗୁଡ଼ାକ ପୁଣି କାନ୍ଧରେ ଆସି ବସନ୍ତି । ଗାଧୋଇ ସାରି ପାହୁଣ୍ଡେ ଦୁଇ ପାହୁଣ୍ଡ ଆସୁ ନ ଆସୁଣୁ ପୁଣି ବେକମୁଣ୍ଡାରେ ଚଢ଼ନ୍ତି ।

''ତେଣୁ ନାମ କର, ସଙ୍ଗେ ସଙ୍ଗେ ପ୍ରାର୍ଥନା ବି କର, ଯେପରି ଈଶ୍ୱରଙ୍କଠାରେ ଅନୁରାଗ ହୁଏ; ଆଉ ଯେଉଁସବୁ ଜିନିଷ, ଯେପରି ଟଙ୍କା, ମାନ, ଦେହସୁଖ—ସେସବୁ ଉପରେ ପ୍ରୀତି କମିଯାଏ, ପ୍ରାର୍ଥନା କର ।''

**ବୈଷ୍ଣବ ଧର୍ମ ଓ ସାଂପ୍ରଦାୟିକତା—ସର୍ବଧର୍ମ ସମନ୍ୱୟ**

ଶ୍ରୀରାମକୃଷ୍ଣ (ଗୋସ୍ୱାମୀଙ୍କ ପ୍ରତି)— ଆନ୍ତରିକ ହେଲେ ସବୁ ଧର୍ମ ଭିତର ଦେଇ ଈଶ୍ୱରଙ୍କୁ ଲାଭ କରାଯାଏ । ବୈଷ୍ଣବମାନେ ଈଶ୍ୱରଙ୍କୁ ପାଇବେ, ଶାକ୍ତମାନେ ପାଇବେ, ବେଦାନ୍ତବାଦୀମାନେ ମଧ୍ୟ ପାଇବେ, ବ୍ରହ୍ମଜ୍ଞାନୀମାନେ ପାଇବେ, ପୁଣି ମୁସଲମାନ, ଖ୍ରୀଷ୍ଟାନ ଏମାନେ ମଧ୍ୟ ପାଇବେ । ଆନ୍ତରିକ ହେଲେ ସମସ୍ତେ ପାଇବେ । କେହି କେହି ଝଗଡ଼ା କରିବସନ୍ତି, 'ଆମ ଶ୍ରୀକୃଷ୍ଣଙ୍କୁ ନ ଭଜିଲେ କିଛି ହେବ ନାହିଁ', 'ଆମର ମା କାଳୀଙ୍କୁ ନ ଭଜିଲେ କିଛି ହେବ ନାହିଁ', 'ଆମ ଖ୍ରୀଷ୍ଟାନ୍ ଧର୍ମ ନ ନେଲେ କିଛି ହେବ ନାହିଁ ।'

''ଏସବୁ ଧର୍ମାନ୍ଧ ବୁଦ୍ଧି—ଅର୍ଥାତ୍ ମୋ ଧର୍ମ ଠିକ୍, ଆଉ ସମସ୍ତଙ୍କର ମିଥ୍ୟା । ଏ ବୁଦ୍ଧି ଖରାପ । ଈଶ୍ୱରଙ୍କ ପାଖରେ ନାନା ପଥଦେଇ ପହଞ୍ଚି ହୁଏ ।

''ପୁଣି କେହି କେହି କହନ୍ତି, ଈଶ୍ୱର ସାକାର, ସେ ନିରାକାର ନୁହନ୍ତି । ଏଇଥିରୁ ପୁଣି କଳି । ଯେ ବୈଷ୍ଣବ, ସେ ବେଦାନ୍ତବାଦୀ ସଙ୍ଗରେ କଳି କରେ ।

''ଯଦି ଈଶ୍ୱର ସାକ୍ଷାତ୍ ଦର୍ଶନ ଦିଅନ୍ତି, ତାହା ହେଲେ ଠିକ୍ କଥା କୁହାଯାଇ ପାରେ । ଯେ ଦର୍ଶନ କରିଛି ସେ ଠିକ୍ ଜାଣେ, ଈଶ୍ୱର ସାକାର ପୁଣି ନିରାକାର । ସେ ଯେ ଆହୁରି କେତେ କଅଣ, ତାହା କହିହୁଏ ନାହିଁ ।

''କେତେ ଜଣ ଅନ୍ଧ ଗୋଟିଏ ହାତୀ ପାଖରେ ଆସି ପହଞ୍ଚିଲେ । ଜଣେ ଲୋକ କହିଦେଲା—ଏ ଜନ୍ତୁଟିର ନାଆଁ ହାତୀ । ଯେତେବେଳେ ଅନ୍ଧମାନଙ୍କୁ

ପଚରାଗଲା ହାତୀଟା କିପରି, ସେମାନେ ହାତୀ ଦେହରେ ହାତ ବୁଲାଇଲେ । ଜଣେ କହିଲା, ହାତୀ ଖମ୍ବ ପରି — ସେ ଅନ୍ଧଟି କେବଳ ହାତୀର ଗୋଡ଼କୁ ଧରିଥିଲା । ଆଉ ଜଣେ କହିଲା, ହାତୀଟା ଗୋଟାଏ କୁଲା ପରି — ସେ କେବଳ ଗୋଟାଏ କାନରେ ହାତ ଦେଇ ଜାଣିଥିଲା । ଏହିପରି ଯେଉଁମାନେ ଶୁଣ୍ଢରେ କିମ୍ବା ପେଟରେ ହାତ ଦେଇ ଛୁଇଁଥିଲେ, ସେମାନେ ନାନା ପ୍ରକାର କହିଲେ । ସେହିପରି ଈଶ୍ୱର ସମ୍ବନ୍ଧରେ ଯେ ଯେତିକି ଦେଖିଛି, ସେ ମନେକରେ, ଈଶ୍ୱର ଏହିପରି, ଆଉ କିଛି ନୁହନ୍ତି ।

''ଜଣେ ଲୋକ ଶୌଚ ଯାଇ ଫେରି ଆସି କହିଲା, 'ଗଛ ତଳେ ଗୋଟିଏ ସୁନ୍ଦର ଲାଲ ବହୁରୂପୀ ଦେଖିଆସିଲି ।' ଆଉ ଜଣେ କହିଲା, 'ମୁଁ ତୁମ ଆଗରୁ ସେହି ଗଛ ମୂଳକୁ ଯାଇଥିଲି, ଲାଲ କାହିଁକି ହେବ ? ସେ ସବୁଜ, ମୁଁ ସ୍ୱଚକ୍ଷୁରେ ଦେଖିଛି ।' ଆଉ ଜଣେ କହିଲା, 'ଆହେ, ମୁଁ ବେଶ୍ ଜାଣେ, ତୁମମାନଙ୍କ ଆଗରୁ ମୁଁ ଯାଇଥିଲି, ସେ ବହୁରୂପୀକୁ ମୁଁ ମଧ୍ୟ ଦେଖିଛି । ସେ ଲାଲ ନୁହେଁ, ସବୁଜ ନୁହେଁ, ସ୍ୱଚକ୍ଷୁରେ ଦେଖିଛି ନୀଳ ।' ଆଉ ଦୁଇଜଣ ଥିଲେ, ସେମାନେ କହିଲେ ହଳଦିଆ, ଖାକିରଙ୍ଗ, ଏହିପରି ନାନା ରଙ୍ଗ । ଶେଷରେ ସମସ୍ତେ ଝଗଡ଼ା କଲେ । ସମସ୍ତେ ଜାଣନ୍ତି ମୁଁ ଯାହା ଦେଖିଛି ତାହା ହିଁ ଠିକ୍ । ସେମାନଙ୍କ ଝଗଡ଼ା ଦେଖି ଜଣେ ଲୋକ ପଚାରିଲେ — କଥା କଅଣ ? ଯେତେବେଳେ ସବୁକଥା ଶୁଣିଲେ, ସେତେବେଳେ କହିଲେ, 'ମୁଁ ସେହି ଗଛ ତଳେ ରହେ, ସେହି ଜନ୍ତୁଟିକୁ ମୁଁ ଚିହ୍ନେ । ତୁମେମାନେ ପ୍ରତ୍ୟେକ ଯାହା କହୁଛ, ତାହା ସବୁ ସତ୍ୟ । ସେ ବହୁରୂପୀ — କେତେବେଳେ ସବୁଜ, କେତେବେଳେ ନୀଳ, ଏହିପରି ନାନା ରଙ୍ଗ ଧରେ । ପୁଣି କେତେବେଳେ ଦେଖେ, ଏକାବେଳେକେ କୌଣସି ରଙ୍ଗ ନାହିଁ — ନିର୍ଗୁଣ ।

**ସାକାର ନା ନିରାକାର ?**

(ଗୋସ୍ୱାମୀଙ୍କ ପ୍ରତି) ''ଈଶ୍ୱର କେବଳ ସାକାର କହିଲେ କଅଣ ହେବ ! ସେ ଶ୍ରୀକୃଷ୍ଣଙ୍କ ପରି ମନୁଷ୍ୟ ଦେହ ଧାରଣ କରି ଆସନ୍ତି, ଏହା ସତ୍ୟ; ନାନାରୂପ ଧରି ଭକ୍ତଙ୍କୁ ଦେଖାଦଅନ୍ତି, ଏହା ମଧ୍ୟ ସତ୍ୟ । ପୁଣି ସେ ନିରାକାର ଅଖଣ୍ଡ ସଚ୍ଚିଦାନନ୍ଦ, ଏହା ମଧ୍ୟ ସତ୍ୟ । ବେଦରେ ତାଙ୍କୁ ସାକାର ନିରାକାର ଉଭୟ କହିଛି, ନିର୍ଗୁଣ ମଧ୍ୟ କହିଛି ।''

''କିପରି ଜାଣ ? ସଚ୍ଚିଦାନନ୍ଦ ଯେପରି ଅନନ୍ତ ସାଗର । ଥଣ୍ଡା ଯୋଗୁଁ ସାଗରର ଜଳ ବରଫ ହୋଇ ଭାସେ; ନାନା ରୂପ ଧରି ବରଫ-ଖଣ୍ଡମାନ ସାଗର-ଜଳରେ ଭାସେ; ସେହିପରି ଭକ୍ତିହିମ ଲାଗି ସଚ୍ଚିଦାନନ୍ଦ-ସାଗରରେ ସାକାର ମୂର୍ତ୍ତି ଦର୍ଶନ ହୁଏ । ଭକ୍ତ ପାଇଁ ସାକାର । ପୁଣି ଜ୍ଞାନସୂର୍ଯ୍ୟ ଉଠିଲେ ବରଫ ତରଳି ପୂର୍ବପରି ଯେଉଁ ଜଳକୁ ସେହି ଜଳ । ଅଧଃ ଉର୍ଦ୍ଧ୍ୱ ପରିପୂର୍ଣ୍ଣ — ଜଳ ଆଉ ଜଳ । ତେଣୁ ଶ୍ରୀମଦ୍ଭାଗବତରେ ସମସ୍ତ ପକାର ସ୍ତବ କରିଛନ୍ତି — ପ୍ରଭୁ, ତୁମେ ହିଁ

ସାକାର, ତୁମେ ହିଁ ନିରାକାର; ଆମ ସମ୍ମୁଖରେ ତୁମେ ମନୁଷ୍ୟ ହୋଇ ବୁଲୁଛ, କିନ୍ତୁ ବେଦରେ ତୁମକୁ ହିଁ ବାକ୍ୟମନର ଅତୀତ ବୋଲି କୁହାଯାଇଛି ।

''ତେବେ କହିପାର, କେଉଁ କେଉଁ ଭକ୍ତ ପକ୍ଷରେ ସେ ନିତ୍ୟ ସାକାର । ଏପରି ଜାଗା ଅଛି, ଯେଉଁଠାରେ ବରଫ ତରଳେ ନାହିଁ, ସ୍ଫଟିକର ଆକାର ଧାରଣ କରେ ।''

କେଦାର—ଆଜ୍ଞା, ଶ୍ରୀମଦ୍‌ଭାଗବତରେ ବ୍ୟାସ ତିନୋଟି ଦୋଷ ପାଇଁ ଭଗବାନଙ୍କ ପାଖରେ କ୍ଷମା ପ୍ରାର୍ଥନା କରିଛନ୍ତି । ଏକ ସ୍ଥାନରେ କହିଛନ୍ତି—ହେ ଭଗବାନ୍ ! ତୁମେ ବାକ୍ୟମନର ଅତୀତ; କିନ୍ତୁ ମୁଁ କେବଳ ତୁମର ଲୀଳା, ତୁମର ସାକାରରୂପ ବର୍ଣ୍ଣନା କରିଛି; ଅତଏବ ଅପରାଧ କ୍ଷମା କରିବେ ।

ଶ୍ରୀରାମକୃଷ୍ଣ—ହଁ, ଈଶ୍ୱର ସାକାର ପୁଣି ନିରାକାର; ଆଉ ମଧ୍ୟ ସାକାର ନିରାକାରର ଅତୀତ । ତାଙ୍କର ଇତି କରାଯାଏ ନାହିଁ ।

## (୬)

## ଠାକୁର ଶ୍ରୀରାମକୃଷ୍ଣ, ନିତ୍ୟସିଦ୍ଧ ଓ କୌମାର ବୈରାଗ୍ୟ

ରାଖାଲଙ୍କର ବାପା ବସିଛନ୍ତି । ରାଖାଲ ଆଜିକାଲି ଠାକୁରଙ୍କ ପାଖରେ ରହିଛନ୍ତି । ରାଖାଲଙ୍କର ମାତାଙ୍କର ପରଲୋକପ୍ରାପ୍ତି ପରେ ପିତା ଦ୍ୱିତୀୟ ସଂସାର କରିଛନ୍ତି । ରାଖାଲ ଏଠାରେ ଅଛନ୍ତି, ତେଣୁ ପିତା ମଝିରେ ମଝିରେ ଆସନ୍ତି । ସେ ଏଠାରେ ରହିବାରେ ବିଶେଷ ଆପତ୍ତି କରନ୍ତି ନାହିଁ । ସେ ଧନୀ ଓ ବିଷୟୀ ଲୋକ, ମୋକଦ୍ଦମା ମାମଲା ସର୍ବଦା କରିବାକୁ ହୁଏ । ଠାକୁର ଶ୍ରୀରାମକୃଷ୍ଣଙ୍କ ପାଖକୁ କେତେ ଓକିଲ, ଡେପୁଟି ମାଜିଷ୍ଟ୍ରେଟ୍ ଇତ୍ୟାଦି ଆସନ୍ତି । ରାଖାଲଙ୍କର ପିତା ସେମାନଙ୍କ ସହିତ କଥୋପକଥନ କରିବାକୁ ମଝିରେ ମଝିରେ ଆସନ୍ତି । ସେମାନଙ୍କ ନିକଟରୁ ବିଷୟକର୍ମ ସମ୍ବନ୍ଧରେ କିଛି ପରାମର୍ଶ ପାଇବେ । ଠାକୁର ଶ୍ରୀରାମକୃଷ୍ଣ ମଝିରେ ମଝିରେ ରାଖାଲଙ୍କ ବାପାଙ୍କୁ ଦେଖୁଛନ୍ତି । ତାଙ୍କର ଇଚ୍ଛା—ରାଖାଲ ତାଙ୍କ ପାଖରେ ଦକ୍ଷିଣେଶ୍ୱରରେ ରହିଯାଆନ୍ତୁ ।

ଶ୍ରୀରାମକୃଷ୍ଣ (ରାଖାଲଙ୍କର ପିତା ଓ ଭକ୍ତମାନଙ୍କ ପ୍ରତି)—ଆହା, ଆଜିକାଲି ରାଖାଲର ସ୍ୱଭାବ କ'ଣ ହୋଇଛି ! ତା' ମୁହଁକୁ ଚାହିଁଲେ—ଦେଖିବ, ମଝିରେ ମଝିରେ ଓଠ ଥରୁଛି । ଅନ୍ତରରେ ଈଶ୍ୱରଙ୍କ ନାମ ଜପ କରେ କି ନା, ତେଣୁ ଓଠ ଥରେ ।

''ଏହି ପିଲାମାନେ ସବୁ ନିତ୍ୟସିଦ୍ଧର ଦଳ । ଈଶ୍ୱରଙ୍କର ଜ୍ଞାନ ନେଇ ଜନ୍ମିଛନ୍ତି । ଟିକିଏ ବୟସ ହେଲେ ବୁଝିପାରନ୍ତି, ଦେହରେ ସଂସାର ଲାଗିଲେ ରକ୍ଷା ନାହିଁ । ବେଦରେ ହୋମା ପକ୍ଷୀର କଥା ଅଛି । ଆକାଶରେ ଡିମ୍ବ ଦିଏ, ଡିମ୍ବ ପଡୁଥାଏ; କିନ୍ତୁ ଏତେ ଉଚ୍ଚରେ ପକ୍ଷୀ ରହେ ଯେ, ପଡୁ ପଡୁ ଡିମ୍ବ ଫୁଟିଯାଏ ।

ସେତେବେଳେ ପକ୍ଷୀର ଛୁଆ ବାହାରି ପଡ଼େ ଓ ସେ ମଧ୍ୟ ପଡୁଥାଏ । ତଥାପି ଏତେ ଉଚ୍ଚ ଯେ ପଡୁ ପଡୁ ତାର ଡେଣା କଅଁଳେ ଓ ଆଖି ଫିଟେ । ସେତେବେଳେ ସେ ଦେଖିପାରେ ଯେ, 'ମୁଁ ତଳେ ପଡ଼ିଯିବି ! ମାଟିରେ ପଡ଼ିଲେ ହିଁ ମୃତ୍ୟୁ !' ମାଟି ଦେଖିବା ମାତ୍ରେ ସଙ୍ଗେ ସଙ୍ଗେ ମା ପାଖକୁ ପ୍ରାଣମୂର୍ଚ୍ଛା ଦୌଡ଼ । ଏକାବେଳକେ ଉଡ଼ିବାକୁ ଆରମ୍ଭ କରିଦେଲା, ଯେପରି ମାଆ ପାଖରେ ପହଞ୍ଚି ପାରେ । ଗୋଟିଏ ଲକ୍ଷ୍ୟ, ମା ପାଖକୁ ଯିବା ।

''ଏହି ପିଲାମାନେ ସବୁ ଠିକ୍ ସେହିପରି । ପିଲାବେଳୁ ସଂସାର ଦେଖି ଭୟ । ଗୋଟିଏ ଚିନ୍ତା — କିପରି ମା ପାଖକୁ ଯିବି, କିପରି ଈଶ୍ୱରଲାଭ ହେବ !

''ଯଦି କହ, ବିଷୟୀମାନଙ୍କ ମଧ୍ୟରେ ରହନ୍ତି, ବିଷୟୀଙ୍କ ଔରସରୁ ଜନ୍ମ, ତେବେ ଏପରି ଭକ୍ତି ଏପରି ଜ୍ଞାନ ହୁଏ କିପରି ? ତା'ର ମାନେ ଅଛି । ବିଷ୍ଠାଗଦାରେ ଯଦି ବୁଟ ପଡ଼େ, ତାହା ହେଲେ ସେଥିରୁ ବୁଟ ଗଛ ହିଁ ହୁଏ । ସେ ବୁଟରେ କେତେ ଭଲ କାମ ହୁଏ । ବିଷ୍ଠାଗଦାରେ ପଡ଼ିଛି ବୋଲି କଅଣ ଅନ୍ୟ ଗଛ ହେବ ?

''ଆହା, ରାଖାଲର ସ୍ୱଭାବ ଆଜିକାଲି କ'ଣ ହୋଇଛି ! ତାହା ହେବ ନାହିଁ ବା କାହିଁକି ? ଓଲୁଅ ଯଦି ଭଲ ହୁଏ, ତା ପୁଆଟା ବି ଭଲ ହୁଏ । (ସମସ୍ତଙ୍କର ହାସ୍ୟ) । ଯେପରି ବାପ, ତାର ସେହିପରି ପୁଅ !''

ମାଷ୍ଟର (ଏକାନ୍ତରେ ଗିରୀନ୍ଦ୍ରଙ୍କ ପ୍ରତି) — ସାକାର ନିରାକାରର କଥାଟି ଏ କିପରି ବୁଝାଇଦେଲେ ! ବୈଷ୍ଣବମାନେ ବୋଧହୁଏ କେବଳ ସାକାର ବୋଲି କହନ୍ତି ?

ଗିରୀନ୍ଦ୍ର — ତା'ହେବ । ସେମାନେ ଧର୍ମାନ୍ଧ ।

ମାଷ୍ଟର — 'ନିତ୍ୟ ସାକାର' ଆପଣ ବୁଝିଛନ୍ତି ? ସ୍ଫଟିକ କଥା ? ମୁଁ ସେଇଟା ଭଲ ବୁଝିପାରୁ ନାହିଁ ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି) — ହଇ ହେ, ତୁମେସବୁ କଅଣ କୁହାକୁହି ହେଉଛ ?

ମାଷ୍ଟର ଓ ଗିରିନ୍ଦ୍ର ଟିକିଏ ହସି ଚୁପ୍ କରି ରହିଲେ ।

ବୃନ୍ଦାଦାସୀ (ରାମଲାଲଙ୍କ ପ୍ରତି) — ଏ ଲୋକଟିକୁ ଏବେ ଖାଇବାକୁ ଦିଅ, ମୋତେ ତା'ପରେ ଖାଇବାକୁ ଦେବ ।

ଶ୍ରୀରାମକୃଷ୍ଣ — ବୃନ୍ଦାକୁ ଏପର୍ଯ୍ୟନ୍ତ ଖାଇବାକୁ ଦେଇନାହଁ ?

## (୭)

## ପଞ୍ଚବଟୀମୂଳରେ କୀର୍ତ୍ତନାନନ୍ଦ

ଅପରାହ୍ଣରେ ଭକ୍ତମାନେ ପଞ୍ଚବଟୀମୂଳରେ କୀର୍ତ୍ତନ କରୁଛନ୍ତି । ଠାକୁର ଶ୍ରୀରାମକୃଷ୍ଣ ସେମାନଙ୍କ ସହିତ ଯୋଗଦାନ କଲେ । ଆଜି ଭକ୍ତଙ୍କ ସଙ୍ଗରେ ମାଆଙ୍କ ନାମ କରୁ କରୁ ଆନନ୍ଦରେ ଭାସିଲେ ।

"ଶ୍ୟାମାପଦ ଆକାଶେତେ ମନଘୁଡ଼ିଖାନ ଉଡ଼୍‌ତେଛିଲ ।
କଲୁଷେର କୁବାତାସ ପେୟେ ଗୋପ୍ତା ଖେୟେ ପଡ଼େଗେଲ ।।...
ଭକ୍ତି-ଡୋରେ ଛିଲ ବାଁଧା, ଖେଲ୍‌ତେ ଏସେ ଲାଗ୍‌ଲ ଧାଁ ଧାଁ ।
ନରେଶଚନ୍ଦ୍ରେର ହାସା-କାଁଦା, ନା ଆସା ଏକ ଛିଲ ଭାଲ ।।"

ପୁଣି ସଂଗୀତ ହେଲା । ଗୀତ ସଙ୍ଗେ ସଙ୍ଗେ ଖୋଳ କରତାଳ ବାଜିଲା । ଠାକୁର ଭକ୍ତଙ୍କ ସହିତ ନାଚୁଛନ୍ତି ।

"ମଜଲୋ ଆମାର ମନ-ଭ୍ରମରା ଶ୍ୟାମାପଦ ନୀଲ-କମଲେ,
ଶ୍ୟାମା-ପଦ-ନୀଲ-କମଲେ, କାଲୀ-ପଦ-ନୀଲ-କମଲେ ।
ଯତ ବିଷୟ-ମଧୁ ତୁଚ୍ଛ ହ'ଲ କାମାଦି କୁସୁମ ସକଲେ ।।..."

କୀର୍ତ୍ତନ ଚାଲିଛି, ଭକ୍ତମାନେ ଗାଉଛନ୍ତି—

"ଶ୍ୟାମା ମା କି ଏକ କଲ୍ କରେଛେ,
(କାଲୀ ମା କି ଏକ କଲ୍ କରଛେ) ।
ଚୌଦ୍ଦ ପୋୟା କଲେର ଭିତର୍ କତ ରଙ୍ଗ ଦେଖାତେଛେ ।।"

ଭକ୍ତମାନେ ଆନନ୍ଦ କରିବାକୁ ଲାଗିଲେ । ସେମାନେ ଟିକିଏ ବନ୍ଦ ହେବାରୁ ଠାକୁରେ ଗାତ୍ରୋତ୍‌ଥାନ କଲେ । ଘରେ ଓ ଆଖପାଖରେ ଏବେ ମଧ୍ୟ ଅନେକ ଭକ୍ତ ଅଛନ୍ତି । ଠାକୁର ଶ୍ରୀରାମକୃଷ୍ଣ ଦକ୍ଷିଣାସ୍ୟ ହୋଇ ପଞ୍ଚବଟୀରୁ ନିଜ ଘର ଆଡ଼କୁ ଯାଉଛନ୍ତି । ସଙ୍ଗରେ ମାଷ୍ଟର । ବଉଳଗଛ ମୂଳରେ ତ୍ରୈଲୋକ୍ୟଙ୍କ ସହିତ ଦେଖା ହେଲା । ସେ ପ୍ରଣାମ କଲେ ।

ଶ୍ରୀରାମକୃଷ୍ଣ (ତ୍ରୈଲୋକ୍ୟଙ୍କ ପ୍ରତି)—ପଞ୍ଚବଟୀରେ ସେମାନେ ଗୀତ ଗାଉଛନ୍ତି । ଯାଅ ନା ଥରେ ।

ତ୍ରୈଲୋକ୍ୟ—ମୁଁ ଯାଇ କଅଣ କରିବି ?

ଶ୍ରୀରାମକୃଷ୍ଣ—କାହିଁକି, ଥରେ ଦେଖିବାକୁ ।

ତ୍ରୈଲୋକ୍ୟ—ଥରେ ଦେଖି ଆସିଛି ।

ଶ୍ରୀରାମକୃଷ୍ଣ—ଆଚ୍ଛା, ଆଚ୍ଛା, ଭଲ ।

(୮)

## ଠାକୁର ଶ୍ରୀରାମକୃଷ୍ଣ ଓ ଗୃହସ୍ଥର ଧର୍ମ

ପ୍ରାୟ ସାଢ଼େ ପାଞ୍ଚଟା ଛଅଟା ହେଲା । ଠାକୁର ଭକ୍ତଙ୍କ ସହିତ ନିଜ ଘରର ଦକ୍ଷିଣ-ପୂର୍ବ ବାରଣ୍ଡାରେ ବସିଛନ୍ତି । ଭକ୍ତମାନଙ୍କୁ ଦେଖୁଛନ୍ତି ।

ଶ୍ରୀରାମକୃଷ୍ଣ (କେଦାରାଦି ଭକ୍ତଙ୍କ ପ୍ରତି)—ସଂସାରତ୍ୟାଗୀ ସାଧୁ—ସେ ତ ନିଶ୍ଚୟ ହରିନାମ କରିବ । ତା'ର ତ ଆଉ କିଛି କାମ ନାହିଁ । ସେ ଯଦି ଈଶ୍ୱରଚିନ୍ତା କରେ, ତାହା ତ ଆଶ୍ଚର୍ଯ୍ୟର କଥା ନୁହେଁ । ସେ ଯଦି ଈଶ୍ୱରଚିନ୍ତା ନ କରେ, ସେ ଯଦି ହରିନାମ ନ କରେ, ତାହା ହେଲେ ବରଂ ସମସ୍ତେ ନିନ୍ଦା କରିବେ ।

''ସଂସାରୀ ଲୋକ ଯଦି ହରିନାମ କରନ୍ତି, ତାହା ହେଲେ ବାହାଦୁରୀ ଅଛି । ଦେଖ, ଜନକ ରାଜା ଖୁବ୍ ବାହଦୁର୍ ! ସେ ଦୁଇଟା ତରବାରି ଘୂରାଉଥିଲେ । ଗୋଟିଏ ଜ୍ଞାନର ଆଉ ଗୋଟିଏ କର୍ମର । ଏକ ଦିଗରେ ପୂର୍ଣ୍ଣ ବ୍ରହ୍ମଜ୍ଞାନ, ଆଉ ଅନ୍ୟ ଦିଗରେ ସଂସାର-କର୍ମ କରୁଥିଲେ । ନଷ୍ଟା ସ୍ତ୍ରୀ ସଂସାରର ସବୁ କାମ ମନ ଲଗାଇ କରେ; କିନ୍ତୁ ସର୍ବଦା ହିଁ ଉପପତିକୁ ଚିନ୍ତା କରେ ।

''ସାଧୁସଙ୍ଗ ସର୍ବଦା ଦରକାର, ସାଧୁ ଈଶ୍ୱରଙ୍କ ସହିତ ପରିଚୟ କରାଇଦିଅନ୍ତି ।''

କେଦାର—ଆଜ୍ଞା ହଁ ! ମହାପୁରୁଷ ଜୀବର ଉଦ୍ଧାର ପାଇଁ ଆସନ୍ତି । ଯେପରି ରେଳ-ଇଞ୍ଜିନ୍, ପଛରେ କେତେ ଗାଡ଼ି ବନ୍ଧାଥାଏ, ଟାଣି ନେଇଯାଏ । ଅଥବା ନଦୀ ବା ପୋଖରୀ କେତେ ଜୀବର ପିପାସା ଶାନ୍ତ କରେ !

କ୍ରମେ ଭକ୍ତମାନେ ଗୃହକୁ ପ୍ରତ୍ୟାବର୍ତ୍ତନ ପାଇଁ ପ୍ରସ୍ତୁତ ହେଲେ । ଜଣ ଜଣ କରି ସମସ୍ତେ ଠାକୁର ଶ୍ରୀରାମକୃଷ୍ଣଙ୍କୁ ଭୂମିଷ୍ଠ ହୋଇ ପ୍ରଣାମ କଲେ ଓ ତାଙ୍କର ପାଦଧୂଳି ଗ୍ରହଣ କଲେ । ଭବନାଥଙ୍କୁ ଦେଖି ଠାକୁର କହୁଛନ୍ତି, ''ତୁ ଆଜି ଆଉ ଯା ନା; ତୁମମାନଙ୍କୁ ଦେଖିଲା ମାତ୍ରେ ଉଦ୍ଦୀପନା ।''

ଭବନାଥ ଏପର୍ଯ୍ୟନ୍ତ ସଂସାରରେ ପ୍ରବେଶ କରି ନାହାନ୍ତି । ବୟସ ଊଣେଇଶ କି କୋଡ଼ିଏ, ଗୌରବର୍ଣ୍ଣ, ସୁନ୍ଦର ଦେହ । ଈଶ୍ୱରଙ୍କ ନାମରେ ତାଙ୍କ ଆଖିରେ ଲୁହ ଭରିଯାଏ । ଠାକୁର ତାଙ୍କୁ ସାକ୍ଷାତ୍ ନାରାୟଣ ଜ୍ଞାନ କରନ୍ତି ।

# ସପ୍ତଦଶ ପରିଚ୍ଛେଦ

## (ଶ୍ରୀଯୁକ୍ତ ଅମୃତ, ଶ୍ରୀଯୁକ୍ତ ତ୍ରୈଲୋକ୍ୟ ଇତ୍ୟାଦି ବ୍ରାହ୍ମଭକ୍ତମାନଙ୍କ ସହିତ କଥୋପକଥନ)

## (୧)

### ସମାଧି–ମନ୍ଦିରରେ

ଫାଲଗୁନ୍ କୃଷ୍ଣା ପଞ୍ଚମୀ, ଗୁରୁବାର, ୧୬ ଚୈତ୍ର, ଇଂରାଜୀ ୨୯ ମାର୍ଚ୍ଚ ୧୮୮୩ ।

ମଧ୍ୟାହ୍ନ ଭୋଜନ ପରେ ଭଗବାନ ଶ୍ରୀରାମକୃଷ୍ଣ ଟିକିଏ ବିଶ୍ରାମ କରୁଛନ୍ତି । ଦକ୍ଷିଣେଶ୍ୱର କାଳୀମନ୍ଦିରର ସେହି ପୂର୍ବ ପରିଚିତ ଘର । ସମ୍ମୁଖରେ ପଶ୍ଚିମ ଦିଗରେ ଗଙ୍ଗା । ଦିନ ଦୁଇଟା ବେଳେ ଜୁଆର ଆସିବା ଆରମ୍ଭ ହୋଇଛି ।

ଭକ୍ତମାନେ କେହି କେହି ଆସିଛନ୍ତି । ତନ୍ମଧ୍ୟରେ ବ୍ରାହ୍ମଭକ୍ତ ଶ୍ରୀଯୁକ୍ତ ଅମୃତ ଓ ମଧୁରକଣ୍ଠ ଶ୍ରୀଯୁକ୍ତ ତ୍ରୈଲୋକ୍ୟ । ରାଖାଲ ଅସୁସ୍ଥ ଅଛନ୍ତି । ଏହି କଥା ଶ୍ରୀରାମକୃଷ୍ଣ ଭକ୍ତମାନଙ୍କୁ କହୁଛନ୍ତି ।

ଶ୍ରୀରାମକୃଷ୍ଣ — ଦେଖ, ରାଖାଲର ଦେହ ଖରାପ ହୋଇଛି । ସୋଡ଼ା ଖାଇଲେ କଅଣ ଭଲ ହୁଏ ? କଅଣ ହେବ ! ରାଖାଲ, ତୁ ଜଗନ୍ନାଥଙ୍କର ପ୍ରସାଦ ଖା ।

ଏହି କଥା କହୁ କହୁ ଠାକୁର ଶ୍ରୀରାମକୃଷ୍ଣ ଅଦ୍ଭୁତଭାବରେ ଭାବିତ ହେଲେ । ବୋଧହୁଏ ଦେଖିଲେ, ତାଙ୍କ ସମ୍ମୁଖରେ ସାକ୍ଷାତ୍ ନାରାୟଣ ରାଖାଲ ରୂପରେ ବାଳକର ଦେହ ଧାରଣ କରି ଆସିଛନ୍ତି । ଏକ ଦିଗରେ କାମିନୀ–କାଞ୍ଚନ–ତ୍ୟାଗୀ ଶୁଦ୍ଧ–ଆତ୍ମା ବାଳକ–ଭକ୍ତ ରାଖାଲ, ଅନ୍ୟ ଦିଗରେ ଈଶ୍ୱର–ପ୍ରେମରେ ଅହରହ ମତୁଆଲା ଶ୍ରୀରାମକୃଷ୍ଣଙ୍କର ସେହି ପ୍ରେମର ଚକ୍ଷୁ— ସହଜରେ ବାତ୍ସଲ୍ୟ ଭାବର ଉଦୟ ହେଲା । ପରମହଂସଦେବ ସେହି ବାଳକ ରାଖାଲଙ୍କୁ ବାତ୍ସଲ୍ୟ ଭାବରେ ଦେଖିବାକୁ ଲାଗିଲେ ଓ 'ଗୋବିନ୍ଦ' 'ଗୋବିନ୍ଦ' ନାମ ପ୍ରେମପୂର୍ଣ୍ଣ ଭାବରେ ଉଚ୍ଚାରଣ କରିବାକୁ ଲାଗିଲେ । ଶ୍ରୀକୃଷ୍ଣଙ୍କୁ ଦେଖି ଯଶୋଦାଙ୍କର ଯେଉଁ ଭାବର ଉଦୟ ହୁଏ, ଏ ବୋଧହୁଏ ସେହି ଭାବ !

ଭକ୍ତଗଣ ଏହି ଅଦ୍ଭୁତ ବ୍ୟାପାର ଦର୍ଶନ କରୁଛନ୍ତି, ଏପରି ସମୟରେ ସମସ୍ତେ ସ୍ଥିର । ଗୋବିନ୍ଦ ନାମ କରୁ କରୁ ଭକ୍ତାବତାର ଠାକୁର ଶ୍ରୀରାମକୃଷ୍ଣ ସହସା ସମାଧିସ୍ଥ । ଶରୀର ଚିତ୍ରପ୍ରତିମା ପରି ସ୍ଥିର । ନାସିକାରେ ଦୃଷ୍ଟି ସ୍ଥିର । ନିଃଶ୍ୱାସ ବହୁଛି କି ନ ବହୁଛି । ଶରୀର କେବଳ ଇହଲୋକରେ ପଡ଼ିଛି । ଆତ୍ମାପକ୍ଷୀ

ବୋଧହୁଏ ଚିଦାକାଶରେ ବିଚରଣ କରୁଛି । ଏତେ ସମୟ ଯେ ମାଆ ପରି ସନ୍ତାନ ସକାଶେ ବ୍ୟସ୍ତ ହେଉଥିଲେ, ସେ ବର୍ତ୍ତମାନ କେଉଁଠାରେ ? ଏହି ଅଦ୍ଭୁତ ଭାବାନ୍ତରର ନାମ କଅଣ ସମାଧି ?

ଏପରି ସମୟରେ ଖଣ୍ଡେ ଗେରୁଆ ଲୁଗା ପିନ୍ଧିଥିବା ଅପରିଚିତ ଜଣେ ବଙ୍ଗାଳୀ ଆସି ଉପସ୍ଥିତ ହେଲେ ଓ ଆସନ ଗ୍ରହଣ କଲେ ।

## (୨)

କର୍ମେନ୍ଦ୍ରିୟାଣି ସଂୟମ୍ୟ ଯ ଆସ୍ତେ ମନସା ସ୍ମରନ୍ ।
ଇନ୍ଦ୍ରିୟାର୍ଥାନ୍ ବିମୂଢ଼ାତ୍ମା ମିଥ୍ୟାଚାରଃ ସ ଉଚ୍ୟତେ ॥ —ଗୀତା, ୩/୬

ପରମହଂସଦେବଙ୍କର ସମାଧି କ୍ରମେ ଭାଙ୍ଗିବାକୁ ଲାଗିଲା । ଭାବସ୍ଥ ହୋଇ କଥା କହୁଛନ୍ତି । ମନକୁ ମନ କହୁଛନ୍ତି ।

ଶ୍ରୀରାମକୃଷ୍ଣ (ଗେରୁଆ ଦୃଷ୍ଟେ)—ପୁଣି ଗେରୁଆ କାହିଁକି ? ଖଣ୍ଡେ କଅଣ ପିନ୍ଧି ଦେଲେ ହେଲା ? (ହାସ୍ୟ) । ଜଣେ କହିଥିଲା, 'ଚଣ୍ଡୀ ଛାଡ଼ି ହେଲି ଢୋଲ-ବଜାଳୀ ।' ଆଗେ ଚଣ୍ଡୀଙ୍କର ଗୀତ ଗାଉଥିଲା, ଏବେ ଢୋଲ ବଜାଏ ! (ସମସ୍ତଙ୍କର ହାସ୍ୟ)

''ବୈରାଗ୍ୟ ତିନି ଚାରି ପ୍ରକାର । ସଂସାର-ଜ୍ୱାଳାରେ ଜଳି ଗେରୁଆ ଲୁଗା ପିନ୍ଧିଛି—ସେ ବୈରାଗ୍ୟ ବେଶୀ ଦିନ ରହେ ନାହିଁ । ହୁଏତ କର୍ମ ନାହିଁ, ଗେରୁଆ ପିନ୍ଧି କାଶୀ ଚାଲିଗଲା । ତିନିମାସ ପରେ ଘରକୁ ଚିଠି ଆସିଲା, 'ମୋତେ ଖଣ୍ଡେ କାମ ମିଳିଛି, କିଛିଦିନ ପରେ ଘରକୁ ଯିବି, ତୁମେ ସବୁ ଚିନ୍ତିତ ହେବ ନାହିଁ ।' ଆଉ, ସବୁ ଅଛି, କିଛି ଅଭାବ ନାହିଁ; କିନ୍ତୁ କିଛି ଭଲ ଲାଗେ ନାହିଁ । ଭଗବାନଙ୍କ ପାଇଁ ଏକା ଏକା କାନ୍ଦେ । ସେ ବୈରାଗ୍ୟ ଯଥାର୍ଥ ବୈରାଗ୍ୟ ।

''କୌଣସି କିଛି ମିଥ୍ୟା ଭଲ ନୁହେଁ । ଭେକକୁ ଚାହିଁ ମନଟି ଯଦି ନ ହୁଏ, ତାହା ହେଲେ କ୍ରମେ ସର୍ବନାଶ ହୁଏ । ମିଥ୍ୟା କହିବାକୁ ବା କରିବାକୁ କ୍ରମେ ଭୟ ଭାଙ୍ଗିଯାଏ । ତାହା ଅପେକ୍ଷା ଧଳା ଲୁଗା ଭଲ । ମନରେ ଆସକ୍ତି, ମଝିରେ ମଝିରେ ପତନ ହେଉଛି, ପୁଣି ବାହାରେ ଗେରୁଆ ! ବଡ଼ ଭୟଙ୍କର !

**ମିଥ୍ୟା ଓ ନବବୃନ୍ଦାବନ ନାଟକ ଦର୍ଶନ**

''ଏପରି କି, ଯେଉଁମାନେ ସତ୍, ଅଭିନୟରେ ମଧ୍ୟ ସେମାନେ ମିଥ୍ୟା କହିବା ବା କରିବା ଭଲ ନୁହେଁ । କେଶବ ସେନ୍‌ର ସେଠାକୁ ନବବୃନ୍ଦାବନ ନାଟକ ଦେଖିବାକୁ ଯାଇଥିଲି । କଅଣ ଗୋଟିଏ କ୍ରସ୍ ଆଣିଲା । ପୁଣି ପାଣି ଛିଞ୍ଚିବାକୁ ଲାଗିଲା, କହିଲା, ଶାନ୍ତିଜଳ ! ଦେଖେ ତ, ଜଣେ ମାତାଲ ସାଜି ମାତଲାମି କରୁଛି ।''

ଜଣେ ବ୍ରାହ୍ମଭକ୍ତ—କୁ-ବାବୁ ।

ଶ୍ରୀରାମକୃଷ୍ଣ—ଭକ୍ତଙ୍କ ପକ୍ଷରେ ଏପରି ସାଜିବା ମଧ୍ୟ ଭଲ ନୁହେଁ । ସେସବୁ ବିଷୟରେ ମନକୁ ବେଶୀ ସମୟ ରଖିଲେ ଦୋଷ ହୁଏ । ମନ ଧୋବାଘରର ଲୁଗା, ଯେଉଁ ରଙ୍ଗରେ ରଙ୍ଗାଇବ ସେହି ରଙ୍ଗର ହୋଇଯିବ । ମିଥ୍ୟାରେ ବେଶୀ ସମୟ ପଡ଼ି ରହିଲେ ମିଥ୍ୟାର ରଙ୍ଗ ଲାଗିଯିବ ।

''ଆଉ ଦିନେ ନିମାଇ ସନ୍ନ୍ୟାସ(ଯାତ୍ରା) କେଶବଙ୍କ ଘରକୁ ଦେଖିବାକୁ ଯାଇଥିଲି । କେଶବଙ୍କର କେତେ ଜଣ ଖୋସାମତିଆ ଶିଷ୍ୟ ଜୁଟି ଯାତ୍ରାଟିକୁ ଖରାପ କରିଦେଲେ । ଜଣେ କେଶବଙ୍କୁ କହିଲେ, 'କଳିର ଚୈତନ୍ୟ ହେଉଛନ୍ତି ଆପଣ ।' କେଶବ ପୁଣି ମୋ ଆଡ଼କୁ ଚାହିଁ ହସି ହସି କହିଲେ, 'ତାହା ହେଲେ ଏ କିଏ ?' ମୁଁ କହିଲି, 'ମୁଁ ତୁମମାନଙ୍କର ଦାସର ଦାସ, ରେଣୁର ରେଣୁ ।' କେଶବଙ୍କର ଲୋକମାନ୍ୟ ପାଇବା ଇଚ୍ଛା ଥିଲା ।''

**ନିତ୍ୟସିଦ୍ଧ ଓ ରାଗଭକ୍ତି**

ଶ୍ରୀରାମକୃଷ୍ଣ (ଅମୃତ ଓ ତ୍ରୈଲୋକ୍ୟଙ୍କ ପ୍ରତି)—ନରେନ୍ଦ୍ର, ରାଖାଲ ଇତ୍ୟାଦି ଏହିସବୁ ପିଲାମାନେ ନିତ୍ୟସିଦ୍ଧ; ଏମାନେ ଜନ୍ମେ ଜନ୍ମେ ଈଶ୍ୱରଙ୍କର ଭକ୍ତ । ଅନେକଙ୍କର ସାଧନା କରି ଟିକିଏ ଭକ୍ତି ହୁଏ, ଏମାନଙ୍କର କିନ୍ତୁ ଆଜନ୍ମରୁ ଈଶ୍ୱରଙ୍କଠାରେ ପ୍ରେମ । ଯେପରି ପାତାଳଫୁଟା ଶିବ—ସ୍ଥାପିତ ଶିବ ନୁହନ୍ତି ।

''ନିତ୍ୟସିଦ୍ଧ ଗୋଟିଏ ଅଲଗା ଦଳ । ସବୁ ପକ୍ଷୀଙ୍କର ଥଣ୍ଟ ବଙ୍କା ନୁହେଁ । ଏମାନେ କେବେହେଲେ ସଂସାରରେ ଆସକ୍ତ ହୁଅନ୍ତି ନାହିଁ । ଯେପରି ପ୍ରହ୍ଲାଦ ।''

''ସାଧାରଣ ଲୋକ ସାଧନ କରନ୍ତି, ଈଶ୍ୱରଙ୍କୁ ଭକ୍ତି ମଧ୍ୟ କରନ୍ତି । ପୁଣି ସଂସାରରେ ଆସକ୍ତ ହୁଅନ୍ତି, କାମିନୀ-କାଞ୍ଚନରେ ମୁଗ୍ଧ ହୁଅନ୍ତି । ମାଛି ଯେପରି ଫଳରେ ବସେ, ସନ୍ଦେଶରେ ବସେ, ପୁଣି ବିଷ୍ଠାରେ ବି ବସେ ।'' (ସମସ୍ତେ ସ୍ତବ୍ଧ)

''ନିତ୍ୟସିଦ୍ଧ ଯେପରି ମହୁମାଛି, କେବଳ ଫୁଲ ଉପରେ ବସି ମଧୁପାନ କରେ । ନିତ୍ୟସିଦ୍ଧ ହରିରସ ପାନ କରେ, ବିଷୟରସ ଆଡ଼କୁ ଯାଏ ନାହିଁ ।''

''ସାଧ ସାଧନା କରି ଯେଉଁ ଭକ୍ତି ହୁଏ, ଏମାନଙ୍କର ସେପରି ଭକ୍ତି ନୁହେଁ । ଏତେ ଜପ, ଏତେ ଧ୍ୟାନ କରିବାକୁ ହେବ, ଏହିପରି ପୂଜା କରିବାକୁ ହେବ—ଏସବୁ 'ବିଧିବାଦୀୟ' ଭକ୍ତି । ଯେପରି ଧାନ ହେବା ପରେ କ୍ଷେତ ପାର ହେବାକୁ ଗଲେ, ହୁଡ଼ା ଉପରେ ବୁଲି ବୁଲି ଯିବାକୁ ହୁଏ । ପୁଣି ଯେପରି ଆଗ ଗାଆଁକୁ ଯିବ, କିନ୍ତୁ ବଙ୍କା ନଈ ଦେଇ ବୁଲି ବୁଲି ଯିବାକୁ ହେବ ।

''ରାଗଭକ୍ତି, ପ୍ରେମଭକ୍ତି, ଈଶ୍ୱରଙ୍କଠାରେ ଆତ୍ମୀୟ ପରି ମମତା ହେଲେ କୌଣସି ବିଧି-ନିୟମ ରହେ ନାହିଁ । ସେତେବେଳେ ଧାନକଟା କ୍ଷେତ ପାର ହେବା ପରି । ହିଡ଼ ଦେଇ ଯିବାକୁ ପଡ଼େ ନାହିଁ । ସିଧା ଗୋଟାଏ ରାସ୍ତାରେ ଗଲେ ହେଲା ।

''ବଢ଼ି ଆସିଲେ ଆଉ ବଙ୍କା ନଦୀ ଦେଇ ବୁଲି ବୁଲି ଯିବାକୁ ହୁଏ ନାହିଁ । ସେତେବେଳେ ପଡ଼ିଆ ଉପରେ କାତେ ପାଣି । ସିଧା ଡଙ୍ଗା ବାହିନେଲେ ହେଲା ।

''ଏହି ରାଗଭକ୍ତି, ଅନୁରାଗ, ଏହି ମମତା ନ ହେଲେ ଈଶ୍ୱରଲାଭ ହୁଏ ନାହିଁ ।''

ଅମୃତ—ଆଜ୍ଞା ! ଆପଣଙ୍କର ଏହି ସମାଧି ଅବସ୍ଥାରେ କିପରି ବୋଧହୁଏ ?

**ସମାଧିତତ୍ତ୍ୱ —ସବିକଳ୍ପ ଓ ନିର୍ବିକଳ୍ପ**

ଶ୍ରୀରାମକୃଷ୍ଣ—ଶୁଣିଛି, ଅସରପା କୁମ୍ଭାରପୋକକୁ ଚିନ୍ତା କରି କୁମ୍ଭାରପୋକ ହୋଇଯାଏ; କିପରି ଜାଣ ? ଯେପରି ହାଣ୍ଡିର ମାଛକୁ ଗଙ୍ଗାରେ ଛାଡ଼ି ଦେଲେ ହୁଏ ।

ଅମୃତ—ଟିକିଏ ହେଲେ ଅହଂ ରହେ ନାହିଁ ?

ଶ୍ରୀରାମକୃଷ୍ଣ—ହଁ, ମୋର ପ୍ରାୟ ଟିକିଏ ଅହଂ ରହେ । ସୁନାର ଗୋଟିଏ ଦାନା, ଖଣ୍ଡେ ସୁନାମୁଣ୍ଡାକୁ ଯେତେ ଘଷ ନା କାହିଁକି, ତଥାପି ଟିକିଏ ଦାନା ରହିଯାଏ । ଯେପରି ବିରାଟ ନିଆଁ, ଆଉ ତାହାର ଟିକିଏ ସ୍ଫୁଲିଙ୍ଗ । ବାହ୍ୟଜ୍ଞାନ ଚାଲିଯାଏ, କିନ୍ତୁ ପ୍ରାୟ ଟିକିଏ 'ଅହଂ' ରଖିଦିଅନ୍ତି ବିଳାସ ପାଇଁ । 'ମୁଁ'-'ତୁମେ' ରହିଲେ ଯାଇ ଆସ୍ୱାଦନ ହୁଏ ।

''କେତେବେଳେ କେତେବେଳେ ସେହି ମୁଁ ଟିକକ ମଧ୍ୟ ସେ ପୋଛି ଦିଅନ୍ତି । ଏହାର ନାମ 'ଜଡ଼ ସମାଧି'—ନିର୍ବିକଳ୍ପ ସମାଧି । ସେତେବେଳେ କି ଅବସ୍ଥା ହୁଏ, ମୁହଁରେ କହିହୁଏ ନାହିଁ । ଯେପରି ଲୁଣର ପିତୁଳା ସମୁଦ୍ର ମାପିବାକୁ ଯାଇଥିଲା, ଟିକିଏ ପଶିଲାମାତ୍ରେ ମିଶିଗଲା । 'ତଦାକାରକାରିତ' । ସେତେବେଳେ କିଏ ଉପରକୁ ଆସି ସମ୍ବାଦ ଦେବ, ସମୁଦ୍ର କେତେ ଗଭୀର ?''

## (୩)

(ନରେନ୍ଦ୍ର, ରାଖାଲ ପ୍ରଭୃତି ସଙ୍ଗରେ ବଳରାମ-ମନ୍ଦିରରେ)

## ଶ୍ରୀରାମକୃଷ୍ଣ ନରେନ୍ଦ୍ରାଦି ଭକ୍ତଙ୍କ ସଙ୍ଗରେ କୀର୍ତ୍ତନାନନ୍ଦରେ

ଠାକୁର ଶ୍ରୀରାମକୃଷ୍ଣ ବଳରାମଙ୍କ ଘରେ ଭକ୍ତଙ୍କ ସଙ୍ଗରେ ବସିଛନ୍ତି—ବୈଠକଖାନାର ଉତ୍ତରପୂର୍ବ ଘରେ । ସମୟ ଗୋଟାଏ ହେବ । ନରେନ୍ଦ୍ର, ଭବନାଥ, ରାଖାଲ, ବଳରାମ, ମାଷ୍ଟର ଘର ଭିତରେ ତାଙ୍କ ସଙ୍ଗରେ ବସିଛନ୍ତି ।

ଆଜି ଅମାବାସ୍ୟା, ଶନିବାର, ଚୈତ୍ର ୨୫ ଦିନ, ଇଂରାଜୀ ୭ ଅପ୍ରେଲ ୧୮୮୩ । ଠାକୁର ସକାଳେ ବଳରାମଙ୍କ ଘରକୁ ଆସି ମଧ୍ୟାହ୍ନରେ ଭୋଜନ କରିଛନ୍ତି । ନରେନ୍ଦ୍ର, ଭବନାଥ, ରାଖାଲ ଓ ଆଉ ଜଣେ ଦୁଇଜଣ ଭକ୍ତଙ୍କୁ ନିମନ୍ତ୍ରଣ କରିବାକୁ କହିଥିଲେ । ସେମାନେ ମଧ୍ୟ ଏଠାରେ ଆହାର କରିଛନ୍ତି । ଠାକୁର ବଳରାମଙ୍କୁ କହିଲେ—ଏମାନଙ୍କୁ ଖୁଆଅ, ତାହା ହେଲେ ଅନେକ ସାଧୁମାନଙ୍କୁ ଖୁଆଇବା ହେବ ।

କେତେଦିନ ତଳେ ଠାକୁର ଶ୍ରୀଯୁକ୍ତ କେଶବଙ୍କ ଘରକୁ ନବବୃନ୍ଦାବନ ନାଟକ ଦେଖିବାକୁ ଯାଇଥିଲେ । ସଙ୍ଗରେ ନରେନ୍ଦ୍ର ଓ ରାଖାଲ ଥିଲେ । ନରେନ୍ଦ୍ର ଅଭିନୟରେ ଯୋଗ ଦେଇଥିଲେ । କେଶବ ପଓହାରୀ ବାବା ସାଜିଥିଲେ ।

ଶ୍ରୀରାମକୃଷ୍ଣ (ନରେନ୍ଦ୍ରାଦି ଭକ୍ତଙ୍କ ପ୍ରତି)—କେଶବ ସେନ୍ ସାଧୁ ସାଜି ଶାନ୍ତିଜଳ ସିଞ୍ଚିଲା । ମୋତେ କିନ୍ତୁ ଭଲ ଲାଗିଲା ନାହିଁ । ଅଭିନୟରେ ପୁଣି ଶାନ୍ତିଜଳ !

''ଆଉ ଜଣେ (କୁ-ବାବୁ) ପାପ-ପୁରୁଷ ସାଜିଥିଲେ । ସେପରି ସାଜିବା ମଧ୍ୟ ଭଲ ନୁହେଁ । ନିଜେ ପାପ କରିବା ଭଲ ନୁହେଁ କି ପାପର ଅଭିନୟ କରିବା ମଧ୍ୟ ଭଲ ନୁହେଁ ।''

ନରେନ୍ଦ୍ରଙ୍କ ଦେହ ସେତେ ସୁସ୍ଥ ନୁହେଁ, କିନ୍ତୁ ତାଙ୍କର ଗୀତ ଶୁଣିବାକୁ ଠାକୁରଙ୍କର ଭାରୀ ଇଚ୍ଛା । ସେ କହୁଛନ୍ତି, ''ନରେନ୍ଦ୍ର, ଏମାନେ ଲଗେଇଛନ୍ତି, ଟିକିଏ ଗାଆନା !''

ନରେନ୍ଦ୍ର ତାନପୁରା ନେଇ ଗାଉଛନ୍ତି—

''ଆମାର ପ୍ରାଣ ପିଞ୍ଜରରେ ପାଖି ଗାଓନାରେ ।..''

''ବିଶ୍ୱଭୁବନ-ରଞ୍ଜନ ବ୍ରହ୍ମ ପରମ ଜ୍ୟୋତି ।
ଅନାଦିଦେବ ଜଗପତି ପ୍ରାଣେର ପ୍ରାଣ ।...''

''ଓହେ ରାଜରାଜେଶ୍ୱର ଦେଖା ଦାଓ ।
ଚରଣେ ଉତ୍ସର୍ଗ ଦାନ, କରିତେଛି ଏଇ ପ୍ରାଣ,

ସଂସାର ଅନଳ-କୁଣ୍ଡେ ଝଲସି ଗିୟାଛେ ତାଓ ।...''

''ଗଗନେର ଥାଲେ ରବିଚନ୍ଦ୍ର ଦୀପକ ଜ୍ୱଳେ ।...''

''ଚିଦାକାଶେ ହଲୋ ପୂର୍ଣ୍ଣ ପ୍ରେମଚନ୍ଦ୍ରୋଦୟ ହେ ।...''

ନରେନ୍ଦ୍ରଙ୍କର ଗୀତ ସମାପ୍ତ ହେଲା । ଠାକୁର ଭବନାଥଙ୍କୁ ଗୀତ ଗାଇବାକୁ କହୁଛନ୍ତି । ଭବନାଥ ଗାଉଛନ୍ତି—

''ଦୟାଘନ ତୋମା ହେନ କେ ହିତକାରୀ !

ସୁଖେ ଦୁଃଖେ ସମ, ବନ୍ଧୁ ଏମନ କେ, ପାପ-ତାପ-ଭୟହାରୀ ।''

ନରେନ୍ଦ୍ର (ସହାସ୍ୟ)—ଏ (ଭବନାଥ) ପାନ ମାଛ ତ୍ୟାଗ କରିଛନ୍ତି ।

ଶ୍ରୀରାମକୃଷ୍ଣ (ଭବନାଥଙ୍କ ପ୍ରତି, ସହାସ୍ୟ)—ସେ କଅଣ ରେ ! ପାନ-ମାଛରେ କଅଣ ଅଛି ? ସେଥିରେ କୌଣସି ଦୋଷ ହୁଏ ନାହିଁ । **କାମିନୀ-କାଞ୍ଚନ ତ୍ୟାଗ ହିଁ ତ୍ୟାଗ** । ରାଖାଲ କେଉଁଠାରେ ?

ଜଣେ ଭକ୍ତ—ଆଜ୍ଞା, ରାଖାଲ ଶୋଇଛନ୍ତି ।

ଶ୍ରୀରାମକୃଷ୍ଣ (ସହାସ୍ୟ)—ଜଣେ ସଡପ କାଖରେ ଜାକି ଯାତ୍ରା ଶୁଣିବାକୁ ଆସିଥିଲା । ଯାତ୍ରା ହେବା ଡେରି ଦେଖି ସଡପ ପକାଇ ଶୋଇପଡ଼ିଲା । ଯେତେବେଳେ ଉଠିଲା, ସେତେବେଳେକୁ ସବୁ ଶେଷ ହୋଇଯାଇଛି ! (ସମସ୍ତଙ୍କର ହାସ୍ୟ)

''ସେତେବେଳେ ସଡପ କାଖରେ ଜାକି ଫେରିଗଲା ।'' (ହାସ୍ୟ)

ରାମଦୟାଲ ଖୁବ୍ ପୀଡ଼ିତ । ଆଉ ଗୋଟିଏ ଘରେ ଶଯ୍ୟାଗତ । ଠାକୁର ସେହି ଘର ଆଗକୁ ଯାଇ କିପରି ଅଛନ୍ତି ବୋଲି ପଚାରିଲେ ।

**ପଞ୍ଚଦଶୀ ବେଦାନ୍ତଶାସ୍ତ୍ର ଓ ଶ୍ରୀରାମକୃଷ୍ଣ—ସଂସାରୀ ଓ ଶାସ୍ତ୍ରାର୍ଥ**

ସମୟ ୪ଟା ହେବ । ବୈଠକଖାନା ଘରେ ନରେନ୍ଦ୍ର, ରାଖାଲ, ମାଷ୍ଟର, ଭବନାଥ ପ୍ରଭୃତି ଭକ୍ତଙ୍କ ସଙ୍ଗରେ ଠାକୁର ବସିଛନ୍ତି । କେତେ ଜଣ ବ୍ରାହ୍ମଭକ୍ତ ଆସିଛନ୍ତି । ସେମାନଙ୍କ ସଙ୍ଗରେ କଥା ହେଉଛି ।

ବ୍ରାହ୍ମଭକ୍ତ—ମହାଶୟଙ୍କର ପଞ୍ଚଦଶୀ ଦେଖାଅଛି ?

ଶ୍ରୀରାମକୃଷ୍ଣ—ସେସବୁ ଥରେ ପ୍ରଥମେ ପ୍ରଥମେ ଶୁଣିବାକୁ ହୁଏ,—ପ୍ରଥମେ ପ୍ରଥମେ ଥରେ ବିଚାର କରି ନେବାକୁ ହୁଏ । ତାହା ପରେ—

''ଯତନେ ହୃଦୟେ ରେଖୋ ଆଦରିଣୀ ଶ୍ୟାମା ମାକେ,

ମନ ତୁଇ ଦେଖ ଆର ଆମି ଦେଖି, ଆର ଯେନ କେଉ ନାହିଁ ଦେଖେ ।

''ସାଧନାବସ୍ଥାରେ ସେସବୁ ଶୁଣିବାକୁ ହୁଏ । ତାଙ୍କୁ ଲାଭ କଲା ପରେ ଜ୍ଞାନର ଅଭାବ ରହେ ନାହିଁ । ମା (ଧାନର) ଗଦା ଠେଲି ଦିଅନ୍ତି । ପ୍ରଥମେ ବନାନ କରି ଲେଖିବାକୁ ହୁଏ—ତାହା ପରେ ସେହିପରି ଲେଖି ହୋଇଯାଏ ।

''ସୁନା ତରଳାଇବା ବେଳେ ଖୁବ୍ ଉଠିପଡ଼ି ଲାଗିବାକୁ ହୁଏ । ଗୋଟେ ହାତରେ ଭାତି—ଗୋଟେ ହାତରେ ପଙ୍ଖା—ମୁହଁରେ ନଳ—ଯେପର୍ଯ୍ୟନ୍ତ ସୁନା ନ ତରଳେ । ତରଳିବା ପରେ, ଯେତେବେଳେ ଛାଞ୍ଚରେ ଢଳା ହେଲା—ସେତେବେଳେ ନିଶ୍ଚିନ୍ତ ।

''ଶାସ୍ତ୍ର କେବଳ ପଢ଼ିଲେ ହୁଏ ନାହିଁ । କାମିନୀ-କାଞ୍ଚନ ଭିତରେ ରହିଲେ ଶାସ୍ତ୍ରର ମର୍ମ ବୁଝାଯାଏ ନାହିଁ । ସଂସାରର ଆସକ୍ତିରେ ଜ୍ଞାନ ଲୋପ ପାଇଯାଏ ।''

''ସାଧ କରେ ଶିଖେଛିଲାମ୍ କାବ୍ୟରସ ଯତ ।
କାଲାର ପିରୀତେ ପଡ଼େ ସବ ହଇଲ ହତ ।'' (ସମସ୍ତଙ୍କର ହାସ୍ୟ)

ଠାକୁର ବ୍ରାହ୍ମଭକ୍ତମାନଙ୍କ ସହିତ ଶ୍ରୀଯୁକ୍ତ କେଶବଙ୍କ କଥା କହୁଛନ୍ତି —

''କେଶବଙ୍କର ଯୋଗ-ଭୋଗ । ସଂସାରରେ ରହି ଈଶ୍ୱରଙ୍କ ଆଡ଼େ ମନ ଅଛି ।''

ଜଣେ ଭକ୍ତ ସମାବର୍ତ୍ତନ ସମ୍ବନ୍ଧରେ କହୁଛନ୍ତି—ଦେଖିଲି, ଲୋକାରଣ୍ୟ !

ଶ୍ରୀରାମକୃଷ୍ଣ—ଅନେକ ଲୋକ ଏକ ସଙ୍ଗରେ ଦେଖିଲେ ଈଶ୍ୱରଙ୍କର ଉଦ୍ଦୀପନା ହୁଏ । ମୁଁ ଦେଖିଥିଲେ ବିହ୍ୱଳ ହୋଇଯାଇଥାନ୍ତି ।

# ଅଷ୍ଟାଦଶ ପରିଚ୍ଛେଦ

## ଠାକୁର ଶ୍ରୀରାମକୃଷ୍ଣ ଭକ୍ତଙ୍କ ସଙ୍ଗରେ ଦକ୍ଷିଣେଶ୍ୱର ମନ୍ଦିରରେ । ଶ୍ରୀଯୁକ୍ତ ଅଧର ସେନ୍‌ଙ୍କର ଦ୍ୱିତୀୟ ଦର୍ଶନ

## (୧)

### ମଣିଲାଲ ଓ କାଶୀ–ଦର୍ଶନ

ଆସ ଭାଇ, ଆଜି ପୁଣି ଦକ୍ଷିଣେଶ୍ୱର କାଳୀମନ୍ଦିରରେ ଭଗବାନ ଶ୍ରୀରାମକୃଷ୍ଣଙ୍କୁ ଦର୍ଶନ କରିବାକୁ ଯିବା । ସେ ଭକ୍ତଙ୍କ ସହିତ କିପରି ବିଳାସ କରୁଛନ୍ତି, ଈଶ୍ୱରଙ୍କ ଭାବରେ ସର୍ବଦା କିପରି ସମାଧିସ୍ଥ ଅଛନ୍ତି ଦେଖିବା । କେବେ ସମାଧିସ୍ଥ, କେବେ କୀର୍ତ୍ତନାନନ୍ଦରେ ଉନ୍ମତ୍ତ, ପୁଣି କେବେ ବା ସାଧାରଣ ଲୋକ ପରି ଭକ୍ତଙ୍କ ସହିତ କଥା କହୁଛନ୍ତି । ଶ୍ରୀମୁଖରେ ଈଶ୍ୱରୀୟ କଥା ବ୍ୟତୀତ ଅନ୍ୟ କିଛି ନାହିଁ । ମନ ସର୍ବଦା ଅନ୍ତର୍ମୁଖ । ବ୍ୟବହାର ପଞ୍ଚମ–ବର୍ଷୀୟ ବାଳକ ପରି । ପ୍ରତି ନିଃଶ୍ୱାସରେ ମାଆଙ୍କ ନାମ କରୁଛନ୍ତି ଓ ଏକାବେଳକେ ଅଭିମାନଶୂନ୍ୟ ।

ଆଜି ରବିବାର, ଚୈତ୍ର ଶୁକ୍ଳ ପ୍ରତିପଦ, ଇଂରାଜୀ ୮ ଅପ୍ରେଲ ୧୮୮୩ । ଗତକାଲି ଶନିବାର ଶ୍ରୀରାମକୃଷ୍ଣ ବଳରାମବାବୁଙ୍କ ଘରକୁ ଯାଇଥିଲେ ।

ଶ୍ରୀରାମକୃଷ୍ଣ ବାଳକ ପରି ବସିଛନ୍ତି । ପାଖରେ ବାଳକ ଭକ୍ତ ରାଖାଲ । ମାଷ୍ଟର ଆସି ଭୂମିଷ୍ଠ ପ୍ରଣାମ କଲେ । ଠାକୁରଙ୍କ ଭ୍ରାତୁଷ୍ପୁତ୍ର ରାମଲାଲ ଅଛନ୍ତି; କିଶୋରୀ ଓ ଆଉ କେତେ ଜଣ ଭକ୍ତ ମଧ୍ୟ ଆସି ଜୁଟିଲେ । ପୁରାତନ ବ୍ରାହ୍ମଭକ୍ତ ଶ୍ରୀଯୁକ୍ତ ମଣିଲାଲ ମଲ୍ଲିକ ଆସି ଉପସ୍ଥିତ ହେଲେ ଏବଂ ଠାକୁର ଶ୍ରୀରାମକୃଷ୍ଣଙ୍କୁ ପ୍ରଣାମ କଲେ ।

ମଣି ମଲ୍ଲିକ କାଶୀଧାମକୁ ଯାଇଥିଲେ । ସେ ବ୍ୟବସାୟୀ ଲୋକ, କାଶୀରେ ତାଙ୍କର କୋଠୀ ଅଛି ।

ଶ୍ରୀରାମକୃଷ୍ଣ— ହଇ ହେ, କାଶୀ ଗଲ, କିଛି ସାଧୁସନ୍ନ୍ୟାସୀ ଦେଖିଲ ?

ମଣିଲାଲ— ଆଜ୍ଞା ହଁ, ତ୍ରୈଲଙ୍ଗ ସ୍ୱାମୀ, ଭାସ୍କରାନନ୍ଦ, ଏମାନଙ୍କୁ ସବୁ ଦେଖିବାକୁ ଯାଇଥିଲି ।

ଶ୍ରୀରାମକୃଷ୍ଣ — କ'ଣ ସବୁ ଦେଖିଲ, କୁହ ।

ମଣିଲାଲ— ତ୍ରୈଲଙ୍ଗ ସ୍ୱାମୀ ସେହି ମନ୍ଦିରରେ ଅଛନ୍ତି, ମଣିକର୍ଣ୍ଣିକା ଘାଟରେ ବେଣୀମାଧବଙ୍କ ପାଖରେ । ଲୋକେ କହନ୍ତି, ଆଗେ ତାଙ୍କର ଉଚ୍ଚ ଅବସ୍ଥା ଥିଲା । କେତେ ଆଶ୍ଚର୍ଯ୍ୟ କାମସବୁ କରି ପାରୁଥିଲେ; ବର୍ତ୍ତମାନ ବହୁତ କମିଯାଇଛି ।

ଶ୍ରୀରାମକୃଷ୍ଣ— ଏସବୁ ବିଷୟୀ ଲୋକଙ୍କର ନିନ୍ଦା ।

ମଣିଲାଲ—ଭାସ୍କରାନନ୍ଦ ସମସ୍ତଙ୍କ ସଙ୍ଗରେ ମିଶନ୍ତି; ତ୍ରୈଲଙ୍ଗ ସ୍ୱାମୀଙ୍କ ପରି ନୁହନ୍ତି—ଏକାବେଳକେ କଥା ବନ୍ଦ ।

**ସିଦ୍ଧ ପକ୍ଷରେ 'ଈଶ୍ୱର କର୍ତ୍ତା'—ଅନ୍ୟ ପକ୍ଷରେ ପାପପୁଣ୍ୟ—ସ୍ୱାଧୀନେଚ୍ଛା**

ଶ୍ରୀରାମକୃଷ୍ଣ—ଭାସ୍କରାନନ୍ଦଙ୍କ ସଙ୍ଗରେ ତୁମର କୌଣସି କଥା ହେଲା ?

ମଣିଲାଲ—ଆଜ୍ଞା ହଁ, ଅନେକ କଥା ହେଲା । ତା'ଭିତରେ ପାପପୁଣ୍ୟର କଥା ହେଲା । ସେ କହିଲେ, 'ପାପ ପଥରେ ଯାଅ ନାହିଁ; ପାପଚିନ୍ତା ତ୍ୟାଗ କରିବ, ଈଶ୍ୱର ଏହି ସବୁ ଚାହାଁନ୍ତି । ଯେଉଁସବୁ କର୍ମ କଲେ ପୁଣ୍ୟ ହୁଏ, ସେହିସବୁ କର୍ମ କର ।

ଶ୍ରୀରାମକୃଷ୍ଣ —ହଁ, ସେ ବି ଏକ ପ୍ରକାର; ଐହିକ ପାଇଁ । ଯେଉଁମାନଙ୍କର ଚୈତନ୍ୟ ହୋଇଛି, ଯେଉଁମାନଙ୍କର ଈଶ୍ୱର ସତ୍, ଆଉସବୁ ଅସତ୍ ଅନିତ୍ୟ ବୋଲି ବୋଧ ହୋଇଯାଇଛି, ସେମାନଙ୍କର ଅନ୍ୟ ଏକ ପ୍ରକାର ଭାବ । ସେମାନେ ଜାଣନ୍ତି ଯେ, ଈଶ୍ୱର ହିଁ ଏକମାତ୍ର କର୍ତ୍ତା, ଆଉସବୁ ଅକର୍ତ୍ତା । ଯେଉଁମାନଙ୍କର ଚୈତନ୍ୟ ହୋଇଛି, ସେମାନଙ୍କର ଗୋଡ଼ ବେତାଳରେ ପଡ଼େ ନାହିଁ; ହିସାବ କରି ପାପ ତ୍ୟାଗ କରିବାକୁ ହୁଏ ନାହିଁ—ଈଶ୍ୱରଙ୍କ ଉପରେ ଏତେ ପ୍ରେମ ଯେ, ଯେଉଁ କର୍ମ ସେମାନେ କରନ୍ତି, ସେହି କର୍ମ ହିଁ ସତ୍ କର୍ମ; କିନ୍ତୁ ସେମାନେ ଜାଣନ୍ତି, ଏ କର୍ମର କର୍ତ୍ତା ମୁଁ ନୁହେଁ; ମୁଁ ଈଶ୍ୱରଙ୍କର ଦାସ, ମୁଁ ଯନ୍ତ୍ର, ସେ ଯନ୍ତ୍ରୀ; ସେ ଯେପରି କରାନ୍ତି, ସେପରି କରେ; ଯେପରି କୁହାନ୍ତି ସେପରି କହେ; ସେ ଯେପରି ଚଳାନ୍ତି ସେପରି ଚଳେ ।

''ଯେଉଁମାନଙ୍କର ଚୈତନ୍ୟ ହୋଇଛି, ସେମାନେ ପାପପୁଣ୍ୟର ଊର୍ଦ୍ଧ୍ୱରେ । ସେମାନେ ଦେଖନ୍ତି, ଈଶ୍ୱର ହିଁ ସବୁ କରୁଛନ୍ତି । ଗୋଟିଏ ଜାଗାରେ ଗୋଟିଏ ମଠ ଥିଲା । ମଠର ସାଧୁମାନେ ପ୍ରତିଦିନ ମାଧୁକରୀ (ଭିକ୍ଷା) କରିବାକୁ ଯାଆନ୍ତି । ଦିନେ ଜଣେ ସାଧୁ ଭିକ୍ଷା କରୁ କରୁ ଦେଖେ ଯେ, ଜଣେ ଜମିଦାର ଗୋଟିଏ ଲୋକକୁ ଭାରୀ ମାରୁଛି । ସାଧୁଟି ବଡ଼ ଦୟାଳୁ; ସେ ମଝିରେ ପଡ଼ି ଜମିଦାରକୁ ମାରିବାକୁ ମନା କଲା । ଜମିଦାର ସେତବେଳେ ଭାରୀ ରାଗି ରହିଛି ! ସେ ତା'ର ସବୁଯାକ ରାଗ ସାଧୁଙ୍କ ଉପରେ ଅଜାଡ଼ି ଦେଲା । ଏପରି ମାରିଲା ଯେ, ସାଧୁଟି ଅଚେତ ହୋଇ ପଡ଼ି ରହିଲା । କେହି ଯାଇ ମଠରେ ଖବର ଦେଲା, ତୁମର ଜଣେ ସାଧୁଙ୍କୁ ଜମିଦାର ଭାରୀ ମାରିଛି । ମଠର ସାଧୁମାନେ ଦୌଡ଼ି ଆସି ଦେଖିଲେ, ସାଧୁଟି ଅଚେତ ହୋଇ ପଡ଼ିରହିଛି । ସେତେବେଳେ ସେମାନେ ପାଞ୍ଚଜଣ ମିଶି ଧରାଧରି କରି ତାକୁ ମଠ ଭିତରକୁ ନେଇ ଯାଇ ଗୋଟିଏ ଘରେ ଶୁଆଇଦେଲେ । ସାଧୁଟି ଅଜ୍ଞାନ; ଚାରିପଟେ ମଠର ଲୋକେ ଘେରି ବିମର୍ଷ ହୋଇ ବସିଛନ୍ତି, କେହି କେହି ପଙ୍ଖାରେ ବିଞ୍ଚୁଛନ୍ତି । ଜଣେ କହିଲା, ପାଟିରେ ଟିକିଏ ଦୁଧ ଦେଇ ଦେଖାଯାଉ । ପାଟିରେ ଦୁଧ ଦେଉ ଦେଉ ସାଧୁଟିର ଚୈତନ୍ୟ ହେଲା, ଆଖି

ଖୋଲି ଚାହିଁଲା । ଜଣେ କହିଲା — ଆହେ, ଦେଖିବା ଜ୍ଞାନ ହେଲାଣି କି ନାହିଁ, ଲୋକ ଚିହ୍ନି ପାରୁଛନ୍ତି କି ନାହିଁ । ସେତେବେଳେ ସେ ସାଧୁଙ୍କୁ ଖୁବ୍ ପାଟିକରି ପଚାରିଲା, 'ମହାରାଜ ! ତୁମକୁ କିଏ ଦୁଧ ପିଆଉଛି ?' ସାଧୁଟି ଆସ୍ତେ ଆସ୍ତେ କହିଲା, 'ଭାଇ, ଯେ ମୋତେ ମାରିଥିଲେ, ସେ ହିଁ ଦୁଧ ପିଆଉଛନ୍ତି ।'

''ଈଶ୍ୱରଙ୍କୁ ଜାଣି ନ ପାରିଲେ ଏପରି ଅବସ୍ଥା ହୁଏ ନାହିଁ ।''

ମଣିଲାଲ — ଆଜ୍ଞା, ଆପଣ ଯେଉଁ କଥା କହିଲେ, ସେ ଖୁବ୍ ଉଚ୍ଚ ଅବସ୍ଥା । ଭାସ୍କରାନନ୍ଦଙ୍କ ସଙ୍ଗରେ ଏପରି ପାଞ୍ଚ ପ୍ରକାରର କଥା ହୋଇଥିଲା ।

ଶ୍ରୀରାମକୃଷ୍ଣ — କୌଣସି ଘରେ ରହନ୍ତି ?

ମଣିଲାଲ — ଜଣକ ଘରେ ରହନ୍ତି ।

ଶ୍ରୀରାମକୃଷ୍ଣ — କେତେ ବୟସ ?

ମଣିଲାଲ — ପଞ୍ଚାବନ ହେବ ।

ଶ୍ରୀରାମକୃଷ୍ଣ — ଆଉ କିଛି କଥା ହେଲା ?

ମଣିଲାଲ — ମୁଁ ପଚାରିଲି, ଭକ୍ତ କିପରି ହୁଏ ? ସେ କହିଲେ, 'ନାମ କର, ରାମ ରାମ କହ ।'

ଶ୍ରୀରାମକୃଷ୍ଣ — ଏ ବେଶ୍ କଥା ।

## (୨)

## ଗୃହସ୍ଥ ଓ କର୍ମଯୋଗ

ଶ୍ରୀଶ୍ରୀଭବତାରିଣୀ, ଶ୍ରୀଶ୍ରୀରାଧାକାନ୍ତ ଓ ଦ୍ୱାଦଶ ଶିବଙ୍କ ପୂଜା ଶେଷ ହେଲା । କ୍ରମେ ଭୋଗାଳତିର ବାଜଣା ବାଜୁଛି । ଚୈତ୍ର ମାସ ଦ୍ୱିପ୍ରହର, ଖୁବ୍ ଖରା । ବର୍ତ୍ତମାନ ଜୁଆର ଆରମ୍ଭ ହୋଇଛି । ଦକ୍ଷିଣ ଦିଗରୁ ପବନ ବହୁଛି । ପୂତସଲିଳା ଭାଗୀରଥୀ ଏହିମାତ୍ର ଉତ୍ତର ବାହିନୀ ହୋଇଛନ୍ତି । ଠାକୁର ଆହାରାନ୍ତେ କକ୍ଷ ମଧ୍ୟରେ ଟିକିଏ ବିଶ୍ରାମ କରୁଛନ୍ତି ।

ରାଖାଲଙ୍କ ଗ୍ରାମ ବସିରହାଟ ପାଖରେ । ଗ୍ରାମରେ ଗ୍ରୀଷ୍ମକାଳରେ ଖୁବ୍ ଜଳକଷ୍ଟ ।

ଶ୍ରୀରାମକୃଷ୍ଣ (ମଣି ମଲ୍ଲିକଙ୍କ ପ୍ରତି) — ଦେଖ, ରାଖାଲ କହୁଥିଲା ତାଙ୍କ ଆଡ଼େ ଭାରୀ ଜଳକଷ୍ଟ । ତୁମେ ସେଠାରେ ଗୋଟିଏ ପୋଖରୀ ଖୋଳାଅ ନା । ତାହା ହେଲେ କେତେ ଲୋକଙ୍କର ଉପକାର ହୁଅନ୍ତା ! (ସହାସ୍ୟ) ତୁମର ତ ବହୁତ ଟଙ୍କା ଅଛି, ଏତେ ଟଙ୍କା ନେଇ କଅଣ କରିବ ? ତେବେ ଶୁଣିଛି, ତେଲିମାନେ କୁଆଡ଼େ ଭାରୀ ହିସାବୀ ! (ଠାକୁର ଓ ଭକ୍ତମାନଙ୍କର ହାସ୍ୟ)

ମଣି ମଲ୍ଲିକଙ୍କର ଘର କଲିକତା ସିନ୍ଦୁରିୟାପଟୀ । ସିନ୍ଦୁରିୟାପଟୀ ବ୍ରାହ୍ମସମାଜର ବାର୍ଷିକ ଅଧିବେଶନ ଉପଲକ୍ଷେ ସେ ଅନେକଙ୍କୁ ନିମନ୍ତ୍ରଣ କରନ୍ତି ।

ଠାକୁର ଶ୍ରୀରାମକୃଷ୍ଣଙ୍କୁ ମଧ୍ୟ ନିମନ୍ତ୍ରଣ କରନ୍ତି । ମଣିଲାଲଙ୍କର ବରାହନଗରରେ ଖଣ୍ଡେ ବଗିଚା ଅଛି । ସେଠାକୁ ସେ ପ୍ରାୟ ଏକାକୀ ଆସନ୍ତି ଓ ସେତେବେଳେ ଠାକୁରଙ୍କୁ ଦର୍ଶନ କରିଯାଆନ୍ତି । ମଣିଲାଲ ବାସ୍ତବିକ୍ ହିସାବୀ ଲୋକ । ସମସ୍ତ ରାସ୍ତାର ଗାଡ଼ିଭଡ଼ା ଦେଇ ବରାହନଗରକୁ ପ୍ରାୟ ଆସନ୍ତି ନାହିଁ; ଟ୍ରାମରେ ଚଢ଼ି ପ୍ରଥମେ ଶୋଭାବଜାରକୁ ଆସନ୍ତି, ସେଠାରୁ ସେୟାର୍ ଗାଡ଼ିରେ ବରାହନଗରକୁ ଆସନ୍ତି । ଅର୍ଥର ଅଭାବ ନାହିଁ; କିଛି ବର୍ଷ ପରେ ଗରିବ ଛାତ୍ରମାନଙ୍କର ଭରଣପୋଷଣ ପାଇଁ ଏକକାଳୀନ ପ୍ରାୟ ପଚିଶ ହଜାର ଟଙ୍କା ବନ୍ଦୋବସ୍ତ କରି ଦେଇଥିଲେ ।

ମଣିଲାଲ ଚୁପ୍‌କରି ରହିଲେ । କିଛିସମୟ ପରେ ଏକଥା ସେକଥା ହେଉ ହେଉ କହିଲେ, ''ଆଜ୍ଞା ! ପୋଖରୀ ଖୋଳିବା କଥା କହୁଥିଲେ । ସେଇୟା ତ କହିଥିଲେ ହୋଇଥାଆନ୍ତା, ପୁଣି ତେଲିଫେଲି କଥା କାହିଁକି ?''

ଭକ୍ତମାନେ କେହି କେହି ଓଠ ଚିପି ହସୁଛନ୍ତି । ଠାକୁର ମଧ୍ୟ ହସୁଛନ୍ତି ।

## (୩)

## ଦକ୍ଷିଣେଶ୍ୱରଠାରେ ଶ୍ରୀରାମକୃଷ୍ଣ ଓ ବ୍ରାହ୍ମଗଣ — ପ୍ରେମତତ୍ତ୍ୱ

କିଛି ସମୟ ପରେ କଲିକତାରୁ କେତେଜଣ ପୁରାତନ ବ୍ରାହ୍ମଭକ୍ତ ଆସି ଉପସ୍ଥିତ ହେଲେ । ସେମାନଙ୍କ ମଧ୍ୟରେ ଶ୍ରୀଯୁକ୍ତ ଠାକୁରଦାସ ସେନ୍ ଜଣେ ।

ଘରେ ବହୁ ଭକ୍ତଙ୍କର ସମାଗମ ହୋଇଛି । ଠାକୁର ଛୋଟ ଖଟଟିରେ ବସିଛନ୍ତି । ସହାସ୍ୟ ବଦନ, ବାଳକ-ମୂର୍ତ୍ତି । ଉତ୍ତରାସ୍ୟ ହୋଇ ବସିଛନ୍ତି । ବ୍ରାହ୍ମଭକ୍ତଙ୍କ ସହିତ ଆନନ୍ଦରେ ଗପ କରୁଛନ୍ତି ।

ଶ୍ରୀରାମକୃଷ୍ଣ (ବ୍ରାହ୍ମ ଓ ଅନ୍ୟାନ୍ୟ ଭକ୍ତଙ୍କ ପ୍ରତି) — ତୁମେ ତ ସବୁ 'ପ୍ରେମ' 'ପ୍ରେମ' କର; କିନ୍ତୁ ପ୍ରେମ କ'ଣ ସାମାନ୍ୟ ଜିନିଷ କି ହେ ? ଚୈତନ୍ୟଦେବଙ୍କର 'ପ୍ରେମ' ହୋଇଥିଲା । **ପ୍ରେମର ଦୁଇଟି ଲକ୍ଷଣ** । ପ୍ରଥମେ — ଜଗତ ଭୁଲ ହୋଇଯିବ । ଏତେ ମମତା ଯେ ବାହ୍ୟଜ୍ଞାନଶୂନ୍ୟ ! ଚୈତନ୍ୟଦେବ 'ବନ ଦେଖି ବୃନ୍ଦାବନ ଭାବନ୍ତି, ସମୁଦ୍ର ଦେଖି ଯମୁନା ଭାବନ୍ତି ।'

''ଦ୍ୱିତୀୟ ଲକ୍ଷଣ — ନିଜର ଦେହ ଯେ ଏତେ ପ୍ରିୟ ବସ୍ତୁ, ଏହା ଉପରେ ମଧ୍ୟ ମମତା ରହିବ ନାହିଁ, ଦେହାତ୍ମବୋଧ ଏକାବେଳକେ ଚାଲିଯିବ ।

''ଈଶ୍ୱରଲାଭର କେତେଗୁଡ଼ିଏ ଲକ୍ଷଣ ଅଛି । ଯାହା ଭିତରେ ଅନୁରାଗର ଐଶ୍ୱର୍ଯ୍ୟ ପ୍ରକାଶ ପାଉଛି, ତା'ର ଈଶ୍ୱରଲାଭରେ ଆଉ ଡେରି ନାହିଁ ।

''ଅନୁରାଗର ଐଶ୍ୱର୍ଯ୍ୟ କଅଣ କଅଣ ? ବିବେକ, ବୈରାଗ୍ୟ, ଜୀବଙ୍କ ପ୍ରତି ଦୟା, ସାଧୁସେବା, ସାଧୁସଙ୍ଗ, ଈଶ୍ୱରଙ୍କ ନାମ ଗୁଣ-କୀର୍ତ୍ତନ, ସତ୍ୟ କଥା, ଏହିସବୁ ।

''ଅନୁରାଗର ଏହିସବୁ ଲକ୍ଷଣ ଦେଖିଲେ ଠିକ୍ କୁହାଯାଇପାରେ, ଈଶ୍ୱରଦର୍ଶନର ଆଉ ଡେରି ନାହିଁ । ବାବୁ କେଉଁ ଖାନସାମା ଘରକୁ ଯିବେ, ଏପରି ଯଦି ଠିକ୍ ହୋଇଥାଏ, ଖାନସାମାର ଘରର ଅବସ୍ଥା ଦେଖିଲେ ଠିକ୍ ଜଣାପଡ଼ିଯାଏ । ପ୍ରଥମେ ବଣ ଜଙ୍ଗଲ କଟାହୁଏ, ଅଳନ୍ଧୁ ଝଡ଼ାହୁଏ, ଓଳିଆଓଳି ହୁଏ । ବାବୁ ନିଜେ ମଧ୍ୟ ସତରଞ୍ଜି, ହୁକ୍କା ଏହିପରି ପାଞ୍ଚ ପ୍ରକାର ଜିନିଷ ପଠାଇଦିଅନ୍ତି । ଏହିସବୁ ଆସିବା ଦେଖିଲେ ହିଁ ଲୋକମାନଙ୍କର ବୁଝିବାକୁ ବାକି ରହେ ନାହିଁ ଯେ ବାବୁ ପ୍ରାୟ ଆସିଗଲେ ।''

ଜଣେ ଭକ୍ତ — ଆଜ୍ଞା, ଆଗେ ବିଚାର କରି କଅଣ ଇନ୍ଦ୍ରିୟନିଗ୍ରହ କରିବାକୁ ହୁଏ ?

ଶ୍ରୀରାମକୃଷ୍ଣ — ସେ ବି ଗୋଟାଏ ପଥ । ବିଚାର-ପଥ । ଭକ୍ତି-ପଥରେ ଅନ୍ତରେନ୍ଦ୍ରିୟ ନିଗ୍ରହ ଆପେ ଆପେ ହୁଏ, ଆଉ ସହଜରେ ହୁଏ । ଈଶ୍ୱରଙ୍କ ପ୍ରତି ଯେତେ ଭଲ ପାଇବା ଆସିବ, ସେତେ ଇନ୍ଦ୍ରିୟ-ସୁଖ ଅଲଣା ଲାଗିବ ।

''ଯେଉଁଦିନ ସନ୍ତାନ ମରିଯାଇଛି, ସେହି ଶୋକରେ ସ୍ତ୍ରୀ-ପୁରୁଷଙ୍କର ଦେହସୁଖ ଆଡ଼କୁ କଅଣ ମନ ଯାଇପାରେ ?''

ଜଣେ ଭକ୍ତ — ତାଙ୍କୁ ଆଉ ଭଲ ପାଇପାରୁଛି କୁଆଡୁ ?

**ନାମ-ମାହାତ୍ମ୍ୟ — ଉପାୟ, ମାଆଙ୍କ ନାମ**

ଶ୍ରୀରାମକୃଷ୍ଣ — ତାଙ୍କର ନାମ ନେଲେ ସବୁ ପାପ କଟିଯାଏ । କାମ, କ୍ରୋଧ, ଶରୀରର ସୁଖ-ଇଚ୍ଛା, ଏସବୁ ପଳାଇଯାଏ ।

ଜଣେ ଭକ୍ତ — କାହିଁ, ତାଙ୍କର ନାମ ନେବାକୁ ଭଲ ଲାଗୁଛି କେଉଁଠୁ ?

ଶ୍ରୀରାମକୃଷ୍ଣ — ବ୍ୟାକୁଳ ହୋଇ ତାଙ୍କୁ ପ୍ରାର୍ଥନା କର, ଯେପରି ତାଙ୍କ ନାମରେ ରୁଚି ହୁଏ । ସେ ହିଁ ମନୋବାଞ୍ଛା ପୂର୍ଣ୍ଣ କରିବେ ।

ଠାକୁରେ ଦେବଦୁର୍ଲ୍ଲଭ କଣ୍ଠରେ ଗାଉଛନ୍ତି । ଜୀବର ଦୁଃଖରେ କାତର ହୋଇ ମାଆଙ୍କ ପାଖରେ ହୃଦୟର ବେଦନା ଜଣାଉଛନ୍ତି । ପ୍ରାକୃତ ଜୀବର ଅବସ୍ଥା ନିଜେ ଆରୋପ କରି ମାଆଙ୍କ ନିକଟରେ ଜୀବର ଦୁଃଖ ଜଣାଉଛନ୍ତି —

''ଦୋଷ କାରୁ ନୟ ଗୋ ମା,
ଆମି ସ୍ୱଖାତ ସଲିଲେ ଡୁବେ ମରି ଶ୍ୟାମା ।
ଷଡ଼ରିପୁ ହ'ଲ କୋଦଣ୍ଡ ସ୍ୱରୂପ, ପୁଣ୍ୟକ୍ଷେତ୍ର-ମାଝେ କାଟିଲାମ୍ କୂପ,
ସେ କୂପେ ବେଡ଼ିଲ କାଲରୂପ ଜଲ, କାଲ-ମନୋରମା ।।
ଆମାର କି ହବେ ତାରିଣୀ, ତ୍ରିଗୁଣଧାରିଣୀ, ବିଗୁଣ କରେଛେ ସ୍ୱଗୁଣେ,
କିସେ ଏ ବାରି ନିବାରି, ଭେବେ ଦାଶରଥିର ଅନିବାର ବାରି ନୟନେ ।
ଛିଲ ବାରି କକ୍ଷେ, କ୍ରମେ ଏଲ ବକ୍ଷେ,
ଜୀବନେ ଜୀବନ ମା, କେମନେ ହୟ ରକ୍ଷେ,

ଆଛି ତୋର ଆପିକ୍ଷେ, ଦେ ମା ମୁକ୍ତିଭିକ୍ଷେ, କଟାକ୍ଷେତେ କରେ ପାର ।''

ପୁଣି ଗୀତ ଗାଉଛନ୍ତି—ଜୀବର ବିକାର ରୋଗ, ତାଙ୍କ ନାମରେ ରୁଚି ହେଲେ ବିକାର କଟିବ—

''ଏ କି ବିକାର ଶଙ୍କରୀ
କୃପା-ଚରଣତରୀ ପେଲେ ଧନ୍ବନ୍ତରୀ ।...
ରୋଗେ ବାଁଚି କି ନା ବାଁଚି, ତ୍ୱନ୍ନାମେ ଅରୁଚି, ଦିବା ଶର୍ବରୀ ।''

ଶ୍ରୀରାମକୃଷ୍ଣ—'ତ୍ୱନ୍ନାମେ ଅରୁଚି' । ବିକାରରେ ଯଦି ଅରୁଚି ହେଲା, ତାହା ହେଲେ ଆଉ ବଞ୍ଚିବାର ବାଟ ରହେ ନାହିଁ । ଯଦି ଟିକିଏ ରୁଚି ଥାଏ, ତେବେ ବଞ୍ଚିବାର ଖୁବ୍ ଆଶା । ତେଣୁ ନାମରେ ରୁଚି । ଈଶ୍ୱରଙ୍କର ନାମ ନେବାକୁ ହୁଏ; ଦୁର୍ଗାନାମ, କୃଷ୍ଣନାମ, ଶିବନାମ, ଯେଉଁ ନାମରେ ଈଶ୍ୱରଙ୍କୁ ଡାକ ନା କାହିଁକି । ଯଦି ନାମ ନେବାରେ ଅନୁରାଗ ଦିନକୁଦିନ ବଢ଼େ, ଯଦି ଆନନ୍ଦ ହୁଏ, ତାହା ହେଲେ ଆଉ କୌଣସି ଭୟ ନାହିଁ; ବିକାର କଟିବ ହିଁ କଟିବ । ତାଙ୍କର କୃପା ହେବ ହିଁ ହେବ ।

**ଆନ୍ତରିକ ଭକ୍ତି ଓ ଦେଖାଇହେବା ଭକ୍ତି—ଈଶ୍ୱର ମନ ଦେଖନ୍ତି**

''ଯେପରି ଭାବ ସେପରି ଲାଭ । ଦୁଇଜଣ ବନ୍ଧୁ ବାଟରେ ଯାଉଥିଲେ । ଗୋଟିଏ ଜାଗାରେ ଭାଗବତ ପଢ଼ା ହେଉଥିଲା । ଜଣେ ବନ୍ଧୁ କହିଲା, 'ଆସ ଭାଇ, ଟିକିଏ ଭାଗବତ ଶୁଣିବା ।' ଆଉ ଜଣେ ଉଣ୍ଡି ଦେଖିଲା । ତାପରେ ସେ ସେଠାରୁ ଚାଲିଯାଇ ବେଶ୍ୟାଳୟକୁ ଗଲା । ସେଠାରେ କିଛି ସମୟ ପରେ ତା' ମନରେ ଭାରୀ ବିରକ୍ତି ଆସିଲା । ସେ ନିଜକୁ ନିଜେ କହିବାକୁ ଲାଗିଲା, 'ଧିକ୍ ମୋତେ ! ମୋ ବନ୍ଧୁ ହରିକଥା ଶୁଣୁଛି, ଆଉ ମୁଁ କେଉଁଠାରେ ପଡ଼ିଛି !' ଏଣେ ଯେ ଭାଗବତ ଶୁଣୁଛି, ସେ ମଧ୍ୟ ନିଜକୁ ଧିକ୍କାର କରୁଛି ଓ ଭାବୁଛି, 'ମୁଁ କି ବୋକା ! କଅଣ ଏଣୁତେଣୁ ବକୁଛି, ଆଉ ମୁଁ ଏଠାରେ ବସିଛି ! ମୋ ବନ୍ଧୁ ତେଣେ କି ମଜା କରୁଛି !' ଏମାନେ ଯେତେବେଳେ ମରିଗଲେ, ଯେ ଭାଗବତ ଶୁଣୁଥିଲା, ତାକୁ ଯମଦୂତ ନେଇଗଲେ; ଯେ ବେଶ୍ୟାଳୟକୁ ଯାଇଥିଲା, ତାକୁ ବିଷ୍ଣୁଦୂତ ବୈକୁଣ୍ଠକୁ ନେଇଗଲେ ।

''ଭଗବାନ ମନ ଦେଖନ୍ତି । କିଏ କେଉଁ କାମରେ ଅଛି, କିଏ କେଉଁଠାରେ ପଡ଼ିଛି, ତାହା ଦେଖନ୍ତି ନାହିଁ 'ଭାବଗ୍ରାହୀ ଜନାର୍ଦ୍ଦନ' ।

''କର୍ତ୍ତାଭଜାମାନେ ମନ୍ତ୍ରଦେବା ସମୟରେ କହନ୍ତି—ବର୍ତ୍ତମାନ 'ମନ୍-ତୋର୍' (ମନ୍ତ୍ର), ଅର୍ଥାତ୍, ବର୍ତ୍ତମାନ ତୋ ମନ ଉପରେ ସବୁ ନିର୍ଭର କରୁଛି ।

''ସେମାନେ କହନ୍ତି, 'ଯା'ର ଠିକ୍ ମନ, ତା'ର ଠିକ୍ କରଣ, ତା'ର ଠିକ୍ ଲାଭ ।'

''ନାମଗୁଣରେ ହନୁମାନ ସମୁଦ୍ର ପାର ହୋଇଗଲା ! 'ମୁଁ ରାମଙ୍କ ଦାସ, ମୁଁ ରାମ ନାମ କରିଛି, ମୁଁ କଅଣ ନ ପାରେ !'—ଏହି ବିଶ୍ୱାସ ।

**କାହିଁକି ଈଶ୍ୱରଦର୍ଶନ ହୁଏ ନାହିଁ ? 'ଅହଂ'–ବୁଦ୍ଧି ପାଇଁ**

''ଯେପର୍ଯ୍ୟନ୍ତ ଅହଂକାର ସେପର୍ଯ୍ୟନ୍ତ ଅଜ୍ଞାନ । ଅହଂକାର ଥିବା ପର୍ଯ୍ୟନ୍ତ ମୁକ୍ତି ନାହିଁ ।

''ଗୋରୁଗୁଡ଼ାକ ହାମ୍‌ମା ହାମ୍‌ମା କରନ୍ତି, ଆଉ ଛେଳିସବୁ ମେଁ ମେଁ କରନ୍ତି ! ତେଣୁ ସେମାନଙ୍କର କେତେ ଯନ୍ତ୍ରଣା ! କଂସାଇ କାଟେ, ଜୋତା, ଢୋଲର ଚମଡ଼ା ତିଆରି କରେ । ଯନ୍ତ୍ରଣାର ଶେଷ ନାହିଁ । ହିନ୍ଦୀରେ 'ହାମ୍' ମାନେ ମୁଁ, ଆଉ 'ମେଁ' ମାନେ ମଧ୍ୟ ମୁଁ । 'ମୁଁ' 'ମୁଁ' କରନ୍ତି ବୋଲି କେତେ କର୍ମଭୋଗ ! ଶେଷରେ ଅନ୍ତବୁଜୁଳାରୁ ଭିଣିବା ତନ୍ତ ତିଆରି କରନ୍ତି । ଭିଣାଳୀ ହାତରେ 'ତୁହୁଁ ତୁହୁଁ' କହେ, ଅର୍ଥାତ୍ 'ତୁମେ ତୁମେ' । 'ତୁମେ ତୁମେ' କହିଲା ପରେ ଯାଇ ଚିନ୍ତା ନିସ୍ତାର ! ଆଉ ଭୋଗିବାକୁ ହୁଏ ନାହିଁ ।

''ହେ ଈଶ୍ୱର ! ତୁମେ କର୍ତ୍ତା ଆଉ ମୁଁ ଅକର୍ତ୍ତା—ଏହାର ନାମ ଜ୍ଞାନ ।

''ନଇଁପାରିଲେ ଉଚ୍ଚକୁ ଉଠିବ । ଚାତକ ପକ୍ଷୀର ବସା ତଳେ, କିନ୍ତୁ ଖୁବ୍ ଉପରକୁ ଉଠେ । ଡ଼ିପ ଜମିରେ ଚାଷ ହୁଏ ନାହିଁ, ଖାଲ ଜମି ଦରକାର; ତେବେ ଯାଇ ପାଣି ଜମେ ଓ ଚାଷ ହୁଏ ।

**ଗୃହସ୍ଥ ଲୋକର ସାଧୁସଙ୍ଗ ପ୍ରୟୋଜନ—ଯଥାର୍ଥ ଦରିଦ୍ର କିଏ ?**

''ଟିକିଏ କଷ୍ଟ କରି ସତ୍‌ସଙ୍ଗ କରିବାକୁ ପଡ଼େ । ଘରେ କେବଳ ବିଷୟର କଥା । ରୋଗ ତ ଲାଗି ରହିଛି । ପକ୍ଷୀ ପିଞ୍ଜରାରେ ବସି ରାମ ରାମ କହେ; ବଣକୁ ଉଡ଼ିଗଲେ ପୁଣି କଁ୍ୟା କଁ୍ୟା କରିବ ।

''ଟଙ୍କା ଥିଲେ ବଡ଼ଲୋକ ହୁଅନ୍ତି ନାହିଁ । ବଡ଼ଲୋକ ଘରର ଗୋଟିଏ ଲକ୍ଷଣ ଯେ, ସବୁଘରେ ଆଲୁଅ ଥାଏ । ଗରିବମାନେ ତେଲ ଖରଚ କରିପାରନ୍ତି ନାହିଁ, ତେଣୁ ସେତେ ବନ୍ଦୋବସ୍ତ କରନ୍ତି ନାହିଁ । ଏହି ଦେହ-ମନ୍ଦିରକୁ ଅନ୍ଧକାରରେ ରଖିବା ଉଚିତ୍ ନୁହେଁ, ଜ୍ଞାନଦୀପ ଜାଳିଦେବାକୁ ହୁଏ ।

''ଜ୍ଞାନଦୀପ ଜାଳି ଘରେ ବ୍ରହ୍ମମୟୀର ମୁହଁ ଦେଖ ନା !

**ପ୍ରାର୍ଥନା-ତତ୍ତ୍ୱ—ଚୈତନ୍ୟର ଲକ୍ଷଣ**

''ସମସ୍ତଙ୍କର ଜ୍ଞାନ ହୋଇପାରେ । ଜୀବାତ୍ମା ଓ ପରମାତ୍ମା । ପ୍ରାର୍ଥନା କର—ସେହି ପରମାତ୍ମାଙ୍କ ସଙ୍ଗରେ ସମସ୍ତ ଜୀବଙ୍କର ଯୋଗ ହୋଇପାରେ । ଗ୍ୟାସ୍‌ର ନଳ ସବୁଘରେ ଖଞ୍ଜାଅଛି । ଗ୍ୟାସ୍ କମ୍ପାନୀ ପାଖରୁ ଗ୍ୟାସ୍ ମିଳେ । ଅର୍ଜିକର । କଲାମାତ୍ରେ ଗ୍ୟାସ ବନ୍ଦୋବସ୍ତ କରିଦେବେ—ଘରେ ଆଲୁଅ ଜଳିବ । ଶିଆଲଦହରେ ଅଫିସ୍ ଅଛି । (ସମସ୍ତଙ୍କର ହାସ୍ୟ)

''କାହାର ଚୈତନ୍ୟ ହୋଇଛି—'ତା'ର କିଛି ଲକ୍ଷଣ ଅଛି । ଈଶ୍ୱରୀୟ କଥା ବ୍ୟତୀତ ଆଉ କିଛି ଶୁଣିବାକୁ ଭଲ ଲାଗେ ନାହିଁ; ଈଶ୍ୱରୀୟ କଥା ବ୍ୟତୀତ ଆଉ କିଛି କରିବାକୁ ଭଲ ଲାଗେ ନାହିଁ । ଯେପରି ସାତ ସମୁଦ୍ର, ଗଙ୍ଗା, ଯମୁନା ନଦୀ ସବୁଥିରେ ପାଣି ରହିଛି; କିନ୍ତୁ ଚାତକ ବୃଷ୍ଟିଜଳ ଚାହେଁ, ଶୋଷରେ ଛାତି ଫାଟିଯାଉଛି, ତଥାପି ଅନ୍ୟ ପାଣି ପିଇବ ନାହିଁ ।''

## (୪)

### ଈଶ୍ୱରଲାଭର ଉପାୟ, ଅନୁରାଗ—ଗୋପୀପ୍ରେମ—'ଅନୁରାଗ-ବାଘ'

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି)—ବାଘ ଯେପରି ଗାଉଁ ଗାଉଁ କରି ମାରିଥିବା ପ୍ରାଣୀର ମାଂସ ଖାଏ ସେହିପରି 'ଅନୁରାଗ-ବାଘ' କାମ, କ୍ରୋଧ ଏହିସବୁ ରିପୁମାନଙ୍କୁ ଖାଇଯାଏ । ଈଶ୍ୱରଙ୍କଠାରେ ଥରେ ଅନୁରାଗ ହେଲେ କାମକ୍ରୋଧାଦି ରହେ ନାହିଁ । ଗୋପୀଙ୍କର ଏହି ଅବସ୍ଥା ହୋଇଥିଲା । କୃଷ୍ଣଙ୍କଠାରେ ଅନୁରାଗ ।

''ପୁଣି ଅଛି, 'ଅନୁରାଗ-ଅଞ୍ଜନ' । ଶ୍ରୀମତୀ କହିଲେ, 'ସଖି, ଚତୁର୍ଦ୍ଦିଗ କୃଷ୍ଣମୟ ଦେଖୁଛି ।' ସେମାନେ କହିଲେ, 'ସଖି, ଅନୁରାଗ-ଅଞ୍ଜନ ଆଖିରେ ଲାଗାଇଛ, ତେଣୁ ଏପରି ଦେଖୁଛ ।'

''ଏପରି ଅଛି ଯେ, ବେଙ୍ଗର ମୁଣ୍ଡକୁ ପୋଡ଼ି କଜ୍ଜଳ ତିଆରି କରନ୍ତି; ସେହି କଜ୍ଜଳ ଆଖିରେ ଲଗାଇଲେ ଚାରିଆଡ଼େ ସର୍ପମୟ ଦେଖାଯାଏ ।

''ଯେଉଁମାନେ କେବଳ କାମିନୀ-କାଞ୍ଚନ ନେଇ ଅଛନ୍ତି—ଈଶ୍ୱରଙ୍କୁ ଥରେ ମଧ୍ୟ ଭାବନ୍ତି ନାହିଁ—ସେମାନେ ବଦ୍ଧଜୀବ । ସେମାନଙ୍କୁ ନେଇ କ'ଣ ମହତ୍ କାର୍ଯ୍ୟ ହେବ ? ଯେପରି କୁଆଖୁମ୍ପା ଆମ୍ବ, ଦିଅଁଙ୍କ ସେବାରେ ତ ଲାଗେ ନାହିଁ, ନିଜର ବି ଖାଇବାରେ ଦ୍ୱିଧା ।

''**ବଦ୍ଧଜୀବ**—ସଂସାରୀ ଜୀବ । ଏମାନେ ଯେପରି ଏଣ୍ଡିପୋକ । ମନେ କଲେ ଖୋସା କାଟି ବାହାରି ଆସିପାରେ; କିନ୍ତୁ ନିଜେ ଘର ତିଆରି କରିଛି, ଛାଡ଼ିଆସିବାକୁ ମାୟା ଲାଗେ । ଶେଷରେ ମୃତ୍ୟୁ ।

''ଯେଉଁମାନେ ମୁକ୍ତଜୀବ, ସେମାନେ କାମିନୀ-କାଞ୍ଚନର ବଶ ନୁହନ୍ତି । କୌଣସି କୌଣସି ଏଣ୍ଡିପୋକ ଏତେ ଯତ୍ନର ଖୋସା କାଟି ବାହାରି ଆସନ୍ତି । ସେ କିନ୍ତୁ ଗୋଟାଏ ଦୁଇଟା ।

''ମାୟା ଭୁଲାଇ ରଖେ । ଜଣେ ଦୁଇଜଣଙ୍କର ଜ୍ଞାନ ହୁଏ; ସେମାନେ ମାୟାର ଭେଲିକିରେ ଭୁଲନ୍ତି ନାହିଁ, କାମିନୀ-କାଞ୍ଚନର ବଶ ହୁଅନ୍ତି ନାହିଁ । ଯେଉଁ ଲୋକ ଅନ୍ତୁଡ଼ି ଶାଳର ଅନ୍ତୁଡ଼ିହାଣ୍ଡିର ଖପରା ଗୋଡ଼ରେ ବାନ୍ଧେ, ବାଜିକରର ଡମ୍

ଡମ୍ ଶବ୍ଦରେ ତା'ର ଭେଳିକି ଲାଗେ ନାହିଁ । ବାଜିକର କଅଣ କରୁଛି, ସେ ଠିକ୍ ଦେଖିପାରେ ।

''**ସାଧନ-ସିଦ୍ଧ ଆଉ କୃପା-ସିଦ୍ଧ** । କେହି କେହି ବହୁ କଷ୍ଟରେ ବିଲକୁ ପାଣି ଆଣନ୍ତି; ଆଣିପାରିଲେ ଫସଲ ହୁଏ । ଅନ୍ୟ କାହାର ହୁଏତ ପାଣି ଆଣିବାକୁ ପଡ଼ିଲା ନାହିଁ; ବର୍ଷାଜଳରେ ଭାସିଗଲା । କଷ୍ଟକରି ପାଣି ଆଣିବାକୁ ହେଲା ନାହିଁ। ଏହି ମାୟା ହାତରୁ ରକ୍ଷା ପାଇବାକୁ ହେଲେ ସାଧନ କରିବାକୁ ହୁଏ । କୃପା-ସିଦ୍ଧର କଷ୍ଟ କରିବାକୁ ହୁଏ ନାହିଁ । ସେ କିନ୍ତୁ ଜଣେ ଦୁଇଜଣ ।

''**ଆଉ ନିତ୍ୟସିଦ୍ଧ** । ଏମାନଙ୍କର ଜନ୍ମେ ଜନ୍ମେ ଜ୍ଞାନ-ଚୈତନ୍ୟ ହୋଇ ରହିଛି । ଯେପରି ଝରଣା ବନ୍ଦ ଅଛି—ମିସ୍ତ୍ରୀ ଏଇଟା ସେଇଟା ଖୋଲୁ ଖୋଲୁ ଝରଣାଟି ବି ଖୋଲି ଦେଲା ସଙ୍ଗେ ସଙ୍ଗେ ପାଣି ଝରଝର ହୋଇ ବାହାରିବାକୁ ଲାଗିଲା । ନିତ୍ୟସିଦ୍ଧର ପ୍ରଥମ ଅନୁରାଗ ଯେତେବେଳେ ଲୋକେ ଦେଖନ୍ତି, ସେତେବେଳେ ଅବାକ୍ ହୁଅନ୍ତି । କହନ୍ତି—ଏତେ ଭକ୍ତି, ବୈରାଗ୍ୟ, ପ୍ରେମ କେଉଁଠି ଥିଲା !''

ଠାକୁର ଅନୁରାଗର କଥା କହୁଛନ୍ତି । ଗୋପୀମାନଙ୍କର ଅନୁରାଗର କଥା । ଗୀତ ହେଲା । ରାମଲାଲ ଗାଉଛନ୍ତି—

'**ନାଥ ! ତୁମି ସର୍ବସ୍ୱ ଆମାର !** ପ୍ରାଣାଧାର ସାରାତ୍‌ସାର ।
ନାହିଁ ତୋମା ବିନେ, କେହ ତ୍ରିଭୁବନେ, ବଲିବାର ଆପନାର ।।...'

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି)—ଆହା, କି ଗୀତ ! 'ତୁମି ସର୍ବସ୍ୱ ଆମାର !' ଗୋପୀମାନେ ଅକ୍ରୁର ଆସିବା ପରେ ଶ୍ରୀମତୀଙ୍କୁ କହିଲେ, 'ରାଧେ ! ତୁମର ସର୍ବସ୍ୱ ଧନ ହରି ନେବାକୁ ଆସିଛି !' ଏହି ପ୍ରେମ । ଭଗବାନଙ୍କ ପାଇଁ ଏହି ବ୍ୟାକୁଳତା ।

ପୁଣି ସଙ୍ଗୀତ ହେଲା—''ଧୋରୋ ନା ଧୋରୋ ନା ରଥଚକ୍ର, ରଥ କି ଚକ୍ରେ ଚଲେ,
ଯେ ଚକ୍ରେର ଚକ୍ରୀ ହରି, ଯାର ଚକ୍ରେ ଜଗତ୍ ଚଲେ ।'

ଗୀତ ଶୁଣୁ ଶୁଣୁ ଠାକୁର ଶ୍ରୀରାମକୃଷ୍ଣ ଗଭୀର ସମାଧିସିନ୍ଧୁ ମଧ୍ୟରେ ମଗ୍ନ ହେଲେ । ଭକ୍ତମାନେ ଏକ ଦୃଷ୍ଟିରେ ଅବାକ୍ ହୋଇ ଠାକୁରଙ୍କ ଆଡ଼କୁ ଚାହିଁଛନ୍ତି । ଆଉ କୌଣସି ଶବ୍ଦ ନାହିଁ । ଠାକୁର ସମାଧିସ୍ଥ । ହାତଯୋଡ଼ି ବସିଛନ୍ତି; ଯେପରି ଫଟୋଗ୍ରାଫ୍‌ରେ ଦେଖାଯାଏ । କେବଳ ଆଖିର ବାହାର କୋଣରୁ ଆନନ୍ଦଧାରା ବୋହିଆସୁଛି ।

### ଈଶ୍ୱରଙ୍କ ସହିତ କଥା—ଶ୍ରୀରାମକୃଷ୍ଣଙ୍କର ଦର୍ଶନ—କୃଷ୍ଣ ସର୍ବମୟ

ବହୁ ସମୟ ପରେ ଠାକୁର ଟିକିଏ ପ୍ରକୃତିସ୍ଥ ହେଲେ କିନ୍ତୁ ସମାଧି ମଧ୍ୟରେ ଯାହାଙ୍କୁ ଦର୍ଶନ କରୁଥିଲେ, ତାଙ୍କ ସଙ୍ଗରେ କଅଣ କଥା କହୁଛନ୍ତି । ଗୋଟାଏ

ଅଧେ କେବଳ ଭକ୍ତମାନଙ୍କ କାନରେ ପହଞ୍ଚୁଛି । ଠାକୁର ନିଜକୁ ନିଜେ କହୁଛନ୍ତି — "ତୁମେ ହିଁ ମୁଁ, ମୁଁ ହିଁ ତୁମେ । ତୁମେ ଖାଅ, ତୁମେ-ମୁଁ ଖାଅ ! —ବେଶ୍ କିନ୍ତୁ କରୁଛ ।

"ଏ କଅଣ କାମଳ ହୋଇଛି ! ଚାରିଆଡ଼େ ଯେ ତୁମକୁ ଦେଖୁଛି !

"କୃଷ୍ଣ ହେ ଦୀନବନ୍ଧୁ ! ପ୍ରାଣବଲ୍ଲଭ ! ଗୋବିନ୍ଦ !"

" 'ପ୍ରାଣବଲ୍ଲଭ' 'ଗୋବିନ୍ଦ' କହୁ କହୁ ପୁଣି ସମାଧିସ୍ଥ ହେଲେ । ଘର ନିସ୍ତବ୍ଧ । ଭକ୍ତଗଣ ମହାଭାବମୟ ଠାକୁର ଶ୍ରୀରାମକୃଷ୍ଣଙ୍କୁ ଅତୃପ୍ତ ନୟନରେ ବାରମ୍ବାର ଦେଖୁଛନ୍ତି ।

## (୫)

## ଶ୍ରୀରାମକୃଷ୍ଣଙ୍କର ଈଶ୍ୱରାବେଶ—ତାଙ୍କ ମୁଖରେ ଈଶ୍ୱରଙ୍କର ବାଣୀ—ଶ୍ରୀଯୁକ୍ତ ଅଧର ସେନ୍‌ଙ୍କ ଦ୍ୱିତୀୟ ଦର୍ଶନ ଗୃହସ୍ଥ ପ୍ରତି ଉପଦେଶ

ଶ୍ରୀରାମକୃଷ୍ଣ ସମାଧିସ୍ଥ । ଛୋଟ ଖଟଟିରେ ବସିଛନ୍ତି । ଚତୁର୍ଦ୍ଦିଗରେ ଭକ୍ତମାନେ ଉପବିଷ୍ଟ । ଶ୍ରୀଯୁକ୍ତ ଅଧର ସେନ୍ କେତେଜଣ ବନ୍ଧୁଙ୍କ ସଙ୍ଗରେ ଆସିଛନ୍ତି । ଅଧର ଡେପୁଟି ମାଜିଷ୍ଟ୍ରେଟ୍ । ଠାକୁରଙ୍କୁ ଏହି ଦ୍ୱିତୀୟଥର ଦର୍ଶନ କରୁଛନ୍ତି । ଅଧରଙ୍କର ବୟସ ୨୯/୩୦ । ଅଧରଙ୍କର ବନ୍ଧୁ ସାରଦାଚରଣ ପୁତ୍ରଶୋକରେ ସନ୍ତପ୍ତ । ସେ ସ୍କୁଲର ଡେପୁଟି ଇନ୍‌ସପେକ୍‌ଟର ଥିଲେ । ପେନ୍‌ସନ୍ ନେଇଛନ୍ତି । ଆଗରୁ ସେ ସାଧନଭଜନ କରୁଥିଲେ । ବଡ଼ ପୁଅଟି ମରିଯିବାରୁ କୌଣସି ପ୍ରକାରେ ସାନ୍ତ୍ୱନାଲାଭ କରିପାରୁନାହାନ୍ତି । ତେଣୁ ଅଧର ଠାକୁରଙ୍କ ପାଖକୁ ତାଙ୍କୁ ନେଇ ଆସିଛନ୍ତି । ଅଧରଙ୍କର ନିଜର ମଧ୍ୟ ଠାକୁରଙ୍କୁ ଦେଖିବା ପାଇଁ ବହୁଦିନରୁ ଇଚ୍ଛା ଥିଲା ।

ସମାଧି-ଭଙ୍ଗ ହେଲା । ଠାକୁର ଦୃଷ୍ଟିପାତ କରି ଦେଖିଲେ, ଘରେ ଲୋକ ତାଙ୍କ ଆଡ଼କୁ ଚାହିଁ ରହିଛନ୍ତି । ସେତେବେଳେ ସେ ମନକୁ ମନ କଅଣ କହୁଛନ୍ତି ।

ଈଶ୍ୱର କଅଣ ତାଙ୍କ ମୁଖରେ କୁହାଉଛନ୍ତି ଓ ଉପଦେଶ ଦେଉଛନ୍ତି !

"ବିଷୟୀଲୋକର ବେଳେ ବେଳେ ଜ୍ଞାନ ହୁଏ । ଥରେ ଥରେ ଦୀପଶିଖା ପରି । ନା, ନା, ସୂର୍ଯ୍ୟଙ୍କର ଗୋଟିଏ କିରଣ ପରି । ଛୋଟ କଣା ବାଟେ ଯେପରି କିରଣ ଆସୁଛି । ବିଷୟୀଲୋକ ଈଶ୍ୱରଙ୍କର ନାମ ନିଅନ୍ତି । କିନ୍ତୁ ଅନୁରାଗ ନାହିଁ ! ପିଲା ଯେପରି କହେ, 'ଠାକୁରାଣୀଙ୍କ ରାଣ' । ଖୁଡ଼ୀ ଜେଠେଇଙ୍କର କଳି ଶୁଣି 'ଠାକୁରଙ୍କ ରାଣ' ଶିଖିଛି ।

"ବିଷୟୀ ଲୋକମାନଙ୍କର ଜିଦ୍ ନାହିଁ । ହେଲେ ହେଲା, ନ ହେଲେ ନ ହେଲା । ପାଣିର ଦରକାର ପଡ଼ିଛି, କୂଅ ଖୋଳୁଛି । ଖୋଳୁ ଖୋଳୁ ଯଦି ପଥର

ପଡ଼ିଲା, ସଙ୍ଗେ ସଙ୍ଗେ ଛାଡ଼ି ଦେଲା । ଆଉ ଗୋଟିଏ ଜାଗା ଖୋଳିବାରୁ ବାଲି ପଡ଼ିଲା, କେବଳ ବାଲି ବାହାରୁଛି ! ସେଇଟା ମଧ୍ୟ ଛାଡ଼ି ଦେଲା । ଯେଉଁଠାରେ ଖୋଳିବାକୁ ଆରମ୍ଭ କରିଛି, ସେହିଠାରେ ଯଦି କେବଳ ଖୋଳିବ, ତେବେ ତ ପାଣି ପାଇବ ।

''ଜୀବ ଯେପରି କର୍ମ କରେ, ସେପରି ଫଳ ପାଏ । ତେଣୁ ଗୀତ ଅଛି—

''ଦୋଷ କାରୁ ନୟ ଗୋ ମା !

ଆମି ସ୍ୱଖାତ ସଲିଲେ ଡୁବେ ମରି ଶ୍ୟାମା !...

'' 'ମୁଁ' ଆଉ 'ମୋର' ଅଜ୍ଞାନ । ବିଚାର କଲେ ଦେଖିବ, ଯାହାକୁ 'ମୁଁ' 'ମୁଁ' ବୋଲି କହୁଛ, ସେ ଆତ୍ମା ବ୍ୟତୀତ ଆଉ କେହି ନୁହେଁ । ବିଚାର କର—ତୁମେ ଦେହ, ନା ହାଡ଼, ନା ମାଂସ, ନା ଆଉ କିଛି ! ସେତେବେଳେ ଦେଖିବ, ତୁମେ କିଛି ନୁହଁ । ତୁମର କୌଣସି ଉପାଧି ନାହିଁ ! ସେତେବେଳେ ଆହୁରି ଦେଖିବ—'ମୁଁ କିଛି କରିନାହିଁ; ମୋର ଦୋଷ ନାହିଁ, ଗୁଣ ବି ନାହିଁ; ପାପ ନାହିଁ, ପୁଣ୍ୟ ମଧ୍ୟ ନାହିଁ ।'

''ଏଇଟା ସୁନା, ସେଇଟା ପିତଳ—ଏହାର ନାମ ଅଜ୍ଞାନ । ସବୁ ସୁନା—ଏହାର ନାମ ଜ୍ଞାନ ।

**ଈଶ୍ୱରଦର୍ଶନର ଲକ୍ଷଣ—ଶ୍ରୀରାମକୃଷ୍ଣ କ'ଣ ଅବତାର ?**

''ଈଶ୍ୱରଦର୍ଶନ ହେଲେ ବିଚାର ବନ୍ଦ ହୋଇଯାଏ । ଈଶ୍ୱରଲାଭ କରିଛି, ଅଥଚ ବିଚାର କରୁଛି, ତାହା ମଧ୍ୟ ଅଛି । ଆଉ କେହି ଭକ୍ତି ନେଇ ତାଙ୍କର ନାମ-ଗୁଣ-ଗାନ କରୁଛି ।

''ପିଲା କେତେବେଳେ କାନ୍ଦେ ? ଯେତେବେଳେ ସ୍ତନ୍ୟପାନ କରିବାକୁ ନ ପାଏ । ସ୍ତନ୍ୟପାନ କଲେ କାନ୍ଦ ବନ୍ଦ ହୋଇଯାଏ । କେବଳ ଆନନ୍ଦ । ଆନନ୍ଦରେ ମାଆର କ୍ଷୀର ଖାଏ । ତେବେ ଗୋଟିଏ କଥା ଅଛି । ଖାଉ ଖାଉ ମଝିରେ ମଝିରେ ଖେଳେ, ପୁଣି ହସେ ।

''ସେ ହିଁ ସବୁ ହୋଇଛନ୍ତି । ତେବେ ମନୁଷ୍ୟ ଭିତରେ ତାଙ୍କର ବେଶୀ ପ୍ରକାଶ । ଯେଉଁଠାରେ ଶୁଦ୍ଧସତ୍ତ୍ୱ ବାଳକର ସ୍ୱଭାବ—ହସେ, କାନ୍ଦେ, ନାଚେ, ଗାଏ—ସେଠାରେ ସେ ସାକ୍ଷାତ୍ ବିଦ୍ୟମାନ ।''

ଠାକୁର ଅଧରଙ୍କର ପରିଚୟ ନେଲେ । ଅଧର ତାଙ୍କ ବନ୍ଧୁଙ୍କର ପୁତ୍ରଶୋକ କଥା ନିବେଦନ କଲେ । ଠାକୁର ନିଜ ମନେ ମନେ ଗୀତ ଗାଉଛନ୍ତି—

''ଜୀବ ସାଜ ସମରେ,
ରଣବେଶେ କାଲ ପ୍ରବେଶେ ତୋର ଘର ।
ଭକ୍ତି-ରଥେ ଚଢ଼ି, ଲୟେ ଜ୍ଞାନ-ତୂଣ, ରସନା-ଧନୁକେ ଦିୟେ ପ୍ରେମଗୁଣ,
ବ୍ରହ୍ମମୟୀର ନାମ ବ୍ରହ୍ମ-ଅସ୍ତ୍ର ତାହେ ସନ୍ଧାନ କରେ ॥...

''କଅଣ କରିବ ? ଏହି କାଳ ପାଇଁ ପ୍ରସ୍ତୁତ ହୁଅ । ଘରେ କାଳ ପ୍ରବେଶ କରୁଛି, ତାଙ୍କର ନାମରୂପ ଅସ୍ତ୍ର ନେଇ ଯୁଦ୍ଧ କରିବାକୁ ହେବ । ସେ ହିଁ କର୍ତ୍ତା । ମୁଁ କହେ—ଯେପରି କରାଅ, ସେପରି କରେ; ଯେପରି କୁହାଅ ସେପରି କହେ; ମୁଁ ଯନ୍ତ୍ର, ତୁମେ ଯନ୍ତ୍ରୀ; ମୁଁ ଘର, ତୁମେ ଘରଣୀ; ମୁଁ ଗାଡ଼ି, ତୁମେ ଇଞ୍ଜିନିୟର୍ ।

''ତାଙ୍କୁ 'ଆମୋକ୍ତାରି' ଦିଅ । ଭଲଲୋକ ଉପରେ ଭାର ଦେଲେ ଅମଙ୍ଗଳ ହୁଏ ନାହିଁ । ସେ ଯାହା କରିବାର କରନ୍ତୁ ।

''ତେବେ ଶୋକ ହେବ ନାହିଁ ? ଆତ୍ମଜ ! ରାବଣ ବଧ ହେଲା; ଲକ୍ଷ୍ମଣ ଦୌଡ଼ିଯାଇ ଦେଖିଲେ । ଦେଖନ୍ତି ଯେ ହାଡ଼ ଭିତରେ ଏପରି ଜାଗା ନାହିଁ—ଯେଉଁଠାରେ ଛିଦ୍ର ନାହିଁ । ସେତେବେଳେ କହିଲେ, 'ରାମ ! ତୁମର ବାଣର କି ମହିମା ! ରାବଣର ଶରୀରରେ ଏପରି ସ୍ଥାନ ନାହିଁ, ଯେଉଁଠାରେ ଛିଦ୍ର ନ ହୋଇଛି !' ସେତେବେଳେ ରାମ କହିଲେ, 'ଭାଇ, ହାଡ଼ ଭିତରେ ଯେଉଁସବୁ ଛିଦ୍ର ଦେଖୁଛ, ସେ ବାଣ ଯୋଗୁ ନୁହେଁ । ଶୋକରେ ତା'ର ହାଡ଼ ଜରଜର ହୋଇଛି । ଏହି ଛିଦ୍ରଗୁଡ଼ିକ ସେହି ଶୋକର ଚିହ୍ନ । ହାଡ଼ ବିଦୀର୍ଣ୍ଣ ହୋଇଯାଇଛି ।

''ତେବେ ଏସବୁ ଅନିତ୍ୟ । ଗୃହ, ପରିବାର, ସନ୍ତାନ ଦୁଇଦିନ ପାଇଁ । ତାଳଗଛ ହିଁ ସତ୍ୟ । ଦୁଇଟା ଗୋଟାଏ ତାଳ ଖସି ପଡ଼ିଛି । ସେଥିରେ ଆଉ ଦୁଃଖ କଅଣ ?

''ଈଶ୍ୱର ତିନୋଟି କାର୍ଯ୍ୟ କରୁଛନ୍ତି—ସୃଷ୍ଟି, ସ୍ଥିତି, ପ୍ରଳୟ । ମୃତ୍ୟୁ ତ ରହିଛି । ପ୍ରଳୟ ସମୟରେ ସବୁ ଧ୍ୱଂସ ହୋଇଯିବ, କିଛି ରହିବ ନାହିଁ । ମା କେବଳ ସୃଷ୍ଟିର ବୀଜଗୁଡ଼ିକ ଗୋଟାଇ ରଖିଦେବେ । ପୁଣି ନୂତନ ସୃଷ୍ଟି ସମୟରେ ସେହି ବୀଜଗୁଡ଼ିକ ବାହାର କରିବେ । ଘରଣୀମାନଙ୍କର ଯେପରି ଆଳିମାଳିକା ହାଣ୍ଡି ଥାଏ । (ସମସ୍ତଙ୍କର ହାସ୍ୟ) । ସେଥିରେ କାକୁଡ଼ି ମଞ୍ଜି, ସମୁଦ୍ରଫେଣ, ନୀଳବଡ଼ି ଛୋଟ ଛୋଟ ପୁଟୁଳିରେ ବନ୍ଧାଥାଏ ।''

## (୬)

## ଅଧରଙ୍କ ପ୍ରତି ପ୍ରଥମ ଉପଦେଶ—ସମ୍ମୁଖରେ କାଳ

ଠାକୁର ଅଧରଙ୍କ ସଙ୍ଗରେ ତାଙ୍କର ଘରର ଉତ୍ତରପଟ ବାରଣ୍ଡାରେ ଠିଆ ହୋଇ କଥା କହୁଛନ୍ତି ।

ଶ୍ରୀରାମକୃଷ୍ଣ (ଅଧରଙ୍କ ପ୍ରତି)—ତୁମେ ଡେପୁଟି । ଏ ପଦ ମଧ୍ୟ ଈଶ୍ୱରଙ୍କର ଅନୁଗ୍ରହରେ ହୋଇଛି । ତାଙ୍କୁ ଭୁଲ ନାହିଁ । ଜାଣିଛ, ସମସ୍ତଙ୍କୁ ଗୋଟିଏ ପଥରେ ଯିବାକୁ ହେବ । ଏଠାରେ କେବଳ ଦୁଇଦିନ ସକାଶେ ।

''ସଂସାର କର୍ମଭୂମି । କର୍ମ କରିବା ପାଇଁ ଏଠାକୁ ଆସିଛେ । ଯେପରି ଗାଆଁରେ ଘର, କଲିକତାରେ ଯାଇ କର୍ମ କରେ ।

''କିଛି କର୍ମ କରିବା ଦରକାର । ସାଧନ । ଶୀଘ୍ର ଶୀଘ୍ର କର୍ମଗୁଡ଼ିକ ଶେଷ କରି ନେବାକୁ ହୁଏ । ବଣିଆ ସୁନା ତରଳେଇବା ସମୟରେ ନଳ, ପଙ୍ଖା, ଭାତି ସବୁ ନେଇ ପବନ କରେ, ଯାହା ଫଳରେ ନିଆଁ ଖୁବ୍ ତାଉ ହୋଇ ସୁନାଟା ତରଳେ । ସୁନା ତରଳିବା ପରେ କହେ, ତମାଖୁ ସଜାଅ । ଏପର୍ଯ୍ୟନ୍ତ କପାଳରୁ ଝାଳ ବୋହୁଥିଲା । ତାହା ପରେ ତମାଖୁ ଖାଇବ ।

''ଖୁବ୍ ଜିଦ୍ ଦରକାର । ତେବେ ସାଧନ ହୁଏ । ଦୃଢ଼ ପ୍ରତିଜ୍ଞା ।

''ତାଙ୍କର ନାମବୀଜର ଖୁବ୍ ଶକ୍ତି । ଅବିଦ୍ୟା ନାଶ କରେ । ବୀଜ ଏତେ କୋମଳ, ଅଙ୍କୁର ଏତେ କୋମଳ, ତଥାପି ମାଟି ଭେଦ କରେ । ମାଟି ଫାଟିଯାଏ ।

''କାମିନୀ-କାଞ୍ଚନ ଭିତରେ ରହିଲେ ମନ ତଳକୁ ଟାଣିହୋଇ ଆସେ । ସାବଧାନରେ ରହିବାକୁ ହୁଏ । ତ୍ୟାଗୀମାନଙ୍କର ଏତେ ଭୟ ନାହିଁ । ଠିକ୍ ଠିକ୍ ତ୍ୟାଗୀ କାମିନୀ-କାଞ୍ଚନରୁ ଅଲଗା ରହେ । ତେଣୁ ସାଧନ ଥିଲେ ଈଶ୍ୱରଙ୍କଠାରେ ସର୍ବଦା ମନ ରହିପାରେ ।

''ଠିକ୍ ଠିକ୍ ତ୍ୟାଗୀ—ଯେଉଁମାନେ ସର୍ବଦା ଈଶ୍ୱରଙ୍କଠାରେ ମନ ଦେଇପାରନ୍ତି; ସେମାନେ ମହୁମାଛି ପରି କେବଳ ଫୁଲରେ ବସନ୍ତି, ମଧୁପାନ କରନ୍ତି । ଯେ ସଂସାରରେ କାମିନୀ-କାଞ୍ଚନ ଭିତରେ ରହିଛି, ତା'ର ଈଶ୍ୱରଙ୍କ ଆଡ଼କୁ ମନ ଯାଇପାରେ; ପୁଣି କେବେ କେବେ କାମିନୀ-କାଞ୍ଚନ ପ୍ରତି ମଧ୍ୟ ମନ ଯାଏ । ଯେପରି ସାଧାରଣ ମାଛି—ସନ୍ଦେଶରେ ବସେ, ଆଉ ପଚା ଘାଆରେ ବି ବସେ, ବିଷ୍ଠାରେ ମଧ୍ୟ ବସେ ।

''ଈଶ୍ୱରଙ୍କଠାରେ ସର୍ବଦା ମନ ରଖିବ । ପ୍ରଥମେ ଟିକିଏ ଖଟିବାକୁ ହୁଏ । ତା' ପରେ ପେନ୍‌ସନ ଭୋଗ କରିବ ।''

# ଊନବିଂଶ ପରିଚ୍ଛେଦ

## (୧)

## ଶ୍ରୀଶ୍ରୀଅନ୍ନପୂର୍ଣ୍ଣାପୂଜା ଉପଲକ୍ଷେ ଭକ୍ତସଙ୍ଗେ ସୁରେନ୍ଦ୍ର ଭବନରେ

ସୁରେନ୍ଦ୍ରଙ୍କ ଘରର ଅଗଣାରେ ଠାକୁର ଶ୍ରୀରାମକୃଷ୍ଣ ସଭାକୁ ଆଲୋକିତ କରି ବସିଛନ୍ତି; ଅପରାହ୍ଣ ସମୟ ଛଅଟା ।

ଅଗଣାରୁ ପୂର୍ବାଭିମୁଖ ହୋଇ ପୂଜାମଣ୍ଡପକୁ ଉଠିବାକୁ ହୁଏ । ମଣ୍ଡପ ଭିତରେ ସୁନ୍ଦର ଦେବୀ-ପ୍ରତିମା । ମାଆଙ୍କର ପାଦପଦ୍ମରେ ଜବା, ବିଲ୍ୱ, ଗଳାରେ ପୁଷ୍ପମାଳ । ମାଆ ମଧ୍ୟ ମଣ୍ଡପ ଆଲୋକିତ କରି ବସିଛନ୍ତି ।

ଆଜି ଶ୍ରୀଶ୍ରୀଅନ୍ନପୂର୍ଣ୍ଣା ପୂଜା । ଚୈତ୍ର ଶୁକ୍ଳାଷ୍ଟମୀ, ୧୫ ଅପ୍ରେଲ ୧୮୮୩ ରବିବାର, ବୈଶାଖ ୩ ଦିନ ୧୨୯୦ । ସୁରେନ୍ଦ୍ର ମାଆଙ୍କର ପୂଜା କରାଉଛନ୍ତି, ତେଣୁ ଠାକୁରଙ୍କୁ ନିମନ୍ତ୍ରଣ । ଠାକୁର ମଣ୍ଡପକୁ ଉଠି ଦେବୀ-ପ୍ରତିମା ଦର୍ଶନ କଲେ; ପ୍ରଣାମ ଓ ଦର୍ଶନାନନ୍ତର ଠିଆ ହୋଇ ମାଆଙ୍କ ଆଡ଼କୁ ଅଙ୍ଗୁଳିରେ ମୂଳମନ୍ତ୍ର ଜପ କରୁଛନ୍ତି । ଭକ୍ତମାନେ ମାଆଙ୍କୁ ଦର୍ଶନ ଓ ପ୍ରଣାମାନନ୍ତର ପ୍ରଭୁଙ୍କ ପାଖରେ ଠିଆ ହୋଇଛନ୍ତି ।

ଭକ୍ତଙ୍କ ସଙ୍ଗରେ ଠାକୁର ଅଗଣାକୁ ଆସିଛନ୍ତି । ଅଗଣାରେ ସତରଞ୍ଜି ବିଛା ହୋଇଛି, ତାହା ଉପରେ ଚାଦର, ତାହା ଉପରେ କେତୋଟି ତକିଆ । ଗୋଟିଏ ପାଖରେ ଖୋଳ-କରତାଳ ନେଇ କେତେଜଣ ବୈଷ୍ଣବ ବସିଛନ୍ତି—ସଂକୀର୍ତ୍ତନ ହେବ । ଠାକୁରଙ୍କୁ ଘେରି ଭକ୍ତମାନେ ସବୁ ବସିଲେ ।

ଠାକୁର ଶ୍ରୀରାମକୃଷ୍ଣଙ୍କୁ ଗୋଟିଏ ତକିଆ ନେଇ ବସିବାକୁ କୁହାଗଲା । ସେ ତକିଆ ପାଖରେ ବସିଲେ ନାହିଁ । ତକିଆ ଘୁଞ୍ଚାଇ ଦେଇ ବସିଲେ ।

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି)—ତକିଆରେ ଭରାଦେଇ ବସିବା ! ଜଅଣ ଜାଣ, ଅଭିମାନ ତ୍ୟାଗ କରିବା ଖୁବ୍ କଠିନ । ଏଇଲେ ବିଚାର କରୁଛ, ଅଭିମାନ କିଛି ନୁହେଁ, ପୁଣି କେଉଁଠୁ ଆସି ପଡ଼େ !

"ଛେଳିକୁ କାଟି ଦିଆ ହୋଇଛି, ତଥାପି ଅଙ୍ଗପ୍ରତ୍ୟଙ୍ଗ ହଲୁଛି ।

"ସ୍ୱପ୍ନରେ ଡରିଯାଇଛ; ନିଦ ଭାଙ୍ଗିଗଲା, ବେଶ୍ ଚେଇଁ ଉଠିଲ, ତଥାପି ଛାତି ଧଡ଼୍ ପଡ଼୍ ହୁଏ ! ଅଭିମାନ ଠିକ୍ ସେହିପରି । ତଡ଼ିଦେଲେ ମଧ୍ୟ ପୁଣି କେଉଁଠୁ ଆସି ଜୁଟେ ! ସଙ୍ଗେ ସଙ୍ଗେ ମୁହଁ ଫୁଲାଇ କହେ, 'ମୋତେ ଖାତିର କଲେ ନାହିଁ !' "

କେଦାର—ତୃଣାଦପି ସୁନୀଚେନ, ତରୋରିବ ସହିଷ୍ଣୁତା ।

ଶ୍ରୀରାମକୃଷ୍ଣ—ମୁଁ ଭକ୍ତର ରେଣୁର ରେଣୁ ।

(ବୈଦ୍ୟନାଥଙ୍କର ପ୍ରବେଶ) ବୈଦ୍ୟନାଥ କୃତବିଦ୍ୟ ! କଲିକତାର ବଡ଼ ଅଦାଲତର ଓକିଲ, ଠାକୁରଙ୍କୁ ହାତ ଯୋଡ଼ି ପ୍ରଣାମ କଲେ ଓ ଏକ ପାର୍ଶ୍ୱରେ ଆସନ ଗ୍ରହଣ କଲେ ।

ସୁରେନ୍ଦ୍ର (ଶ୍ରୀରାମକୃଷ୍ଣଙ୍କ ପ୍ରତି)—ଏ ମୋର ଆତ୍ମୀୟ ।

ଶ୍ରୀରାମକୃଷ୍ଣ —ହଁ, ଏହାଙ୍କ ସ୍ୱଭାବଟି ବେଶ୍ ଭଲ ।

ସୁରେନ୍ଦ୍ର—ଏ ଆପଣଙ୍କୁ କଅଣ ପଚାରିବେ, ତେଣୁ ଆସିଛନ୍ତି ।

ଶ୍ରୀରାମକୃଷ୍ଣ (ବୈଦ୍ୟନାଥଙ୍କ ପ୍ରତି)—ଯାହା କିଛି ଦେଖୁଛ ସବୁ ହିଁ ତାଙ୍କରି ଶକ୍ତି । ତାଙ୍କର ଶକ୍ତି ବ୍ୟତୀତ କାହାରି କିଛି କରିବାର ଜୁ ନାହିଁ । ତେବେ ଗୋଟିଏ କଥା ଅଛି, ତାଙ୍କର ଶକ୍ତି ସବୁସ୍ଥାନରେ ସମାନ ନୁହେଁ । ବିଦ୍ୟାସାଗର କହିଥିଲେ, 'ଈଶ୍ୱର କ'ଣ କାହାକୁ ବେଶୀ ଶକ୍ତି ଦେଇଛନ୍ତି ?' ମୁଁ କହିଲି, 'ଶକ୍ତି କମ୍ ବେଶୀ ଯଦି ନ ଦେଇଥାଆନ୍ତେ ତୁମକୁ ଆମେମାନେ ଦେଖିବାକୁ ଆସିଛୁ କାହିଁକି ? ତୁମର କଣ ଦୁଇଟା ଶିଙ୍ଗ ବାହାରିଛି ?' ତେବେ ସାବ୍ୟସ୍ତ ହେଲା ଯେ, ଈଶ୍ୱର ବିଭୁ ରୂପରେ ସର୍ବଭୂତରେ ଅଛନ୍ତି; କେବଳ ଶକ୍ତି-ବିଶେଷ ।

**ସ୍ୱାଧୀନ ଇଚ୍ଛା ନା ଈଶ୍ୱରଙ୍କର ଇଚ୍ଛା**

ବୈଦ୍ୟନାଥ—ମହାଶୟ ! ଗୋଟିଏ ସନ୍ଦେହ ମୋର ଅଛି । କେତେକ କହନ୍ତି ଯେ, Free Will ଅର୍ଥାତ୍ ସ୍ୱାଧୀନ ଇଚ୍ଛା—ମନେ କଲେ ଭଲ କାମ କରିପାରୁ, ମନ୍ଦ କାମ ମଧ୍ୟ କରିପାରୁ—ଏଇଟା କ'ଣ ସତ୍ୟ ? ସତରେ କଅଣ ଆମେମାନେ ସ୍ୱାଧୀନ ?

ଶ୍ରୀରାମକୃଷ୍ଣ—ସମସ୍ତେ ଈଶ୍ୱରାଧୀନ ! ତାଙ୍କରି ଲୀଳା । ସେ ନାନା ପଦାର୍ଥ କରିଛନ୍ତି; ଛୋଟ-ବଡ଼, ବଳବାନ୍-ଦୁର୍ବଳ, ଭଲ-ମନ୍ଦ, ଭଲ ଲୋକ, ମନ୍ଦ ଲୋକ । ଏସବୁ ତାଙ୍କରି ମାୟା, ଖେଳ । ଏଇ ଦେଖୁନ, ବଗିଚାରେ ସବୁ ଗଛ ଆଦୌ ସମାନ ହୁଏ ନାହିଁ ।

"ଯେପର୍ଯ୍ୟନ୍ତ ଈଶ୍ୱରଙ୍କୁ ଲାଭ କରା ନ ଯାଏ, ସେପର୍ଯ୍ୟନ୍ତ ମନେହୁଏ ଆମେମାନେ ସ୍ୱାଧୀନ । ଏ ଭ୍ରମ ସେ ହିଁ ରଖିଦିଅନ୍ତି, ତାହା ନ ହେଲେ ପାପର ବୃଦ୍ଧି ହୁଅନ୍ତା । ପାପକୁ ଭୟ ରହନ୍ତା ନାହିଁ । ପାପର ଶାସ୍ତି ହୁଅନ୍ତା ନାହିଁ ।

"ଯେ ଈଶ୍ୱର-ଲାଭ କରିଛନ୍ତି, ତାଙ୍କର ଭାବ କଅଣ ଜାଣ ? ମୁଁ ଯନ୍ତ୍ର, ତୁମେ ଯନ୍ତ୍ରୀ, ମୁଁ ଘର, ତୁମେ ଘରଣୀ; ମୁଁ ରଥ, ତୁମେ ରଥୀ; ଯେପରି ଚଳାଅ ସେପରି ଚାଲେ, ଯେପରି କୁହାଅ ସେପରି କହେ ।"

**ଈଶ୍ୱର ଦର୍ଶନ କ'ଣ ଦିନକରେ ହୁଏ—ସାଧୁସଙ୍ଗ ପ୍ରୟୋଜନ**

ଶ୍ରୀରାମକୃଷ୍ଣ (ବୈଦ୍ୟନାଥଙ୍କ ପ୍ରତି)—ତର୍କ କରିବା ଭଲ ନୁହେଁ, କଅଣ କହୁଛନ୍ତି ?

ବୈଦ୍ୟନାଥ—ଆଜ୍ଞା ହଁ, ତର୍କ କରିବା ଭାବଟି ଜ୍ଞାନ ହେଲେ ଯାଏ ।

ଶ୍ରୀରାମକୃଷ୍ଣ—Thank you (ସମସ୍ତଙ୍କର ହାସ୍ୟ) । ତୁମର ହେବ । ଈଶ୍ୱରଙ୍କ କଥା ଯଦି କେହି କହେ, ଲୋକେ ବିଶ୍ୱାସ କରନ୍ତି ନାହିଁ । ଯଦି କୌଣସି ମହାପୁରୁଷ କହନ୍ତି —ମୁଁ ଈଶ୍ୱରଙ୍କୁ ଦେଖିଛି—ତେବେ ମଧ୍ୟ ସାଧାରଣ ଲୋକେ ସେହି ମହାପୁରୁଷଙ୍କ କଥା ମାନନ୍ତି ନାହିଁ । ଲୋକେ ଭାବନ୍ତି, ସେ ଯଦି ଈଶ୍ୱରଙ୍କୁ ଦେଖିଛି, ତାହା ହେଲେ ଆମକୁ ଦେଖାଇଦେଉ । କିନ୍ତୁ ଦିନକରେ କ'ଣ ନାଡ଼ି ଦେଖିବା ଶିଖାଯାଏ ? ବୈଦ୍ୟ ସଙ୍ଗରେ ବହୁଦିନ ବୁଲିବାକୁ ହୁଏ, ତେବେ ଯାଇ କେଉଁଟା କଫର, କେଉଁଟା ବାୟୁର, କେଉଁଟା ପିତ୍ତର ନାଡ଼ି କୁହାଯାଇପାରେ । ଯାହାର ନାଡ଼ି ଦେଖା ବ୍ୟବସାୟ, ତା'ର ସଙ୍ଗ କରିବାକୁ ହୁଏ ! (ସମସ୍ତଙ୍କର ହାସ୍ୟ)

"ଅମୁକ ନମ୍ବର ସୂତା, ଯିଏ ସିଏ କ'ଣ ଚିହ୍ନିପାରନ୍ତି ? ସୂତାର ବ୍ୟବସାୟ କର, ଯେଉଁମାନେ ବ୍ୟବସାୟ କରନ୍ତି, ସେମାନଙ୍କ ଦୋକାନରେ କିଛିଦିନ ରୁହ, ତେବେ କେଉଁଟା ଚାଳିଶ ନମ୍ବର, କେଉଁଟା ଏକଚାଳିଶି ନମ୍ବରର ସୂତା, ସଙ୍ଗେ ସଙ୍ଗେ କହିପାରିବ ।"

## (୨)

## ଭକ୍ତଙ୍କ ସଙ୍ଗରେ ସଂକୀର୍ତ୍ତନାନନ୍ଦରେ—ସମାଧି-ମନ୍ଦିରରେ

ବର୍ତ୍ତମାନ ସଂକୀର୍ତ୍ତନ ଆରମ୍ଭ ହେବ । ଖୋଳ ବାଜୁଛି । ଗୋଷ୍ଠ ଖୋଳ ବଜାଉଛନ୍ତି । ଏପର୍ଯ୍ୟନ୍ତ ଗୀତ ଆରମ୍ଭ ହୋଇ ନାହିଁ । ଖୋଳର ମଧୁର ବାଜଣା, ଗୌରାଙ୍ଗ-ମଣ୍ଡଳ ଓ ସେମାନଙ୍କର ନାମସଂକୀର୍ତ୍ତନ ଉଦ୍ଦୀପନ ଆଣେ । ଠାକୁର ଭାବରେ ମଗ୍ନ ହେଉଛନ୍ତି । ମଝିରେ ମଝିରେ ଖୋଳ ଆଡ଼କୁ ଦୃଷ୍ଟି ନିକ୍ଷେପ କରି କହୁଛନ୍ତି, "ଆହା ! ମୋର ରୋମାଞ୍ଚ ହେଉଛି !"

ଗାୟକମାନେ ପଚାରିଲେ କେଉଁ ଭାବର ପଦ ଗାଇବେ ? ଠାକୁର ଶ୍ରୀରାମକୃଷ୍ଣ ବିନୀତ ଭାବରେ କହିଲେ, "ଟିକିଏ ଗୌରାଙ୍ଗଙ୍କ କଥା ଗାଅ ।"

କୀର୍ତ୍ତନ ଆରମ୍ଭ ହେଲା । ପ୍ରଥମେ ଗୌରଚନ୍ଦ୍ରିକା, ତାହା ପରେ ଅନ୍ୟ ଗୀତ—

ଲାଖବାଣ କାଞ୍ଚନ ଜିନି
ରସେ ଢର ଢର ଗୋରା ମୁଁଜାଙ୍ ନିଛନି ।
କି ରାଜ ଶରଦ କୋଟି ଶଶୀ
ଜଗତ୍ କରିଲେ ଆଲୋ ଗୋରା ମୁଖେର ହାସି ।

କୀର୍ତ୍ତନରେ ଗୌରାଙ୍ଗଙ୍କର ରୂପବର୍ଣ୍ଣନା ହେଉଛି ! କୀର୍ତ୍ତନୀୟା ଆଖର[୧] ଦେଉଛନ୍ତି

(ସଖି ! ଦେଖିଲାମ୍ ପୂର୍ଣ୍ଣଶଶୀ) ।
(ହ୍ରାସ ନାଇଁ, ମୃଗାଙ୍କ ନାଇଁ ।) (ହୃଦୟ ଆଲୋ କରେ ।)
କୀର୍ତ୍ତନୀଆ ପୁଣି ଗାଉଛନ୍ତି —
କୋଟି ଶଶୀର ମୁଖ ଅମୃତେ ମାଜା !

ଏହି କଥା ଶୁଣୁ ଶୁଣୁ ଠାକୁର ସମାଧିସ୍ଥ ହେଲେ ।

ଗୀତ ଚାଲିଲା । କିଛିକ୍ଷଣ ପରେ ଠାକୁର ଶ୍ରୀରାମକୃଷ୍ଣଙ୍କର ସମାଧିଭଙ୍ଗ ହେଲା । ସେ ଭାବରେ ବିଭୋର ହୋଇ ହଠାତ୍ ଦଣ୍ଡାୟମାନ ହେଲେ ଓ ପ୍ରେମୋନ୍ମତ୍ତ ଗୋପିକା ପରି ଶ୍ରୀକୃଷ୍ଣଙ୍କର ରୂପ ବର୍ଣ୍ଣନା କରୁ କରୁ କୀର୍ତ୍ତନୀଆଙ୍କ ସଙ୍ଗରେ ଆଖର ଦେଉଛନ୍ତି —

(ସଖି ! ରୂପେର ଦୋଷ ନା ମନେର ଦୋଷ ?)
(ଆନ ହେରିତେ ଶ୍ୟାମମୟ ହେରି ତ୍ରିଭୁବନ !)

ଠାକୁର ନୃତ୍ୟ କରୁ କରୁ ଆଖର ଦେଉଛନ୍ତି । ଭକ୍ତମାନେ ଅବାକ୍ ହୋଇ ଦେଖୁଛନ୍ତି । କୀର୍ତ୍ତନୀଆ ପୁଣି କହୁଛନ୍ତି — ଗୋପିକାଙ୍କର ଉକ୍ତି —

ବଂଶୀ ତୁ ଆଉ ବାଜ୍‌ନା ! ତୋତେ କ'ଣ ନିଦ ନାହିଁ ?
(ଆଉ ନିଦ ହେବ ବା କିପରି !) (ଶଯ୍ୟା ତ କରପଲ୍ଲବ !)
(ଆହାର ତ ଶ୍ରୀମୁଖର ଅମୃତ !) (ସେଥିରେ ଅଙ୍ଗୁଳିର ସେବା !)

ଠାକୁର ଶ୍ରୀରାମକୃଷ୍ଣ ପୁନର୍ବାର ଆସନ ଗ୍ରହଣ କରିଛନ୍ତି । କୀର୍ତ୍ତନ ଚାଲିଲା । ଶ୍ରୀମତୀ କହୁଛନ୍ତି —

ଚକ୍ଷୁ ଗଲା, ଶ୍ରବଣ ଗଲା, ଘ୍ରାଣ ଗଲା, ଇନ୍ଦ୍ରିୟ ସମସ୍ତେ ଚାଲିଗଲେ —
(ମୁଁ ଏକା କାହିଁକି ରହିଲି ଗୋ !)

ଶେଷରେ ଶ୍ରୀରାଧାକୃଷ୍ଣଙ୍କର ମିଳନ-ଗୀତ ହେଲା —
ଧନୀ ମାଲା ଗାଁଥେ, ଶ୍ୟାମଗଲେ ଦୋଲାଇତେ,
ଏସନ ସମୟେ ଆଇଲ ସମ୍ମୁଖେ ଶ୍ୟାମଗୁଣମଣି ।
ଯୁଗଳ ମିଳନ ଗୀତ —
ନିଧୁବନେ ଶ୍ୟାମବିନୋଦିନୀ ଭୋର,
ଦୁହାଁର ରୂପେର ନାହିଁକି ଉପମା ପ୍ରେମେର ନାହିଁକ ଓର ।।
ହିରଣ-କିରଣ ଆଧ ବରଣ ଆଧ ନୀଲମଣି ଜ୍ୟୋତି ।
ଆଧ ଗଲେ ବନ-ମାଲା ବିରାଜିତ ଆଧ ଗଲେ ଗଜମୋତି ।।
ଆଧ ଶ୍ରବଣେ ମକର-କୁଣ୍ଡଳ ଆଧ ରତନ ଛବି ।

୧. କୀର୍ତ୍ତନ-ସଙ୍ଗୀତରେ ଯୋଡ଼ାହେଉଥିବା ଅତିରିକ୍ତ ପଦ ।

ଆଧ କପାଲେ ଚାଁଦେର ଉଦୟ ଆଧ କପାଲେ ରବି ॥
ଆଧ ଶିରେ ଶୋଭେ ମୟୂର-ଶିଖଣ୍ଡ ଆଦ ଶିରୋ ଦୋଲେ ବେଣୀ ।
କର କମଲ କରେ ଝଲମଲ, ଫଣୀ ଉଗାରିବେ ମଣି ॥

କୀର୍ତ୍ତନ ବନ୍ଦ ହେଲା । ଠାକୁର **'ଭାଗବତ, ଭକ୍ତ, ଭଗବାନ'** ଏହି ମନ୍ତ୍ର ଉଚ୍ଚାରଣ କରି ବାରମ୍ବାର ଭୂମିଷ୍ଠ ହୋଇ ପ୍ରଣାମ କରୁଛନ୍ତି । ଚତୁର୍ଦ୍ଦିଗର ଭକ୍ତମାନଙ୍କୁ ଉଦ୍ଦେଶ୍ୟ କରି ପ୍ରଣାମ କରୁଛନ୍ତି ଓ ସଂକୀର୍ତ୍ତନ ଭୂମିର ଧୂଳି ଗ୍ରହଣ କରି ମସ୍ତକରେ ଦେଉଛନ୍ତି ।

## (୩)

## ଠାକୁର ଶ୍ରୀରାମକୃଷ୍ଣ ଓ ସାକାର ନିରାକାର

ରାତି ପ୍ରାୟ ସାଢ଼େ ନଅଟା । ଶ୍ରୀଶ୍ରୀଅନ୍ନପୂର୍ଣ୍ଣା ମଣ୍ଡପ ଆଲୋକିତ କରି ବିରାଜିତା । ସମ୍ମୁଖରେ ଠାକୁର ଶ୍ରୀରାମକୃଷ୍ଣ ଭକ୍ତଙ୍କ ସଙ୍ଗରେ ଦଣ୍ଡାୟମାନ । ସୁରେନ୍ଦ୍ର, ରାଖାଲ, କେଦାର, ମାଷ୍ଟର, ରାମ, ମନମୋହନ ଓ ଅନ୍ୟାନ୍ୟ ଅନେକ ଭକ୍ତ ରହିଛନ୍ତି । ସେମାନେ ସମସ୍ତେ ଠାକୁରଙ୍କ ସଙ୍ଗରେ ପ୍ରସାଦ ପାଇଛନ୍ତି । ସୁରେନ୍ଦ୍ର ସମସ୍ତଙ୍କୁ ପରିତୋଷ କରି ଖୁଆଇଛନ୍ତି । ଏଥର ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱର ଉଦ୍ୟାନକୁ ପ୍ରତ୍ୟାବର୍ତ୍ତନ କରିବେ । ଭକ୍ତମାନେ ମଧ୍ୟ ସ୍ୱ ସ୍ୱ ଗୃହକୁ ଚାଲିଯିବେ । ସମସ୍ତେ ହିଁ ଦେବୀ-ମଣ୍ଡପରେ ଆସି ସମବେତ ।

ସୁରେନ୍ଦ୍ର (ଶ୍ରୀରାମକୃଷ୍ଣଙ୍କ ପ୍ରତି)— ଆଜି କିନ୍ତୁ ମାଆଙ୍କର ଗୀତ ଗୋଟିଏ ସୁଦ୍ଧା ହେଲା ନାହିଁ ।

ଶ୍ରୀରାମକୃଷ୍ଣ (ଦେବୀଙ୍କର ପ୍ରତିମାକୁ ଦେଖାଇ)— ଆହା, ମଣ୍ଡପର ଶୋଭା କଅଣ ହୋଇଛି ! ମା ଯେପରି ଆଲୋକିତ କରି ବସିଛନ୍ତି ! ଏ ରୂପ ଦର୍ଶନ କଲେ କେତେ ଆନନ୍ଦ ହୁଏ ! ଭୋଗର ଇଚ୍ଛା, ଶୋକ ଏସବୁ ପଳାଇଯାଏ । ତେବେ ନିରାକାର କଅଣ ଦର୍ଶନ ହୁଏ ନାହିଁ— ତାହା ନୁହେଁ । ବିଷୟବୁଦ୍ଧି ଟିକିଏ ମାତ୍ର ରହିଲେ ହେବ ନାହିଁ ଋଷିମାନେ ସର୍ବତ୍ୟାଗ କରି ଅଖଣ୍ଡ ସଚ୍ଚିଦାନନ୍ଦଙ୍କର ଚିନ୍ତା କରୁଥିଲେ ।

''ଇଦାନୀଂ ବ୍ରହ୍ମଜ୍ଞାନୀମାନେ 'ଅଚଳ ଘନ' ବୋଲି ଗୀତ ଗାଆନ୍ତି— ମୋତେ ଅଡୁଆ ଲାଗେ । ଯେଉଁମାନେ ଗୀତ ଗାଆନ୍ତି ଯେପରି ମିଠା ରସ ପାଆନ୍ତି ନାହିଁ । ଚିଟା ଗୁଡ଼ର ପଣା ଖାଇ ଭୁଲି ରହିଲେ ମିଶିରିପଣାର ସନ୍ଧାନ କରିବାକୁ ଇଚ୍ଛା ହୁଏ ନାହିଁ ।

''ତୁମେମାନେ ଦେଖ, ବାହାରେ କିପରି ଦର୍ଶନ କରୁଛ, ଆଉ ଆନନ୍ଦ ପାଉଛ ! ଯେଉଁମାନେ ନିରାକାର ନିରାକାର କରି କିଛି ପାଆନ୍ତି ନାହିଁ, ସେମାନଙ୍କର ନା ଅଛି ବାହାରେ ନା ଅଛି ଭିତରେ ।''

ଠାକୁର ମାଆଙ୍କୁ ଲକ୍ଷ୍ୟ କରି ଗୀତ ଗାଉଛନ୍ତି—

''ଗୋ ଆନନ୍ଦମୟୀ ହୟେ, ଆମାୟ ନିରାନନ୍ଦ କୋରୋ ନା ।
ଓ ଦୁଟି ଚରଣ ବିନା ଆମାର ମନ ଅନ୍ୟ କିଛୁ ଜାନେ ନା ।।
ଅହର୍ନିଶି ଶ୍ରୀଦୁର୍ଗାନାମେ ଭାସି, ତବୁ ଦୁଃଖରାଶି ଗେଲ ନା ।
ଏବାର ଯଦି ମରି, ଓ ହରସୁନ୍ଦରି !
(ତୋର) ଦୁର୍ଗାନାମ କେଉ ଆର ଲବେ ନା ।''

ପୁଣି ଗାଉଛନ୍ତି—

''ବଲରେ ବଲ ଦୁର୍ଗାନାମ ।
(ଓରେ ଆମାର ମନ ରେ)
ଦୁର୍ଗା ଦୁର୍ଗା ଦୁର୍ଗା ବଲେ ପଥେ ଚଲେ ଯାୟ,
ଶୂଲହସ୍ତେ ଶୂଲପାଣି ରକ୍ଷା କରେନ୍ ତାୟ ।...
ନଖାଘାତେ ବ୍ରହ୍ମମୟୀ ଯଖନ ଯାବେ ମୋର ପରାଣୀ,
କୃପା କରେ ଦିଓ ମା'ଗୋ ରାଙ୍ଗା ଚରଣ ଦୁ'ଖାନି ।''

ଠାକୁର ଶ୍ରୀରାମକୃଷ୍ଣ ପୁଣି ପ୍ରତିମା ସମ୍ମୁଖରେ ପ୍ରଣାମ କଲେ । ଏଥର ସିଡ଼ିରେ ଓହ୍ଲାଇବାବେଳେ ଡାକି କହୁଛନ୍ତି, ''ଓ ରା—ଖୁ—ଆ ?'' (ଆରେ ରାଖାଲ, ଜୋତାସବୁ ଅଛି, ନା ହଜିଯାଇଛି ?)

ଠାକୁର ଗାଡ଼ିରେ ଉଠିଲେ । ସୁରେନ୍ଦ୍ର ପ୍ରଣାମ କଲେ । ଅନ୍ୟାନ୍ୟ ଭକ୍ତମାନେ ମଧ୍ୟ ପ୍ରଣାମ କଲେ । ରାସ୍ତାରେ ଚନ୍ଦ୍ରାଲୋକ ଏବେ ମଧ୍ୟ ରହିଛି । ଠାକୁରଙ୍କର ଗାଡ଼ି ଦକ୍ଷିଣେଶ୍ୱର ଅଭିମୁଖେ ଯାତ୍ରା କଲା ।

# ବିଂଶ ପରିଚ୍ଛେଦ

## (୧)

### ଶ୍ରୀରାମକୃଷ୍ଣ ସିଁଥିର ବ୍ରାହ୍ମସମାଜରେ ବ୍ରାହ୍ମଭକ୍ତଙ୍କ ସହିତ

ଠାକୁର ଶ୍ରୀରାମକୃଷ୍ଣ ଶ୍ରୀଯୁକ୍ତ ବେଣୀ ପାଲଙ୍କର ସିଁଥିର ଉଦ୍ୟାନକୁ ଶୁଭାଗମନ କରିଛନ୍ତି । ଆଜି ସିଁଥିର ବ୍ରାହ୍ମସମାଜର ଷାଣ୍ମାସିକ ମହୋତ୍ସବ । ଚୈତ୍ୟ ପୂର୍ଣ୍ଣିମା, ୧୦ ଦିନ ବୈଶାଖ, ୨୨ ଏପ୍ରିଲ ୧୮୮୩, ଉପରଓଳି । ବହୁ ବ୍ରାହ୍ମଭକ୍ତ ଉପସ୍ଥିତ । ଭକ୍ତମାନେ ଠାକୁରଙ୍କୁ ଘେରି ଦକ୍ଷିଣ ଦିଗରେ ବାରଣ୍ଡାରେ ବସିଲେ । ସନ୍ଧ୍ୟା ପରେ ଆଦି ସମାଜର ଆଚାର୍ଯ୍ୟ ଶ୍ରୀଯୁକ୍ତ ବେଚାରାମ ଉପାସନା କରିବେ ।

ବ୍ରାହ୍ମଭକ୍ତମାନେ ଠାକୁରଙ୍କୁ ମଝିରେ ମଝିରେ ପ୍ରଶ୍ନ ପଚାରୁଛନ୍ତି ।

ବ୍ରାହ୍ମଭକ୍ତ — ମହାଶୟ, ଉପାୟ କଅଣ ?

ଶ୍ରୀରାମକୃଷ୍ଣ — ଉପାୟ ଅନୁରାଗ, ଅର୍ଥାତ୍ ତାଙ୍କୁ ଶ୍ରଦ୍ଧା ଆଉ ପ୍ରାର୍ଥନା ।

ବ୍ରାହ୍ମଭକ୍ତ — ଅନୁରାଗ ନା ପ୍ରାର୍ଥନା ?

ଶ୍ରୀରାମକୃଷ୍ଣ — ଅନୁରାଗ ଆଗେ, ପରେ ପ୍ରାର୍ଥନା ।

'ଡାକ୍ ଦେଖି ମନ ଡାକାର ମତନ, କେମନ ଶ୍ୟାମା ଥାକ୍‌ତେ ପାରେ !''

ଶ୍ରୀରାମକୃଷ୍ଣ ସ୍ୱର ଦେଇ ଏହି ଗୀତଟି ଗାଇଲେ ।

''ସର୍ବଦା ତାଙ୍କର ନାମଗୁଣଗାନ, କୀର୍ତ୍ତନ ଓ ପ୍ରାର୍ଥନା କରିବାକୁ ହୁଏ ! ପୁରୁଣା ଡାଳ ରୋଜ୍ ମାଜିବାକୁ ହେବ । ଥରେ ମାଜିଲେ କଅଣ ହେବ ? ଆଉ ବିବେକ, ବୈରାଗ୍ୟ, —ସଂସାର ଅନିତ୍ୟ, ଏହି ବୋଧ ।''

**ବ୍ରାହ୍ମଭକ୍ତ ଓ ସଂସାର-ତ୍ୟାଗ — ସଂସାରରେ ନିଷ୍କାମ କର୍ମ**

ବ୍ରାହ୍ମଭକ୍ତ — ସଂସାର-ତ୍ୟାଗ କଅଣ ଭଲ ?

ଶ୍ରୀରାମକୃଷ୍ଣ — ସମସ୍ତଙ୍କ ପକ୍ଷରେ ସଂସାର-ତ୍ୟାଗ ନୁହେଁ । ଯେଉଁମାନଙ୍କର ଭୋଗାନ୍ତ ହୋଇ ନାହିଁ, ସେମାନଙ୍କ ପକ୍ଷରେ ସଂସାର-ତ୍ୟାଗ ନୁହେଁ । ଦୁଇଅଣା ମଦରେ କଅଣ ମାତାଲ ହୁଏ ?

ବ୍ରାହ୍ମଭକ୍ତ — ସେମାନେ ତେବେ ସଂସାର କରିବେ ?

ଶ୍ରୀରାମକୃଷ୍ଣ — ହଁ, ସେମାନେ ନିଷ୍କାମ କର୍ମ କରିବାକୁ ଚେଷ୍ଟା କରିବେ । ହାତରେ ତେଲ ଲଗାଇ ପଣସ ଭାଙ୍ଗିବ । ବଡ଼ଲୋକଙ୍କ ଘରର ଦାସୀ ସବୁକାମ କରେ, କିନ୍ତୁ ଗାଁରେ ମନ ପଡ଼ିଥାଏ, ଏହାର ନାମ ନିଷ୍କାମ କର୍ମ ।[୧] ଏହାର ନାମ ମନରେ ତ୍ୟାଗ । ତୁମେମାନେ ମନରେ ତ୍ୟାଗ କରିବ । ସନ୍ନ୍ୟାସୀ ବାହାରେ ତ୍ୟାଗ ପୁଣି ମନରେ ତ୍ୟାଗ, ଦୁଇ କରିବେ ।

୧. କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ । — ଗୀତା, ୨/୪୭
ଯତ୍କରୋଷି ଯଦଶ୍ନାସି ଯଜ୍ଜୁହୋସି....କୁରୁଷ୍ୱ ମଦର୍ପଣମ୍ । — ଗୀତା, ୯/୨୭

**ବ୍ରାହ୍ମଭକ୍ତ ଓ ଭୋଗାନ୍ତ — ବିଦ୍ୟାରୂପିଣୀ ସ୍ତ୍ରୀର ଲକ୍ଷଣ — ବୈରାଗ୍ୟ କେତେବେଳେ ହୁଏ**

ବ୍ରାହ୍ମଭକ୍ତ — ଭୋଗାନ୍ତ କିପରି ?

ଶ୍ରୀରାମକୃଷ୍ଣ — କାମିନୀ-କାଞ୍ଚନ ଭୋଗ । ଯେଉଁ ଘରେ ତେନ୍ତୁଳି ଆଚାର ଆଉ ପାଣିମାଠିଆ ସେହି ଘରେ ବିକାରର ରୋଗୀ ରହିଲେ ମୁସ୍କିଲ । ଟଙ୍କା-ପଇସା, ମାନସମ୍ଭ୍ରମ, ଦେଖସୁଖ ଏହିସବୁ ଭୋଗ ଥରେ ହୋଇ ନ ଗଲେ — ଭୋଗାନ୍ତ ନ ହେଲେ — ସମସ୍ତଙ୍କର ଈଶ୍ୱରଙ୍କ ପାଇଁ ବ୍ୟାକୁଳତା ଆସେ ନାହିଁ ।

ବ୍ରାହ୍ମଭକ୍ତ-ସ୍ତ୍ରୀ-ଜାତି ଖରାପ ନା ଆମେମାନେ ଖରାପ ?

ଶ୍ରୀରାମକୃଷ୍ଣ — ବିଦ୍ୟା — ରୂପିଣୀ ସ୍ତ୍ରୀ ଅଛନ୍ତି, ପୁଣି ଅବିଦ୍ୟା-ରୂପିଣୀ ସ୍ତ୍ରୀ ମଧ୍ୟ ଅଛନ୍ତି । ବିଦ୍ୟାରୂପିଣୀ ସ୍ତ୍ରୀ ଭଗବାନଙ୍କ ଆଡ଼କୁ ନେଇଯାଏ, ଅବିଦ୍ୟାରୂପିଣୀ ସ୍ତ୍ରୀ ଈଶ୍ୱରଙ୍କୁ ଭୁଲାଇ ଦିଏ, ସଂସାରରେ ବୁଡ଼ାଇଦିଏ ।

''ତାଙ୍କର ମହାମାୟାରେ ଏହି ଜଗତ୍‌ସଂସାର । ଏହି ମାୟା ଭିତରେ ବିଦ୍ୟା-ମାୟା, ଅବିଦ୍ୟା-ମାୟା ଦୁଇ ଅଛି । ବିଦ୍ୟା-ମାୟା ଆଶ୍ରୟ କଲେ ସାଧୁସଙ୍ଗ, ଜ୍ଞାନ, ଭକ୍ତି, ପ୍ରେମ, ବୈରାଗ୍ୟ ଏହିସବୁ ହୁଏ । ଅବିଦ୍ୟା-ମାୟା — ପଞ୍ଚଭୂତ ଓ ଇନ୍ଦ୍ରିୟର ବିଷୟ — ରୂପ, ରସ, ଗନ୍ଧ, ସ୍ପର୍ଶ, ଶବ୍ଦ, ଯେତେ ଇନ୍ଦ୍ରିୟ-ଭୋଗର ଜିନିଷ । ଏମାନେ ଈଶ୍ୱରଙ୍କ ପ୍ରତି ବିମୁଖ କରି ଦିଅନ୍ତି ।''

ବ୍ରାହ୍ମଭକ୍ତ — ଅବିଦ୍ୟା ଯଦି ଅଜ୍ଞାନ କରେ, ତେବେ ସେ ଅବିଦ୍ୟା ସୃଷ୍ଟି କରିଛନ୍ତି କାହିଁକି ?

ଶ୍ରୀରାମକୃଷ୍ଣ — ତାଙ୍କର ଲୀଳା । ଅନ୍ଧାର ନ ଥିଲେ ଆଲୁଅର ମହିମା ବୁଝାଯାଏ ନାହିଁ । ଦୁଃଖ ନ ଥିଲେ ସୁଖ ବୁଝାଯାଏ ନାହିଁ । 'ମନ୍ଦର' ଜ୍ଞାନ ଥିଲେ ଯାଇ 'ଭଲର' ଜ୍ଞାନ ହୁଏ ।

''ପୁଣି ଅଛି, ଚୋପାଟି ଅଛି ବୋଲି ଆମ୍ବଟି ବଢ଼େ ଓ ପାଚେ । ଆମ୍ବଟି ତିଆରି ହୋଇଗଲେ ଚୋପା ଫିଙ୍ଗି ଦେବାକୁ ହୁଏ । ମାୟାରୂପ ଛାଲଟା ରହିଲେ କ୍ରମେ ବ୍ରହ୍ମଜ୍ଞାନ ହୁଏ । ବିଦ୍ୟା-ମାୟା, ଅବିଦ୍ୟା-ମାୟା ଆମ୍ବର ଚୋପା ପରି, ଦୁଇଟିଯାକ ଦରକାର ।''

ବ୍ରାହ୍ମଭକ୍ତ — ଆଚ୍ଛା, ସାକାରପୂଜା, ମାଟିରେ ତିଆରି ଦିଅଁଙ୍କ ପୂଜା, ଏସବୁ କଅଣ ଭଲ ?[୧]

ଶ୍ରୀରାମକୃଷ୍ଣ — ତୁମେମାନେ ସାକାର ମାନ ନାହିଁ, ତାହା ବେଶ୍ । ତୁମମାନଙ୍କ ପକ୍ଷରେ ମୂର୍ତ୍ତି ନୁହେଁ, ଭାବ । ତୁମେମାନେ ଟାଣ ଟିକକ ନେବ, ଯେପରି କୃଷ୍ଣଙ୍କ ଉପରେ ରାଧାଙ୍କର ଟାଣ, ଭଲ ପାଇବା । ସାକାରବାଦୀମାନେ ଯେପରି ମାଆ କାଳୀ, ମା ଦୁର୍ଗାଙ୍କର ପୂଜା କରନ୍ତି, 'ମା' 'ମା' କହି କେତେ

୧. ମୃଣ୍ମୟ ଆଧାରରେ ଚିନ୍ମୟୀ ଦେବୀ ।' — କେଶବଙ୍କର ଉପଦେଶ ।

ଡାକନ୍ତି, ଭଲ ପାଆନ୍ତି, ସେହି ଭାବଟି ତୁମେମାନେ ନେବ । ମୂର୍ତ୍ତି ନାହିଁ ବା ମାନିଲ ।

ବ୍ରାହ୍ମଭକ୍ତ—ବୈରାଗ୍ୟ କିପରି ହୁଏ ? ଆଉ ସମସ୍ତଙ୍କର ହୁଏ ନାହିଁ କାହିଁକି ?

ଶ୍ରୀରାମକୃଷ୍ଣ—ଭୋଗର ଶାନ୍ତି ନ ହେଲେ ବୈରାଗ୍ୟ ହୁଏ ନାହିଁ । ଛୋଟ ପିଲାଙ୍କୁ ଖାଇବା ଓ କଣ୍ଢେଇ ଦେଇ ବେଶ୍ ଭୁଲାଇ ରଖାଯାଏ; କିନ୍ତୁ ଯେତେବେଳେ ଖିଆ ସରିଗଲା, ଏବଂ କଣ୍ଢେଇ ନେଇ ଖେଳ ସରିଗଲା, ସେତେବେଳେ ସେ କହେ, 'ମା (ପାଖକୁ) ଯିବି' । ମାଆ ପାଖକୁ ନେଇ ନ ଗଲେ କଣ୍ଢେଇ ଫିଙ୍ଗିଦିଏ, ଆଉ ପାଟି କରି କାନ୍ଦେ ।

**ସଚ୍ଚିଦାନନ୍ଦ ହିଁ ଗୁରୁ—ଈଶ୍ୱରଲାଭ ପରେ ସନ୍ଧ୍ୟାଦି କର୍ମ ତ୍ୟାଗ**

ବ୍ରାହ୍ମଭକ୍ତମାନେ ଗୁରୁବାଦର ବିରୋଧୀ । ତେଣୁ ବ୍ରାହ୍ମଭକ୍ତଟି ଏ ସମ୍ବନ୍ଧରେ କଥା କହୁଛନ୍ତି ।

ବ୍ରାହ୍ମଭକ୍ତ—ଆଜ୍ଞା, ଗୁରୁ ନ ହେଲେ କଅଣ ଜ୍ଞାନ ହେବ ନାହିଁ ?

ଶ୍ରୀରାମକୃଷ୍ଣ—ସଚ୍ଚିଦାନନ୍ଦ ହିଁ ଗୁରୁ । ଯଦି ମନୁଷ୍ୟ ଗୁରୁରୂପରେ ଚୈତନ୍ୟ ଦିଅନ୍ତି, ତାହା ହେଲେ ଜାଣିବ ଯେ ସଚ୍ଚିଦାନନ୍ଦ ହିଁ ଏହି ରୂପ ଧାରଣ କରିଛନ୍ତି । ଗୁରୁ ଯେପରି ସଙ୍ଗୀ, ହାତ ଧରି ନେଇଯାଆନ୍ତି । ଭଗବାନଙ୍କର ଦର୍ଶନ ହେଲେ ଆଉ ଗୁରୁଶିଷ୍ୟ ବୋଧ ରହେ ନାହିଁ । 'ସେ ବଡ଼ କଠିନ ଠାଇଁ, ଗୁର-ଶିଷ୍ୟେ ଦେଖା ନାହିଁ !' ତେଣୁ ଜନକ ଶୁକଦେବଙ୍କୁ କହିଲେ, 'ଯଦି ବ୍ରହ୍ମଜ୍ଞାନ ଚାହଁ, ଆଗେ ଦକ୍ଷିଣା ଦିଅ ।' କାରଣ, ବ୍ରହ୍ମଜ୍ଞାନ ହେଲେ ଆଉ ଗୁରୁ-ଶିଷ୍ୟ-ଭେଦବୁଦ୍ଧି ରହିବ ନାହିଁ । ଯେପର୍ଯ୍ୟନ୍ତ ଈଶ୍ୱର-ଦର୍ଶନ ନ ହୁଏ, କେବଳ ସେପର୍ଯ୍ୟନ୍ତ ଗୁରୁଶିଷ୍ୟ ସମ୍ବନ୍ଧ ।

କ୍ରମେ ସନ୍ଧ୍ୟା ହେଲା । ବ୍ରାହ୍ମଭକ୍ତମାନେ କେହି କେହି ଠାକୁରଙ୍କୁ କହୁଛନ୍ତି, ''ଆପଣଙ୍କୁ ବୋଧହୁଏ ବର୍ତ୍ତମାନ ସନ୍ଧ୍ୟା କରିବାକୁ ହେବ ?

ଶ୍ରୀରାମକୃଷ୍ଣ—ନା, ସେପରି ନୁହେଁ । ସେସବୁ ପ୍ରଥମେ ପ୍ରଥମେ ଥରେ ଥରେ କରିନେବାକୁ ହୁଏ । ତା'ପରେ ଆଉ କୁଶ, ପାତ୍ରୀ ବା ନିୟମାଦି ଦରକାର ହୁଏ ନାହିଁ ।

## (୨)

## ଶ୍ରୀରାମକୃଷ୍ଣ ଓ ଆଚାର୍ଯ୍ୟ ଶ୍ରୀ ବେଚାରାମ—
## ବେଦାନ୍ତ ଓ ବ୍ରହ୍ମତତ୍ତ୍ୱ ପ୍ରସଙ୍ଗ

ସନ୍ଧ୍ୟା ପରେ ଆଦି ସମାଜର ଆଚାର୍ଯ୍ୟ ଶ୍ରୀଯୁକ୍ତ ବେଚାରାମ ବେଦୀରେ ବସି ଉପାସନା କଲେ । ମଝିରେ ମଝିରେ ବ୍ରହ୍ମ-ସଙ୍ଗୀତ ଓ ଉପନିଷଦ୍‌ରୁ ପାଠ ହେବାକୁ ଲାଗିଲା । ଉପାସନାନ୍ତେ ଶ୍ରୀରାମକୃଷ୍ଣଙ୍କ ପାଖରେ ବସି ଆଚାର୍ଯ୍ୟ ତାଙ୍କ ସହିତ କଥାବାର୍ତ୍ତା କରୁଛନ୍ତି ।

ଶ୍ରୀରାମକୃଷ୍ଣ—ଆଚ୍ଛା, ନିରାକାର ସତ୍ୟ ଆଉ ସାକାର ମଧ୍ୟ ସତ୍ୟ—ଆପଣ କଅଣ କହନ୍ତି ?

**ସାକାର ନିରାକାର—ଚିନ୍ମୟ ରୂପ ଓ ଭକ୍ତ**

ଆଚାର୍ଯ୍ୟ—ଆଜ୍ଞା, ନିରାକାର ଯେପରି ତଡ଼ିତ୍-ପ୍ରବାହ, ଆଖିକୁ ଦେଖାଯାଏ ନାହିଁ, କିନ୍ତୁ ଅନୁଭବ କରାଯାଏ ।

ଶ୍ରୀରାମକୃଷ୍ଣ—ହଁ, ଦୁଇଟିଯାକ ସତ୍ୟ । ସାକାର ନିରାକାର ଦୁଇ ସତ୍ୟ । କେବଳ ନିରାକାର କହିବା କିପରି ଜାଣ ? ଯେପରି ରୋଷଣୀବାଜାରେ ଜଣେ 'ପୁଁ' ଧରିଥାଏ—ତାହାର ବଂଶୀରେ ସାତଟା ରନ୍ଧ୍ରଥିବା ସତ୍ତ୍ୱେ; କିନ୍ତୁ ଆଉ ଜଣେ ଦେଖେ କେତେ ରାଗ ରାଗିଣୀ ବଜାଏ ! ସେହିପରି ସାକାରବାଦୀମାନେ,ଦେଖ, ଈଶ୍ୱରଙ୍କୁ କେତେ ଭାଗରେ ସମ୍ଭୋଗ କରନ୍ତି ! ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ, ମଧୁର—ନାନା ଭାବରେ ।

''କଅଣ ଜାଣ, ଅମୃତ-କୁଣ୍ଡରେ[୧] ଯେକୌଣସି ପ୍ରକାରେ ପଡ଼ିବା । ତାହା ସ୍ତବ କରି ହେଉ ଅଥବା କେହି ଧକ୍‌କା ମାରିଛି ଆଉ ତୁମେ କୁଣ୍ଡରେ ପଡ଼ିଯାଇଛ, ସମାନ ଫଳ । ଦୁଇଜଣଯାକ ହିଁ ଅମର ।

''ବ୍ରାହ୍ମମାନଙ୍କ ପକ୍ଷରେ ଜଳ ଓ ବରଫର ଉପମା ଠିକ୍ । ସଚ୍ଚିଦାନନ୍ଦ ଯେପରି ଅନନ୍ତ ଜଳରାଶି । ମହାସାଗରର ଜଳ ଥଣ୍ଡା ଦେଶରେ ସ୍ଥାନେ ସ୍ଥାନେ ଯେପରି ବରଫର ଆକାର ଧାରଣ କରେ, ସେହିପରି ଭକ୍ତି-ହିମରେ ସେହି ସଚ୍ଚିଦାନନ୍ଦ (ସଗୁଣ ବ୍ରହ୍ମ) ଭକ୍ତ ପାଇଁ ସାକାର ରୂପ ଧାରଣ କରନ୍ତି । ଋଷିମାନେ ସେହି ଅତୀନ୍ଦ୍ରିୟ ଚିନ୍ମୟ ରୂପ ଦର୍ଶନ କରିଥିଲେ, ପୁଣି ତାଙ୍କ ସହିତ କଥା

---

୧. ବ୍ରହ୍ମୈବେଦମମୃତଂ ପୁରସ୍ତାଦ୍ ବ୍ରହ୍ମ ପଶ୍ଚାଦ୍‌ବ୍ରହ୍ମ ଦକ୍ଷିଣତଶ୍ଚୋତ୍ତରେଣ ।
ଅଧଶ୍ଚୋର୍ଦ୍ଧ୍ୱଞ୍ଚ ପ୍ରସୃତମ୍ ବ୍ରହ୍ମୈବେଦଂ ବିଶ୍ୱମିଦଂ ବରିଷ୍ଠମ ॥
—ମୁଣ୍ଡକୋପନିଷଦ୍ ୨/୨/୧୧

୨. ନାରଦ କହିଲେ-ମୁଁ ଶୁଦ୍ଧା ସର୍ବମୟୀ ଭାଗବତୀତନୁ ପ୍ରାପ୍ତ ହେଲି ।

କହିଥିଲେ । ଭକ୍ତର ପ୍ରେମ-ଶରୀର* 'ଭାଗବତୀ–ତନୁ' ଦ୍ୱାରା ସେହି ଚିନ୍ମୟ ରୂପ ଦର୍ଶନ ହୁଏ ।

''ପୁଣି ଅଛି, ବ୍ରହ୍ମ ଅବାଙ୍ ମନସୋଗୋଚର । ଜ୍ଞାନ-ସୂର୍ଯ୍ୟଙ୍କର ତାପରେ ସାକାର ବରଫ ତରଳିଯାଏ । ବ୍ରହ୍ମଜ୍ଞାନ ପରେ, ନିର୍ବିକଳ୍ପ ସମାଧି ପରେ ପୁଣି ସେହି ଅନନ୍ତ, ବାକ୍ୟମନର ଅତୀତ, ଅରୂପ ନିରାକାର ବ୍ରହ୍ମ !

''ବ୍ରହ୍ମଙ୍କ ସ୍ୱରୂପ ମୁଖରେ କହିହୁଏ ନାହିଁ, ଚୁପ୍ ହୋଇଯାଏ । ଅନନ୍ତଙ୍କୁ କିଏ ମୁହଁରେ ବୁଝାଇବ ? ପକ୍ଷୀ ଯେତେ ଉପରକୁ ଉଠୁ, ତା' ଉପରକୁ ଆହୁରି ଅଛି । ଆପଣ କଅଣ କହୁଛନ୍ତି ?''

ଆଚାର୍ଯ୍ୟ—ଆଜ୍ଞା ହଁ, ବେଦାନ୍ତରେ ଏହିପରି କଥା ହିଁ ଅଛି ।

## ନିର୍ଗୁଣ ବ୍ରହ୍ମ 'ଅବାଙ୍ ମନସୋଗୋଚରମ୍' ତ୍ରିଗୁଣାତୀତମ୍

ଶ୍ରୀରାମକୃଷ୍ଣ—ଲୁଣର କଣ୍ଢେଇ ସମୁଦ୍ର ମାପିବାକୁ ଯାଇଥିଲା, ଫେରି ଆସି ଆଉ ଖବର ଦେଲା ନାହିଁ । ଏକ ମତରେ ଅଛି ଶୁକଦେବାଦି ଦର୍ଶନ ସ୍ପର୍ଶନ କରିଥିଲେ, ବୁଡ଼ି ନାହାନ୍ତି ।

''ମୁଁ ବିଦ୍ୟାସାଗରଙ୍କୁ କହିଥିଲି, 'ସବୁ ଜିନିଷ ଅଇଁଠା ହୋଇଯାଇଛି, କିନ୍ତୁ ବ୍ରହ୍ମ ଉଚ୍ଛିଷ୍ଟ ହୋଇନାହିଁ ।'[1] ଅର୍ଥାତ୍ ବ୍ରହ୍ମ କଅଣ, କେହି ମୁହଁରେ କହିପାରି ନାହାନ୍ତି । ମୁହଁରେ କହିଲେ ଜିନିଷଟା ଅଇଁଠା ହୁଏ । ବିଦ୍ୟାସାଗର ପଣ୍ଡିତ, ଶୁଣି ଭାରୀ ଖୁସି ।

''ଶୁଣିଛି, କେଦାରର (କେଦାରନାଥ) ସେପଟେ ବରଫରେ ଢଙ୍କା ପାହାଡ଼ ଅଛି । ବେଶୀ ଉଚ୍ଚକୁ ଉଠିଲେ ଆଉ ଫେରିହୁଏ ନାହିଁ । ବେଶୀ ଉଚ୍ଚରେ କଅଣ ଅଛି, ଗଲେ କିପରି ଅବସ୍ଥା ହୁଏ, ଏହିସବୁ ଜାଣିବାକୁ ଯେଉଁମାନେ ଯାଇଛନ୍ତି, ସେମାନେ ଫେରିଆସି ଆଉ ଖବର ଦେଇ ନାହାନ୍ତି ।

''ତାଙ୍କର ଦର୍ଶନ ହେଲେ ମନୁଷ୍ୟ ଆନନ୍ଦରେ ବିହ୍ୱଳ ହୋଇଯାଏ, ଚୁପ୍[2] ହୋଇଯାଏ । କିଏ ଖବର ଦେବ ? କିଏ ବୁଝାଇବ ?

''ସାତ ମହଲାରେ ରାଜା । ପ୍ରତ୍ୟେକ ମହଲାରେ ଜଣେ ମହା ଐଶ୍ୱର୍ଯ୍ୟବାନ୍ ପୁରୁଷ ବସିଛନ୍ତି । ପ୍ରତ୍ୟେକ ମହଲାରେ ହିଁ ଶିଷ୍ୟ ପଚାରୁଛି, ଇଏ କ'ଣ ରାଜା ? ଗୁରୁ ମଧ୍ୟ କହୁଛନ୍ତି, ନା, ନେତି, ନେତି । ସପ୍ତମମହଲାକୁ ଯାଇ ଯାହା ଦେଖିଲେ,

---

ପ୍ରଯୁଜ୍ୟମାନେ ମୟିତାଂ ଶୁଦ୍ଧାଂ ଭଗବତୀତନୁମ୍ ।
ଆରବ୍ଧକର୍ମନିର୍ବାଣୋ ନ୍ୟପତତ୍ ପଞ୍ଚଭୌତିକଃ ॥ —ଶ୍ରୀମଦ୍ଭାଗବତ, ୧/୬/୨୯

୧. ଉଚ୍ଛିଷ୍ଟ ହୋଇନାହିଁ—ଅଚିନ୍ତ୍ୟମବ୍ୟପଦେଶ୍ୟମ୍...ଅଦ୍ୱୈତମ୍
—ମାଣ୍ଡୁକ୍ୟ ଉପନିଷଦ୍, ୭

୨. ଯତୋ ବାଚୋ ନିବର୍ତ୍ତନ୍ତେ ଅପ୍ରାପ୍ୟ ମନସା ସହ । —ତୈତ୍ତିରୀୟ ଉପ. ୨/୪

ଏକାବେଳକେ ଅବାକ୍ ! ଆନନ୍ଦରେ ବିହ୍ୱଳ । ଆଉ ପଚାରିବାକୁ ପଡ଼ିଲା ନାହିଁ 'ଏ କ'ଣ ରାଜା ?' ଦେଖିଦେଇ ସବୁ ସଂଶୟ ଚାଲିଗଲା ।''[୧]

ଆଚାର୍ଯ୍ୟ — ଆଜ୍ଞା ହଁ, ବେଦାନ୍ତରେ ଏହିପରି ସବୁ ଅଛି ।

ଶ୍ରୀରାମକୃଷ୍ଣ — ଯେତେବେଳେ ସେ ସୃଷ୍ଟି, ସ୍ଥିତି, ପ୍ରଳୟ କରନ୍ତି, ସେତେବେଳେ ତାଙ୍କୁ ସଗୁଣ ବ୍ରହ୍ମ ବା ଆଦ୍ୟାଶକ୍ତି କହନ୍ତି । ଯେତେବେଳେ ସେ ତିନି ଗୁଣର ଅତୀତ, ସେତେବେଳେ ତାଙ୍କୁ ନିର୍ଗୁଣ ବ୍ରହ୍ମ, ବାକ୍ୟମନର ଅତୀତ କୁହାଯାଏ, ପରଂବ୍ରହ୍ମ ।

''ମଣିଷ ତାଙ୍କ ମାୟାରେ ପଡ଼ି ସ୍ୱରୂପକୁ ଭୁଲିଯାଏ । ସେ ଯେ ବାପାଙ୍କର ଅନନ୍ତ ଐଶ୍ୱର୍ଯ୍ୟର ଅଧିକାରୀ, ତାହା ଭୁଲିଯାଏ । ତାଙ୍କର ମାୟା ତ୍ରିଗୁଣମୟୀ । ଏହି ତିନିଗୁଣ ହିଁ ଡକାୟତ, ସର୍ବସ୍ୱ ହରଣ କରନ୍ତି, ସ୍ୱ ସ୍ୱରୂପକୁ ଭୁଲାଇ ଦିଅନ୍ତି । ସତ୍ତ୍ୱ, ରଜଃ, ତମଃ — ତିନି ଗୁଣ । ଏମାନଙ୍କ ମଧ୍ୟରେ ସତ୍ତ୍ୱ ଗୁଣ ହିଁ ଈଶ୍ୱରଙ୍କ ପଥ ଦେଖାଇଦିଏ । କିନ୍ତୁ ଈଶ୍ୱରଙ୍କ ପାଖକୁ ସତ୍ତ୍ୱ ଗୁଣ ମଧ୍ୟ ନେଇ ଯାଇପାରେ ନାହିଁ ।

''ଜଣେ ଧନୀ ଲୋକ ଜଙ୍ଗଲ ବାଟ ଦେଇ ଯାଉଥିଲା । ଏହି ସମୟରେ ତିନିଜଣ ଡକାୟତ ଆସି ତାକୁ ଘେରିଗଲେ ଓ ତା'ର ସର୍ବସ୍ୱ ହରଣ କଲେ । ସବୁ କାଢ଼ି କୁଢ଼ି ନେଇ ଜଣେ ଡକାୟତ କହିଲା, 'ଆଉ ଏହାକୁ ରଖି କଅଣ ହେବ ? ଏହାକୁ ମାରି ପକାଅ ।' ଏହା କହି ତାକୁ ହାଣିବାକୁ ଆସିଲା । ଦ୍ୱିତୀୟ ଡକାୟତ କହିଲା, 'ମାରିବା ଦରକାର ନାହିଁ, ଏହାର ଗୋଡ଼ ହାତ ସବୁ ବାନ୍ଧି ଏହିଠାରେ ହିଁ ପକାଇ ଦିଅ; ତାହା ହେଲେ ପୋଲିସକୁ ଖବର ଦେଇପାରିବ ନାହିଁ ।' ଏହା କହି ତାକୁ ବାନ୍ଧି ରଖି ଡକାଇତମାନେ ଚାଲିଗଲେ ।

''କିଛିକ୍ଷଣ ପରେ ତୃତୀୟ ଡକାୟତଟି ଫେରି ଆସିଲା । ଆସି କହିଲା, 'ଆହା, ତୁମକୁ ଖୁବ୍ ବାଧୁଛି ନା ? ମୁଁ ତୁମର ବନ୍ଧନ ଖୋଲି ଦେଉଛି ।' ବନ୍ଧନ ଖୋଲିବାପରେ ଲୋକଟିକୁ ସଙ୍ଗରେ ନେଇ ଡକାୟତ ବାଟ ଦେଖାଇ ଦେଖାଇ ଚାଲିବାକୁ ଲାଗିଲା । ସରକାରୀ ରାସ୍ତା ପାଖକୁ ଆସି କହିଲା, 'ଏଇ ବାଟଟିରେ ଯାଅ, ଏବେ ତୁମେ ଅନାୟାସରେ ନିଜର ଘରକୁ ଯାଇପାରିବ ।' ଲୋକଟି କହିଲା, 'ସେ କି କଥା, ଆପଣ ମଧ୍ୟ ଚାଲନ୍ତୁ । ଆପଣ ମୋର କେତେ ଉପକାର କଲେ ! ଆମ ଘରକୁ ଗଲେ ଆମେମାନେ କେତେ ଆନନ୍ଦିତ ହେବୁ !' ଡକାୟତଟି କହିଲା, 'ନା ମୋର ସେଠାକୁ ଯିବାର ବାଟ ନାହିଁ, ପୋଲିସ୍ ଧରିବ ।' ଏହା କହି ସେ ବାଟ ଦେଖାଇ ଦେଇ ଚାଲିଗଲା ।

''ପ୍ରଥମ ଡକାୟତଟି ତମୋଗୁଣ, ଯେ କହିଲା, 'ଏହାକୁ ରଖି କଅଣ ହେବ, ମାରି ପକାଅ ।' ତମୋଗୁଣରେ ବିନାଶ ହୁଏ । ଦ୍ୱିତୀୟ ଡକାୟତଟି

୧. ଛିଦ୍ୟନ୍ତେ ସର୍ବସଂଶୟାଃ...ତସ୍ମିନ୍ ଦୃଷ୍ଟେ ପରାବରେ ।

— ମୁଣ୍ଡକ ଉପନିଷଦ୍, ୨/୨/୮

ରଜୋଗୁଣ । ରଜୋଗୁଣରେ ମନୁଷ୍ୟ ସଂସାରରେ ବଦ୍ଧ ହୁଏ, ନାନା କାର୍ଯ୍ୟରେ ଲାଗେ । ରଜୋଗୁଣ ଈଶ୍ୱରଙ୍କୁ ଭୁଲାଇ ଦିଏ । ସତ୍ତ୍ୱଗୁଣ ହିଁ କେବଳ ଈଶ୍ୱରଙ୍କର ପଥ ଦେଖାଇଦିଏ । ଦୟା, ଧର୍ମ, ଭକ୍ତି ଏହିସବୁ ସତ୍ତ୍ୱଗୁଣରୁ ହୁଏ । ସତ୍ତ୍ୱଗୁଣ ଯେପରି ସିଢ଼ିର ଶେଷ ପାହାଚ, ତାହା ପରେ ଛାତ । **ମନୁଷ୍ୟର ସ୍ୱଧାମ ହେଉଛି ପରଂବ୍ରହ୍ମ** । ତ୍ରିଗୁଣାତୀତ ନ ହେଲେ ବ୍ରହ୍ମଜ୍ଞାନ ହୁଏ ନାହିଁ ।''

ଆଚାର୍ଯ୍ୟ —ବେଶ୍ ସବୁକଥା ହେଲା ।

ଶ୍ରୀରାମକୃଷ୍ଣ (ସହାସ୍ୟ)—ଭକ୍ତର ସ୍ୱଭାବ କିପରି ଜାଣ ? ମୁଁ କହେ ତୁମେ ଶୁଣ, ତୁମେ କହ ମୁଁ ଶୁଣେ । ତୁମେସବୁ ଆଚାର୍ଯ୍ୟ, କେତେଲୋକଙ୍କୁ ଶିକ୍ଷା ଦେଉଛ । ତୁମେମାନେ ଜାହାଜ, ଆମେମାନେ ହୁଲି ଡଙ୍ଗା । (ସମସ୍ତଙ୍କର ହାସ୍ୟ)

# ଏକବିଂଶ ପରିଚ୍ଛେଦ

## (୩)

## (ନନ୍ଦନବଗିଚା ବ୍ରାହ୍ମସମାଜରେ ରାଖାଲ, ମାଷ୍ଟର ପ୍ରଭୃତି ଭକ୍ତଙ୍କ ସଙ୍ଗରେ)

### ଶ୍ରୀମନ୍ଦିରଦର୍ଶନ ଓ ଉଦ୍ଦୀପନ — ଶ୍ରୀରାଧାଙ୍କ ପ୍ରେମୋନ୍ମାଦ

ଠାକୁର ଶ୍ରୀରାମକୃଷ୍ଣ ନନ୍ଦନବଗିଚାର ବ୍ରାହ୍ମସମାଜ ମନ୍ଦିରରେ ଭକ୍ତଙ୍କ ସଙ୍ଗରେ ବସିଛନ୍ତି । ବ୍ରାହ୍ମଭକ୍ତମାନଙ୍କ ସହିତ କଥା କହୁଛନ୍ତି । ସଙ୍ଗରେ ରାଖାଲ, ମାଷ୍ଟର ପ୍ରଭୃତି ଅଛନ୍ତି । ସମୟ ପାଞ୍ଚଟା ହେବ ।

କାଶୀଶ୍ୱର ମିତ୍ରଙ୍କର ଘର ନନ୍ଦନବଗିଚାରେ । ସେ ପୂର୍ବେ ଜଜ୍ ଥିଲେ । ଆଦି ବ୍ରାହ୍ମସମାଜଭୁକ୍ତ ବ୍ରହ୍ମଜ୍ଞାନୀ । ସେ ନିଜ ଘରେ ଦୁଇମହଲା ଉପରେ ବୃହତ୍ ପ୍ରକୋଷ୍ଠ ମଧ୍ୟରେ ଈଶ୍ୱରଙ୍କର ଉପାସନା କରୁଥିଲେ, ଆଉ ଭକ୍ତମାନଙ୍କୁ ନିମନ୍ତ୍ରଣ କରି ମଝିରେ ମଝିରେ ଉତ୍ସବ କରୁଥିଲେ । ତାଙ୍କର ସ୍ୱର୍ଗାରୋହଣ ପରେ ଶ୍ରୀନାଥ, ଯଜ୍ଞନାଥ ପ୍ରଭୃତି ତାଙ୍କର ପୁତ୍ରଗଣ କିଛିଦିନ ଏହିପରି ଉତ୍ସବ କରିଥିଲେ । ସେମାନେ ମଧ୍ୟ ଠାକୁରଙ୍କୁ ଅତି ଆଗ୍ରହରେ ନିମନ୍ତ୍ରଣ କରି ଆଣିଛନ୍ତି ।

ଠାକୁର ପ୍ରଥମେ ଆଦି ତଳେ ଗୋଟିଏ ବୈଠକଖାନା ଘରେ ଆସନ ଗ୍ରହଣ କଲେ । ସେହି ଘରେ ବ୍ରାହ୍ମଭକ୍ତଗଣ କ୍ରମେ କ୍ରମେ ଆସି ଏକତ୍ରିତ ହେଲେ । ଶ୍ରୀଯୁକ୍ତ ରବୀନ୍ଦ୍ର ନାଥ (ଠାକୁର) ପ୍ରଭୃତି ଠାକୁରବଂଶର ଭକ୍ତଗଣ ଏହି ଉତ୍ସବ—କ୍ଷେତ୍ରରେ ଉପସ୍ଥିତ ଥିଲେ ।

ଆହୂତ ହୋଇ ଠାକୁର ଭକ୍ତଙ୍କ ସଙ୍ଗରେ ଦ୍ୱିତଳର ଉପାସନା ମନ୍ଦିରକୁ ଯାଇ ଉପବେଶନ କଲେ । ଉପାସନା-ଗୃହର ପୂର୍ବଧାରରେ ବେଦୀ ରଚିତ ହୋଇଛି । ଦକ୍ଷିଣ-ପଶ୍ଚିମ କୋଣରେ ଗୋଟିଏ ଇଂରାଜୀ ବାଦ୍ୟଯନ୍ତ୍ର ରହିଛି (ପିଆନୋ) । ଘରର ଉତ୍ତରାଂଶରେ କେତେଖଣ୍ଡ ଚୌକି ପଡ଼ିଛି । ଠିକ୍ ତାହାର ପୂର୍ବାଧାରରେ ଦ୍ୱାର ଅଛି, ଅନ୍ତଃପୁରକୁ ଯିବାକୁ ହୁଏ ।

ସନ୍ଧ୍ୟା ସମୟରେ ଉତ୍ସବର ଉପାସନା ଆରମ୍ଭ ହେବ । ଆଦି ବ୍ରାହ୍ମସମାଜର ଶ୍ରୀଯୁକ୍ତ ଭୈରବ ବନ୍ଦୋପାଧ୍ୟାୟ ଜଣେ ଦୁଇଜଣ ଭକ୍ତଙ୍କ ସଙ୍ଗରେ ବେଦୀରେ ବସି ଉପାସନା କାର୍ଯ୍ୟ ସମ୍ପନ୍ନ କରିବେ ।

ଗ୍ରୀଷ୍ମକାଳ — ଆଜି ବୁଧବାର, ଚୈତ୍ର କୃଷ୍ଣା ଦଶମୀ ତିଥି, ୨ ମେ ୧୮୮୩ । ବ୍ରାହ୍ମଭକ୍ତମାନେ ଅନେକେ ତଳର ବୃହତ୍ ପ୍ରାଙ୍ଗଣରେ ବା ବାରଣ୍ଡାରେ ବୁଲୁଛନ୍ତି । ଶ୍ରୀଯୁକ୍ତ ଜାନକୀ ଘୋଷାଲ ପ୍ରଭୃତି କେହି କେହି ଠାକୁର ଶ୍ରୀରାମକୃଷ୍ଣଙ୍କ ପାଖରେ ଉପାସନା-ଗୃହକୁ ଆସି ଆସନ ଗ୍ରହଣ କରିଛନ୍ତି । ତାଙ୍କ ମୁଖରୁ ଈଶ୍ୱରୀୟ କଥା

ଶୁଣିବେ । ଘରେ ପ୍ରବେଶ କରିବା ମାତ୍ରକେ ବେଦୀ ସମ୍ମୁଖରେ ଠାକୁର ପ୍ରଣାମ କଲେ । ଆସନ ଗ୍ରହଣ କରି ରାଖାଲ, ମାଷ୍ଟର ପ୍ରଭୃତିଙ୍କୁ କହୁଛନ୍ତି—

'ନରେନ୍ଦ୍ର ମୋତେ ପଚାରିଥିଲା, 'ସମାଜ-ମନ୍ଦିରରେ ପ୍ରଣାମ କଲେ କ'ଣ ହୁଏ ?'

''ମନ୍ଦିର ଦେଖିଲେ ତାଙ୍କୁ ହିଁ ମନେପଡ଼େ—ଉଦ୍ଦୀପନ ହୁଏ । ଯେଉଁଠାରେ ତାଙ୍କର କଥା ହୁଏ, ସେହିଠାରେ ତାଙ୍କର ଆବିର୍ଭାବ ହୁଏ, ଆଉ ସମସ୍ତ ତୀର୍ଥ ଉପସ୍ଥିତ ହୁଏ । ଏସବୁ ଜାଗା ଦେଖିଲେ ଭଗବାନଙ୍କୁ ହିଁ ମନେ ପଡ଼େ ।

''ଜଣେ ଭକ୍ତ ବାବଲା ଗଛ ଦେଖି ଭାବାବିଷ୍ଟ ହୋଇଥିଲା—ଏହି କଥା ଭାବି ଯେ ଏହି କାଠରେ ଠାକୁର ରାଧାକାନ୍ତଙ୍କ ବଗିଚା ପାଇଁ କୁରାଢ଼ିର ବେଣ୍ଟ ହୁଏ ।

''ଜଣେ ଭକ୍ତର ଏପରି ଗୁରୁଭକ୍ତି ଯେ ଗୁରୁଙ୍କ ପଡ଼ାର ଲୋକଙ୍କୁ ଦେଖି ଭାବରେ ବିହ୍ୱଳ ହୋଇଗଲା ।

''ମେଘ ଦେଖି—ନୀଳ ବସନ ଦେଖି—ଚିତ୍ରପଟ ଦେଖି—ଶ୍ରୀମତୀଙ୍କ ଚିତ୍ତରେ କୃଷ୍ଣଙ୍କର ରୂପ ଉଦ୍ଦୀପନ ହେଉଥିଲା ! ସେ ଏହିସବୁ ଦେଖି ଉନ୍ମତ୍ତ ପରି 'କେଉଁଠାରେ କୃଷ୍ଣ !' ବୋଲି ବ୍ୟାକୁଳ ହେଉଥିଲେ ।''

ଘୋଷାଲ—ଉନ୍ମାଦ ତ ଭଲ ନୁହେଁ ।

ଶ୍ରୀରାମକୃଷ୍ଣ—ସେ କି କଥା ! ଏ କଅଣ ବିଷୟଚିନ୍ତା କରି ଉନ୍ମାଦ ଯେ ଅଚୈତନ୍ୟ ହେବ ? ଏ ଅବସ୍ଥା ଯେ ଈଶ୍ୱରଚିନ୍ତା କରି ହୁଏ ! ପ୍ରେମୋନ୍ମାଦ, ଜ୍ଞାନୋନ୍ମାଦ—କଅଣ ଶୁଣି ନାହଁ ?

ଜଣେ ବ୍ରାହ୍ମଭକ୍ତ—କି ଉପାୟରେ ତାଙ୍କୁ ଲାଭ କରାଯାଏ ?

ଶ୍ରୀରାମକୃଷ୍ଣ—ତାଙ୍କୁ ଭଲ ପାଇବା । ଆଉ ସଦାସର୍ବଦା ଏହି ବିଚାର—ଈଶ୍ୱର ହିଁ ସତ୍ୟ, ଜଗତ ଅନିତ୍ୟ ।

''ଅଶ୍ୱତ୍ଥ କେବଳ ସତ୍ୟ—ଫଳ ଦୁଇଦିନ ପାଇଁ ।''

ବ୍ରାହ୍ମଭକ୍ତ—କାମ, କ୍ରୋଧ ରିପୁ ରହିଛି, କ'ଣ କରାଯାଇପାରେ ?

ଶ୍ରୀରାମକୃଷ୍ଣ—ଛଅ ରିପୁଙ୍କୁ ଈଶ୍ୱରଙ୍କ ଆଡ଼କୁ ମୁହାଁଇଦିଅ ।

''ଆତ୍ମା ସହିତ ରମଣ କରିବା—ଏହି କାମନା ।

''ଯେଉଁମାନେ ଈଶ୍ୱରଙ୍କର ପଥରେ ବାଧା ଦିଅନ୍ତି, ସେମାନଙ୍କ ଉପରେ କ୍ରୋଧ । ତାଙ୍କୁ ପାଇବା ପାଇଁ ଲୋଭ । 'ମୋର ମୋର' ଯଦି କରିବାକୁ ହୁଏ ତେବେ ତାଙ୍କୁ ନେଇ । ଯେପରି—ମୋର କୃଷ୍ଣ, ମୋର ରାମ । ଯଦି ଅହଂକାର କରିବାକୁ ହୁଏ, ତାହା ହେଲେ ବିଭୀଷଣ ପରି—ମୁଁ ରାମଙ୍କୁ ପ୍ରଣାମ କରିଛି, ଏ ମୁଣ୍ଡ ଆଉ କାହା ନିକଟରେ ଅବନତ କରିବି ନାହିଁ ।''

ବ୍ରାହ୍ମଭକ୍ତ—ସେ ଯଦି ସବୁ କରାଉଛନ୍ତି, ତାହା ହେଲେ ପାପ ପାଇଁ ମୁଁ ଦାୟୀ ନୁହେଁ ?

**ସ୍ୱାଧୀନ ଇଚ୍ଛା—ପାପର ଦାୟିତ୍ୱ**

ଶ୍ରୀରାମକୃଷ୍ଣ (ସହାସ୍ୟ)—ଦୁର୍ଯ୍ୟୋଧନ ଏହି କଥା କହିଥିଲା—'ତ୍ୱୟା ହୃଷୀକେଶ ହୃଦି ସ୍ଥିତେନ, ଯଥା ନିଯୁକ୍ତୋଽସ୍ମି ତଥା କରୋମି ।' ଯାହାର ଠିକ୍ ବିଶ୍ୱାସ—'ଈଶ୍ୱର ହିଁ କର୍ତ୍ତା ଆଉ ମୁଁ ଅକର୍ତ୍ତା'—ତାହାର ପାପ କାମ ହୁଏ ନାହିଁ । ଯିଏ ଠିକ୍ ନାଚି ଜାଣିଛି, ତା'ର ପାଦ ବେତାଳରେ ପଡ଼େ ନାହିଁ ।

''ଅନ୍ତର ଶୁଦ୍ଧ ନ ହେଲେ ଈଶ୍ୱର ଅଛନ୍ତି ବୋଲି ବିଶ୍ୱାସ ମଧ୍ୟ ହୁଏ ନାହିଁ ।''

ଠାକୁର ଉପାସନା-ଗୃହରେ ସମବେତ ଲୋକଙ୍କୁ ଦେଖୁଛନ୍ତି ଓ କହୁଛନ୍ତି—''ମଝିରେ ମଝିରେ ଏପରି ଏକସଙ୍ଗରେ ଈଶ୍ୱରଚିନ୍ତା ଓ ତାଙ୍କର ନାମଗୁଣକୀର୍ତ୍ତନ କରିବା ଖୁବ୍ ଭଲ ।

''ତେବେ ସଂସାରୀ ଲୋକଙ୍କର ଈଶ୍ୱରଙ୍କଠାରେ ଅନୁରାଗ କ୍ଷଣିକ—ଯେପରି ତତଲା ଲୁହାରେ ପାଣିଛିଟା ଦେଲେ ସେଥିରେ ପାଣି ଯେତେ ସମୟ ରହେ !''

**ବ୍ରହ୍ମୋପାସନା ଓ ଶ୍ରୀରାମକୃଷ୍ଣ**

ଏଥର ଉପାସନା ଆରମ୍ଭ ହେବ । ଉପାସନାର ବୃହତ୍ ପ୍ରକୋଷ୍ଠ ବ୍ରାହ୍ମଭକ୍ତ ଦ୍ୱାରା ପରିପୂର୍ଣ୍ଣ ହେଲା । କେତେଜଣ ବ୍ରାହ୍ମିକା ଘରର ଉତ୍ତର ଦିଗରେ ଚୌକିରେ ଆସି ବସିଲେ—ହାତରେ ସଙ୍ଗୀତପୁସ୍ତକ ।

ପିଆନୋ ଓ ହାରମୋନିୟମ୍ ସଂଯୋଗରେ ବ୍ରାହ୍ମସଙ୍ଗୀତ ହେବାକୁ ଲାଗିଲା । ସଙ୍ଗୀତ ଶୁଣି ଠାକୁରଙ୍କର ଆନନ୍ଦର ସୀମା ରହିଲା ନାହିଁ । କ୍ରମେ ଉଦ୍‌ବୋଧନ—ପ୍ରାର୍ଥନା—ଉପାସନା । ବେଦୀରେ ଉପବିଷ୍ଟ ଆଚାର୍ଯ୍ୟଗଣ ବେଦରୁ ମନ୍ତ୍ର ପାଠ କଲେ—

'ଓଁ ପିତା ନୋଽସି ପିତା ନୋ ବୋଧି ନମସ୍ତେଽସ୍ତୁ ମା ମା ହିଂସୀଃ ।'

'ତୁମେ ଆମମାନଙ୍କର ପିତା, ଆମମାନଙ୍କୁ ସଦ୍‌ବୁଦ୍ଧି ଦିଅ—ତୁମକୁ ନମସ୍କାର, ଆମମାନଙ୍କୁ ବିନାଶ କର ନାହିଁ ।'

ବ୍ରାହ୍ମଭକ୍ତଗଣ ସମସ୍ୱରରେ ଆଚାର୍ଯ୍ୟଙ୍କ ସହିତ ବୋଲୁଛନ୍ତି—'ଓଁ ସତ୍ୟଂ ଜ୍ଞାନମନନ୍ତ ବ୍ରହ୍ମ । ଆନନ୍ଦରୂପମମୃତଂ ଯଦ୍‌ବିଭାତି ! ଶାନ୍ତମ୍ ଶିବମଦ୍ୱୈତମ୍ ! ଶୁଦ୍ଧମପାପବିଦ୍ଧମ୍ ।'

ଏଥର ଆଚାର୍ଯ୍ୟଗଣ ସ୍ତବ କରୁଛନ୍ତି—

'ଓଁ ନମସ୍ତେ ସତେ ତେ ଜଗତ୍‌କାରଣାୟ ।
ନମସ୍ତେ ଚିତେ ସର୍ବଲୋକାଶ୍ରୟାୟ ।...'

ସ୍ତୋତ୍ର ପାଠ ପରେ ଆଚାର୍ଯ୍ୟମାନେ ପ୍ରାର୍ଥନା କରୁଛନ୍ତି—

'ଅସତୋ ମା ସଦ୍‌ଗମୟ ।
ତମସୋ ମା ଜ୍ୟୋତିର୍ଗମୟ ।
ମୃତ୍ୟୋର୍ମାଽମୃତଂ ଗମୟ ।
ଆବିରାବିର୍ମଏଧି ।
ରୁଦ୍ରଂ ଯତ୍ତେ ଦକ୍ଷିଣଂ ମୁଖଂ ତେନ ମାଂ ପାହି ନିତ୍ୟମ୍ ।

ସ୍ତୋତ୍ରାଦି ପାଠ ଶୁଣି ଠାକୁର ଭବାବିଷ୍ଟ ହେଉଛନ୍ତି । ଏଥର ଆଚାର୍ଯ୍ୟ ପ୍ରବନ୍ଧ ପାଠ କରୁଛନ୍ତି ।'

ଉପାସନା ସମାପ୍ତ ହେଲା । ଭକ୍ତମାନଙ୍କୁ ଲୁଚି ମିଷ୍ଟାନ୍ନ ଆଦି ଖୁଆଇବାର ଉଦ୍‌ଯୋଗ ହେଉଛି । ବ୍ରାହ୍ମଭକ୍ତମାନେ ଅଧିକାଂଶ ତଳ ପ୍ରାଙ୍ଗଣରେ ଓ ବାରଣ୍ଡାରେ ବାୟୁ ସେବନ କରୁଛନ୍ତି ।

ରାତି ନଅଟା ହେଲା । ଠାକୁରଙ୍କୁ ଦକ୍ଷିଣେଶ୍ୱର ମନ୍ଦିରକୁ ଫେରିଯିବାକୁ ହେବ । ଗୃହସ୍ୱାମୀମାନେ ଆହୂତ ସଂସାରୀ ଭକ୍ତମାନଙ୍କୁ ନେଇ ଚର୍ଚ୍ଚା କରୁ କରୁ ଏତେ ବ୍ୟତିବ୍ୟସ୍ତ ହୋଇଛନ୍ତି ଯେ ଠାକୁରଙ୍କର ଆଉ କୌଣସି ସମ୍ବାଦ ନେଇପାରୁ ନାହାନ୍ତି ।

ଶ୍ରୀରାମକୃଷ୍ଣ (ରାଖାଲ ପ୍ରଭୃତିଙ୍କ ପ୍ରତି)—କିରେ, କେହି ଡାକୁନାହାନ୍ତି ଯେ ।

ରାଖାଲ (ସକ୍ରୋଧ)—ମହାଶୟ, ଚାଲି ଆସନ୍ତୁ—ଦକ୍ଷିଣେଶ୍ୱରକୁ ଯିବା ।

ଶ୍ରୀରାମକୃଷ୍ଣ—(ସହାସ୍ୟ)—ଆରେ ରହ—ଗାଡ଼ିଭଡ଼ା ତିନିଟଙ୍କା ଦୁଇଅଣା କିଏ ଦେବ ? ଅଭିମାନ କଲେ ହୁଏ ନାହିଁ । ପଇସା ନାହିଁ, ପୁଣି ଫାଙ୍କା ଅଭିମାନ ! ଆଉ ଏତେ ରାତିରେ ଖାଇବା କେଉଁଠି ?

ବହୁ ସମୟ ପରେ ଶୁଣାଗଲା, ପତ୍ର ପଡ଼ିଲାଣି । ସବୁ ଭକ୍ତମାନଙ୍କୁ ଏକ ସଙ୍ଗରେ ଡକାଗଲା । ସେହି ଭିଡ଼ରେ ଠାକୁର ରାଖାଲ ପ୍ରଭୃତିଙ୍କ ସଙ୍ଗରେ ଦ୍ୱିତଳକୁ ଜଳଯୋଗ କରିବାକୁ ଗଲେ । ଭିଡ଼ରେ ବସିବାକୁ ଜାଗା ମିଳୁନାହିଁ । ବହୁ କଷ୍ଟରେ ଠାକୁରଙ୍କୁ ଗୋଟିଏ ପାଖରେ ବସାଗଲା । ସ୍ଥାନଟି ଅପରିଷ୍କାର । ଜଣେ ରାନ୍ଧୁଣୀ ବ୍ରାହ୍ମଣୀ ତରକାରୀ ପରିବେଷଣ କଲା—ଠାକୁରଙ୍କର ତରକାରୀ ଖାଇବାକୁ ପ୍ରବୃତ୍ତି ହେଲା ନାହିଁ । ସେ ଲୁଣ ଦେଇ ଲୁଚି ଖାଇଲେ ଓ କିଞ୍ଚିତ୍ ମିଷ୍ଟାନ୍ନ ଗ୍ରହଣ କଲେ ।

ଠାକୁର ଦୟାସିନ୍ଧୁ । ଗୃହସ୍ୱାମୀମାନଙ୍କର ଯୁବକ ବୟସ । ସେମାନେ ତାଙ୍କର ପୂଜା କରି ଜାଣନ୍ତି ନାହିଁ ବୋଲି ସେ କାହିଁକି ବିରକ୍ତ ହେବେ ? ସେ ନ

ଖାଇ ଚାଲିଗଲେ ଯେ ସେମାନଙ୍କର ଅମଙ୍ଗଳ ହେବ ! ଆଉ ସେମାନେ ଯେ ଈଶ୍ୱରଙ୍କୁ ଉଦ୍ଦେଶ୍ୟ କରି ଏହି ସମସ୍ତ ଆୟୋଜନ କରିଛନ୍ତି !

ଭୋଜନ ପରେ ଠାକୁର ଗାଡ଼ିରେ ଉଠିଲେ । ଗାଡ଼ିଭଡ଼ା କିଏ ଦେବେ ? ଗୃହସ୍ୱାମୀମାନଙ୍କର ଦେଖା ମିଳୁନାହିଁ । ଠାକୁର ଗାଡ଼ିଭଡ଼ା ସମ୍ବନ୍ଧରେ ଭକ୍ତମାନଙ୍କୁ ହସି ହସି କହିଥିଲେ —

''ଗାଡ଼ିଭଡ଼ା ମଗାଗଲା । ପ୍ରଥମେ ମନା କରିଦେଲେ । ତାହା ପରେ ଅତି କଷ୍ଟରେ ତିନିଟଙ୍କା ମିଳିଲା, ଦୁଇଅଣା ଆଉ ମିଳିଲା ନାହିଁ । କହିଲେ, ଏଇଥିରେ ହୋଇଯିବ ।''

# ଦ୍ୱାବିଂଶ ପରିଚ୍ଛେଦ

## (୧)

## ଶ୍ରୀରାମକୃଷ୍ଣ ହରିକୀର୍ତ୍ତନାନନ୍ଦରେ—ହରିଭକ୍ତି-ପ୍ରଦାୟିନୀ ସଭାରେ ଓ ରାମଚନ୍ଦ୍ରଙ୍କ ଗୃହରେ

ଠାକୁର ଶ୍ରୀରାମକୃଷ୍ଣ କଲିକତାରେ କଂସାରୀପଡ଼ାର ହରିଭକ୍ତି-ପ୍ରଦାୟିନୀ ସଭାକୁ ଶୁଭାଗମନ କରିଛନ୍ତି । ରବିବାର, ବୈଶାଖ ୩୧ ଦିନ ଶୁକ୍ଳା ସପ୍ତମୀ, ୧୩ ମେ ୧୮୮୩ । ଆଜି ସଭାର ବାର୍ଷିକ ଉତ୍ସବ ହେଉଛି । ମନୋହର ସାଇଁଙ୍କର କୀର୍ତ୍ତନ ହେଉଛି ।

**ମାନ** ଏହି ପାଲା ଗୀତ ହେଉଛି । ସଖୀମାନେ ଶ୍ରୀମତୀଙ୍କୁ କହୁଛନ୍ତି— 'ମାନ କାହିଁକି କଲୁ ? ତେବେ ତୁ ବୋଧହୁଏ କୃଷ୍ଣଙ୍କର ସୁଖ ଚାହୁଁ ନାହୁଁ !' ଶ୍ରୀମତୀ କହୁଛନ୍ତି—'ଚନ୍ଦ୍ରାବଳୀର କୁଞ୍ଜକୁ ଯିବା ପାଇଁ ନୁହେଁ । ସେଠାକୁ ସେ କାହିଁକି ଯିବେ ? ସେ ଯେ ସେବା ଜାଣେ ନା !'

ତା'ପରେ ରବିବାର (୨୦. ୫. ୮୩) ରାମଚନ୍ଦ୍ରଙ୍କ ଗୃହରେ ପୁଣି କୀର୍ତ୍ତନ ହେଉଛି । ମାଥୁର ସଙ୍ଗୀତ । ଠାକୁର ଆସିଛନ୍ତି । ବୈଶାଖ ଶୁକ୍ଳା ଚତୁର୍ଦ୍ଦଶୀ, ୭ ଜ୍ୟେଷ୍ଠ । ମାଥୁର ଗୀତ ହେଉଛି—ଶ୍ରମତୀ ଶ୍ରୀକୃଷ୍ଣଙ୍କୁ ବିରହରେ ଅନେକ କଥା କହୁଛନ୍ତି—'ବାଳିକା ଅବସ୍ଥାରୁ ହିଁ ଶ୍ୟାମଙ୍କୁ ଦେଖିବାକୁ ଭଲପାଏ । ସଖି, ଦିନ ଗଣିବାରେ ମୋ ନଖ ସବୁ କ୍ଷୟ ହୋଇଯାଇଛି । ଦେଖ, ସେ ଯେଉଁ ମାଳା ଦେଇଛନ୍ତି, ସେ ମାଳା ଶୁଖିଗଲାଣି, ତଥାପି ପକାଇ ଦେଇନାହିଁ । କୃଷ୍ଣଚନ୍ଦ୍ରଙ୍କର ଉଦୟ କେଉଁଠି ହେଲା ? ସେ ଚନ୍ଦ୍ର, ମାନ ରାହୁ ଭୟରେ ବୋଧହୁଏ ଲୁଚିଗଲା ! ହାୟ, ସେହି କୃଷ୍ଣ-ମେଘର ପୁଣି କେବେ ଦର୍ଶନ ହେବ ? ଆଉ କଅଣ ଦେଖା ହେବ ! ବନ୍ଧୁ, ପ୍ରାଣଭରି ତୁମକୁ କେବେହେଲେ ଦେଖିପାରି ନାହିଁ; ଏକେ ତ ଦୁଇଟିଆଖି, ସେଥିରେ ଆଖିପିଛୁଳା ଆଉ ବାରିଧାରା । ତାଙ୍କ ଶିରରେ ମୟୂରପୁଚ୍ଛ ଯେପରି ସ୍ଥିର ବିଜୁଳି । ମୟୂରଗଣ ସେହି ମେଘ ଦେଖି ପୁଚ୍ଛ ଟେକି ନୃତ୍ୟ କରନ୍ତି !'

'ସଖି ଏ ପ୍ରାଣ ତ ରହିବ ନାହିଁ—ରଖ ଦେହ ତମାଳ ଡାଳରେ, ଆଉ ମୋ'ର ଦେହରେ କୃଷ୍ଣନାମ ଲେଖିଦିଅ !'

ଶ୍ରୀରାମକୃଷ୍ଣ କହୁଛନ୍ତି, ''ସେ ଆଉ ତାଙ୍କର ନାମ ଅଭେଦ; ତେଣୁ ଶ୍ରୀମତୀ ଏପରି କହୁଛନ୍ତି । ଯେ ରାମ, ସେ ହିଁ ନାମ ।'' ଠାକୁର ଭାବାବିଷ୍ଟ ହୋଇ ଏହି ମାଥୁର କୀର୍ତ୍ତନ ଶୁଣୁଛନ୍ତି । ଗୋସ୍ୱାମୀ କୀର୍ତ୍ତନୀଆ ଏହିସବୁ ଗୀତ ଗାଉଛନ୍ତି । ଆଗାମୀ ରବିବାର ପୁଣି ଦକ୍ଷିଣେଶ୍ୱର ମନ୍ଦିରରେ ଏହି ଗୀତ ହେବ । ତା'ପରେ ଶନିବାର ପୁଣି ଅଧରଙ୍କ ଘରେ ଏହି କୀର୍ତ୍ତନ ହେବ ।

## (୨)

## ଦକ୍ଷିଣେଶ୍ୱର ମନ୍ଦିରରେ ଭକ୍ତସଙ୍ଗରେ ଶ୍ରୀରାମକୃଷ୍ଣ

ଠାକୁର ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱର ମନ୍ଦିରରେ ନିଜ ଘରେ ଠିଆ ହୋଇଛନ୍ତି ଓ ଭକ୍ତଙ୍କ ସହିତ କଥା କହୁଛନ୍ତି । ଆଜି ରବିବାର, ଜ୍ୟେଷ୍ଠ ୧୪ ଦିନ କୃଷ୍ଣା ପଞ୍ଚମୀ, ୨୭ ମେ ୧୮୮୩ । ସମୟ ୯ଟା ହେବ । ଭକ୍ତମାନେ କ୍ରମେ କ୍ରମେ ଆସି ଜୁଟୁଛନ୍ତି ।

ଶ୍ରୀରାମକୃଷ୍ଣ (ମାଷ୍ଟର ପ୍ରଭୃତି ଭକ୍ତମାନଙ୍କ ପ୍ରତି)—ବିଦ୍ୱେଷ ଭାବ ଭଲ ନୁହେଁ । ଶାକ୍ତ, ବୈଷ୍ଣବ, ବୈଦାନ୍ତିକ ଏମାନେ ଝଗଡ଼ା କରନ୍ତି, ସେଇଟା ଭଲ ନୁହେଁ । ପଦ୍ମଲୋଚନ ବର୍ଦ୍ଧମାନର ସଭାପଣ୍ଡିତ ଥିଲା । ସଭାରେ ବିଚାର ହେଉଥିଲା, ଶିବ ବଡ଼ ନା ବ୍ରହ୍ମା ବଡ଼ । ପଦ୍ମଲୋଚନ ବେଶ୍ କହିଥିଲା — ମୁଁ ଜାଣେ ନାହିଁ, ମୋ ସଙ୍ଗରେ ଶିବଙ୍କର କଥାବାର୍ତ୍ତା ହୋଇ ନାହିଁ, ବ୍ରହ୍ମାଙ୍କର ମଧ୍ୟ କଥାବାର୍ତ୍ତା ହୋଇ ନାହିଁ । (ସମସ୍ତଙ୍କର ହାସ୍ୟ)

''ବ୍ୟାକୁଳତା ଥିଲେ ସବୁ ପଥ ଦେଇ ତାଙ୍କୁ ଲାଭ କରାଯାଏ । ତେବେ ନିଷ୍ଠା ଥିବା ଭଲ । ନିଷ୍ଠାଭକ୍ତିର ଆଉ ଗୋଟିଏ ଅବ୍ୟଭିଚାରିଣୀ ଭକ୍ତି । ଯେପରି ଗୋଟିଏ ଡାଳର ଗଛ, ସିଧା ଉଠୁଛି । ବ୍ୟଭିଚାରିଣୀ ଭକ୍ତି ଯେପରି ପାଞ୍ଚଶାଖାଯୁକ୍ତ ଗଛ । ଗୋପୀମାନଙ୍କର ଏପରି ନିଷ୍ଠା ଯେ ବୃନ୍ଦାବନର ମୋହନଚୂଡ଼ା, ପୀତବସ୍ତ୍ର ପିନ୍ଧା ଗୋପାଳକୃଷ୍ଣ ଛଡ଼ା ଆଉ କିଛ ଭଲ ପାଇବେ ନାହିଁ । ମଥୁରାର ଯେତେବେଳେ ରାଜବେଶ, ମୁଣ୍ଡରେ ପଗଡ଼ିଥିବା କୃଷ୍ଣଙ୍କୁ ଦର୍ଶନ କଲେ ସେତେବେଳେ ସେମାନେ ଓଢ଼ଣା ଦେଲେ । ଆଉ କହିଲେ, 'ଏ ପୁଣି କିଏ ? ଏହାଙ୍କ ସହିତ ଆଳାପ କରି ଆମେମାନେ କଅଣ ଦୋଚାରୁଣୀ ହେବୁ !'

''ସ୍ତ୍ରୀ ସ୍ୱାମୀର ଯେଉଁ ସେବା କରେ ତାହା ମଧ୍ୟ ନିଷ୍ଠାଭକ୍ତି; ଦିଅର ଦେଢ଼ଶୁରଙ୍କୁ ଖୁଆଏ, ଗୋଡ଼ ଧୋଇବାକୁ ପାଣି ଦିଏ; କିନ୍ତୁ ସ୍ୱାମୀ ସହିତ ଅନ୍ୟ ସମ୍ବନ୍ଧ । ସେହିପରି ନିଜ ଧର୍ମରେ ନିଷ୍ଠା ହୋଇପାରେ । ତାହା ବୋଲି ଅନ୍ୟ ଧର୍ମକୁ ଘୃଣା କରିବ ନାହିଁ । ବରଂ ସେମାନଙ୍କ ସଙ୍ଗରେ ମିଠା ବ୍ୟବହାର କରିବ ।''

### ଜଗନ୍ମାତାଙ୍କର ପୂଜା ଓ ଆତ୍ମପୂଜା — ବିପଦନାଶିନୀ ମନ୍ତ୍ର ଓ ନୃତ୍ୟ

ଠାକୁର ଗଙ୍ଗାସ୍ନାନ କରି କାଳୀମନ୍ଦିରକୁ ଯାଉଛନ୍ତି । ସଙ୍ଗରେ ମାଷ୍ଟର । ଠାକୁର ପୂଜା-ଆସନରେ ଉପବିଷ୍ଟ ହୋଇ ମାଆଙ୍କ ପାଦପଦ୍ମରେ ଫୁଲ ଦେଉଛନ୍ତି । ମଝିରେ ମଝିରେ ନିଜ ମୁଣ୍ଡରେ ମଧ୍ୟ ଦେଉଛନ୍ତି ଓ ଧ୍ୟାନ କରୁଛନ୍ତି ।

ବହୁ ସମୟ ପରେ ଠାକୁର ଆସନରୁ ଉଠିଲେ । ଭାବରେ ବିଭୋର, ନୃତ୍ୟ କରୁଛନ୍ତି । ଆଉ ମୁଖରେ ମାଆଙ୍କର ନାମ କରୁଛନ୍ତି । କହୁଛନ୍ତି, ''ମା, ବିପଦନାଶିନୀ, ଗୋ ବିପଦନାଶିନୀ !'' ଦେହଧାରଣ କଲେ ହିଁ ଦୁଃଖ ବିପଦ

ତେଣୁ ବୋଧହୁଏ ଜୀବକୁ ଶିଖାଉଛନ୍ତି ତାହାଙ୍କୁ 'ବିପଦନାଶିନୀ' ଏହି ମହାମନ୍ତ୍ର ଉଚ୍ଚାରଣ କରି କାତର ହୋଇ ଡାକିବାକୁ ।

**ପୂର୍ବକଥା — ରାମକୃଷ୍ଣ ଓ ଝାମାପୁକୁରର ନକୁଡ଼ ବାବାଜୀ ।**

ଏଥର ଠାକୁର ନିଜ ଘରର ପଶ୍ଚିମ ବାରଣ୍ଡାରେ ଆସି ଉପବିଷ୍ଟ ହୋଇଛନ୍ତି । ବର୍ତ୍ତମାନ ମଧ୍ୟ ଭାବାବେଶ ରହିଛି । ପାଖରେ ରାଖାଲ, ମାଷ୍ଟର, ନକୁଡ଼ ବୈଷ୍ଣବ ପ୍ରଭୃତି । ନକୁଡ଼ ବୈଷ୍ଣବଙ୍କୁ ଠାକୁର ୨୮ / ୨୯ ବର୍ଷ ହେଲା ଜାଣନ୍ତି । ଯେତେବେଳେ ସେ ପ୍ରଥମେ କଲିକତାକୁ ଆସି ଝାମାପୁକୁରରେ ଥିଲେ ଓ ଘରେ ଘରେ ପୂଜା କରି ବୁଲୁଥିଲେ ସେତେବେଳେ ନକୁଡ଼ ବୈଷ୍ଣବର ଦୋକାନରେ ଆସି ମଝିରେ ମଝିରେ ବସୁଥିଲେ ଓ ଆନନ୍ଦ କରୁଥିଲେ । ପେନେଟୀର ରାଘବ ପଣ୍ଡିତଙ୍କର ମହୋତ୍ସବ ଉପଲକ୍ଷରେ ନକୁଡ଼ ବାବାଜୀ ଇଦାନୀଂ ଠାକୁରଙ୍କୁ ପ୍ରାୟ ପ୍ରତିବର୍ଷ ଦର୍ଶନ କରନ୍ତି । ନକୁଡ଼ ଭକ୍ତ ବୈଷ୍ଣବ, ମଝିରେ ମଝିରେ ସେ ମଧ୍ୟ ମହୋତ୍ସବ କରନ୍ତି । ନକୁଡ଼ ମାଷ୍ଟରଙ୍କର ପ୍ରତିବେଶୀ । ଠାକୁର ଝାମାରପୁକୁରରେ ଯେତେବେଳେ ଥିଲେ, ଗୋବିନ୍ଦ ଚାଟାର୍ଜିଙ୍କ ଘରେ ରହୁଥିଲେ । ସେହି ପୁରାତନ ଘର ମାଷ୍ଟରଙ୍କୁ ନକୁଡ଼ ଦେଖାଉଥିଲେ ।

**ଶ୍ରୀରାମକୃଷ୍ଣ ଜଗନ୍ମାତାଙ୍କର ନାମ କୀର୍ତ୍ତନାନନ୍ଦରେ**

ଠାକୁର ଭାବାବେଶରେ ଗାଉଛନ୍ତି —

''ସଦାନନ୍ଦମୟୀ କାଲୀ (ମହାକାଲେର ମନମୋହିନୀ)
ତୁମି ଆପନ ସୁଖେ ଆପନି ନାଚ ମା ଆପନି ଦାଓ ମା କରତାଲି ।
''ଆମାର ମା ତ୍ୱଂ ହି ତାରା,
ତୁମି ତ୍ରିଗୁଣଧରା ପରାତ୍ପରା
ଆମି ଜାନି ମା ଓ ଦୀନ-ଦୟାମୟୀ ତୁମି ଦୁର୍ଗମେତେ ଦୁଃଖହରା ।...
''ଗୋଲମାଲେ ମାଲ ରୟେଛେ, ଗୋଲ ଛେଡ଼େ ମାଲ ବେଛେ ନାଓ ।...
''ମନ ଚଲ ଯାଇ, ଆର କାଜ ନାଇ, ତାରାର ଓ ତାଲୁକେ ରେ ।...
''ପଡ଼ିୟେ ଭବସାଗରେ, ଡୋବେ  ମା ତନୁର ତରୀ,
ମାୟା-ଝଡ଼ ମୋହ-ତୋଫାନ କ୍ରମେ ବାଡ଼େ ଗୋ ଶଙ୍କରୀ !...
''ମାୟେ ପୋୟେ ଦୁଟୋ ଦୁଃଖେର କଥା କଇ ।
କାରୁର ହାତୀର ଉପର ଛଇ,
କାରୁ ଚିଁଡ଼େର ଉପର ଖାସା ଦଇ ।''

ଶ୍ରୀରାମକୃଷ୍ଣ ଭକ୍ତମାନଙ୍କୁ କହୁଛନ୍ତି, ''ସଂସାରୀମାନଙ୍କ ସମ୍ମୁଖରେ କେବଳ ଦୁଃଖର କଥା ଭଲ ନୁହେଁ । ଆନନ୍ଦ ଦରକାର । ଯେଉଁମାନଙ୍କର ଅନ୍ନାଭାବ, ସେମାନେ ଦୁଇଦିନ ବରଂ ଉପାସ କରିପାରନ୍ତି; ଆଉ ଯାହାଙ୍କର ଖାଇବାରେ

ଟିକିଏ ଡେରି ହେଲେ ଦେହ ଖରାପ ହୁଏ, ସେମାନଙ୍କ ପାଖରେ କେବଳ କାନ୍ଦର କଥା ଦୁଃଖର କଥା ଭଲ ନୁହେଁ ।

''ବୈଷ୍ଣବ ଚରଣ କହନ୍ତି, 'କେବଳ ପାପ ପାପ, ଏସବୁ କଅଣ ? ଆନନ୍ଦ କର' !''

ଠାକୁର ଆହାରାନ୍ତେ ଟିକିଏ ବିଶ୍ରାମ କରୁ ନ କରୁଣୁ ମନୋହର ସାଇଁ ଗୋସ୍ୱାମୀ ଆସି ଉପସ୍ଥିତ ।

**ଶ୍ରୀରାଧାଙ୍କର ଭାବରେ ମହାଭାବମୟ ଶ୍ରୀରାମକୃଷ୍ଣ ।**

**ଠାକୁର କଅଣ ଗୌରାଙ୍ଗ ?**

ଗୋସ୍ୱାମୀ ପୂର୍ବଭାଗ କୀର୍ତ୍ତନ କରୁଛନ୍ତି । ଟିକିଏ ଶୁଣୁ ଶୁଣୁ ଠାକୁର ରାଧାଙ୍କ ଭାବରେ ଭାବାବିଷ୍ଟ ।

ପ୍ରଥମେ ଗୌରଚନ୍ଦ୍ରିକା କୀର୍ତ୍ତନ । 'କରତଲେ ହାତ—ଚିନ୍ତିତ—ଗୋରା ଆଜ କେନ ଚିନ୍ତିତ ? —ବୁଝି ରାଧାର ଭାବେ ହୟେଛେ ଭାବିତ ।'

ଗୋସ୍ୱାମୀ ପୁଣି ଗାଉଛନ୍ତି—

'ଘରେର ବାହିରେ, ଦଣ୍ଡେ ଶତବାର, ତିଲେ ତିଲେ ଆସେ ଯାୟ ।
କିବା ମନ ଉଚ୍ଚାଟନ, ନିଃଶ୍ୱାସ ସଘନ, କଦମ୍ବ କାନନେ ଚାୟ ।
(ରାଇ ଏମନ କେନ ବା ହଲୋ ଗୋ !')

ଗୀତର ଏହି ଧାଡ଼ିଟି ଶୁଣି ଠାକୁର ଶ୍ରୀରାମକୃଷ୍ଣଙ୍କର ମହାଭାବର ଅବସ୍ଥା ହୋଇଛି । ଦେହର ଜାମା ଛିଣ୍ଡାଇ ପକାଇ ଦେଲେ ।

କୀର୍ତ୍ତନୀଆମାନେ ଯେତେବେଳେ ଗାଉଛନ୍ତି—

'ଶୀତଲ ତରୁ-ଅଙ୍ଗ ।
ତନୁ ପରଶେ, ଅମନି ଅବଶ ଅଙ୍ଗ ।'

ମହାଭାବରେ ଠାକୁରଙ୍କର କମ୍ପ ହେଉଛି !

(କେଦାରଙ୍କୁ ଦେଖି) ଠାକୁର କୀର୍ତ୍ତନ ସ୍ୱରରେ କହୁଛନ୍ତି, ''ପ୍ରାଣନାଥ, ହୃଦୟବଲ୍ଲଭ ! ତୁମେସବୁ କୃଷ୍ଣଙ୍କୁ ଆଣିଦିଅ । ଏହା ତ ସୁହୃଦର କାମ; ହୁଏତ ଆଣିଦିଅ, ନୋହିଲେ ମୋତେ ନେଇ ଚାଲ; ତୁମର ଚିରଦାସୀ ହେବି ।''

ଗୋସ୍ୱାମୀ କୀର୍ତ୍ତନୀଆ ଠାକୁରଙ୍କର ମହାଭାବର ଅବସ୍ଥା ଦେଖି ମୁଗ୍ଧ ହୋଇଛନ୍ତି । ସେ କରଯୋଡ଼ି କହୁଛନ୍ତି, ''ମୋର ବିଷୟବୁଦ୍ଧି ଘୁଞ୍ଚାଇଦିଅ !''

ଶ୍ରୀରାମକୃଷ୍ଣ(ସହାସ୍ୟ)—'ସାଧୁ ବସା ପକଡ଼ ଲିୟା !' ତୁମେ ଏତେ ରସିକ ! ତୁମ ଭିତରୁ ଏତେ ମିଠା ରସ ବାହାରୁଛି !

ଗୋସ୍ୱାମୀ—ପ୍ରଭୁ, ମୁଁ ଚିନିର ବଳଦ, ଚିନିର ଆସ୍ୱାଦନ ଆଉ ପାଇଲି କୁଆଡୁ !

ପୁଣି କୀର୍ତ୍ତନ ହେଲା । କୀର୍ତ୍ତନୀଆ ଶ୍ରୀମତୀଙ୍କର ଦଶା ବର୍ଣ୍ଣନା କରୁଛନ୍ତି — 'କୋକିଳକୁଳ କୁର୍ବତି କଳନାଦମ୍ ।'

କୋକିଳର କଳନାଦ ଶୁଣି ଶ୍ରୀମତୀଙ୍କର ବଜ୍ରଧ୍ୱନି ବୋଲି ମନେହେଉଛି । ତେଣୁ ଜୈମିନୀଙ୍କର ନାମ ନେଉଛନ୍ତି । ଆଉ କହୁଛନ୍ତି, 'ସଖି, କୃଷ୍ଣ-ବିରହରେ ଏ ପ୍ରାଣ ରହିବ ନାହିଁ, ଦେହ ତମାଳ-ଡାଳରେ ରଖ ।'

ଗୋସ୍ୱାମୀ ରାଧାଶ୍ୟାମଙ୍କର ମିଳନ ଗାଇ କୀର୍ତ୍ତନ ସମାପ୍ତ କଲେ ।

# ତ୍ରୟୋବିଂଶ ପରିଚ୍ଛେଦ

## (୧)

## କଲିକତାରେ ବଳରାମ, ରାମ ଓ ଅଧରଙ୍କ ଗୃହରେ ଶ୍ରୀରାମକୃଷ୍ଣ

ଠାକୁର ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱର ମନ୍ଦିରଠାରୁ କଲିକତା ଆସୁଛନ୍ତି । ବଳରାମଙ୍କ ଘର ହୋଇ ଅଧରଙ୍କ ଘରକୁ ଯିବେ । ଅଧରଙ୍କ ଘରଠାରେ ମନୋହର ସାଇଁଙ୍କ କୀର୍ତ୍ତନ ହେବ । ରାମଙ୍କ ଘରେ କଥକତା ହେବ । ଆଜି ଶନିବାର, ୨୦ ଦିନ ଜ୍ୟେଷ୍ଠ କୃଷ୍ଣା ଦ୍ୱାଦଶୀ, ୨ ଜୁନ ୧୮୮୩ ।

ଠାକୁର ଗାଡ଼ିରେ ଆସୁ ଆସୁ ରାଖାଲ ଓ ମାଷ୍ଟର ପ୍ରଭୃତି ଭକ୍ତମାନଙ୍କୁ କହୁଛନ୍ତି, ''ଦେଖ ତାଙ୍କ ପ୍ରତି ପ୍ରେମ ହେଲେ ପାପତାପସବୁ ପଳାଇଯାଏ; ସୂର୍ଯ୍ୟଙ୍କ ତାପରେ ଯେପରି ଖୁବ୍ ଖୋଲା ଜାଗାରେ ଥିବା ପୋଖରୀରେ ପାଣି ଶୁଖିଯାଏ ।

### ସନ୍ନ୍ୟାସୀ ଓ ଗୃହସ୍ଥର ବିଷୟାସକ୍ତି

''ବିଷୟ ଉପରେ, କାମିନୀ-କାଞ୍ଚନ ଉପରେ ଆସକ୍ତି ରହିଲେ ହୁଏ ନାହିଁ । ସନ୍ନ୍ୟାସ ନେଲେ ମଧ୍ୟ ହୁଏ ନାହିଁ, ଯଦି ବିଷୟାସକ୍ତି ରହେ । ଯେପରି ଛେପ ପକାଇ ପୁଣି ଛେପ ଖାଇବା ।''

କିୟତ୍‌କ୍ଷଣ ପରେ ଗାଡ଼ିରେ ଠାକୁର ପୁଣି କହୁଛନ୍ତି, ''ବ୍ରହ୍ମଜ୍ଞାନୀମାନେ ସାକାର ମାନନ୍ତି ନାହିଁ । (ସହାସ୍ୟ) ନରେନ୍ଦ୍ର କହିଲା, 'ପୁତ୍ତଳିକା' , ପୁଣି କହିଲା, 'ସେ ଏବେ ମଧ୍ୟ କାଳୀମନ୍ଦିରକୁ ଯାଆନ୍ତି' !''

ଠାକୁର ବଳରାମଙ୍କ ଘରକୁ ଆସିଛନ୍ତି । ୪ଟା ବେଳେ ଯଜ୍ଞନାଥ ନନ୍ଦନବଗିଚାରୁ ଠାକୁରଙ୍କୁ ନିମନ୍ତ୍ରଣ କରିବାକୁ ଆସିଛନ୍ତି । ନନ୍ଦନବଗିଚାରେ ସେମାନଙ୍କ ଘରେ ବ୍ରାହ୍ମସମାଜର ପ୍ରତିବର୍ଷ ଉତ୍ସବ ହୁଏ । ଯଜ୍ଞନାଥ କହୁଛନ୍ତି, ''ଆପଣ ଶୀଘ୍ର ଆସିବେ ।'' ଠାକୁର କହିଲେ, ''ଦେହ ଯଦି ଭଲ ଥାଏ, ସକାଳେ ଆସିବାରେ ଆପତ୍ତି ନାହିଁ ।''

### ଶ୍ରୀରାମକୃଷ୍ଣ ଏବଂ ନରଲୀଳା ଦର୍ଶନ ଓ ଆସ୍ୱାଦନ

ଯଜ୍ଞନାଥ ଚାଲିଗଲେ । ଠାକୁର ହଠାତ୍ ଭାବାବିଷ୍ଟ ହୋଇଛନ୍ତି । ବୋଧହୁଏ ଦେଖୁଛନ୍ତି, ଈଶ୍ୱର ହିଁ ଜୀବ-ଜଗତ୍ ହୋଇ ରହିଛନ୍ତି, ଈଶ୍ୱର ହିଁ ମନୁଷ୍ୟ ହୋଇ ବୁଲୁଛନ୍ତି । ଜଗନ୍ମାତାଙ୍କୁ କହୁଛନ୍ତି, ''ମା, ଏ କଅଣ ଦେଖାଉଛ ? ରହ, ପୁଣି କେତେ କଅଣ ! ରାଖାଲ-ଟାଖାଲଙ୍କୁ ଦେଇ କଅଣ ଦେଖାଉଛ ? ରୂପ ପ୍ରଭୃତି ସବୁ ଉଡ଼ିଗଲା ! ତେବେ ମା ମନୁଷ୍ୟ ତ କେବଳ ଖୋଳଟା । ଖୋଳ ଛଡ଼ା ତ କିଛି ନୁହେଁ ! ଚୈତନ୍ୟ ତୁମରି ।

''ମା, ଇଦାନୀଂ ବ୍ରହ୍ମଜ୍ଞାନୀମାନେ ମିଠା ରସ ପାଇନାହାନ୍ତି । ଚକ୍ଷୁ ଶୁଷ୍କ, ମୁଖ ଶୁଷ୍କ, ପ୍ରେମଭକ୍ତି ନ ହେଲେ କିଛି ହେଲା ନାହିଁ ।

''ମା, ତୁମକୁ କହିଥିଲି, ଜଣଙ୍କୁ ସଙ୍ଗୀ କରିଦିଅ, ମୋରି ପରି । ତେଣୁ ବୋଧହୁଏ ରାଖାଲଙ୍କୁ ଦେଇଛ ।''

**ଅଧରଙ୍କ ଘରେ ହରି–କୀର୍ତ୍ତନାନନ୍ଦରେ**

ଠାକୁର ଅଧରଙ୍କ ଘରକୁ ଆସିଛନ୍ତି । ମନୋହର ସାଇଁଙ୍କ କୀର୍ତ୍ତନର ଆୟୋଜନ ହୋଇଛି ।

ଅଧରଙ୍କର ବୈଠକଖାନାରେ ଅନେକଗୁଡ଼ିଏ ଭକ୍ତ ଓ ପ୍ରତିବେଶୀ ଠାକୁରଙ୍କୁ ଦର୍ଶନ କରିବାକୁ ଆସିଛନ୍ତି । ସମସ୍ତଙ୍କର ଇଚ୍ଛା ଠାକୁର କିଛି କୁହନ୍ତୁ ।

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି) —ସଂସାର ଆଉ ମୁକ୍ତି ଦୁଇଟିଯାକ ଈଶ୍ୱରଙ୍କର ଇଚ୍ଛା ! ସେ ହିଁ ସଂସାରରେ ଅଜ୍ଞାନ କରି ରଖିଛନ୍ତି, ପୁଣି ସେ ହିଁ ଇଚ୍ଛା କରି ଯେତେବେଳେ ଡାକିବେ ସେତେବେଳେ ମୁକ୍ତି ହେବ । ପୁଅ ଖେଳିବାକୁ ଯାଇଛି, ଖାଇବା ସମୟରେ ମା' ଡାକନ୍ତି ।

''ଯେତେବେଳେ ସେ ମୁକ୍ତି ଦେବେ, ସେତେବେଳେ ସେ ସାଧୁସଙ୍ଗ କରାଇ ନିଅନ୍ତି । ପୁଣି ତାଙ୍କୁ ପାଇବା ପାଇଁ **ବ୍ୟାକୁଳତା** ଆଣିଦିଅନ୍ତି ।''

ପ୍ରତିବେଶୀ —ମହାଶୟ, କିପରି ବ୍ୟାକୁଳତା ?

ଶ୍ରୀରାମକୃଷ୍ଣ — କର୍ମ ଗଲେ କିରାଣୀର ଯେପରି ବ୍ୟାକୁଳତା ଆସେ । ସେ ଯେପରି ପ୍ରତଦିନ ଅଫିସରୁ ଅଫିସକୁ ଘୂରେ, ଆଉ ପଚାରେ — ଆଜ୍ଞା, କୌଣସି ଚାକିରୀ ଖାଲି ହୋଇଛି ? ବ୍ୟାକୁଳତା ଆସିଲେ ଛଟ୍‌ପଟ୍ ହୁଏ, କିପରି ଈଶ୍ୱରଙ୍କୁ ପାଇବି ।

''ନିଶ ମୋଡ଼ି ଗୋଡ଼ ଉପରେ ଗୋଡ଼ ପକାଇ ବସିଛନ୍ତି, ପାନ ଚୋବାଉଛନ୍ତି, କୌଣସି ଭାବନା ନାହିଁ, ଏପରି ଅବସ୍ଥା ହେଲେ ଈଶ୍ୱରଲାଭ ହୁଏ ନାହିଁ ।''

ପ୍ରତିବେଶୀ — **ସାଧୁସଙ୍ଗ** ହେଲେ ଏହି ବ୍ୟାକୁଳତା ଆସିପାରେ ?

ଶ୍ରୀରାମକୃଷ୍ଣ — ହଁ ହୋଇପାରେ, ତେବେ ପାଷଣ୍ଡର ହୁଏ ନାହିଁ । ସାଧୁର କମଣ୍ଡଳୁ ଚାରିଧାମ ବୁଲି ଆସିଲା, ତଥାପି ଯେଉଁ ପିତାକୁ ସେହି ପିତା ।

ଏଥର କୀର୍ତ୍ତନ ଆରମ୍ଭ ହୋଇଛି । ଗୋସ୍ୱାମୀ କଳହାନ୍ତରିତା ଗାଉଛନ୍ତି —

ଶ୍ରୀମତୀ କହୁଛନ୍ତି, 'ସଖି, ପ୍ରାଣ ଯାଏ, କୃଷ୍ଣଙ୍କୁ ଆଣିଦିଅ ।'

ସଖୀ — ରାଧେ, କୃଷ୍ଣମେଘରେ ବର୍ଷା ହୁଅନ୍ତା କିନ୍ତୁ ତୁମେ ମାନଝଞ୍ଜାବାତରେ ମେଘ ଉଡ଼ାଇ ଦେଲ । ତୁମେ କୃଷ୍ଣ–ସୁଖରେ ସୁଖୀ ନୁହଁ, ନ ହେଲେ ମାନ କରନ୍ତ କାହିଁକି ?

ଶ୍ରୀମତୀ — ସଖି, ମାନ ତ ମୋର ନୁହେଁ । ଯାହାର ମାନ ତାହାରି ସଙ୍ଗରେ ଯାଇଛି ।

ଲଳିତା ଶ୍ରୀମତୀଙ୍କର ହୋଇ ଦୁଇଟା କଥା କହୁଛନ୍ତି ।

'ସର୍ବହୁଁ ମିଲି କୟଲି ପ୍ରୀତ,

କୋଇ ଦେଖାଇଲି ଘାଟେ ମାଠେ, ବିଶାଖା ଦେଖାଲି ଚିତ୍ରପଟେ ।'

ଏଥର କୀର୍ତ୍ତନରେ ଗୋସ୍ୱାମୀ କହୁଛନ୍ତି ଯେ, ସଖୀମାନେ ରାଧାକୁଣ୍ଡ ପାଖରେ ଶ୍ରୀକୃଷ୍ଣଙ୍କୁ ଅନ୍ୱେଷଣ କଲେ । ତାହା ପରେ ଯମୁନାପୁଳିନରେ ଶ୍ରୀକୃଷ୍ଣଙ୍କ ଦର୍ଶନ, ଶ୍ରୀଦାମ ସୁଦାମ ମଧୁମଙ୍ଗଳ ସଙ୍ଗରେ ବୃନ୍ଦାଙ୍କ ସହିତ ଶ୍ରୀକୃଷ୍ଣଙ୍କର କଥା, ଶ୍ରୀକୃଷ୍ଣଙ୍କ ଯୋଗୀବେଶ, ଜଟିଳା ସମ୍ବାଦ, ରାଧାଙ୍କର ଭିକ୍ଷାଦାନ, ରାଧାଙ୍କର ହାତ ଦେଖି ଯୋଗୀଙ୍କର ଗଣନା ଓ ଘାଟି ବିଷୟ କଥନ, କାତ୍ୟାୟିନୀ ପୂଜାକୁ ଯିବାର ଆୟୋଜନ କଥା ।

**ଅବତାରଙ୍କର ମାନବତା**

କୀର୍ତ୍ତନ ସମାପ୍ତ ହେଲା । ଠାକୁର ଶ୍ରୀରାମକୃଷ୍ଣ ଭକ୍ତଙ୍କ ସହିତ କଥାବାର୍ତ୍ତା କରୁଛନ୍ତି ।

ଶ୍ରୀରାମକୃଷ୍ଣ — ଗୋପୀମାନେ କାତ୍ୟାୟିନୀ ପୂଜା କରିଥିଲେ । ସମସ୍ତେ ସେହି ମହାମାୟା ଆଦ୍ୟାଶକ୍ତିର ଅଧୀନରେ । ଅବତାରାଦି ପର୍ଯ୍ୟନ୍ତ ମାୟା ଆଶ୍ରୟ କରି ଲୀଳା କରନ୍ତି । ତେଣୁ ସେମାନେ ଆଦ୍ୟାଶକ୍ତିର ପୂଜା କରନ୍ତି । ଦେଖ ସୀତାଙ୍କ ପାଇଁ ରାମ କେତେ କାନ୍ଦିଛନ୍ତି ! ପଞ୍ଚଭୂତର ଫାନ୍ଦେ, ବ୍ରହ୍ମ ପଡ଼ି କାନ୍ଦେ ।

ହିରଣ୍ୟାକ୍ଷକୁ ବଧ କରି ବରାହ-ଅବତାର ପିଲାଝିଲା ନେଇ ରହିଲେ । ଆତ୍ମବିସ୍ମୃତ ହୋଇ ସେମାନଙ୍କୁ ଦୁଧ ଖୁଆଉଥିଲେ । ଦେବତାମାନେ ପରାମର୍ଶ କରି ଶିବଙ୍କୁ ପଠାଇ ଦେଲେ । ଶିବ ଶୂଳ ଆଘାତରେ ବରାହର ଦେହ ଭାଙ୍ଗିଦେଲେ, ତେବେ ଯାଇ ସେ ସ୍ୱଧାମକୁ ଚାଲିଗଲେ । ଶିବ ପଚାରିଥିଲେ, 'ତୁମେ ଆତ୍ମବିସ୍ମୃତ ହୋଇଛି କାହିଁକି ?' ସେଥିରେ ସେ କହିଥିଲେ, 'ମୁଁ ବେଶ୍ ଅଛି' ।''

ଅଧରଙ୍କର ଘର ହୋଇ ଏଥର ଠାକୁର ରାମଙ୍କ ଘରକୁ ଯାଉଛନ୍ତି । ସେଠାରେ କଥକ ମହାଶୟଙ୍କ ମୁଖରୁ ଉଦ୍ଧବ-ସମ୍ବାଦ ଶୁଣିଲେ । ରାମଙ୍କ ଘରେ କେଦାରାଦି ଭକ୍ତଗଣ ଉପସ୍ଥିତ ଥିଲେ ।

## (୨)

(ଠାକୁର ଶ୍ରୀରାମକୃଷ୍ଣ କଲିକତାରେ ଭକ୍ତଙ୍କ ସଙ୍ଗରେ)

## ଶ୍ରୀଯୁକ୍ତ ରାମଚନ୍ଦ୍ରଦତ୍ତଙ୍କ ଘରେ କୀର୍ତ୍ତନାନନ୍ଦ

ଆଜି ବୈଶାଖ କୃଷ୍ଣା ଦ୍ୱାଦଶୀ, ଶନିବାର, ୨ ଜୁନ୍ ୧୮୮୩ । ଠାକୁର କଲିକତାକୁ ଶୁଭାଗମନ କରିଛନ୍ତି । ବଳରାମଙ୍କ ଘର ହୋଇ ଅଧରଙ୍କ ଘରକୁ

ଆସିଲେ, ସେଠାରେ କଳହାନ୍ତରିତା କୀର୍ତ୍ତନ ଶ୍ରବଣ କରି ରାମଙ୍କ ଘରକୁ ଆସିଛନ୍ତି । ସିମୂଳିୟାର ମଧୁରାୟଙ୍କ ଗଳି ।

ରାମଚନ୍ଦ୍ର ଡାକ୍ତରୀ ଶିକ୍ଷା କରି କ୍ରମେ ମେଡ଼ିକାଲ କଲେଜରେ ସହକାରୀ କେମିକାଲ ଏକ୍‌ଜାମିନର ହୋଇଥିଲେ ଓ Science Association ରେ ରସାୟନ ଶାସ୍ତ୍ରର ଅଧ୍ୟାପକ ଥିଲେ । ସେ ସ୍ୱୋପାର୍ଜିତ ଅର୍ଥରେ ଘରଟି ନିର୍ମାଣ କରିଛନ୍ତି । ଏ ସ୍ଥାନକୁ ଠାକୁର କେତେ ଥର ଶୁଭାଗମନ କରିଥିଲେ । ସେଥିପାଇଁ ଭକ୍ତମାନଙ୍କ ପାଖରେ ଆଜି ଏହା ଗୋଟିଏ ମହାତୀର୍ଥ ସ୍ଥାନ । ରାମଚନ୍ଦ୍ର ଶ୍ରୀଗୁରୁଙ୍କର କରୁଣାବଳରେ ବିଦ୍ୟାର ସଂସାର କରିବାକୁ ଚେଷ୍ଟା କରନ୍ତି । ଠାକୁର ମୁକ୍ତ କଣ୍ଠରେ ରାମଙ୍କର ସୁଖ୍ୟାତି କରନ୍ତି — କହନ୍ତି, ରାମ ଘରେ ଭକ୍ତମାନଙ୍କୁ ସ୍ଥାନ ଦିଅନ୍ତି, କେତେ ସେବା କରନ୍ତି, ତାଙ୍କ ଘର ଭକ୍ତମାନଙ୍କର ଗୋଟିଏ ଆଡ୍‌ଡା(ଖଟିଘର) । ନିତ୍ୟଗୋପାଳ, ଲାଟୁ, ତାରକ (ଶିବାନନ୍ଦ) ରାମଚନ୍ଦ୍ରଙ୍କର ଏକ ପ୍ରକାର ଘରଲୋକ ହୋଇଯାଇଥିଲେ । ତାଙ୍କ ସହିତ ଅନେକ ଦିନ ଏକ ସଙ୍ଗରେ ବାସ କରିଥିଲେ । ଆଉ ଘରେ ଶ୍ରୀନାରାୟଣଙ୍କର ନିତ୍ୟସେବା ।

ଠାକୁରଙ୍କୁ ରାମ ବୈଶାଖ ପୂର୍ଣ୍ଣିମା ଦିନ — ଫୁଲଦୋଳ ଦିନ — ଏହି ଭଦ୍ରାସନ ଘରକୁ ପୂଜାର୍ଥେ ପ୍ରଥମେ ନେଇ ଆସିଥିଲେ । ପ୍ରାୟ ପ୍ରତିବର୍ଷ ଏହିଦିନ ଠାକୁର ଓ ଭକ୍ତମାନଙ୍କୁ ନେଇ ମହୋତ୍ସବ କରନ୍ତି । ରାମଚନ୍ଦ୍ରଙ୍କର ସନ୍ତାନପ୍ରତିମ ଶିଷ୍ୟମାନେ ବର୍ତ୍ତମାନ ମଧ୍ୟ ଅନେକେ ଏହି ଦିନ ଉତ୍ସବ କରନ୍ତି ।

ଆଜି ରାମଙ୍କ ଘରେ ଉତ୍ସବ । ପ୍ରଭୁ ଆସିବେ । ଶ୍ରୀମଦ୍ଭାଗବତ-କଥାମୃତ ତାଙ୍କୁ ଶୁଣାଇବା ପାଇଁ ରାମ ଆୟୋଜନ କରିଛନ୍ତି । ଛୋଟ ଅଗଣା, କିନ୍ତୁ ତାହା ଭିତରେ କେତେ ପରିପାଟୀ । ବେଦୀ-ରଚନା ହୋଇଛି, ତାହା ଉପରେ କଥକ ମହାଶୟ ଉପବିଷ୍ଟ । ରାଜା ହରିଶ୍ଚନ୍ଦ୍ରଙ୍କର କଥା ହେଉଛି । ଏପରି ସମୟରେ ବଳରାମ ଓ ଅଧରଙ୍କ ଘର ହୋଇ ଠାକୁର ଆସି ଉପସ୍ଥିତ । ରାମଚନ୍ଦ୍ର ଅଗ୍ରସର ହୋଇ ଠାକୁରଙ୍କର ପଦଧୂଳି ମସ୍ତକରେ ଗ୍ରହଣ କଲେ ଓ ତାଙ୍କ ସଙ୍ଗେ ସଙ୍ଗେ ଆସି ବେଦୀ ସମ୍ମୁଖରେ ପୂର୍ବରୁ ନିର୍ଦ୍ଦିଷ୍ଟ ଆସନରେ ତାଙ୍କୁ ବସାଇଲେ । ଚତୁର୍ଦ୍ଦିଗରେ ଭକ୍ତଗଣ ଓ ପାଖରେ ମାଷ୍ଟର ।

**ରାଜା ହରିଶ୍ଚନ୍ଦ୍ରଙ୍କର କଥା ଓ ଠାକୁର ଶ୍ରୀରାମକୃଷ୍ଣ**

ରାଜା ହରିଶ୍ଚନ୍ଦ୍ରଙ୍କ କଥା ହେଲା । ବିଶ୍ୱାମିତ୍ର କହିଲେ, 'ମହାରାଜ, ମୋତେ ପୃଥିବୀ ଦାନ କରିଛ, ଅତଏବ ଏହା ଭିତରେ ତୁମର ସ୍ଥାନ ନାହିଁ । ତେବେ କାଶୀଧାମରେ ତୁମେ ରହିପାର । ସେ ମହାଦେବଙ୍କ ସ୍ଥାନ, ଚାଲ ତୁମକୁ ତୁମର ସହଧର୍ମିଣୀ ଶୈବ୍ୟା ଓ ତୁମର ପୁତ୍ରଙ୍କ ସହିତ ସେଠାରେ ପହଞ୍ଚାଇଦେବି । ସେଠାକୁ ଯାଇ ତୁମେ ଦକ୍ଷିଣା ଯୋଗାଡ଼ କରି ଦେବ । ଏହା କହି ରାଜାଙ୍କୁ ନେଇ

ଭଗବାନ ବିଶ୍ୱାମିତ୍ର କାଶୀଧାମ ଅଭିମୁଖେ ଯାତ୍ରା କଲେ । କାଶୀରେ ପହଞ୍ଚି ସମସ୍ତେ ବିଶ୍ୱେଶ୍ୱରଙ୍କୁ ଦର୍ଶନ କଲେ ।

ବିଶ୍ୱେଶ୍ୱର-ଦର୍ଶନ କଥା ହେବା ମାତ୍ରକେ ଠାକୁର ଏକାବେଳକେ ଭାବାବିଷ୍ଟ; 'ଶିବ' 'ଶିବ' ଏହି କଥା ଅସ୍ପଷ୍ଟ ଉଚ୍ଚାରଣ କରୁଛନ୍ତି ।

ରାଜା ହରିଶ୍ଚନ୍ଦ୍ର ଦକ୍ଷିଣା ଦେଇ ପାରିଲେ ନାହିଁ—ଏହିପରି କଥକ ମହୋଦୟ ସବୁ କହିଗଲେ ।...ଶେଷରେ ବିଶ୍ୱାମିତ୍ରଙ୍କ ଆଗମନ, ରୋହିତାଶ୍ୱର ଜୀବନଦାନ, ସମସ୍ତଙ୍କର ବିଶ୍ୱେଶ୍ୱର-ଦର୍ଶନ ଓ ହରିଶ୍ଚନ୍ଦ୍ରଙ୍କର ପୁନରାୟ ରାଜ୍ୟପ୍ରାପ୍ତି ବର୍ଣ୍ଣନା କରି କଥକ କଥା ସମାପ୍ତ କଲେ । ଠାକୁର ବେଦୀ ସମ୍ମୁଖରେ ବସି ବହୁ ସମୟ ହରିକଥା ଶ୍ରବଣ କଲେ । କଥା ଶେଷ ହେଲାରୁ ବାହାର ଘରେ ଯାଇ ବସିଲେ । ଚତୁର୍ଦ୍ଦିଗରେ ଭକ୍ତମଣ୍ଡଳୀ, କଥକ ମଧ୍ୟ ପାଖରେ ଆସି ବସିଲେ । ଠାକୁର କଥକଙ୍କୁ କହୁଛନ୍ତି, "କିଛି ଉଦ୍ଧବ ସମ୍ବାଦ କହନ୍ତୁ !"

**ମୁକ୍ତି ଓ ଭକ୍ତି—ଗୋପୀପ୍ରେମ—ଗୋପୀଗଣ ମୁକ୍ତି ଚାହିଁ ନ ଥିଲେ**

କଥକ କହିଲେ —ଯେତେବେଳେ ଉଦ୍ଧବ ଶ୍ରୀବୃନ୍ଦାବନକୁ ଆଗମନ କଲେ, ରାଖାଲଗଣ ଓ ବ୍ରଜଗୋପୀଗଣ ତାଙ୍କୁ ଦର୍ଶନ କରିବା ପାଇଁ ବ୍ୟାକୁଳ ହୋଇ ଦୌଡ଼ି ଆସିଲେ । ସମସ୍ତେ ପଚାରିଲେ, 'ଶ୍ରୀକୃଷ୍ଣ କିପରି ଅଛନ୍ତି ? ସେ କଅଣ ଆମମାନଙ୍କୁ ଭୁଲି ଯାଇଛନ୍ତି ? ସେ କଅଣ ଆମମାନଙ୍କ କଥା ପଚାରନ୍ତି ?' ଏହା କହି କେହି କାନ୍ଦିଲେ, କେହି କେହି ତାଙ୍କୁ ନେଇ ବୃନ୍ଦାବନର ନାନା ସ୍ଥାନ ଦେଖାଇଲେ ଓ କହିଲେ, 'ଏହି ସ୍ଥାନରେ ଶ୍ରୀକୃଷ୍ଣ ଗୋବର୍ଦ୍ଧନ ଧାରଣ କରିଥିଲେ, ଏଠାରେ ଧେନୁକାସୁର ବଧ, ଏଠାରେ ଶକଟାସୁର ବଧ କରିଥିଲେ, ଏହି ପଡ଼ିଆରେ ଗୋରୁ ଚରାନ୍ତି, ଏହି ଯମୁନାପୁଳିନରେ ସେ ବିହାର କରନ୍ତି, ଏଠାରେ ଗୋପାଳମାନଙ୍କୁ ନେଇ କ୍ରୀଡ଼ା କରନ୍ତି, ଏହି ସମସ୍ତ କୁଞ୍ଜରେ ଗୋପୀମାନଙ୍କ ସହିତ ଆଳାପ କରନ୍ତି ।' ଉଦ୍ଧବ କହିଲେ, 'ତୁମେମାନେ କୃଷ୍ଣଙ୍କ ପାଇଁ ଏତେ କାତର ହେଉଛ କାହିଁକି ? ସେ ସର୍ବଭୂତରେ ଅଛନ୍ତି । ସେ ସାକ୍ଷାତ୍ ଭଗବାନ ! ତାଙ୍କ ବ୍ୟତୀତ ଆଉ କିଛି ନାହିଁ ।' ଗୋପୀମାନେ କହିଲେ, 'ଆମେମାନେ ସେସବୁ ବୁଝିପାରୁ ନାହୁଁ । ଆମେମାନେ ଲେଖାପଢ଼ା କିଛି ଜାଣିନାହୁଁ । କେବଳ ଆମମାନଙ୍କର ବୃନ୍ଦାବନର କୃଷ୍ଣଙ୍କୁ ଆମେ ଜାଣୁ, ଯେ ଏଠାରେ ନାନା କ୍ରୀଡ଼ା କରି ଯାଇଛନ୍ତି ।' ଉଦ୍ଧବ କହିଲେ, 'ସେ ସାକ୍ଷାତ୍ ଭଗବାନ୍, ତାଙ୍କୁ ଚିନ୍ତା କଲେ ଆଉ ଏ ସଂସାରକୁ ଆସିବାକୁ ହୁଏ ନାହିଁ, ଜୀବ ମୁକ୍ତ ହୋଇଯାଏ ।' ଗୋପୀମାନେ କହିଲେ, 'ଆମେ ମୁକ୍ତି ଫୁକ୍ତି—ଏସବୁ କଥା ବୁଝୁନା । ଆମେମାନେ ଆମର ପ୍ରାଣର କୃଷ୍ଣଙ୍କୁ ଦେଖିବାକୁ ଚାହୁଁ ।'

ଠାକୁର ଶ୍ରୀରାମକୃଷ୍ଣ ଏହି ସମସ୍ତ କଥା ଏକ ମନରେ ଶୁଣିଲେ ଓ ଭାବରେ ବିଭୋର ହେଲେ । କହିଲେ, ''ଗୋପୀମାନେ ଠିକ୍ କହିଛନ୍ତି ।'' ଏହା କହି ସେ ମଧୁର କଣ୍ଠରେ ଗାଇଲେ—

''ଆମି ମୁକ୍ତି ଦିତେ କାତର ନଇ
ଶୁଦ୍ଧା ଭକ୍ତି ଦିତେ କାତର ହଇ (ଗୋ) !
ଆମାର ଭକ୍ତି ଯେବା ପାୟ, ତାରେ କେବା ପାୟ,
ସେ ଯେ ସେବା ପାୟ, ହୟେ ତ୍ରିଲୋକଜୟୀ ॥...''

ଶ୍ରୀରାମକୃଷ୍ଣ (କଥକଙ୍କ ପ୍ରତି)—ଗୋପୀଙ୍କ ଭକ୍ତି ପ୍ରେମାଭକ୍ତି, **ଅବ୍ୟଭିଚାରିଣୀ ଭକ୍ତି**, ନିଷ୍ଠାଭକ୍ତି । ବ୍ୟଭିଚାରିଣୀ ଭକ୍ତି କାହାକୁ କହନ୍ତି ଜାଣ ? ଜ୍ଞାନମିଶ୍ରା ଭକ୍ତି । ଯେପରି କୃଷ୍ଣ ସବୁ ହୋଇଛନ୍ତି । ସେ କେବଳ ପରମବ୍ରହ୍ମ, ସେହି ରାମ, ସେହି ଶିବ, ସେହି ଶକ୍ତି । କିନ୍ତୁ ସେ ଜ୍ଞାନ ଟିକକ ପ୍ରେମାଭକ୍ତି ସଙ୍ଗରେ ମିଶ୍ରିତ ନାହିଁ । ଦ୍ୱାରକାରେ ହନୁମାନ ଆସି କହିଲେ, 'ସୀତାରାମଙ୍କୁ ଦେଖିବି ।' ଭଗବାନ ରୁକ୍ମିଣୀଙ୍କୁ କହିଲେ, 'ତୁମେ ସୀତା ହୋଇ ବସ, ତାହା ନ ହେଲେ ହନୁମାନ ପାଖରେ ରକ୍ଷା ନାହିଁ ।' ପାଣ୍ଡବମାନେ ଯେତେବେଳେ ରାଜସୂୟ ଯଜ୍ଞ କଲେ ସେତେବେଳେ ଯେତେ ରାଜା ସବୁ ଯୁଧିଷ୍ଠିରଙ୍କୁ ସିଂହାସନରେ ବସାଇ ପ୍ରଣାମ କଲେ । ବିଭୀଷଣ କହିଲେ, 'ମୁଁ କେବଳ ନାରାୟଣଙ୍କୁ ପ୍ରଣାମ କରିବି, ଆଉ କାହାକୁ କରିବି ନାହିଁ ।' ସେତେବେଳେ ଭଗବାନ ନିଜେ ଯୁଧିଷ୍ଠିରଙ୍କୁ ଭୂମିଷ୍ଠ ପ୍ରଣାମ କରିବାକୁ ଲାଗିଲେ—ସେତେବେଳେ ବିଭୀଷଣ ରାଜମୁକୁଟ ସହ ସାଷ୍ଟାଙ୍ଗ ହୋଇ ଯୁଧିଷ୍ଠିରଙ୍କୁ ପ୍ରଣାମ କଲେ ।

''କିପରି ଜାଣ ? ଯେପରି ଘରର ବୋହୂ । ଦିଅର, ଦେଢ଼ଶୁର, ଶ୍ୱଶୁର, ସ୍ୱାମୀ ସମସ୍ତଙ୍କର ସେବା କରେ, ଗୋଡ଼ ଧୋଇବାକୁ ପାଣି ଦିଏ, ଗାମୁଛା ଦିଏ, ପିଢ଼ା ପକାଇ ଦିଏ କିନ୍ତୁ କେବଳ ସ୍ୱାମୀ ସଙ୍ଗରେ ଅନ୍ୟ ପ୍ରକାର ସମ୍ବନ୍ଧ ।

''ଏହି ପ୍ରେମାଭକ୍ତିରେ ଦୁଇଟି ଜିନିଷ ଅଛି । 'ଅହଂତା' ଆଉ 'ମମତା' । ଯଶୋଦା ଭାବୁଥିଲେ—ମୁଁ ନ ଦେଖିଲେ ଗୋପାଳକୁ କିଏ ଦେଖିବ ? ନ ହେଲେ ଗୋପାଳର ବେମାରି ହେବ । କୃଷ୍ଣଙ୍କୁ ଭଗବାନ ବୋଲି ଯଶୋଦାଙ୍କର ବୋଧ ନ ଥିଲା । ଆଉ 'ମମତା'—ମୋର ବୋଲି ଜ୍ଞାନ, ମୋର ଗୋପାଳ । ଉଦ୍ଧବ କହିଲେ, 'ମା ! ତୁମର କୃଷ୍ଣ ସାକ୍ଷାତ୍ ଭଗବାନ, ସେ ଜଗତ୍-ଚିନ୍ତାମଣି । ସେ ସାମାନ୍ୟ ନୁହନ୍ତି ।' ଯଶୋଦା କହିଲେ, 'ଆହେ, ତୁମର ଚିନ୍ତାମଣି ନୁହେଁ, ମୋର ଗୋପାଳ କିପରି ଅଛି ପଚାରୁଛି ?—ଚିନ୍ତାମଣି ନୁହେଁ, ମୋର ଗୋପାଳ ।'

''ଗୋପୀମାନଙ୍କର କିପରି ନିଷ୍ଠା ! ମଥୁରାରେ ଦ୍ୱାରୀକୁ ଅନେକ କାକୁତି-ମିନତି କରି ସଭାକୁ ଗଲେ । ଦ୍ୱାରୀ କୃଷ୍ଣଙ୍କ ପାଖକୁ ସେମାନଙ୍କୁ ନେଇଗଲେ । କିନ୍ତୁ ପଗଡ଼ିବନ୍ଧା ଶ୍ରୀକୃଷ୍ଣଙ୍କୁ ଦେଖି ସେମାନେ ମୁହଁ ତଳକୁ ପୋତି ରହିଲେ । ପରସ୍ପରକୁ

କହିଲେ, 'ଏ ପଗଡ଼ି–ବନ୍ଧା ପୁଣି କିଏ ? ଏହାଙ୍କ ସହିତ କଥାବାର୍ତ୍ତା କରି ଶେଷରେ ଆମେ କଅଣ ଦୋଚାରୁଣୀ ହେବୁ ! ଆମର ପୀତଲୁଗା ମୋହନଚୂଡ଼ା ପିନ୍ଧା ସେହି ପ୍ରାଣବଲ୍ଲଭ କେଉଁଠାରେ !' ଦେଖୁଛ, ଏମାନଙ୍କର କିପରି ନିଷ୍ଠା ! ବୃନ୍ଦାବନର ଭାବ ମଧ୍ୟ ଅଲଗା । ଶୁଣିଛି ଦ୍ୱାରକା ପାଖରେ ଲୋକମାନେ ଅର୍ଜ୍ଜୁନଙ୍କର କୃଷ୍ଣଙ୍କୁ ପୂଜା କରନ୍ତି । ସେମାନେ ରାଧାଙ୍କୁ ଚାହାଁନ୍ତି ନାହିଁ ।''

**ଗୋପୀମାନଙ୍କର ନିଷ୍ଠା — ଜ୍ଞାନଭକ୍ତି ଓ ପ୍ରେମାଭକ୍ତି**

ଭକ୍ତ — କେଉଁଟି ଭଲ, ଜ୍ଞାନମିଶ୍ରିତା ଭକ୍ତି ନା ପ୍ରେମାଭକ୍ତି ?

ଶ୍ରୀରାମକୃଷ୍ଣ — ଈଶ୍ୱରଙ୍କ ପ୍ରତି ଖୁବ୍ ପ୍ରୀତି ନ ହେଲେ ପ୍ରେମାଭକ୍ତି ହୁଏ ନାହିଁ । ଆଉ 'ମୋର' ଜ୍ଞାନ । ତିନି ବନ୍ଧୁ ବଣ ଭିତରେ ଦେଇ ଯାଉଛନ୍ତି, ବାଘ ଆସି ପହଞ୍ଚିଲା । ଜଣେ କହିଲା, 'ଭାଇ, ଆମେ ସବୁ ମଲୁ ।' ଜଣେ କହିଲା, 'କାହିଁକି ? ମରିବା କାହିଁକି ? ଆସ ଈଶ୍ୱରଙ୍କୁ ଡାକିବା ।' ଆଉ ଜଣେ କହିଲା, 'ନା, ତାଙ୍କୁ ଆଉ କଷ୍ଟ ଦେଇ କଅଣ ହେବ ? ଆସ, ଏହି ଗଛ ଉପରକୁ ଉଠିଯିବା ।'

''ଯେଉଁ ଲୋକଟି କହିଲା, 'ଆମେ ମଲୁ', ସେ ଜାଣେ ନା ଯେ, ଈଶ୍ୱର ରକ୍ଷାକର୍ତ୍ତା । ଯେ କହିଲା, 'ଆସ ଆମେମାନେ ଈଶ୍ୱରଙ୍କୁ ଡାକିବା', ସେ ଜ୍ଞାନୀ, ତାହାର ବୋଧ ଅଛି ଯେ, ଈଶ୍ୱର ସୃଷ୍ଟି ସ୍ଥିତି ପ୍ରଳୟ ସବୁ କରୁଛନ୍ତି । ଆଉ ଯେ କହିଲା, 'ତାଙ୍କୁ କଷ୍ଟ ଦେଇ କଅଣ ହେବ, ଆସ ଗଛରେ ଚଢ଼ିଯିବା', ତା' ଭିତରେ ପ୍ରେମ ଜନ୍ମିଛି, ଅନୁରାଗ ଜନ୍ମିଛି । ପ୍ରେମର ସ୍ୱଭାବ ଯେ ନିଜକୁ ବଡ଼ ମନେକରେ, ଆଉ ପ୍ରେମର ପାତ୍ରକୁ ଛୋଟ ମନେକରେ । କାଳେ ତା'ର କଷ୍ଟ ହେବ । କେବଳ ଏହି ଇଚ୍ଛା ଯେ, ଯାହାକୁ ଭଲ ପାଏ, ତା' ପାଦରେ କଣ୍ଟାଟିଏ ବି ଯେମିତି ନ ଫୁଟେ ।''

ଠାକୁର ଓ ଭକ୍ତମାନଙ୍କୁ ରାମ ଉପରକୁ ନେଇ ଯାଇ ନାନାବିଧ ମିଷ୍ଟାନ୍ନ ଦେଇ ସେବା କଲେ । ଭକ୍ତମାନେ ମଧ୍ୟ ମହାନନ୍ଦରେ ପ୍ରସାଦ ପାଇଲେ ।

# ଚତୁର୍ବିଂଶ ପରିଚ୍ଛେଦ

## (ଠାକୁର ଶ୍ରୀରାମକୃଷ୍ଣ ଭକ୍ତଙ୍କ ସଙ୍ଗରେ ଦକ୍ଷିଣେଶ୍ୱରର କାଳୀଘରେ)

## (୧)

### ମଣିଲାଲ, ତ୍ରୈଲୋକ୍ୟ ବିଶ୍ୱାସ, ରାମ ଚାଟାର୍ଜି, ବଳରାମ, ନରେନ୍ଦ୍ର, ରାଖାଲ

ଆଜି ଜ୍ୟେଷ୍ଠ କୃଷ୍ଣା-ଚତୁର୍ଦ୍ଦଶୀ । ସାବିତ୍ରୀ ଚତୁର୍ଦ୍ଦଶୀ । ପୁଣି ଅମାବାସ୍ୟା ଓ ଫଳହାରିଣୀ ପୂଜା । ଠାକୁର ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱର କାଳୀମନ୍ଦିରରେ ନିଜ ଘରେ ବସିଛନ୍ତି । ଭକ୍ତମାନେ ତାଙ୍କୁ ଦର୍ଶନ କରିବାକୁ ଆସିଛନ୍ତି । ସୋମବାର, ୪ ଜୁନ୍ ୧୮୮୩ ।

ମାଷ୍ଟର ପୂର୍ବଦିନ ରବିବାର ଆସିଛନ୍ତି । ଏହି ରାତ୍ରିରେ କାତ୍ୟାୟନୀ ପୂଜା । ଠାକୁର ପ୍ରେମାବିଷ୍ଟ ହୋଇ ନାଟମନ୍ଦିରରେ ମାଆଙ୍କ ସମ୍ମୁଖରେ ଠିଆ ହୋଇ କହୁଥିଲେ, ''ମା, ତୁମେ ହିଁ ବ୍ରଜର କାତ୍ୟାୟନୀ । ତୁମେ ସ୍ୱର୍ଗ, ତୁମେ ମର୍ତ୍ତ୍ୟ, ତୁମେ ଯେ ପାତାଳ । ତୁମଠାରୁ ହରି ବ୍ରହ୍ମା ଦ୍ୱାଦଶ ଗୋପାଳ । ଦଶମହାବିଦ୍ୟା ମାଗୋ ଦଶ ଅବତାର । ଏଥର ନିଶ୍ଚୟ ମୋତେ କରିବ ଗୋ ପାର ।''

ଠାକୁର ଗୀତ ଗାଉଥାଆନ୍ତି ଓ ମାଆଙ୍କ ସଙ୍ଗରେ କଥା କହୁଥାଆନ୍ତି । ପ୍ରେମରେ ଏକାବେଳକେ ମତ୍ତ । ନିଜ ଘରକୁ ଆସି ଖଟ ଉପରେ ବସିଲେ ।

ରାତ୍ରି ଦ୍ୱିପ୍ରହର ପର୍ଯ୍ୟନ୍ତ ମାଆଙ୍କର ନାମ ହେବାକୁ ଲାଗିଲା ।

ସୋମବାର ସକାଳେ ବଳରାମ ଏବଂ ଆଉ କେତେଜଣ ଭକ୍ତ ଆସିଲେ । ଫଳ ହାରିଣୀ ପୂଜା ଉପଲକ୍ଷେ ତ୍ରୈଲୋକ୍ୟ ପ୍ରଭୃତି ଉଦ୍ୟାନର ବାବୁମାନେ ସପରିବାର ଆସିଛନ୍ତି । ସମୟ ନଅଟା । ଠାକୁର ସହାସ୍ୟ-ବଦନ—ଗଙ୍ଗା ଉପରେ ଗୋଲ ବାରଣ୍ଡାଟିରେ ବସିଛନ୍ତି । ପାଖରେ ମାଷ୍ଟର । କ୍ରୀଡ଼ାଛଳରେ ଠାକୁର ରାଖାଲଙ୍କର ମୁଣ୍ଡଟି କୋଳକୁ ନେଇଛନ୍ତି । ରାଖାଲ ଶୋଇବା ଅବସ୍ଥାରେ । ଠାକୁର କେତେଦିନ ହେଲା ତାଙ୍କୁ ସାକ୍ଷାତ୍ ଗୋପାଳ ଦେଖୁଛନ୍ତି ।

ଆଗ ଦେଇ ତ୍ରୈଲୋକ୍ୟ ମା କାଳୀଙ୍କୁ ଦର୍ଶନ କରିବାକୁ ଯାଉଛନ୍ତି । ସଙ୍ଗରେ ଅନୁଚର ଛତା ଧରି ଯାଉଛନ୍ତି । ଠାକୁର ରାଖାଲଙ୍କୁ କହିଲେ, 'ଆରେ ଉଠ୍, ଉଠ୍ ।'

ଠାକୁର ବସିଛନ୍ତି । ତ୍ରୈଲୋକ୍ୟ ନମସ୍କାର କଲେ ।

ଶ୍ରୀରାମକୃଷ୍ଣ (ତ୍ରୈଲୋକ୍ୟଙ୍କ ପ୍ରତି)—ହଇହେ, କାଲି ଯାତ୍ରା ହୋଇ ନାହିଁ ?

ତ୍ରୈଲୋକ୍ୟ—ହଁ, ଯାତ୍ରାର ସେପରି ସୁବିଧା ହୋଇ ନାହିଁ ।

ଶ୍ରୀରାମକୃଷ୍ଣ — ଏଥର ଯାହା ହେବାର ହୋଇଯାଇଛି । ଦେଖ, ଯେପରି ଅନ୍ୟ ଥର ଏପରି ନ ହୁଏ । ଯେପରି ନିୟମ ଅଛି, ସେହିପରି ବରାବର ହେବା ଭଲ ।

ତ୍ରୈଲୋକ୍ୟ ଯଥୋଚିତ ଉତ୍ତର ଦେଇ ଚାଲିଗଲେ । କିୟତ୍‌କ୍ଷଣ ପରେ ବିଷ୍ଣୁଘରର ପୁରୋହିତ ଶ୍ରୀଯୁକ୍ତ ରାମ ଚାଟାର୍ଜି ଆସିଲେ ।

ଶ୍ରୀରାମକୃଷ୍ଣ — ରାମ ! ତ୍ରୈଲୋକ୍ୟଙ୍କୁ କହିଲି, 'ଯାତ୍ରା ହୋଇ ନାହିଁ ଦେଖ, ଯେପରି ଏପରି ଆଉ ନ ହୁଏ ।' ତେବେ ଏ କଥାଟା କହିବା କଅଣ ଭୁଲ ହୋଇଛି ?

ରାମ ଚାଟାର୍ଜି — ମହାଶୟ, ସେଥିରେ କ୍ଷତି କଅଣ ? ଠିକ୍ ତ କହିଛନ୍ତି । ଯେପରି ନିୟମ ଅଛି, ସେହିପରି ତ ବରାବର ହେବା ଉଚିତ୍ ।

ଶ୍ରୀରାମକୃଷ୍ଣ (ବଳରାମଙ୍କ ପ୍ରତି) — ଆହେ, ଆଜି ତୁମେ ଏଠାରେ ଖାଅ ।

ଆହାର କରିବାର କିଛି ପୂର୍ବରୁ ଠାକୁର ନିଜ ଅବସ୍ଥା ବିଷୟରେ ଭକ୍ତମାନଙ୍କୁ କହିବାକୁ ଲାଗିଲେ । ରାଖାଲ, ବଳରାମ, ମାଷ୍ଟର, ରାମଲାଲ ଏବଂ ଆଉ ମଧ୍ୟ ଜଣେ ଦୁଇଜଣ ଭକ୍ତ ବସିଥିଲେ ।

**ହାଜରା ଉପରେ ରାଗ — ଶ୍ରୀରାମକୃଷ୍ଣ ଓ ମନୁଷ୍ୟ ଭିତରେ ଈଶ୍ୱରଦର୍ଶନ**

ଶ୍ରୀରାମକୃଷ୍ଣ — ହାଜରା ପୁଣି ଶିକ୍ଷା ଦିଏ — ତୁମେ କାହିଁକି ପିଲାମାନଙ୍କ ପାଇଁ ଏତେ ଭାବ ? ଗାଡ଼ିରେ ବଳରାମଙ୍କ ଘରକୁ ଯାଉଛି, ଏତିକିବେଳେ ବାଟରେ ଭାରୀ ଚିନ୍ତା ହେଲା । କହିଲି, 'ମା, ହାଜରା କହେ — ନରେନ୍ଦ୍ର ଆଉ ଅନ୍ୟ ଯୁବକମାନଙ୍କ ପାଇଁ ମୁଁ ଏତେ ଭାବେ କାହିଁକି ? ସେ କହେ, ଈଶ୍ୱରଚିନ୍ତା ଛାଡ଼ି ଏସବୁ ପିଲାମାନଙ୍କ ପାଇଁ ଚିନ୍ତା କରୁଛ କାହିଁକି ?' ଏହି କଥା କହୁ କହୁ ଏକାବେଳକେ ଦେଖାଇଲେ ଯେ, ସେ ହିଁ ମନୁଷ୍ୟ ହୋଇଛନ୍ତି । ଶୁଦ୍ଧ ଆଧାରରେ ସ୍ପଷ୍ଟ ପ୍ରକାଶ ହୁଅନ୍ତି । ସେହିପରି ଦର୍ଶନ କରି ଯେତେବେଳେ ସାମାଧି ଟିକିଏ ଭାଙ୍ଗିଲା, ହାଜରା ଉପରେ ରାଗିଗଲି । କହିଲି, 'ଶଳା, ମୋର ମନ ଖରାପ କରି ଦେଇଥିଲା ।' ପୁଣି ଭାବିଲି — ସେ ବିଚରାର ବା ଦୋଷ କଅଣ ! ସେ ବା କିପରି ଜାଣିବ !

**ନରେନ୍ଦ୍ର ସହିତ ଶ୍ରୀରାମକୃଷ୍ଣଙ୍କର ପ୍ରଥମ ଦେଖା**

ଶ୍ରୀରାମକୃଷ୍ଣ — ମୁଁ ଏମାନଙ୍କୁ ଜାଣେ, ସାକ୍ଷାତ୍ ନାରାୟଣ । ନରେନ୍ଦ୍ର ସଙ୍ଗରେ ପ୍ରଥମ ଦେଖା ହେଲା — ଦେଖିଲି, ଦେହବୁଦ୍ଧି ନାହିଁ । ଛାତିରେ ଟିକିଏ ହାତ ଦେବାମାତ୍ରକେ ବାହ୍ୟଶୂନ୍ୟ ହୋଇଗଲା । ହୋସ୍ ହେବାରୁ କହିଉଠିଲା, 'ଆହେ, ତୁମେ ମୋର କଅଣ କଲ ? ମୋର ଯେ ମା-ବାପ ଅଛନ୍ତି !' ଯଦୁ

ମଲ୍ଲିକ ଘରେ ମଧ୍ୟ ଠିକ୍ ଏହିପରି ହୋଇଥିଲା । କ୍ରମେ ତାକୁ ଦେଖିବା ପାଇଁ ବ୍ୟାକୁଳତା ବଢ଼ିଲା, ପ୍ରାଣ ଆଉଟୁପାଉଟୁ ହେଲା । ସେତେବେଳେ ଭୋଳାନାଥଙ୍କୁ କହିଲି, 'ହଇହେ, ମୋ ମନ କାହିଁକି ଏପରି ହେଉଛି ? ନରେନ୍ଦ୍ର ବୋଲି ଗୋଟାଏ କାୟସ୍ଥର ପିଲା, ତାହା ପାଇଁ ଏପରି ହେଉଛି କାହିଁକି ?' ଭୋଳାନାଥ[୧] କହିଲା, 'ଏହାର ମାନେ ଭାରତରେ ଅଛି । ସମାଧିସ୍ଥ ଲୋକର ମନ ଯେତେବେଳେ ତଳକୁ ଖସେ, ସତ୍ତ୍ୱଗୁଣୀ ଲୋକଙ୍କ ସଙ୍ଗରେ ବିଳାସ କରେ । ସତ୍ତ୍ୱଗୁଣୀ ଲୋକ ଦେଖିଲେ ତେବେ ତା'ର ମନ ଥଣ୍ଡା ହୁଏ ।' ଏହି କଥା ଶୁଣିବାରୁ ଯାଇ ମୋ ମନ ଶାନ୍ତ ହେଲା । ମଝିରେ ମଝିରେ ନରେନ୍ଦ୍ରକୁ ଦେଖିବି ବୋଲି ବସି ବସି କାନ୍ଦୁଥିଲି ।

## (୨)

## ପୂର୍ବକଥା—ଶ୍ରୀରାମକୃଷ୍ଣଙ୍କର ପ୍ରେମୋନ୍ମାଦ ଓ ରୂପ ଦର୍ଶନ

ଶ୍ରୀରାମକୃଷ୍ଣ—ଓଃ, କି ଅବସ୍ଥା ଯାଇଛି ! ପ୍ରଥମେ ଯେତେବେଳେ ଏହି ଅବସ୍ଥା ହେଲା, ଦିନରାତି କିପରି ଯାଏ କହିପାରେ ନାହିଁ । ସମସ୍ତେ କହନ୍ତି, ପାଗଳ ହେଲା । ତେଣୁ ତ ଏମାନେ ବିବାହ ଦେଲେ । ଉନ୍ମାଦ ଅବସ୍ଥା—ପ୍ରଥମେ ଚିନ୍ତା ହେଲା, ସ୍ତ୍ରୀ ମଧ୍ୟ ଏହିପରି ଖାଇପିଇ ରହିବ । ଶ୍ୱଶୁରଘରକୁ ଗଲି, ସେଠାରେ ଖୁବ୍ ସଂକୀର୍ତ୍ତନ । ନଫର, ଦିଗମ୍ବର ବାନାର୍ଜୀଙ୍କ ବାପା, ଏମାନେ ଆସିଲେ । ଖୁବ୍ ସଂକୀର୍ତ୍ତନ । ଥରେ ଥରେ ଭାବେ, କଅଣ ହେବ ! ପୁଣି କହେ, 'ମା, ଦେଶର ଜମିଦାର ଯଦି ଆଦର କରନ୍ତି, ତାହା ହେଲେ ବୁଝିବି ସତ୍ୟ ।' ସେମାନେ ମଧ୍ୟ ନିଜେ ଆସି କଥା କହିଲେ ।

**ପୂର୍ବକଥା**

(ସୁନ୍ଦରୀପୂଜା ଓ କୁମାରୀପୂଜା ରାମଲୀଳା ଦର୍ଶନ—ଗଡ଼ ପଡ଼ିଆରେ ବେଲୁନ ଦର୍ଶନ—ଶିଓଡ଼ରେ ଗୋପାଳ-ଭୋଜନ—ଜାନବଜାରରେ ମଥୁରଙ୍କ ସଙ୍ଗରେ ବାସ )

''କି ଅବସ୍ଥା ଯାଇଛି ! ସାମାନ୍ୟ ଟିକିଏରେ ଏକାବେଳକେ ଉଦ୍ଦୀପନ ହୋଇ ଯାଉଥିଲା । ସୁନ୍ଦରୀପୂଜା କଲି । ଚଉଦ ବର୍ଷର ବାଳିକା । ଦେଖିଲି, ସାକ୍ଷାତ୍ ମା' । ଟଙ୍କା ଦେଇ ପ୍ରଣାମ କଲି ।

''ରାମଲୀଳା ଦେଖିବାକୁ ଗଲି । ଥରେ ଦେଖିଲି, ସାକ୍ଷାତ୍ ସୀତା, ରାମ, ଲକ୍ଷ୍ମଣ, ହନୁମାନ, ବିଭୀଷଣ । ସେତେବେଳେ ଯେଉଁମାନେ ବେଶ ହୋଇଥିଲେ, ସେମାନଙ୍କୁ ସବୁ ପୂଜା କରିବାକୁ ଲାଗିଲି ।

''କୁମାରୀମାନଙ୍କୁ ଆଣି ସେତେବେଳେ ପୂଜା କରୁଥିଲି । ଦେଖୁଥିଲି, ସାକ୍ଷାତ୍ ମା ।

---

୧. ଭୋଳାନାଥ ମୁଖୋପାଧ୍ୟାୟ, ମନ୍ଦିରର ମୋହରୀ, ପରେ ଖାଜାଞ୍ଚି ହୋଇଥିଲେ ।

''ଦିନେ ବକୁଳତଳେ ଦେଖିଲି, ନୀଳ ଲୁଗା ପିନ୍ଧି ଜଣେ ବାଳିକା ଠିଆ ହୋଇଛି । ବେଶ୍ୟା । ଦପ୍ କରି ଏକାବେଳକେ ସୀତାଙ୍କର ଉଦ୍ଦୀପନ । ସେ ବାଳିକାକୁ ଭୁଲିଗଲି, କିନ୍ତୁ ଦେଖିଲି, ସାକ୍ଷାତ୍ ସୀତା ଲଙ୍କାରୁ ଉଦ୍ଧାର ପାଇ ରାମଙ୍କ ପାଖକୁ ଯାଉଛନ୍ତି । ବହୁ ସମୟ ବାହ୍ୟଶୂନ୍ୟ ହୋଇ ସମାଧି ଅବସ୍ଥା ରହିଲା ।

''ଆଉ ଦିନେ 'ଗଡ଼୍ ପଡ଼ିଆ'କୁ୧ ବୁଲି ଯାଇଥିଲି । ବେଲୁନ୍ ଉଠିବ— ଅନେକ ଲୋକଙ୍କର ଭିଡ଼ । ହଠାତ୍ ନଜରରେ ପଡ଼ିଲା, ଗୋଟିଏ ସାହେବ ପିଲା ଗଛରେ ଭରାଦେଇ ତ୍ରିଭଙ୍ଗରେ ଠିଆହୋଇ ରହିଛି । ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣଙ୍କର ଉଦ୍ଦୀପନ । ସମାଧି ହୋଇଗଲା ।

''ଶିଓଡ଼ରେ ଗୋପାଳ-ଭୋଜନ କରାଇଲି । ସେମାନଙ୍କର ହାତରେ ସବୁ ଜଳଖିଆ ଦେଲି । ଦେଖିଲି, ସାକ୍ଷାତ୍ ବ୍ରଜର ଗୋପାଳ । ସେମାନଙ୍କର ଜଳଖିଆରୁ ପୁଣି ଖାଇବାକୁ ଲାଗିଲି ।

''ପ୍ରାୟ ହୋସ୍ ରହୁ ନ ଥିଲା । ସେଜୋବାବୁ ଜାନବଜାର ଘରକୁ ନେଇ କେତେ ଦିନ ରଖିଲେ । ଦେଖିଲି, ସାକ୍ଷାତ୍ ମାଆର ଦାସୀ ହୋଇଛି । ଘରର ସ୍ତ୍ରୀଲୋକମାନେ ଆଦୌ ଲଜ୍ଜା କରୁ ନ ଥିଲେ ଯେପରି ଛୋଟ ପିଲା ବା ବାଳିକାକୁ ଦେଖିଲେ ଲଜ୍ଜା କରନ୍ତି ନାହିଁ । ଦାସୀ ସହିତ ବାବୁଙ୍କର କନ୍ୟାକୁ ଜୋଇଁ ପାଖରେ ଶୁଆଇବାକୁ ଯାଉଥିଲି ।

''ବର୍ତ୍ତମାନ ମଧ୍ୟ ଟିକକରେ ଉଦ୍ଦୀପନ ହୋଇଯାଏ । ଜପ କରୁ କରୁ ରାଖାଲର ଓଠ ଥରେ । ମୁଁ ଦେଖି ସ୍ଥିର ରହିପାରୁ ନ ଥିଲି । ଏକାବେଳକେ ଈଶ୍ୱରଙ୍କର ଉଦ୍ଦୀପନ ହୋଇ ବିହ୍ୱଳ ହୋଇଯାଉଥିଲି ।'

ଠାକୁର ପ୍ରକୃତି-ଭାବର କଥା ପୁଣି କହିବାକୁ ଲାଗିଲେ । କହିଲେ, ''ମୁଁ ଜଣେ କୀର୍ତ୍ତନିଆକୁ ସ୍ତ୍ରୀ-କୀର୍ତ୍ତନୀଆର ଅଭିନୟ ଦେଖାଇଥିଲି । ସେ କହିଲେ, 'ଆପଣଙ୍କର ଏସବୁ ଠିକ୍ ଠିକ୍ । ଆପଣ ଏସବୁ ଜାଣିଲେ କିପରି' ?'' ଏହା କହି ଠାକୁର ଭକ୍ତମାନଙ୍କୁ ସ୍ତ୍ରୀ-କୀର୍ତ୍ତନୀଆର ଅଭିନୟ ଦେଖାଉଛନ୍ତି । କେହି ହାସ୍ୟ ସମ୍ବରଣ କରିପାରିଲେ ନାହିଁ ।

## (୩)

## ମଣିଲାଲ ପ୍ରଭୃତି ଭକ୍ତଙ୍କ ସଙ୍ଗରେ ଶ୍ରୀରାମକୃଷ୍ଣ 'ଅହେତୁକ କୃପାସିନ୍ଧୁ'

ଆହାର ପରେ ଠାକୁର ଟିକିଏ ବିଶ୍ରାମ କରୁଛନ୍ତି । ଗାଢ଼ ନିଦ୍ରା ନୁହେଁ, ତନ୍ଦ୍ରାପରି । ଶ୍ରୀଯୁକ୍ତ ମଣିଲାଲ ମଲ୍ଲିକ (ପୁରାତନ ବ୍ରହ୍ମଜ୍ଞାନୀ) ଆସି ଠାକୁରଙ୍କୁ ପ୍ରଣାମ କଲେ ଓ ଆସନ ଗ୍ରହଣ କଲେ । ଠାକୁର ସେତେବେଳେ ମଧ୍ୟ ଶୋଇଛନ୍ତି ।

---

୧. କଲିକତାର 'ଗଡ଼େର ମାଠ' ।

ମଣିଲାଲ ଗୋଟିଏ ଗୋଟିଏ କଥା କହୁଛନ୍ତି । ଠାକୁରଙ୍କର ଅର୍ଦ୍ଧ-ନିଦ୍ରା, ଅର୍ଦ୍ଧ-ଜାଗରଣ ଅବସ୍ଥା । ଥରେ ଥରେ ଉତ୍ତର ଦେଉଛନ୍ତି ।

ମଣିଲାଲ —ଶିବନାଥ ନିତ୍ୟଗୋପାଳଙ୍କର ସୁଖ୍ୟାତି କରନ୍ତି । କହନ୍ତି, ବେଶ୍ ଅବସ୍ଥା ।

ଠାକୁର ସେତେବେଳେ ମଧ୍ୟ ଶୋଇଛନ୍ତି — ଆଖିରେ ଯେପରି ନିଦ୍ରା ଅଛି । ପଚାରୁଛନ୍ତି, ''ହାଜରାଙ୍କୁ ସେମାନେ କ'ଣ କହନ୍ତି?'' ଠାକୁରେ ଉଠି ବସିଲେ । ମଣିଲାଲଙ୍କୁ ଭବନାଥଙ୍କର ଭକ୍ତିର କଥା କହୁଛନ୍ତି ।

ଶ୍ରୀରାମକୃଷ୍ଣ — ଆହା, ତା'ର କି ଭାବ ! ଗୀତ ଗାଉ ନ ଗାଉଣୁ ଆଖିରୁ ଲୁହ ଗଡ଼େ । ହରିଶ୍‌କୁ ଦେଖି ଏକାବେଳକେ ଭାବ । କହେ, ଏମାନେ ବେଶ୍ ଅଛନ୍ତି । ହରିଶ୍ ଘର ଛାଡ଼ି ଏଠାରେ ମଝିରେ ମଝିରେ ରହେ କିନା !

ମାଷ୍ଟରଙ୍କୁ ପଚାରୁଛନ୍ତି, ''ଆଚ୍ଛା, ଭକ୍ତିର କାରଣ କଅଣ ? ଭବନାଥ ପ୍ରଭୃତି ପିଲାଙ୍କର କାହିଁକି ଉଦ୍ଦୀପନ ହୁଏ ?'' ମାଷ୍ଟର ଚୁପ୍ ହୋଇ ବସିଛନ୍ତି ।

ଶ୍ରୀରାମକୃଷ୍ଣ — କଅଣ ଜାଣ ? ମନୁଷ୍ୟ ସବୁ ଦେଖିବାକୁ ଏକାପରି; କିନ୍ତୁ କାହା ଭିତରେ କ୍ଷୀରର ପୁର ! ଯେପରି ପୁଳି ଭିତରେ ବିରିଡାଲିର ପୁର ମଧ୍ୟ ରହିପାରେ, କ୍ଷୀରର ପୁର ମଧ୍ୟ ରହିପାରେ କିନ୍ତୁ ଦେଖିବାକୁ ଏକାଭଳି । ଈଶ୍ୱରଙ୍କୁ ଜାଣିବାକୁ ଇଚ୍ଛା, ତାଙ୍କ ଉପରେ ପ୍ରେମଭକ୍ତି, ଏହାର ନାମ କ୍ଷୀରର ପୁର ।

**ଗୁରୁଙ୍କ କୃପାରେ ମୁକ୍ତି ଓ ସ୍ୱରୂପଦର୍ଶନ — ଠାକୁରଙ୍କର ଅଭୟଦାନ**

ଏଥର ଠାକୁର ଭକ୍ତମାନଙ୍କୁ ଅଭୟ ଦେଉଛନ୍ତି ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି) — କେହି କେହି ମନେକରନ୍ତି, ମୋର ବୋଧହୁଏ ଜ୍ଞାନଭକ୍ତି ହେବ ନାହିଁ, ମୁଁ ବୋଧହୁଏ ବଦ୍ଧଜୀବ । ଗୁରୁଙ୍କ କୃପା ହେଲେ କିଛି ଭୟ ନାହିଁ । ଗୋଟିଏ ଛେଳିପଲକୁ ବାଘୁଣୀ ଆସିଥିଲା । କୁଦାମାରି ଯିବାବେଳେ ବାଘୁଣୀର ପ୍ରସବ ହୋଇ ଛୁଆ ହୋଇଗଲା । ବାଘୁଣୀ ମରିଗଲା, ଛୁଆଟି ଛେଳିଙ୍କ ସଙ୍ଗରେ ବଢ଼ିଲା । ସେମାନେ ଘାସ ଖାଆନ୍ତି, ବାଘଛୁଆଟି ମଧ୍ୟ ଘାସ ଖାଏ । ସେମାନେ ମେଁ ମେଁ କରନ୍ତି । ସେ ମଧ୍ୟ ମେଁ ମେଁ କରେ । ପରେ ଛୁଆଟା ଖୁବ୍ ବଡ଼ ହେଲା । ଦିନେ ଏହି ଛେଳିପଲରେ ଆଉ ଗୋଟିଏ ବାଘ ଆସି ଜୁଟିଲା । ସେ ଘାସଖିଆ ବାଘକୁ ଦେଖି ଅବାକ୍ । ଦୌଡ଼ି ଆସି ତାକୁ ଧରିଲା । ସେଇଟା ମେଁ ମେଁ କରିବାକୁ ଲାଗିଲା । ତାକୁ ଟାଣି ପାଣି ପାଖକୁ ନେଇଗଲା । କହିଲା, 'ଦେଖ୍, ପାଣି ଭିତରେ ତୋର ମୁହଁ ଦେଖ୍ — ଠିକ୍ ମୋ ପରି ଦେଖ । ଆଉ ନେ, ଏତକ ମାଂସ ଖାଆ ।' ଏହା କହି ତାକୁ ଜୋର୍ କରି ଖୁଆଇବାକୁ ଲାଗିଲା । ସେ କୌଣସି ପ୍ରକାରେ ନ ଖାଇ ମେଁ ମେଁ କରୁଥିଲା । ରକ୍ତର ଆସ୍ୱାଦ ପାଇ ଖାଇବାକୁ ଆରମ୍ଭ କଲା । ନୂଆ ବାଘଟା କହିଲା, 'ବର୍ତ୍ତମାନ ବୁଝୁଛୁ ତ, ମୁଁ ଯାହା, ତୁ ମଧ୍ୟ ତାହା; ବର୍ତ୍ତମାନ ଆ, ମୋ ସଙ୍ଗରେ ବଣକୁ ଚାଲି ଆ ।'

‘‘ତେଣୁ ଗୁରୁଙ୍କ କୃପା ହେଲେ ଆଉ କୌଣସି ଭୟ ନାହିଁ; ସେ ଜଣାଇ ଦେବେ, ତୁମେ କିଏ, ତୁମର ସ୍ୱରୂପ କ’ଣ ।

‘‘ଟିକିଏ ସାଧନ କଲେ ଗୁରୁ ବୁଝାଇଦିଅନ୍ତି, ଏଇ ଏଇ । ସେତେବେଳେ ସେ ନିଜେ ବୁଝିପାରିବ, କେଉଁଟା ସତ୍, କେଉଁଟା ଅସତ୍ । ଈଶ୍ୱର ହିଁ ସତ୍ୟ, ଏ ସଂସାର ଅନିତ୍ୟ ।

**କପଟ ସାଧନା ମଧ୍ୟ ଭଲ — ଜୀବନ୍ମୁକ୍ତ ସଂସାରରେ ରହିପାରେ**

‘‘ଜଣେ କେଉଟ ଗୋଟିଏ ପୋଖରୀରେ ଜାଲ ପକାଇ ମାଛ ଚୋରୀ କରୁଥିଲା । ଗୃହସ୍ଥ ଜାଣିପାରି କେତେକ ଲୋକ ପଠାଇ ଘେରିଗଲେ । ଆଲୁଅଫାଲୁଅ ନେଇ ଚୋରକୁ ଖୋଜିବାକୁ ଆସିଲେ । ଏଣେ କେଉଟଟି କିଛି ପାଉଁଶ ବୋଳି ହୋଇ ଗୋଟିଏ ଗଛତଳେ ସାଧୁ ହୋଇ ବସିଯାଇଛି । ସେମାନେ ଅନେକ ଖୋଜାଖୋଜି କରି ଦେଖିଲେ, କେଉଟ ଫେଉଟ କେହି ନାହିଁ, କେବଳ ଗଛତଳେ ଜଣେ ଭସ୍ମବୋଳା ସାଧୁ ଧ୍ୟାନସ୍ଥ । ପରଦିନ ପଡ଼ାରେ ରାଷ୍ଟ୍ର ହେଲା, ଜଣେ ଭାରୀ ସାଧୁ ସେମାନଙ୍କ ବଗିଚାକୁ ଆସିଛି । ବର୍ତ୍ତମାନ ବହୁ ଲୋକ ଫଳ-ଫୁଲ ସନ୍ଦେଶ–ମିଷ୍ଟାନ୍ନ ନେଇ ସାଧୁଙ୍କୁ ପ୍ରଣାମ କରିବାକୁ ଆସିଲେ । ଅନେକ ଟଙ୍କା ପଇସା ସାଧୁଙ୍କ ପାଖରେ ଆସି ପଡ଼ିଲା । କେଉଟାଟା ଭାବିଲା — କି ଆଶ୍ଚର୍ଯ୍ୟ ! ମୁଁ ସତ ସାଧୁ ନୁହେଁ, ତଥାପି ମୋ ଉପରେ ଲୋକଙ୍କର ଏତେ ଭକ୍ତି ! ତେବେ ସତ ସାଧୁ ହେଲେ ନିଶ୍ଚୟ ଭଗବାନଙ୍କୁ ପାଇବି, ସନ୍ଦେହ ନାହିଁ ।

‘‘କପଟ ସାଧନାରେ ଏତେ ଦୂର ଚୈତନ୍ୟ ହେଲା ! ସତ୍ୟ ସାଧନା ହେଲେ ତ କଥା ନାହିଁ । କେଉଁଟା ସତ୍, କେଉଁଟା ଅସତ୍ ବୁଝିପାରିବ । ଈଶ୍ୱର ହିଁ ସତ୍ୟ, ସଂସାର ଅନିତ୍ୟ ।’’

ଜଣେ ଭକ୍ତ ଭାବୁଛନ୍ତି — ସଂସାର ଅନିତ୍ୟ ? କେଉଟ ତ ସଂସାର ତ୍ୟାଗ କଲା । ତେବେ ଯେଉଁମାନେ ସଂସାରରେ ଅଛନ୍ତି, ସେମାନଙ୍କର କଅଣ ହେବ ? ସେମାନଙ୍କୁ କଅଣ ତ୍ୟାଗ କରିବାକୁ ହେବ ? ଶ୍ରୀରାମକୃଷ୍ଣ ଅହେତୁକ କୃପାସିନ୍ଧୁ— ସଙ୍ଗେ ସଙ୍ଗେ କହୁଛନ୍ତି, ‘‘ଯଦି କିରାଣୀକୁ ଜେଲ ଦିଆଯାଏ ସେ ଜେଲ ଖଟେ ସତ, କିନ୍ତୁ ଯେତେବେଳେ ଜେଲରୁ ତାକୁ ଛାଡ଼ିଦିଆଯାଏ, ସେତେବେଳେ ସେ କ’ଣ ରାସ୍ତାରେ ଆସି ଧେଇ ଧେଇ କରି ନାଚି ନାଚି ବୁଲିବ ? ସେ ପୁଣି କିରାଣୀଗିରି ଜୁଟାଇନିଏ, ସେହି ପୂର୍ବ କାର୍ଯ୍ୟ ହିଁ କରେ । ଗୁରୁଙ୍କ କୃପାରେ ଜ୍ଞାନଲାଭ ପରେ ମଧ୍ୟ ସଂସାରରେ ଜୀବନ୍ମୁକ୍ତ ହୋଇ ବାସ କରାଯାଏ ।’’

ଏହା କହି ଠାକୁର ଶ୍ରୀରାମକୃଷ୍ଣ ସଂସାରୀ ଲୋକମାନଙ୍କୁ ଅଭୟ ଦେଲେ ।

## (୪)

## ମଣିଲାଲ ପ୍ରଭୃତିଙ୍କ ସଙ୍ଗରେ ଶ୍ରୀରାମକୃଷ୍ଣ—ନିରାକାରବାଦ

ମଣିଲାଲ (ଶ୍ରୀରାମକୃଷ୍ଣଙ୍କ ପ୍ରତି)—ଆହ୍ନିକ କରିବାବେଳେ ତାଙ୍କୁ କେଉଁଠାରେ ଧ୍ୟାନ କରିବୁ ?

ଶ୍ରୀରାମକୃଷ୍ଣ—ହୃଦୟ ତ ବେଶ୍, 'ଡଙ୍କାମରା' ଜାଗା । ସେହିଠାରେ ଧ୍ୟାନ କରିବ ।

### ବିଶ୍ୱାସ ହିଁ ସବୁ—ହଳଧାରୀଙ୍କର ନିରାକାରରେ ବିଶ୍ୱାସ —ଶମ୍ଭୁଙ୍କର ବିଶ୍ୱାସ

ମଣିଲାଲ ବ୍ରହ୍ମଜ୍ଞାନୀ, ନିରାକାରବାଦୀ—ଠାକୁର ତାଙ୍କୁ ଲକ୍ଷ୍ୟ କରି କହୁଛନ୍ତି, ''କବୀର କହୁଥିଲେ, 'ସାକାର ମୋର ମା', ନିରାକାର ମୋର ବାପ । କାକୋ ନିନ୍ଦୋ, କାକୋ ବନ୍ଦୋ, ଦୋନୋ ପାଲ୍ଲା ଭାରୀ' ।''

ହଳଧାରୀ ଦିନରେ ସାକାରରେ ଆଉ ରାତିରେ ନିରାକାରରେ ରହୁଥିଲା । ତେଣୁ ଯେଉଁ ଭାବ ଆଶ୍ରୟ କର, ଠିକ୍ ବିଶ୍ୱାସ ହେଲେ ହେଲା; ସାକାରରେ ବିଶ୍ୱାସ କର ଅଥବା ନିରାକାରରେ ବିଶ୍ୱାସ କର, କିନ୍ତୁ ଠିକ୍ ଠିକ୍ ହେବା ଦରକାର ।

### ପୂର୍ବକଥା—ପ୍ରଥମ ଉନ୍ମାଦ—ଈଶ୍ୱର କର୍ତ୍ତା ନା କାକତାଳୀୟ

''ଶମ୍ଭୁ ମଲ୍ଲିକ ବାଗବଜାରରୁ ଚାଲି ଚାଲି ନିଜର ଉଦ୍ୟାନକୁ ଆସୁଥିଲେ । କେହି ଜଣେ କହିଲା, 'ଏତେ ରାସ୍ତା, କାହିଁକି ଗାଡ଼ିକରି ଆସୁ ନାହଁ ? ବିପଦ ହୋଇପାରେ ।' ସେତେବେଳେ ଶମ୍ଭୁ ମୁହଁ ଲାଲ କରି କହି ଉଠିଲା, 'କଅଣ, ତାଙ୍କର ନାମ ନେଇ ବାହାରିଛି, ପୁଣି ବିପଦ !' ବିଶ୍ୱାସରେ ସବୁ ହୁଏ । ମୁଁ କହେ, ଅମୁକକୁ ଯଦି ଦେଖିବି, ତେବେ କହିବି ସତ । ଅମୁକ ଖାଜାଞ୍ଚି ଯଦି ମୋ ସଙ୍ଗରେ କଥା କହେ । ଯେଉଁଟା ମନେ କରୁଥିଲି, ତାହା ହିଁ ମିଳିଯାଉଥିଲା ।''

ମାଷ୍ଟର ଇଂରାଜୀ ନ୍ୟାୟଶାସ୍ତ୍ର ପଢ଼ିଥିଲେ । ସକାଳର ସ୍ୱପ୍ନ ସତ ହୁଏ—ଏହା କୁସଂସ୍କାରରୁ ଉତ୍ପନ୍ନ, ଏକଥା ପଢ଼ିଥିଲେ । ତେଣୁ ପଚାରୁଛନ୍ତି ।

ମାଷ୍ଟର—ଆଚ୍ଛା, କେଉଁ କେଉଁ ଘଟଣା ମିଳି ନାହିଁ, ଏପରି କଅଣ ହୋଇଛି ?

ଶ୍ରୀରାମକୃଷ୍ଣ —ନା, ସେତେବେଳେ ସବୁ ମିଳିଯାଉଥିଲା । ସେତେବେଳେ ତାଙ୍କର ନାମ କରି ଯାହା ବିଶ୍ୱାସ କରୁଥିଲି ତାହା ହିଁ ମିଳିଯାଉଥିଲା । (ମଣି ମଲ୍ଲିକଙ୍କୁ) ତେବେ କ'ଣ ଜାଣ, ସରଳ ଉଦାର ନ ହେଲେ ଏ ବିଶ୍ୱାସ ହୁଏ ନାହିଁ ।

''ଯାହାର ହାଡ଼ ପାକଳ ହୋଇଛି (ବୟସ୍କ), କୋରଡ଼ ଆଖି, ଟେରା, ଏପ୍ରକାର ଅନେକ ଲକ୍ଷଣ ଅଛି, ସେମାନଙ୍କର ସହଜରେ ବିଶ୍ୱାସ ହୁଏ ନାହିଁ । ଦକ୍ଷିଣେ କଦଳୀ ଉତ୍ତରରେ ପୋଇ, ଗୋଟିକିଆ କଳା ବିରାଡ଼ି କି କରିବି ମୁହିଁ !'' (ସମସ୍ତଙ୍କର ହାସ୍ୟ)

**ଭଗବତୀ ଦାସୀ ପ୍ରତି ଦୟା—ଶ୍ରୀରାମକୃଷ୍ଣ ଓ ସତୀତ୍ୱ ଧର୍ମ**

ସନ୍ଧ୍ୟା ହେଲା । ଦାସୀ ଆସି ଘରେ ଧୂପ ଦେଇଗଲା । ମଣିଲାଲ ପ୍ରଭୃତି ଚାଲିଯିବା ପରେ ଜଣେ ଦୁଇଜଣ ଭକ୍ତ ବର୍ତ୍ତମାନ ମଧ୍ୟ ଅଛନ୍ତି । ଘର ନିସ୍ତବ୍ଧ । ଝୁଣାର ଗନ୍ଧ । ଠାକୁର ଛୋଟ ଖଟଟିରେ ଉପବିଷ୍ଟ । ମାଆଙ୍କର ଚିନ୍ତା କରୁଛନ୍ତି । ମାଷ୍ଟର ତଳେ ବସିଛନ୍ତି । ରାଖାଲ ମଧ୍ୟ ଅଛନ୍ତି ।

କିଛି ସମୟ ପରେ ବାବୁଙ୍କ ଦାସୀ ଦୂରରୁ ପ୍ରଣାମ କଲା । ଠାକୁରେ ବସିବାକୁ କହିଲେ । ଭଗବତୀ ଖୁବ୍ ପୁରୁଣା ଦାସୀ । ବହୁବର୍ଷ ହେଲା ବାବୁଙ୍କ ଘରେ ଅଛି । ଠାକୁର ତାକୁ ବହୁଦିନ ହେଲା ଜାଣନ୍ତି । ପ୍ରଥମ ବୟସର ସ୍ୱଭାବ ଭଲ ନ ଥିଲା । କିନ୍ତୁ ଠାକୁର ଦୟାର ସାଗର, ପତିତପାବନ, ତା' ସହିତ ଅନେକ ପୁରୁଣା କଥା କହୁଛନ୍ତି ।

ଶ୍ରୀରାମକୃଷ୍ଣ—ବର୍ତ୍ତମାନ ତ ବୟସ ହୋଇଛି । ଯାହା ଟଙ୍କା ରୋଜଗାର କଲୁ, ସାଧୁ ବୈଷ୍ଣବମାନଙ୍କୁ ଖୁଆଉଛୁ ତ ?

ଭଗବତୀ (ଟିକଏ ହସି)—ତା' ଆଉ କିପରି କହିବି ?

ଶ୍ରୀରାମକୃଷ୍ଣ—କାଶୀ, ବୃନ୍ଦାବନ ଏସବୁ ହୋଇଛି ?

ଭଗବତୀ (ଟିକିଏ ସଙ୍କୋଚ କରି)—ତାହା ଆଉ କିପରି କହିବି ? ଗୋଟାଏ ଘାଟ ବନ୍ଧାଇ ଦେଇଛି । ସେଥିରେ ପଥରରେ ମୋର ନାମ ଲେଖାଅଛି ।

ଶ୍ରୀରାମକୃଷ୍ଣ—କଅଣ କହୁଛୁ !

ଭଗବତୀ—ହଁ, ନାମ ଲେଖା ଅଛି, 'ଶ୍ରୀମତୀ ଭଗବତୀ ଦାସୀ' ।

ଶ୍ରୀରାମକୃଷ୍ଣ (ଟିକିଏ ହସି)—ଭଲ, ଭଲ ।

ଭଗବତୀ ସାହସ ପାଇ ଠାକୁରଙ୍କ ପାଦ ଛୁଇଁ ପ୍ରଣାମ କଲା ।

ବିଛା କାମୁଡ଼ିଲେ ଯେପରି ଲୋକ ଚମକିଉଠେ ଓ ଅସ୍ଥିର ହୋଇ ଠିଆ ହୋଇପଡ଼େ, ଶ୍ରୀରାମକୃଷ୍ଣ ସେହିପରି ଅସ୍ଥିର ହୋଇ 'ଗୋବିନ୍ଦ' 'ଗୋବିନ୍ଦ' ଏହି ନାମ ଉଚ୍ଚାରଣ କରୁ କରୁ ଠିଆ ହୋଇପଡ଼ିଲେ । ଘରର କୋଣରେ ଗଙ୍ଗାଜଳର ଗୋଟିଏ ମାଠିଆ ଥିଲା—ବର୍ତ୍ତମାନ ମଧ୍ୟ ଅଛି । ସଁ ସଁ ହୋଇ ଯେପରି ତ୍ରସ୍ତ ହୋଇ ସେହି ମାଠିଆ ପାଖକୁ ଗଲେ । ପାଦର ଯେଉଁଠାରେ ଦାସୀ ସ୍ପର୍ଶ କରିଥିଲା, ଗଙ୍ଗାଜଳ ନେଇ ସେହି ସ୍ଥାନ ଧୋଇବାକୁ ଲାଗିଲେ ।

ଜଣେ ଦୁଇଜଣ ଭକ୍ତ, ଯେଉଁମାନେ ଘରେ ଥିଲେ, ସେମାନେ ଅବାକ୍ ଓ ସ୍ତବ୍ଧ ହୋଇ ଏକ ଦୃଷ୍ଟିରେ ଏହି ଘଟଣା ଦେଖୁଛନ୍ତି । ଦାସୀ ଜୀବନ୍ମୃତା ହୋଇ ବସିଛି । ଦୟାସିନ୍ଧୁ ପତିତପାବନ ଠାକୁର ଶ୍ରୀରାମକୃଷ୍ଣ ଦାସୀକୁ ସମ୍ବୋଧନ କରି କରୁଣାପୂର୍ଣ୍ଣ ସ୍ୱରରେ କହୁଛନ୍ତି, ''ତୁମେମାନେ ଖାଲି ପ୍ରଣାମ କରିବ ।'' ଏହା କହି ପୁଣି ଆସନ ଗ୍ରହଣ କରି ଦାସୀକୁ ଭୁଲାଇବା ପାଇଁ ଚେଷ୍ଟା କରୁଛନ୍ତି ।

କହିଲେ, ''ଟିକିଏ ଗୀତ ଶୁଣ ।'' ତାକୁ ଗୀତ ଶୁଣାଉଛନ୍ତି—

''ମଜଲୋ ଆମାର ମନ ଭ୍ରମରା ଶ୍ୟାମାପଦ ନୀଲକମଲେ ।...
''ଶ୍ୟାମାପଦ ଆକାଶେତେ ମନ ଘୁଡ଼ୀଖାନ ଉଡ଼୍‌ତେଛିଲ ।...
''ଆପନାତେ ଆପନି ଥେକୋ ମନ ଯେଓ ନାକୋ କାରୋ ଘରେ,
ଯା' ଚାବି ତାଇ ବସେ ପାବି, ଖୋଁଜ ନିଜ ଅନ୍ତଃପୁରେ ।...''

# ପଞ୍ଚବିଂଶ ପରିଚ୍ଛେଦ

## (୧)

## (ଦକ୍ଷିଣେଶ୍ୱରରେ ଭକ୍ତସଙ୍ଗରେ ଠାକୁର ଶ୍ରୀରାମକୃଷ୍ଣ । ଠାକୁର ଶ୍ରୀରାମକୃଷ୍ଣଙ୍କର ପ୍ରଥମ ପ୍ରେମୋନ୍ମାଦ କଥା ।)

### ପୂର୍ବକଥା — ଦେବେନ୍ଦ୍ର ଠାକୁର, ଦୀନ ମୁଖାର୍ଜି ଓ କୋୟାର ସିଂ

ଆଜି ଅମାବାସ୍ୟା ମଙ୍ଗଳବାର, ୫ ଜୁନ୍ ୧୮୮୩ । ଶ୍ରୀରାମକୃଷ୍ଣ କାଳୀମନ୍ଦିରରେ ଅଛନ୍ତି । ରବିବାରରେ ଭକ୍ତ-ସମାଗମ ବେଶୀ ହୁଏ, ଆଜି ମଙ୍ଗଳବାର ବୋଲି ବେଶୀ ଲୋକ ନାହାନ୍ତି । ରାଖାଲ ଠାକୁରଙ୍କ ପାଖରେ ଅଛନ୍ତି । ହାଜରା ମଧ୍ୟ ଅଛନ୍ତି, ଠାକୁରଙ୍କ ଘରର ସମ୍ମୁଖ ବାରଣ୍ଡାରେ ଆସନରେ ବସନ୍ତି । ମାଷ୍ଟର ଗତ ରବିବାର ଦିନ ଆସିଛନ୍ତି ଓ ଏହି କେତେ ଦିନ ଏଠାରେ ଅଛନ୍ତି ।

ସୋମବାର ରାତିରେ ମା' କାଳୀଙ୍କର ନାଟ-ମନ୍ଦିରରେ କୃଷ୍ଣଯାତ୍ରା ହୋଇଥିଲା । ଠାକୁର କିଛି ସମୟ ଶୁଣିଥିଲେ । ଏହି ଯାତ୍ରା ରବିବାର ରାତିରେ ହେବାର କଥା ଥିଲା; କିନ୍ତୁ ହୋଇ ନାହିଁ ବୋଲି ସୋମବାର ଦିନ ହୋଇଛି ।

ମଧ୍ୟାହ୍ନରେ ଖାଇବା-ପିଇବା ପରେ ଠାକୁର ନିଜର ପ୍ରେମୋନ୍ମାଦ ଅବସ୍ଥା ପୁଣି ବର୍ଣ୍ଣନା କରୁଛନ୍ତି ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି) — କି ଅବସ୍ଥା ଯାଇଛି ! ଏଠାରେ ଖାଉ ନ ଥିଲି । ବରାହନଗର କି ଦକ୍ଷିଣେଶ୍ୱର କି ଏଁଡ଼େଦହର କୌଣସି ବ୍ରାହ୍ମଣ ଘରକୁ ଚାଲିଯାଏ । ଆଉ ଯାଏ ମଧ୍ୟ ଅବେଳାରେ । ଯାଇ ବସେ, ମୁହଁରେ କୌଣସି କଥା ନାହିଁ । ଘରର ଲୋକ କୌଣସି କଥା ପଚାରିଲେ କେବଳ କହେ, ମୁଁ ଏଠାରେ ଖାଇବି । ଆଉ କୌଣସି କଥା ନାହିଁ । ଆଲମବଜାରରେ ରାମ ଚାଟାର୍ଜିଙ୍କ ଘରକୁ ଯାଉଥିଲି । ଆଉ କେତେବେଳେ ଦକ୍ଷିଣେଶ୍ୱରର ସାବର୍ଣ୍ଣ ଚୌଧୁରୀଙ୍କ ଘରକୁ ମଧ୍ୟ ଯାଉଥିଲି । ତାଙ୍କ ଘରେ ଖାଉଥିଲି ସତ; କିନ୍ତୁ ଭଲ ଲାଗୁ ନ ଥିଲା; କିପରି ଆଇଁଷ ଗନ୍ଧ ।

''ଦିନେ ଧରିବସିଲି, ଦେବେନ୍ଦ୍ର ଠାକୁରଙ୍କ ଘରକୁ ଯିବି । ସେଜୋବାବୁଙ୍କୁ କହିଲି, 'ଦେବେନ୍ଦ୍ର ଈଶ୍ୱରଙ୍କର ନାମ କରନ୍ତି, ତାଙ୍କୁ ଦେଖିବି, ମୋତେ ନେଇଯିବ ? ସେଜୋବାବୁ — ତାଙ୍କର ପୁଣି ଭାରୀ ଅଭିମାନ, ସେ ସାଧାରଣ ଲୋକଙ୍କ ଘରକୁ ଯିବେ ? କୁନ୍ଥ କୁନ୍ଥ ହେବାକୁ ଲାଗିଲେ । ତାହା ପରେ କହିଲେ, 'ହଁ, ଦେବେନ୍ଦ୍ର ଆଉ ମୁଁ ଏକସଙ୍ଗରେ ପଢୁଥିଲୁ; ତେବେ ଚାଲ ବାବା, ନେଇଯିବି ।'

''ଦିନେ ଶୁଣିଲି ବାଗ୍‌ବଜାରର ପୋଲ ପାଖରେ ଦୀନ ମୁଖାର୍ଜି ବୋଲି ଜଣେ ଭଲ ଲୋକ ଅଛି । ସେଜୋବାବୁଙ୍କୁ ଧରିବସିଲି, ଦୀନ ମୁଖାର୍ଜି ପାଖକୁ

ଯିବି ।' ସେଜୋବାବୁ କଅଣ କରିବେ, ଗାଡ଼ିରେ ନେଇଗଲେ । ଘରଟି ଛୋଟ, ପୁଣି ବିରାଟ ଗାଡ଼ିରେ ଜଣେ ବଡ଼ଲୋକ ଆସିଛନ୍ତି । ସେମାନେ ଅପ୍ରସ୍ତୁତ, ଆମେ ମଧ୍ୟ ଅପ୍ରସ୍ତୁତ । ତା'ର ପୁଣି ପୁଅର ବ୍ରତ ଘର । କେଉଁଠାରେ ବସାଏ ? ଆମେ ପାଖ ଘରକୁ ଯାଉଥିଲୁ ସେ କହି ଉଠିଲା, 'ସେ ଘରେ ସ୍ତ୍ରୀଲୋକ ଅଛନ୍ତି, ଯିବେ ନାହିଁ ।' ମହା ଅପ୍ରସ୍ତୁତ । ସେଜୋବାବୁ ଫେରିବାବେଳେ କହିଲେ, 'ବାବା ! ତୁମ କଥା ଆଉ ଶୁଣିବି ନାହିଁ ।' ମୁଁ ହସିବାକୁ ଲାଗିଲି ।

''କି ଅବସ୍ଥା ଯାଇଛି ! କୁମାର ସିଂ ସାଧୁଭୋଜନ କରାଇବେ, ମୋତେ ନିମନ୍ତ୍ରଣ କଲେ । ଯାଇ ଦେଖିଲି, ବହୁ ସାଧୁ ଆସିଛନ୍ତି । ମୁଁ ବସିବା ପରେ ସାଧୁମାନେ କେହି କେହି ପରିଚୟ ପଚାରିଲେ । ପଚାରିବାରୁ ମୁଁ ଅଲଗା ହୋଇ ବସିଲି । ଭାବିଲି, ଏତେ ଖବରରେ କଅଣ ଦରକାର ! ତାହା ପରେ ଯେତେବେଳେ ସମସ୍ତଙ୍କୁ ପତ୍ର ପକାଇ ଖାଇବାକୁ ଦିଆଗଲା, କେହି କିଛି କହୁ ନ କହୁଣୁ ମୁଁ ଆଗ ଖାଇବାକୁ ଲାଗିଲି । ସାଧୁମାନେ କେହି କେହି କହିବାକୁ ଲାଗିଲେ, ଶୁଣିବାକୁ ପାଇଲି, 'ଆରେ, ଏ କ୍ୟା ରେ' !''

## (୨)

## ହାଜରାଙ୍କ ସଙ୍ଗରେ କଥା—ଗୁରୁଶିଷ୍ୟ ସମ୍ବାଦ

ସମୟ ପାଞ୍ଚଟା ହୋଇଛି । ଠାକୁର, ବାରଣ୍ଡାରେ ସିଡ଼ି ଉପରେ ବସିଛନ୍ତି । ରାଖାଲ, ହାଜରା ଓ ମାଷ୍ଟର ପାଖରେ ବସିଛନ୍ତି । ହାଜରାଙ୍କର ଭାବ 'ସୋଽହଂ' ।

ଶ୍ରୀରାମକୃଷ୍ଣ (ହାଜରାଙ୍କ ପ୍ରତି)—ହଁ, ସବୁ ଗୋଳ ତୁଟିଯାଏ—ସେ ହିଁ ଆସ୍ତିକ, ସେ ହିଁ ନାସ୍ତିକ; ସେ ହିଁ ଭଲ, ସେ ହିଁ ମନ୍ଦ; ସେ ହିଁ ସତ୍, ସେ ହିଁ ଅସତ୍; ଚେଇଁବା, ଶୋଇବା ଏସବୁ ତାଙ୍କର ହିଁ ଅବସ୍ଥା; ପୁଣି ସେ ଏସବୁ ଅବସ୍ଥାର ଅତୀତ ।

''ଗୋଟିଏ ଚଷାର ବେଶୀ ବୟସରେ ପୁଅ ହୋଇଥିଲା । ପୁଅଟିର ଭାରୀ ଯତ୍ନ ନିଏ । ପୁଅଟି କ୍ରମେ ବଡ଼ ହେଲା । ଦିନେ ଚଷା କ୍ଷେତରେ କାମ କରୁଛି, ଏତିକିବେଳେ ଜଣେ ଆସି ଖବର ଦେଲା ଯେ ପୁଅଟି ଖୁବ୍ ବେମାର, ରହିବ କି ନ ରହିବ । ଘରେ ଆସି ଦେଖେ ପୁଅ ମରିଯାଇଛି, ସ୍ତ୍ରୀ ଖୁବ୍ କାନ୍ଦୁଛି; କିନ୍ତୁ ଚଷା ଆଖିରେ ଟିକିଏ ହେଲେ ଲୁହ ନାହିଁ । ସ୍ତ୍ରୀ ପଡ଼ୋଶୀଙ୍କ ପାଖରେ ତେଣୁ ଆହୁରି ଦୁଃଖ କଲା ଯେ—ଏପରି ପୁଅ ଚାଲିଗଲା, ଏହାଙ୍କ ଆଖିରେ ଟିକିଏ ବି ଲୁହ ନାହିଁ ! ଅନେକ ସମୟ ପରେ ଚଷା ସ୍ତ୍ରୀକୁ ସମ୍ବୋଧନ କରି କହିଲା, 'କାହିଁକି କାନ୍ଦୁନାହିଁ, ଜାଣ ? ମୁଁ କାଲି ସ୍ୱପ୍ନ ଦେଖିଲି ଯେ ମୁଁ ରାଜା ହୋଇଛି, ଆଉ ସାତ ପୁଅର ବାପ ହୋଇଛି । ସ୍ୱପ୍ନରେ ଦେଖିଲି ଯେ, ପିଲାଗୁଡ଼ିକ ରୂପରେ ଗୁଣରେ ସୁନ୍ଦର । କ୍ରମେ ବଡ଼ ହେଲେ, ବିଦ୍ୟା ଧର୍ମ ଉପାର୍ଜନ କଲେ । ଏହି ସମୟରେ ନିଦ

ଭାଙ୍ଗିଗଲା । ବର୍ତ୍ତମାନ ଭାବୁଛି ଯେ, ତୁମର ଏହି ଗୋଟିଏ ପିଲା ପାଇଁ କାନ୍ଦିବି ନା ମୋର ସାତଜଣ ପିଲାଙ୍କ ପାଇଁ କାନ୍ଦିବି !' ଜ୍ଞାନୀମାନଙ୍କ ମତରେ ସ୍ୱପ୍ନ ଅବସ୍ଥା ଯେପରି ସତ୍ୟ, ଜାଗ୍ରତ ଅବସ୍ଥା ମଧ୍ୟ ସେହିପରି ସତ୍ୟ ।

''ଈଶ୍ୱର ହିଁ କର୍ତ୍ତା, ତାଙ୍କ ଇଚ୍ଛାରେ ସବୁ ହେଉଛି ।''

ହାଜରା — କିନ୍ତୁ ବୁଝିବା ଅତି କଷ୍ଟକର । ଭୂକୈଳାସର ସାଧୁଙ୍କୁ କେତେ କଷ୍ଟ ଦେଇ ଏକପ୍ରକାର ମାରିପକାଇଲେ । ସାଧୁଟି ସମାଧି ଅବସ୍ଥାରେ ଥିଲେ । କେତେବେଳେ ମାଟି ଭିତରେ ପୋତି, କେତେବେଳେ ପାଣି ଭିତରେ ବୁଡ଼ାଇ, କେତେବେଳେ ବା ଦେହରେ ନିଆଁ ଲଗେଇ ଦିଅନ୍ତି ! ଏହିପରି କରି ଚେତା ଆଣିଲେ । କିନ୍ତୁ ଯନ୍ତ୍ରଣାରେ ଦେହତ୍ୟାଗ ହେଲା । ଲୋକମାନେ ଯନ୍ତ୍ରଣା ଦେଲେ, ଆଉ ଈଶ୍ୱରଙ୍କ ଇଚ୍ଛାରେ ମରି ବି ଗଲା !

**ଆତ୍ମା ଅମର**

ଶ୍ରୀରାମକୃଷ୍ଣ — ଯାହାର ଯାହା କର୍ମ, ତା'ର ଫଳ ସେ ପାଇବ । କିନ୍ତୁ ଈଶ୍ୱରଙ୍କ ଇଚ୍ଛାରେ ସେ ସାଧୁର ଦେହତ୍ୟାଗ ହେଲା । କବିରାଜମାନେ ବୋତଲ ଭିତରେ ମକର ଧ୍ୱଜ ତିଆରି କରନ୍ତି । ଚାରିପଟେ ମାଟି ଦେଇ ନିଆଁରେ ପକାଇ ରଖନ୍ତି । ବୋତଲ ଭିତରେ ଯେଉଁ ସୁନା ଥାଏ, ସେହି ସୁନା ଅଗ୍ନି ଉତ୍ତାପରେ ଆଉ ଅନ୍ୟାନ୍ୟ ଜିନିଷ ସହିତ ମିଶି ମକରଧ୍ୱଜ ହୁଏ । ସେତେବେଳେ କବିରାଜ ବୋତଲଟି ନେଇ ଆସ୍ତେ ଆସ୍ତେ ଭାଙ୍ଗେ, ଭିତରର ମକରଧ୍ୱଜ ରଖିଦିଏ । ସେତେବେଳେ ବୋତଲଟି ଗଲେ କେତେ ରହିଲେ କେତେ ! ସେହିପରି ଲୋକ ଭାବନ୍ତି ସାଧୁଙ୍କୁ ମାରି ପକାଇଲେ; କିନ୍ତୁ ହୁଏତ ତାହାର ଜିନିଷ ତିଆରି ହୋଇ ଯାଇଥିଲା । ଭଗବାନ ଲାଭ ପରେ ଦେହ ରହିଲେ କେତେ ବା ଗଲେ କେତେ — କ'ଣ ଯାଏ ଆସେ ?

**ସାଧୁ ଓ ଅବତାରଙ୍କର ପ୍ରଭେଦ**

''ଭୂକୈଳାସର ସାଧୁ ସମାଧିସ୍ଥ ଥିଲେ । ସମାଧି ବହୁ ପ୍ରକାରର । ହୃଷୀକେଶର ସାଧୁଙ୍କ କଥା ସହିତ ମୋର ଅବସ୍ଥା ମିଳି ଯାଇଥିଲା । କେତେବେଳେ ଦେଖେ, ଦେହ ଭିତରେ ବାୟୁ ଚାଲୁଛି, ପିମ୍ପୁଡ଼ି ପରି କେତେବେଳେ ବା ସଡ଼ାତ୍ ସଡ଼ାତ୍ କରି ମାଙ୍କଡ଼ ଯେପରି ଗୋଟିଏ ଡାଳରୁ ଅନ୍ୟ ଗୋଟିଏ ଡାଳକୁ ଡ଼ିଏଁ । କେତେବେଳେ ମାଛ ପରି ଗତି । ଯାହାର ହୁଏ; ସେ ହିଁ ଜାଣେ । ଜଗତ୍ ଭୁଲ ହୋଇଯାଏ । ମନଟା ଟିକିଏ ତଳକୁ ଖସିଲେ କହେ, 'ମା ! ମୋତେ ଭଲ କରିଦିଅ, ମୁଁ କଥା କହିବି ।'

''**ଈଶ୍ୱରକୋଟୀ** (ଅବତାରାଦି) ନ ହେଲେ ସମାଧି ପରେ ଫେରନ୍ତି ନାହିଁ । କୌଣସି କୌଣସି ଜୀବ ସାଧନା ବଳରେ ସମାଧିସ୍ଥ ହୁଏ, କିନ୍ତୁ ଆଉ

ଫେରେ ନାହିଁ । ସେ ଯେତେବେଳେ ନିଜେ ମନୁଷ୍ୟ ହୋଇ ଆସନ୍ତି, ଅବତାର ହୁଅନ୍ତି, ଜୀବର ମୁକ୍ତିର ଚାବି ତାଙ୍କ ହାତରେ ଥାଏ, ସେତେବେଳେ ସମାଧି ପରେ ଫେରନ୍ତି—ଲୋକଙ୍କର ମଙ୍ଗଳ ପାଇଁ ।

ମାଷ୍ଟର (ସ୍ୱଗତଃ)—ଠାକୁରଙ୍କ ହାତରେ କଅଣ ଜୀବର ମୁକ୍ତିର ଚାବି ?

ହାଜରା—ଈଶ୍ୱରଙ୍କୁ ତୁଷ୍ଟ କରିପାରିଲେ ହେଲା । ଅବତାର ଥାଆନ୍ତୁ, ଅବା ନ ଥାଆନ୍ତୁ ।

ଶ୍ରୀରାମକୃଷ୍ଣ (ସହାସ୍ୟ)—ହଁ, ହଁ । ବିଷ୍ଣୁପୁରରେ ବଡ଼ ରେଜିଷ୍ଟରୀ ଅଫିସ୍ । ସେଠାରେ ରେଜିଷ୍ଟରୀ କରିପାରିଲେ, ଆଉ 'ଗୋ-ଘାଟ'ରେ ଗୋଳମାଳ ରହେ ନାହିଁ ।

**ଗୁରୁଶିଷ୍ୟ-ସମ୍ବାଦ—ଶ୍ରୀମୁଖକଥିତ ଚରିତାମୃତ**

ଆଜି ମଙ୍ଗଳବାର ଅମାବାସ୍ୟା । ସନ୍ଧ୍ୟା ହେଲାଣି । ମନ୍ଦିରରେ ଆଳତି ହେଉଛି । ଦ୍ୱାଦଶ ଶିବମନ୍ଦିରରେ, ରାଧାକାନ୍ତଙ୍କ ମନ୍ଦିରରେ ଓ ଭବତାରିଣୀଙ୍କ ମନ୍ଦିରରେ ଶଙ୍ଖ ଘଣ୍ଟାଦିର ମଙ୍ଗଳ ବାଜଣା ହେଉଛି । ଆଳତି ସମାପ୍ତ ହେଲା; କିଛି ସମୟ ପରେ ଠାକୁର ଶ୍ରୀରାମକୃଷ୍ଣ ନିଜ ଘରର ଦକ୍ଷିଣପଟ ବାରଣ୍ଡାକୁ ଆସି ବସିଲେ । ଚତୁର୍ଦ୍ଦିଗରେ ନିବିଡ଼ ଅନ୍ଧାର, କେବଳ ମନ୍ଦିରର ସ୍ଥାନେ ସ୍ଥାନେ ଦୀପ ଜଳୁଛି । ଭାଗୀରଥୀ-ବକ୍ଷରେ ଆକାଶର କଳା ଛାଇ ପଡ଼ିଛି । ଅମାବାସ୍ୟା, ଠାକୁର ସହଜେ ଭାବସ୍ଥ; ଆଜି ଭାବ ଘନୀଭୂତ ହୋଇଛି । ଶ୍ରୀମୁଖରେ ମଝିରେ ମଝିରେ ପ୍ରଣବ ଓ ମାଆଙ୍କର ନାମ ଉଚ୍ଚାରଣ । ଗ୍ରୀଷ୍ମକାଳ, ଘର ଭିତରେ ଭାରୀ ଗରମ । ତେଣୁ ବାରଣ୍ଡାକୁ ଆସିଛନ୍ତି । ଜଣେ ଭକ୍ତ ମୂଲ୍ୟବାନ ସଉପଟିଏ ଦେଇଛନ୍ତି । ସେହିଟିକୁ ବାରଣ୍ଡାରେ ପକାଗଲା । ଠାକୁରଙ୍କର ଅହର୍ନିଶି ମାଆଙ୍କର ଚିନ୍ତା, ଶୋଇ ଶୋଇ ମଣିଙ୍କ ସଙ୍ଗରେ ଧୀରେ ଧୀରେ କଥା କହୁଛନ୍ତି ।

ଶ୍ରୀରାମକୃଷ୍ଣ—ଦେଖ, **ଈଶ୍ୱରଙ୍କୁ ଦର୍ଶନ କରାଯାଏ** । ଅମୁକର ଦର୍ଶନ ହୋଇଛି, କିନ୍ତୁ କାହାରିକୁ କୁହ ନାହିଁ । ତୁମକୁ ସାକାର ନା ନିରାକାର ଭଲ ଲାଗେ ?

ମଣି—ଆଜ୍ଞା, ବର୍ତ୍ତମାନ ଟିକିଏ ନିରାକାର ଭଲ ଲାଗେ । ତେବେ ଟିକିଏ ଟିକିଏ ବୁଝୁଛି ଯେ, ସେ ହିଁ ଏସବୁ ସାକାର ହୋଇଛନ୍ତି ।

ଶ୍ରୀରାମକୃଷ୍ଣ—ଦେଖ, ମୋତେ ବେଲଘରିଆକୁ ନେଇଯିବ ? ସେଠାରେ ମୁଢ଼ି ପକାଇ ଦିଅ, ମାଛ ସବୁ ଆସି ମୁଢ଼ି ଖାଇବେ । ଆହା ! ମାଛଗୁଡ଼ାକ ପହଁରି ଖେଳି ବୁଲୁଛନ୍ତି; ଦେଖିଲେ ଖୁବ୍ ଆନନ୍ଦ ହୁଏ । ତୁମର ଉଦ୍ଦୀପନ ହେବ, ଯେପରି ସଚ୍ଚିଦାନନ୍ଦ ସାଗରରେ ଆତ୍ମାରୂପ ମୀନ କ୍ରୀଡ଼ା କରୁଛି । ସେହିପରି ବଡ଼ ପଡ଼ିଆରେ ଠିଆ ହେଲେ ଈଶ୍ୱରୀୟ ଭାବ ହୁଏ । ଯେପରି ହାଣ୍ଡିର ମାଛ ପୋଖରୀକୁ ଆସିଛି ।

''ତାଙ୍କୁ ଦର୍ଶନ କରିବାକୁ ହେଲେ ସାଧନା ଦରକାର । ମୋତେ କଠୋର ସାଧନ କରିବାକୁ ହୋଇଛି । ବେଲପିଢ଼ିରେ କେତେ ପ୍ରକାର ସାଧନ କରିଛି । ଗଛ ତଳେ ପଡ଼ି ରହୁଥାଏ; 'ମା, ଦେଖା ଦିଅ' ବୋଲି ଆଖିଲୁହରେ ଦେହ ଭାସିଯାଉଥାଏ ।''

ମଣି — ଆପଣ କେତେ ସାଧନ କରିଛନ୍ତି, ଆଉ ଲୋକଙ୍କର କଅଣ କ୍ଷଣକେ ହୋଇଯିବ ? ଘର ଚାରିପାଖରେ ଅଙ୍ଗୁଳି ବୁଲାଇ ଦେଲେ କ'ଣ ପାଚେରୀ ହୁଏ ?

ଶ୍ରୀରାମକୃଷ୍ଣ (ସହାସ୍ୟ) — ଅମୃତ କହେ, ଜଣେ ନିଆଁ କଲେ ଦଶ ଜଣ ପୁଆନ୍ତି । ଆଉ ଗୋଟିଏ କଥା, ନିତ୍ୟରେ ପହଞ୍ଚି ଲୀଳାରେ ରହିବା ଭଲ ।

ମଣି — ଆପଣ କହିଛନ୍ତି, ବିଳାସ ପାଇଁ ଲୀଳା !

ଶ୍ରୀରାମକୃଷ୍ଣ — ନା । **ଲୀଳା ମଧ୍ୟ ସତ୍ୟ** । ଆଉ ଦେଖ, ଯେତେବେଳେ ଆସିବ, ସେତେବେଳେ ହାତରେ ଯାହା ହେଲେ କିଛି ଆଣିବ । ନିଜେ କହିବା ଠିକ୍ ନୁହେଁ, ଅଭିମାନ ହୁଏ । ଅଧର ସେନ୍‌କୁ ମଧ୍ୟ କହେ ପଇସାକର କିଛି ନେଇଆସ । ଭବନାଥକୁ କହେ, ପଇସାକର ପାନ ଆଣିବୁ । ଭବନାଥର କିପରି ଭକ୍ତି ଦେଖିଛ ? ନରେନ୍ଦ୍ର ଭବନାଥ — ଯେପରି ନରନାରୀ । ଭବନାଥ ନରେନ୍ଦ୍ରର ଅନୁଗତ । ନରେନ୍ଦ୍ରକୁ ଗାଡ଼ିରେ ଆଣିବ । କିଛି ଖାଇବାକୁ ଆଣିବ । ଏଥିରେ ଖୁବ୍ ଭଲ ହୁଏ ।

**ଜ୍ଞାନପଥ ଓ ନାସ୍ତିକତା**

''ଜ୍ଞାନ ଓ ଭକ୍ତି, ଦୁଇଟାଯାକ ହିଁ ପଥ । ଭକ୍ତିପଥରେ ଟିକିଏ ଆଚାର ବେଶୀ କରିବାକୁ ହୁଏ । ଜ୍ଞାନପଥରେ ଯଦି ଅନାଚାର କେହି କରେ, ତାହା ନଷ୍ଟ ହୋଇଯାଏ । ବେଶୀ ନିଆଁ ଜଳିଲେ କଦଳୀଗଛଟାଏ ଭିତରେ ପକାଇ ଦେଲେ ବି ତାହା ପୋଡ଼ିଯାଏ ।''

''ଜ୍ଞାନୀର ପଥ ବିଚାର-ପଥ । ବିଚାର କରୁ କରୁ ନାସ୍ତିକଭାବ ହୁଏତ କେତେବେଳେ କେମିତି ଆସିଯାଏ । ତାଙ୍କୁ ଜାଣିବାର ଆନ୍ତରିକ ଇଚ୍ଛା ଥିଲେ ନାସ୍ତିକ ଭାବ ଆସିଲେ ମଧ୍ୟ ଭକ୍ତ ଈଶ୍ୱରଚିନ୍ତା ଛାଡ଼ିଦିଏ ନାହିଁ । ଯାହାର ବାପ, ଗୋସାଇଁ ବାପ ଚଷାଗିରି କରି ଆସିଛନ୍ତି, ଅତିବୃଷ୍ଟି ଯୋଗୁଁ କୌଣସି ବର୍ଷ ଫସଲ ନ ହେଲେ ମଧ୍ୟ ସେ ଚାଷ କରେ ।'' ଠାକୁର ତକିଆ ଉପରେ ମୁଣ୍ଡ ରଖି ଶୋଇ ଶୋଇ କଥା କହୁଛନ୍ତି । ମଝିରେ ମଣିଙ୍କୁ କହିଲେ, ''ମୋର ଗୋଡ଼ଟା ଟିକିଏ ବିନ୍ଧୁଛି, ଟିକିଏ ହାତ ବୁଲାଇଦିଅ ତ ।''

ମାଷ୍ଟର ସେହି ଅହେତୁକ କୃପାସିନ୍ଧୁ ଗୁରୁଦେବଙ୍କ ପାଦପଦ୍ମ ସେବା କରୁ କରୁ ଶ୍ରୀମୁଖରୁ ବେଦଧ୍ୱନି ଶୁଣୁଥିଲେ ।

(୩)

## ଦକ୍ଷିଣେଶ୍ୱର ମନ୍ଦିରରେ—ଠାକୁରଙ୍କର ଶ୍ରୀଚରଣପୂଜା

ଠାକୁର ଶ୍ରୀରାମକୃଷ୍ଣ ଆଜି ସନ୍ଧ୍ୟାଆଳତି ପରେ ଦକ୍ଷିଣେଶ୍ୱର କାଳୀମନ୍ଦିରରେ ଦେବୀପ୍ରତିମା ସମ୍ମୁଖରେ ଠିଆ ହୋଇ ଦର୍ଶନ କରୁଛନ୍ତି ଓ ଚାମର ନେଇ ବ୍ୟଜନ କରୁଛନ୍ତି ।

ଗ୍ରୀଷ୍ମକାଳ । ଜ୍ୟେଷ୍ଠ ଶୁକ୍ଳା ତୃତୀୟା ତିଥି, ଜୁନ୍ ୧୮୮୩ । ଆଜି କଲିକତାରୁ ସନ୍ଧ୍ୟା ପରେ ରାମ, କେଦାର (ଚାଟାର୍ଜି), ତାରକ ଠାକୁରଙ୍କ ପାଇଁ ଫୁଲ, ମିଷ୍ଟାନ୍ନ ଆଦି ଆଣି ଖଣ୍ଡେ ଗାଡ଼ିରେ ଆସିଛନ୍ତି ।

ଶ୍ରୀଯୁକ୍ତ କେଦାରଙ୍କର ବୟଃକ୍ରମ ପ୍ରାୟ ପଚାଶ ହେବ । ପରମ ଭକ୍ତ । ଈଶ୍ୱରଙ୍କର କଥା ହେଲାମାତ୍ରକେ ଆଖି ଲୁହରେ ଭରିଯାଏ । ପ୍ରଥମେ ବ୍ରାହ୍ମସମାଜକୁ ଯାତାୟାତ କରୁଥିଲେ—ତପୂରେ କର୍ତ୍ତାଭଜା, ନବରସିକ ପ୍ରଭୃତି ନାନା ସଂପ୍ରଦାୟ ସହିତ ମିଶି ଅବଶେଷରେ ଠାକୁର ଶ୍ରୀରାମକୃଷ୍ଣଙ୍କ ପଦାଶ୍ରୟକୁ ଆସିଛନ୍ତି । ରାଜ-ସରକାରରେ ଆକାଉଣ୍ଟାଣ୍ଟ ଚାକିରୀ କରନ୍ତି । ତାଙ୍କର ଘର କାଁଚଡ଼ାପଡ଼ା ନିକଟସ୍ଥ ହାଲି ସହର ଗ୍ରାମରେ ।

ଶ୍ରୀଯୁକ୍ତ ତାରକଙ୍କର ବୟସ ପ୍ରାୟ ୨୪ ବର୍ଷ । ବିବାହ କରିଥିଲେ—କିଛିଦିନ ପରେ ପତ୍ନୀବିୟୋଗ ହେଲା । ତାଙ୍କର ଘର ବାରାସାତ୍ ଗ୍ରାମରେ । ତାଙ୍କର ପିତା ଜଣେ ଉଚ୍ଚ ସ୍ତରର ସାଧକ-ଠାକୁର ଶ୍ରୀରାମକୃଷ୍ଣଙ୍କୁ ଅନେକଥର ଦର୍ଶନ କରିଥିଲେ । ତାରକଙ୍କର ମାତୃବିୟୋଗ ପରେ ତାଙ୍କର ପିତା ଦ୍ୱିତୀୟ ଥର ଦାରପରିଗ୍ରହ କରିଛନ୍ତି ।

ତାରକ ରାମଙ୍କ ଘରକୁ ସର୍ବଦା ଯାତାୟାତ କରନ୍ତି । ରାମ ଓ ନିତ୍ୟଗୋପାଳଙ୍କ ସଙ୍ଗରେ ସେ ପ୍ରାୟ ଠାକୁରଙ୍କୁ ଦର୍ଶନ କରିବାକୁ ଆସନ୍ତି । ବର୍ତ୍ତମାନ ମଧ୍ୟ ଗୋଟିଏ ଅଫିସ୍‌ରେ କର୍ମ କରୁଛନ୍ତି; କିନ୍ତୁ ସର୍ବଦା ହିଁ ଉଦାସଭାବ ।

ଠାକୁର ଶ୍ରୀରାମକୃଷ୍ଣ କାଳୀଘରୁ ବାହାରି ତଳେ ଭୂମିଷ୍ଠ ହୋଇ ମାଆଙ୍କୁ ପ୍ରଣାମ କଲେ । ଦେଖିଲେ ରାମ, କେଦାର, ତାରକ ପ୍ରଭୃତି ଭକ୍ତମାନେ ସେଠାରେ ଠିଆ ହୋଇଛନ୍ତି ।

### ଶ୍ରୀଯୁକ୍ତ ତାରକଙ୍କ ପ୍ରତି ସ୍ନେହ—କେଦାର ଓ କାମିନୀ-କାଞ୍ଚନ

ଠାକୁର ତାରକଙ୍କର ଓଠ ଧରି ଆଦର କରୁଛନ୍ତି । ତାଙ୍କୁ ଦେଖି ଆନନ୍ଦିତ ହୋଇଛନ୍ତି ।

ଠାକୁର ଭାବାବିଷ୍ଟ ହୋଇ ନିଜ ଘରେ ତଳେ ବସିଛନ୍ତି । ପାଦ ଦୁଇଟି ବଢ଼ାଇଦେଇଛନ୍ତି—ରାମ ଓ କେଦାର ନାନା ଫୁଲ ଓ ମାଳ ଦେଇ ଶ୍ରୀପାଦପଦ୍ମ ବିଭୂଷିତ କରିଛନ୍ତି । ଠାକୁର ସମାଧିସ୍ଥ ।

କେଦାରଙ୍କର ନବରସିକ ଭାବ । ଶ୍ରୀଚରଣର ବୃଦ୍ଧାଙ୍ଗୁଷ୍ଠି ଧାରଣ କରିଛନ୍ତି । ତାହା ହେଲେ ଶକ୍ତି ସଞ୍ଚାର ହେବ—ଏହି ଧାରଣା ।

ଠାକୁର ଟିକିଏ ପ୍ରକୃତିସ୍ଥ ହୋଇ କହୁଛନ୍ତି—"ମା, ଅଙ୍ଗୁଳି ଧରି ମୋର କଅଣ କରିପାରିବ !" କେଦାର ବିନୀତ ଭାବରେ ହାତ ଯୋଡ଼ି ରହିଛନ୍ତି ।

ଶ୍ରୀରାମକୃଷ୍ଣ (କେଦାରଙ୍କ ପ୍ରତି ଭାବାବେଶରେ)—କାମିନୀ-କାଞ୍ଚନ ମନକୁ ଟାଣେ (ତୁମର)—ମୁହଁରେ କହିଲେ କଅଣ ହେବ ଯେ ମୋର ସେଥିରେ ମନ ନାହିଁ !

"**ଆଗେଇ ଯାଅ ।** ଚନ୍ଦନ କାଠ ପରେ ଆହୁରି ଅଛି—ରୂପାର ଖଣି—ସୁନାର ଖଣି—ହୀରା, ମାଣିକ । ଟିକିଏ ଉଦ୍ଦୀପନ ହୋଇଛି ବୋଲି ମନେକର ନାହିଁ ଯେ ସବୁ ହୋଇଯାଇଛି ।"

ଠାକୁର ପୁଣି ମାଆଙ୍କ ସହିତ କଥା କହୁଛନ୍ତି । କହୁଛନ୍ତି, "ମା ଏହାକୁ ହଟାଇ ଦିଅ !"

କେଦାର ଶୁଷ୍କକଣ୍ଠ । ଭୟରେ ରାମଙ୍କୁ କହୁଛନ୍ତି, "ଠାକୁର ଏ କଅଣ କହୁଛନ୍ତି !"

**ଅବତାର ଓ ପାର୍ଷଦ**

ଶ୍ରୀଯୁକ୍ତ ରାଖାଲାଙ୍କୁ ଦେଖି ଠାକୁର ପୁଣି ଭାବାବିଷ୍ଟ ହେଉଛନ୍ତି । ଭାବରେ ରାଖାଲଙ୍କୁ ସମ୍ବୋଧନ କରି କହୁଛନ୍ତି—

"ମୁଁ ବହୁଦିନରୁ ଏଠାକୁ ଆସିଛି—ତୁ କେବେ ଆସିଲୁ ?"

ଠାକୁର କ'ଣ ଇଙ୍ଗିତ କରି କହୁଛନ୍ତି ଯେ, ସେ ଈଶ୍ୱରଙ୍କର ଅବତାର—ଆଉ ରାଖାଲ ତାଙ୍କର ଜଣେ ପାର୍ଷଦ—ଅନ୍ତରଙ୍ଗ !

# ଷଷ୍ଠବିଂଶ ପରିଚ୍ଛେଦ

## (ଦକ୍ଷିଣେଶ୍ୱରରେ ମଣିରାମପୁର ଓ ବେଲଘରର ଭକ୍ତଙ୍କ ସଙ୍ଗରେ)

## (୧)

### ଶ୍ରୀରାମକୃଷ୍ଣ-କଥିତ ନିଜ ଚରିତ

ଠାକୁର ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱର ମନ୍ଦିରରେ ନିଜ ଘରେ କେତେବେଳେ ଠିଆ ହୋଇ କେତେବେଳେ ବା ବସି ଭକ୍ତଙ୍କ ସହିତ କଥା କହୁଛନ୍ତି । ଆଜି ରବିବାର, ୧୦ ଜୁନ୍ ୧୮୮୩, ଜ୍ୟେଷ୍ଠ ଶୁକ୍ଳା ପଞ୍ଚମୀ, ସକାଳ ୧୦ଟା ହେବ । ରାଖାଲ, ମାଷ୍ଟର, ଲାଟୁ, କିଶୋରୀ, ରାମଲାଲ, ହାଜରା ପ୍ରଭୃତି ଅନେକେ ଅଛନ୍ତି ।

ଠାକୁର ନିଜ ଚରିତ୍ର, ପୂର୍ବ କାହାଣୀ ବର୍ଣ୍ଣନା କରୁଛନ୍ତି ।

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି) — ସେ ଦେଶରେ (କାମାରପୁକୁରରେ) ପିଲାଦିନେ ମୋତେ ପୁରୁଷ ସ୍ତ୍ରୀ ସମସ୍ତେ ଭଲ ପାଉଥିଲେ । ମୋର ଗୀତ ଶୁଣୁଥିଲେ । ପୁଣି ଲୋକମାନଙ୍କୁ ନକଲ କରିପାରୁଥିଲି, ସେହିସବୁ ଦେଖୁଥିଲେ ଓ ଶୁଣୁଥିଲେ । ସେମାନଙ୍କ ଘରର ବୋହୂମାନେ ମୋ ପାଇଁ ଖାଇବା ଜିନିଷ ରଖିଦେଇଥାନ୍ତି । କିନ୍ତୁ କେହି ଅବିଶ୍ୱାସ କରୁ ନ ଥିଲେ । ସମସ୍ତେ ଦେଖୁଥିଲେ ଯେପରି ଘରର ପୁଅ ।

''କିନ୍ତୁ 'ସୁଖର ପାରା' ଥିଲି । ବେଶ୍ ଭଲ ସଂସାର ଦେଖିଲେ ଯିବା ଆସିବା କରୁଥିଲି । ଯେଉଁ ଘରେ ଦୁଃଖ ବିପଦ ଦେଖୁଥିଲି, ସେଠାରୁ ପଳାଇ ଯାଉଥିଲି ।

ପିଲାମାନଙ୍କ ଭିତରେ ଜଣେ ଦୁଇଜଣଙ୍କୁ ଭଲ ଦେଖିଲେ ଖୁବ୍ ବନ୍ଧୁତ୍ୱ କରୁଥିଲି । କାହା ସଙ୍ଗରେ ସଙ୍ଗାତ ବସୁଥିଲି । କିନ୍ତୁ ବର୍ତ୍ତମାନ ସେମାନେ ଘୋର ବିଷୟୀ । ଏବେ ସେମାନେ କେହି କେହି ଏଠାକୁ ଆସନ୍ତି; ଆସି କହନ୍ତି, 'ହେ ଭଗବାନ ! ଚାଟଶାଳୀରେ ଯେପରି ଦେଖିଛି, ଏଠି ମଧ୍ୟ ଠିକ୍ ସେହିପରି ଦେଖୁଛି !'

''ଚାଟଶାଳୀରେ ଶୁଭଙ୍କରୀ ଅଙ୍କ ଅଡୁଆ ଲାଗୁଥିଲା । କିନ୍ତୁ ଚିତ୍ର ବେଶ୍ ଆଙ୍କିପାରୁଥିଲି, ଆଉ ଛୋଟ ଦିଅଁ ବେଶ୍ ଗଢ଼ିପାରୁଥିଲି ।

**ଅତିଥିଶାଳା, ରାମାୟଣ, ମହାଭାରତ ପ୍ରତି ଶ୍ରଦ୍ଧା**

''ସଦାବ୍ରତ, ଅତିଥିଶାଳା ଯେଉଁଠାରେ ଦେଖୁଥିଲି ସେଠାକୁ ଯାଉଥିଲି, ଯାଇ ବହୁ ସମୟ ଧରି ଠିଆ ହୋଇ ଦେଖୁଥିଲି ।

''କେଉଁଠାରେ ରାମାୟଣ କି ଭାଗବତ ପାଠ ହେଉଥିଲେ ବସି ବସି ଶୁଣୁଥିଲି । ତେବେ ଯଦି ଢଙ୍ଗ କରି ପଢ଼େ, ତାହା ହେଲେ ତାହାର ନକଲ କରୁଥିଲି ଓ ଅନ୍ୟ ଲୋକମାନଙ୍କୁ ଶୁଣାଉଥିଲି ।

''ସ୍ତ୍ରୀମାନଙ୍କର ଢଙ୍ଗ ବେଶ୍ ବୁଝିପାରୁଥିଲି । ସେମାନଙ୍କର କଥା, ସ୍ୱର ନକଲ କରୁଥିଲି । ବାଲୁତ ବିଧବା ବାପକୁ ଉତ୍ତର ଦେଉଛି 'ଯା—ଉ—ଛି' । ବାରଣ୍ଡାରେ ସ୍ତ୍ରୀମାନେ ଡାକୁଛନ୍ତି, 'ହେ ତୋଡ଼ୀ ମାଛବାଲା !' ନଷ୍ଟା ସ୍ତ୍ରୀ ବୋଲି ବୁଝିପାରୁଥିଲି । ବିଧବା ସିଧା ସୂତା କାଟିଛି, ଆଉ 'ଖୁବ୍ ଆଗ୍ରହରେ ଦେହରେ ତେଲ ଲଗାଉଛି ! ଲଜ୍ଜା କମ୍, ବସିବାର ଢଙ୍ଗ ହିଁ ଅଲଗା ।

''ଆଉ ବିଷୟୀମାନଙ୍କର କଥା ।''

ରାମଲାଲଙ୍କୁ ଗୀତ ଗାଇବାକୁ କହୁଛନ୍ତି । ଶ୍ରୀଯୁକ୍ତ ରାମଲାଲ ଗୀତ ଗାଉଛନ୍ତି—

''କେ ରଣେ ନାଚିଛେ ବାମା ନୀରଦବରଣୀ,
ଶୋଣିତ-ସାୟରେ ଯେନ ଭାସିଛେ ନବ ନଳିନୀ ।''

ଏଥର ରାମଲାଲ ରାବଣ-ବଧ ପରେ ମନ୍ଦୋଦରୀଙ୍କର ବିଳାପ-ଗୀତ ଗାଉଛନ୍ତି—

''କି କରିଲେ ହେ କାନ୍ତ ! ଅବଲାରି ପ୍ରାଣକାନ୍ତ,
ହୟ ନା ଶାନ୍ତ ଏ ପ୍ରାଣାନ୍ତ ବିନେ ।''

ଶେଷରେ ସେ ଗାଇଲେ—

''ପାଷାଣୀ ହୁଏ ମାନବୀ, ସେହି ଶ୍ରୀରାମ-ଚରଣେ ।''

**ରାମ-ନାମରେ ଶ୍ରୀରାମକୃଷ୍ଣ ବିହ୍ୱଳ—ଗୋପୀପ୍ରେମ**

ଶେଷ ଗୀତଟି ଶୁଣୁ ଶୁଣୁ ଠାକୁର ଅଶ୍ରୁ ବିସର୍ଜନ କରୁଛନ୍ତି, ଆଉ କହୁଛନ୍ତି, ''ମୁଁ ଝାଉଁତଳକୁ ପୋଖରୀପାଣି ଯାଇ ଶୁଣିଲି, ଡଙ୍ଗାରେ ନାଉରୀ ଏହି ଗୀତ ଗାଉଛି; ଝାଉଁତଳେ ଯେତେ ସମୟ ବସିଥିଲି ଖାଲି କାନ୍ଦିଛି । ମୋତେ ଧରି ଧରି ଘରକୁ ନେଇ ଆସିଲେ ।''

'ଶୁନେଛି ରାମତାରକ ବ୍ରହ୍ମ, ମାନୁଷ ନୟ ରାମ ଜଟାଧାରୀ
ପିତେ କି ନାଶିତେ ବଂଶ, ସୀତେ ତାର କରେଛ ଚୁରୀ ।'

ଅକ୍ରୁର ଶ୍ରୀକୃଷ୍ଣଙ୍କୁ ରଥରେ ବସାଇ ମଥୁରାକୁ ନେଇଯାଉଛନ୍ତି ଦେଖି ଗୋପୀମାନେ ରଥଚକ୍ର କୁଣ୍ଢାଇ ଧରିଲେ ଓ କେହି କେହି ରଥଚକ୍ରର ସାମନାରେ ଶୋଇପଡ଼ିଛନ୍ତି । ସେମାନେ ଅକ୍ରୁରଙ୍କୁ ଦୋଷ ଦେଉଛନ୍ତି । ଶ୍ରୀକୃଷ୍ଣ ଯେ ନିଜ ଇଚ୍ଛାରେ ଯାଉଛନ୍ତି ତାହା ଜାଣନ୍ତି ନାହିଁ ।

'ଧରନା ଧରନା ରଥଚକ୍ର ରଥ କି ଚକ୍ରେ ଚଲେ,
ଯେ ଚକ୍ରେର ଚକ୍ରୀ ହରି, ଯାର ଚକ୍ରେ ଜଗତ୍ ଚଲେ ।'

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି)—ଗୋପୀମାନଙ୍କର କି ଭଲପାଇବା, କି ପ୍ରେମ ! ଶ୍ରୀମତୀ ସ୍ୱହସ୍ତରେ ଶ୍ରୀକୃଷ୍ଣଙ୍କର ଚିତ୍ର ଆଙ୍କିଛନ୍ତି, କିନ୍ତୁ ପାଦ ଆଙ୍କି ନାହାନ୍ତି; କାଳେ ସେ ମଥୁରାକୁ ଚାଲିଯିବେ ।

"ମୁଁ ଏହିସବୁ ଗୀତ ପିଲାଦିନେ ଖୁବ୍ ଗାଉଥିଲି । ଗୋଟିଏ ଗୋଟିଏ ଯାତ୍ରାର ସମସ୍ତ ପାଲା ଗାଇ ଦେଇପାରୁଥିଲି । କେହି କେହି କହନ୍ତି, ମୁଁ କାଳୀୟଦମନ ଯାତ୍ରା ଦଳରେ ଥିଲି ।"

ଜଣେ ଭକ୍ତ ନୂଆ ଚାଦର ଦେହରେ ଦେଇ ଆସିଛନ୍ତି । ରାଖାଲଙ୍କର ବାଳକ ସ୍ୱଭାବ, କତୁରୀ ଆଣି ତାଙ୍କ ଚାଦରର ଝାଲର କାଟିବାକୁ ଯାଉଛନ୍ତି । ଠାକୁର କହିଲେ, "କାହିଁକି କାଟୁଛୁ ! ଥାଉନା, ଶାଲ ପରି ବେଶ୍ ଦେଖାଯାଉଛି । ହଇହେ ଏହାର ଦାମ୍ କେତେ ?" ସେତେବେଳେ ବିଲାତି ଚାଦରର ଦାମ୍ କମ୍ ଥିଲା । ଭକ୍ତଟି କହିଲେ—ଟଙ୍କାଏ ଛଅ ଅଣା ଯୋଡ଼ା । ଠାକୁର କହୁଛନ୍ତି, "କଅଣ କହୁଛ ହେ ! ଯୋଡ଼ା ! ଟଙ୍କାଏ ଛଅ ଅଣା ଯୋଡ଼ା !"

କିଛି ସମୟ ପରେ ଠାକୁର ସେହି ଭକ୍ତଙ୍କୁ କହୁଛନ୍ତି, "ଯାଅ ଗଙ୍ଗାରେ ଗାଧୋଇ ପଡ଼; ଏହାଙ୍କୁ ତେଲ ଦିଅରେ !"

ସ୍ନାନ ପରେ ସେ ଫେରିଆସିଲାରୁ ଠାକୁର ଥାକରୁ ଗୋଟିଏ ଆମ୍ବ ନେଇ ତାଙ୍କୁ ଦେଲେ । କହୁଛନ୍ତି, "ଏ ଆମ୍ବଟା ଏହାଙ୍କୁ ଦିଅ, ତିନିଟା ପାଶ ବାଲା । ଆଚ୍ଛା, ତୁମର ଭାଇ ବର୍ତ୍ତମାନ କିପରି ?"

ଭକ୍ତ—ହଁ, ତାହାର ଔଷଧ ଠିକ୍ ପଡ଼ିଛି, ଏବେ ଠିକ୍ ଖଟିଲେ ହୁଏ ।

ଶ୍ରୀରାମକୃଷ୍ଣ—ତା' ପାଇଁ ଗୋଟିଏ କାମ ଯୋଗାଡ଼ କରିଦେଇପାର ? ବେଶ୍ ତ, ତୁମେ ମୁରବୀ ହେବ ।

ଭକ୍ତ—ଭଲ ହେଲେ ସବୁ ସୁବିଧା ହୋଇଯିବ ।

## (୨)

## ଶ୍ରୀରାମକୃଷ୍ଣ ମଣିରାମପୁର ଭକ୍ତଙ୍କ ସଙ୍ଗରେ

ଠାକୁର ଆହାରାନ୍ତେ ଛୋଟ ଖଟଟିରେ ଟିକିଏ ବସିଛନ୍ତି, ବର୍ତ୍ତମାନ ମଧ୍ୟ ବିଶ୍ରାମ କରିବାକୁ ଅବସର ପାଇନାହାନ୍ତି । ଭକ୍ତମାନଙ୍କର ସମାଗମ ହେବାକୁ ଲାଗିଲା । ପ୍ରଥମେ ମଣିରାମପୁରଠାରୁ ଦଳେ ଭକ୍ତ ଆସି ଉପସ୍ଥିତ ହେଲେ । ଜଣେ ପି. ଡବ୍ଲ୍ୟୁ. ଡି. ରେ କାର୍ଯ୍ୟ କରୁଥିଲେ, ବର୍ତ୍ତମାନ ପେନ୍ସନ୍ ପାଆନ୍ତି । ଜଣେ ଭକ୍ତ ସେମାନଙ୍କୁ ନେଇ ଆସିଛନ୍ତି । କ୍ରମେ ବେଲଘରଠାରୁ ଦଳେ ଭକ୍ତ ଆସିଲେ । ଶ୍ରୀଯୁକ୍ତ ମଣି ମଲ୍ଲିକ ଭକ୍ତମାନେ ମଧ୍ୟ କ୍ରମେ ଆସିଲେ । ମଣିରାମପୁରର ଭକ୍ତଗଣ କହୁଛନ୍ତି, "ଆପଣଙ୍କର ବିଶ୍ରାମରେ ବ୍ୟାଘାତ ହେଲା ।"

ଶ୍ରୀରାମକୃଷ୍ଣ କହୁଛନ୍ତି, ''ନା, ନା, ସେସବୁ ରଜୋଗୁଣର କଥା—ସେ ବର୍ତ୍ତମାନ ଶୋଇବେ !''

ଚାଣକ ମଣିରାମପୁର—ଏହି କଥା ଶୁଣି ଠାକୁରଙ୍କର ବାଲ୍ୟସଖା ଶ୍ରୀରାମକୁ ମନେ ପଡ଼ିଲା । ଠାକୁର କହୁଛନ୍ତି, ''ଶ୍ରୀରାମର ଦୋକାନ ତୁମର ସେଠାରେ । ସେଦେଶରେ ଶ୍ରୀରାମ ମୋ ସଙ୍ଗରେ ପାଠଶାଳାରେ ପଢୁଥିଲା । ସେଦିନ ଏଠାକୁ ଆସିଥିଲା ।''

ମଣିରାମପୁରର ଭକ୍ତମାନେ କହୁଛନ୍ତି, ''ଭଗବାନଙ୍କୁ କିପରି ଲାଭ କରାଯାଏ, ଟିକିଏ ଆମମାନଙ୍କୁ ଦୟା କରି କୁହନ୍ତୁ ।''

**ମଣିରାମପୁର ଭକ୍ତଙ୍କୁ ଶିକ୍ଷା—ସାଧନଭଜନ କର ଓ ବ୍ୟାକୁଳ ହୁଅ**

ଶ୍ରୀରାମକୃଷ୍ଣ—ଟିକିଏ ସାଧନଭଜନ କରିବାକୁ ହୁଏ ।

''ଦୁଧରେ ଲହୁଣୀ ଅଛି ବୋଲି ଖାଲି କହିଲେ ହୁଏ ନାହିଁ, ଦୁଧକୁ ଦହି ପକାଇ ମନ୍ଥନ କରି ଲହୁଣୀ ବାହାର କରିବାକୁ ପଡ଼େ । ମଝିରେ ମଝିରେ ଟିକିଏ ନିର୍ଜ୍ଜନ ଦରକାର ।[୧] ଦିନାକେତେ ନିର୍ଜ୍ଜନରେ ରହି ଭକ୍ତିଲାଭ କର, ତାହା ପରେ ଯେଉଁଠାରେ ରହ । ପାଦରେ ଜୋତା ଲଗାଇ କଣ୍ଟା ବଣରେ ମଧ୍ୟ ଅନାୟାସରେ ଯାଇହୁଏ ।

''ପ୍ରଧାନ କଥା **ବିଶ୍ୱାସ** । 'ଯେପରି ଭାବ ସେପରି ଲାଭ, ମୂଳ ସେ ପ୍ରତ୍ୟୟ ।' ବିଶ୍ୱାସ ହୋଇଗଲେ ଆଉ ଭୟ ନାହିଁ ।''

ମଣିରାମପୁର ଭକ୍ତ—ଆଜ୍ଞା, ଗୁରୁ କଅଣ ଦରକାର ?

ଶ୍ରୀରାମକୃଷ୍ଣ—ଅନେକଙ୍କର ଦରକାର ହୁଏ ।[୨] ତେବେ ଗୁରୁବାକ୍ୟରେ ବିଶ୍ୱାସ କରିବାକୁ ହୁଏ । ଗୁରୁଙ୍କୁ ଈଶ୍ୱରଜ୍ଞାନ କଲେ ତେବେ ହୁଏ । ତେଣୁ ବୈଷ୍ଣବମାନେ କହନ୍ତି—**ଗୁରୁ-କୃଷ୍ଣ-ବୈଷ୍ଣବ ।**

ତାଙ୍କର ନାମ ସର୍ବଦା କରିବାକୁ ହୁଏ । **କଳିରେ ନାମ-ମାହାତ୍ମ୍ୟ** । ଅନ୍ନଗତ ପ୍ରାଣ, ତେଣୁ ଯୋଗହୁଏ ନାହିଁ । ତାଙ୍କର ନାମ କରି ହାତତାଳି ମାରିଲେ ପାପ-ପକ୍ଷୀ ପଳାଇଯାଏ ।

''**ସତ୍‌ସଙ୍ଗ** ସଦା ସର୍ବଦା ଦରକାର । ଗଙ୍ଗାର ଯେତେ ପାଖକୁ ଯିବ ସେତେ ଶୀତଳ ପବନ ପାଇବ, ଅଗ୍ନିର ଯେତେ ପାଖକୁ ଯିବ ସେତେ ଉତ୍ତାପ ପାଇବ ।

''ଧିମା ତ୍ରିତାଳରେ କାମ ହୁଏ ନାହିଁ । ଯାହାଙ୍କର ସଂସାରରେ ଭୋଗର ଇଚ୍ଛା ଅଛି, ସେମାନେ କହନ୍ତି, 'ହେବ, କେତେବେଳେ ନା କେତେବେଳେ ଈଶ୍ୱରଙ୍କୁ ପାଇବ !'

---

୧. ଯୋଗୀ ଯୁଞ୍ଜୀତ ସତତଂ ଆତ୍ମାନଂ ରହସି ସ୍ଥିତଃ । —ଗୀତା, ୬/୧୦

୨. ଆଚାର୍ଯ୍ୟବାନ୍ ପୁରୁଷୋ ବେଦ । —ଛାନ୍ଦୋଗ୍ୟ ଉପନିଷଦ୍, ୬/୧୪/୨

''ମୁଁ କେଶବ ସେନ୍‌ଙ୍କୁ କହିଥିଲି, ପୁଅକୁ ବ୍ୟାକୁଳ ଦେଖିଲେ ତାହାର ବାପ ତିନି ବର୍ଷ ଆଗରୁ ତା'ର ଅଂଶ ଛାଡ଼ିଦିଏ ।

''ମା ରାନ୍ଧୁଛି, କୋଳରେ ପିଲା ଶୋଇଛି । ମା ତାକୁ ଚୁଚୁମା ଦେଇଯାଇଛି, ଯେତେବେଳେ ଚୁଚୁମା ପକାଇ ଚିତ୍କାର କରି ପିଲାଟି କାନ୍ଦେ, ସେତେବେଳେ ମା ହାଣ୍ଡି ଓହ୍ଲାଇ କୋଳକରି ପିଲାକୁ କ୍ଷୀର ଦିଏ । ଏହିସବୁ କଥା କେଶବ ସେନ୍‌ଙ୍କୁ କହିଥିଲି ।''

''କଳିରେ କହନ୍ତି, ଗୋଟିଏ ଦିନ ଗୋଟିଏ ରାତି କାନ୍ଦିଲେ ଈଶ୍ୱରଦର୍ଶନ ହୁଏ ।

''ମନରେ ଅଭିମାନ କରିବ, ଆଉ କହିବ, 'ତୁମେ ମୋତେ ସୃଷ୍ଟି କରିଛ, ଦେଖା ଦେବାକୁ ହେବ ।'

''ସଂସାରରେ ଥାଅ ଅଥବା ଯେଉଁଠାରେ ରହିଥାଅ, ଈଶ୍ୱର ମନଟି ଦେଖନ୍ତି । ବିଷୟାସକ୍ତ ମନ ଯେପରି ଓଦା ଦିଆସିଲି, ଯେତେ ଘଷ ଜଳେ ନାହିଁ । ଏକଲବ୍ୟ ମାଟିର ଦ୍ରୋଣ ଅର୍ଥାତ୍ ନିଜ ଗୁରୁଙ୍କ ମୂର୍ତ୍ତିକୁ ସାମନାରେ ରଖି ବାଣ ଶିକ୍ଷା କରିଥିଲା ।

''**ଆଗେଇ ଯାଅ** — କାଠୁରିଆ ଆଗେଇ ଯାଇ ଦେଖିଥିଲା, ଚନ୍ଦନକାଠ, ରୂପାର ଖଣି ସୁନାର ଖଣି; ଆଉ ଆଗେଇ ଯାଇ ଦେଖିଲା, ହୀରା, ମାଣିକ ।

''ଯେଉଁମାନେ ଅଜ୍ଞାନ, ସେମାନେ ଯେପରି ମାଟିକାନ୍ଥର ଘର ଭିତରେ ରହିଛନ୍ତି । ଭିତରେ ସେପରି ଆଲୁଅ ନାହିଁ, ପୁଣି ବାହାରର କୌଣସି ଜିନିଷ ମଧ୍ୟ ଦେଖିପାରନ୍ତି ନାହିଁ । ଜ୍ଞାନଲାଭ କରି ଯେ ସଂସାରରେ ରହେ ସେ ଯେପରି କାଚଘର ଭିତରେ ଅଛି । ଭିତରେ ଆଲୁଅ ବାହାରେ ମଧ୍ୟ ଆଲୁଅ । ଭିତରର ଜିନିଷ ଦେଖିବାକୁ ପାଏ, ଆଉ ବାହାରର ଜିନିଷ ମଧ୍ୟ ଦେଖିପାରେ ।

## ବ୍ରହ୍ମ ଓ ଜଗନ୍ମାତା ଏକ

''ଏକ ବ୍ୟତୀତ ଆଉ କିଛି ନାହିଁ । ସେହି ପରବ୍ରହ୍ମ ଯେପର୍ଯ୍ୟନ୍ତ 'ମୁଁ' ରଖି ଦିଅନ୍ତି, ସେପର୍ଯ୍ୟନ୍ତ ଦେଖାନ୍ତି ଯେ **ଆଦ୍ୟାଶକ୍ତି** ରୂପରେ ସୃଷ୍ଟି, ସ୍ଥିତି, ପ୍ରଳୟ କରୁଛନ୍ତି ।

''ଯେ ବ୍ରହ୍ମ ସେ ହିଁ ଆଦ୍ୟାଶକ୍ତି । ଜଣେ ରାଜା କହିଥିଲେ ଯେ, ମୋତେ ଗୋଟିଏ କଥାରେ ଜ୍ଞାନ ଦେବାକୁ ହେବ । ଯୋଗୀ କହିଲେ, ଆଚ୍ଛା ତୁମେ ଗୋଟିଏ କଥାରେ ଜ୍ଞାନ ପାଇବ । କିଛି ସମୟ ପରେ ରାଜାଙ୍କ ପାଖରେ ହଠାତ୍ ଜଣେ ଯାଦୁକର ଆସି ଉପସ୍ଥିତ । ରାଜା ଦେଖିଲେ, ସେ ଆସି କେବଳ ଦୁଇଟା ଆଙ୍ଗୁଠି ଘୂରାଉଛି, ଆଉ କହୁଛି — 'ରାଜା, ଏହି ଦେଖ, ଏହି ଦେଖ ।' ରାଜା ଅବାକ୍ ହୋଇ ଦେଖୁଛନ୍ତି । କିଛି ସମୟ ପରେ ଦେଖନ୍ତି ଦୁଇଟା ଆଙ୍ଗୁଠି ଗୋଟାଏ ହୋଇଯାଇଛି ! ଯାଦୁକର ଗୋଟାଏ ଆଙ୍ଗୁଳି ଘୂରାଉଛି, ଆଉ କହୁଛି — 'ରାଜା,

ଏହି ଦେଖ, ଏହି ଦେଖ ।' ଅର୍ଥାତ୍ ବ୍ରହ୍ମ ଆଉ ଆଦ୍ୟାଶକ୍ତି ପ୍ରଥମେ ଦୁଇଟା ବୋଧହୁଏ । କିନ୍ତୁ ବ୍ରହ୍ମଜ୍ଞାନ ହେଲେ ଆଉ ଦୁଇଟା ରହେ ନାହିଁ । **ଅଭେଦ** । ଏକ, ଯେଉଁ ଏକର ଦୁଇ ନାହିଁ । ଅଦ୍ୱୈତମ୍ ।'

## (୩)

## ବେଲଘରର ଭକ୍ତଙ୍କ ସଙ୍ଗରେ

ବେଲଘରଠାରୁ ଗୋବିନ୍ଦ ମୁଖୋପାଧ୍ୟାୟ ପ୍ରମୁଖ ଭକ୍ତମାନେ ଆସିଛନ୍ତି । ଠାକୁରେ ଯେଉଁଦିନ ତାଙ୍କ ଘରକୁ ଶୁଭାଗମନ କରିଥିଲେ, ସେଦିନ ଗାୟକଙ୍କର 'ଜାଗୋ, ଜାଗୋ, ଜନନୀ !' ଏହି ଗୀତ ଶୁଣି ସମାଧିସ୍ଥ ହୋଇଥିଲେ । ଗୋବିନ୍ଦ ସେହି ଗାୟକଙ୍କୁ ମଧ୍ୟ ଆଣିଛନ୍ତି । ଠାକୁର ଗାୟକଙ୍କୁ ଦେଖି ଆନନ୍ଦିତ ହୋଇଛନ୍ତି ଓ କହୁଛନ୍ତି, ''ତୁମେ କିଛି ଗାଅ ।'' ଗାୟକ ଗାଉଛନ୍ତି—

''ଦୋଷ କାରୁ ନୟ ଗୋ ମା,
ଆମି ସ୍ୱଖାତ ସଲିଲେ ଡୁବେ ମରି ଶ୍ୟାମା....
''ଛୁଁସନା ରେ ଶମନ ଆମାର ଜାତ ଗିୟେଛେ ।
ଯଦି ବଲିସ୍ ଓରେ ଶମନ ଜାତ ଗେଲ କିସେ,
କେଲେ ସର୍ବନାଶୀ ଆମାୟ ସନ୍ୟାସୀ କରେଛେ ।...
''ଜାଗ ଜାଗ ଜନନୀ !
ମୂଲାଧାରେ ନିଦ୍ରାଗତ କତଦିନ ଗତ ହଲ କୁଲକୁଣ୍ଡଲିନୀ...''

ଶ୍ରୀରାମକୃଷ୍ଣ—ଏହି ଗୀତରେ ଷଡ଼ଚକ୍ରଭେଦର କଥା ଅଛି । ଈଶ୍ୱର ବାହାରେ ଅଛନ୍ତି, ଭିତରେ ମଧ୍ୟ ଅଛନ୍ତି । ସେ ଭିତରୁ ମନର ନାନା ଅବସ୍ଥା କରୁଛନ୍ତି । ଷଡ଼ଚକ୍ର ଭେଦ ହେଲେ ମାୟାର ରାଜ୍ୟ ଛାଡ଼ି ଜୀବାତ୍ମା ପରମାତ୍ମାଙ୍କ ସଙ୍ଗରେ ଏକ ହୋଇଯାଏ । ଏହାର ନାମ **ଈଶ୍ୱରଦର୍ଶନ** ।

''**ମାୟା** ଦ୍ୱାର ଛାଡ଼ି ନ ଦେଲେ ଈଶ୍ୱରଦର୍ଶନ ହୁଏ ନାହିଁ । ରାମ, ଲକ୍ଷ୍ମଣ ଆଉ ସୀତା ଏକ ସଙ୍ଗରେ ଯାଉଛନ୍ତି; ସମସ୍ତଙ୍କ ଆଗରେ ରାମ, ମଝିରେ ସୀତା, ପଶ୍ଚାତ୍‌ରେ ଲକ୍ଷ୍ମଣ । ଯେପରି ସୀତା ମଝିରେ ରହିବାରୁ ଲକ୍ଷ୍ମଣ ରାମଙ୍କୁ ଦେଖିପାରୁ ନାହାନ୍ତି, ସେହିପରି ମଝିରେ ମାୟା ଥିବାରୁ ଜୀବ ଈଶ୍ୱରଙ୍କୁ ଦର୍ଶନ କରିପାରୁ ନାହିଁ । (ମଣି ମଲ୍ଲିକଙ୍କ ପ୍ରତି) ତେବେ ଈଶ୍ୱରଙ୍କର କୃପା ହେଲେ **ମାୟା** ଦ୍ୱାର ଛାଡ଼ିଦିଏ । ଯେପରି ଦରୁଆନମାନେ କହନ୍ତି, ବାବୁ ହୁକୁମ କରିଦିଅନ୍ତୁ—ତାଙ୍କୁ ଦ୍ୱାର ଛାଡ଼ିଦେଉଛି ।[୧]

---

୧. ମାମେବ ୟେ ପ୍ରପଦ୍ୟନ୍ତେ ମାୟାମେତାମ୍ ତରନ୍ତି ତେ । —ଗୀତା, ୭/୧୪

''ବେଦାନ୍ତ ମତ ଆଉ ପୁରାଣ ମତ । ବେଦାନ୍ତ ମତରେ 'ଏଇ ସଂସାର ଧୋଁକାର ଟାଟୀ', ଅର୍ଥାତ୍ ଜଗତ ସବୁ ଭୁଲ, ସ୍ୱପ୍ନବତ୍ । କିନ୍ତୁ ପୁରାଣ ମତ ବା ଭକ୍ତିଶାସ୍ତ୍ର କହେ ଯେ, ଈଶ୍ୱର ହିଁ ଚତୁର୍ବିଂଶତି ତତ୍ତ୍ୱ ହୋଇ ରହିଛନ୍ତି । ତାଙ୍କୁ ଅନ୍ତରରେ ଓ ବାହାରେ ପୂଜାକର ।

''ଯେପର୍ଯ୍ୟନ୍ତ 'ମୁଁ' ବୋଧ ସେ ରଖିଛନ୍ତି, ସେପର୍ଯ୍ୟନ୍ତ ସବୁ ଅଛି । ଆଉ **ସ୍ୱପ୍ନବତ୍** କହିବାର ଶକ୍ତି ନାହିଁ । ତଳେ ନିଆଁ ଜଳୁଛି, ତେଣୁ ହାଣ୍ଡି ଭିତରେ ଡାଲି, ଭାତ, ଆଳୁ, ପୋଟଳ ସବୁ ଟକ୍‌ମକ୍ ହେଉଛି; ଡେଉଁଛି — ଆଉ ଯେପରି କହୁଛି, 'ମୁଁ ଅଛି, ମୁଁ ଡେଉଁଛି । ଦେହ ଯେପରି ହାଣ୍ଡି; ମନ, ବୁଦ୍ଧି — ଜଳ ଇନ୍ଦ୍ରିୟର ବିଷୟଗୁଡ଼ିକ ଯେପରି ଡାଲି, ଭାତ, ଆଳୁ, ପୋଟଳ । ଅହଂ ଯେପରି ସେମାନଙ୍କର ଅଭିମାନ, 'ମୁଁ ଟକ୍‌ମକ୍ ହେଉଛି ।' ଆଉ **ସଚ୍ଚିଦାନନ୍ଦ ଅଗ୍ନି** ।

''ତେଣୁ ଭକ୍ତି ଶାସ୍ତ୍ରରେ, ଏହି ସଂସାରକୁ 'ମଜାର କୁଟୀ' କହିଛି । ରାମପ୍ରସାଦଙ୍କର ଗୀତରେ ଅଛି 'ଏ ସଂସାର ଧୋଁକାର ଟାଟୀ ।' ଏହାର ଜଣେ ଜବାବ୍ ଦେଇଥିଲା, 'ଏ ସଂସାର ମଜାର କୁଟୀ ।' 'କାଳୀଙ୍କର ଭକ୍ତ ଜୀବନ୍ମୁକ୍ତ ନିତ୍ୟାନନ୍ଦମୟ' । ଭକ୍ତ ଦେଖେ, ଯେ ଈଶ୍ୱର ସେ ହିଁ ମାୟା ହୋଇଛନ୍ତି; ସେ ହିଁ ଜୀବ-ଜଗତ୍ ହୋଇଛନ୍ତି । 'ଈଶ୍ୱର, ମାୟା-ଜୀବ-ଜଗତ୍' ଏକ ଦେଖେ । କୌଣସି କୌଣସି ଭକ୍ତ ସମସ୍ତ ରାମମୟ ଦେଖନ୍ତି । ରାମ ହିଁ ସବୁ ହୋଇ ରହିଛନ୍ତି । କେହି ରାଧାକୃଷ୍ଣମୟ ଦେଖେ । କୃଷ୍ଣ ହିଁ ଏହି ଚତୁର୍ବିଂଶତି ତତ୍ତ୍ୱ ହୋଇ ରହିଛନ୍ତି । ସବୁଜ ଚଷମା ପିନ୍ଧିଲେ ଯେପରି ସବୁ ସବୁଜ ଦେଖାଯାଏ ।

''ତେବେ ଭକ୍ତି-ମତରେ **ଶକ୍ତିବିଶେଷ** । ରାମ ହିଁ ସବୁ ହୋଇ ରହିଛନ୍ତି; କିନ୍ତୁ କେଉଁଠାରେ ବେଶୀ ଶକ୍ତି ଆଉ କେଉଁଠାରେ କମ୍ ଶକ୍ତି । ଅବତାରଙ୍କଠାରେ ସେ ଏକଭାବରେ ପ୍ରକାଶ, ପୁଣି ଜୀବଠାରେ ଅନ୍ୟ ପ୍ରକାର । ଅବତାରଙ୍କର ମଧ୍ୟ ଦେହବୁଦ୍ଧି ଅଛି । ଶରୀରଧାରଣରେ ମାୟା । ସୀତାଙ୍କ ପାଇଁ ରାମ କାନ୍ଦିଥିଲେ । ତେବେ ଅବତାର ଇଚ୍ଛା କରି ନିଜ ଆଖିରେ ଲୁଗା ବାନ୍ଧନ୍ତି । ଯେପରି ପିଲାମାନେ 'ଆଖିବୁଜା' ଖେଳ ଖେଳନ୍ତି । କିନ୍ତୁ ମା' ଡାକିଲାମାତ୍ରେ ଖେଳ ବନ୍ଦ କରନ୍ତି । ଜୀବର ଅଲଗା କଥା; ଯେଉଁ ଲୁଗାରେ ଆଖି ବନ୍ଧା, ସେହି ଲୁଗାରେ ପିଠିରେ ଆଠଟା ସ୍କ୍ରୁ ଦେଇ ବନ୍ଧା । ଅଷ୍ଟ ପାଶ । ଲଜ୍ଜା, ଘୃଣା, ଭୟ, ଜାତି, କୁଳ, ଶୀଳ, ଶୋକ, ଜୁଗୁପ୍‌ସା (ଗୋପନର ଇଚ୍ଛା), ଏହି ଅଷ୍ଟ ପାଶ । ଗୁରୁ ନ ଖୋଲିଦେଲେ ହୁଏ ନାହିଁ ।''

## (୪)

## ବେଲଘର ଭକ୍ତଙ୍କୁ ଶିକ୍ଷା — ବ୍ୟାକୁଳ ହୋଇ ଅର୍ଜିକର — ଠିକ୍ ଭକ୍ତର ଲକ୍ଷଣ

ବେଲଘରର ଭକ୍ତ — ଆପଣ ଆମମାନଙ୍କୁ କୃପା କରନ୍ତୁ ।

ଶ୍ରୀରାମକୃଷ୍ଣ — ସମସ୍ତଙ୍କ ଭିତରେ ସେ ରହିଛନ୍ତି; ତେବେ ଗ୍ୟାସ୍-କମ୍ପାନୀକୁ ଅର୍ଜିକର । ତୁମ ଘର ସହିତ ଯୋଗ ହୋଇଯିବ । ବ୍ୟାକୁଳ ହୋଇ ଅର୍ଜି (ପ୍ରାର୍ଥନା) କରିବାକୁ ହୁଏ । ଏପରି ଅଛି — ତିନି ଟାଣ ଏକାଠି ହେଲେ ଈଶ୍ୱର ଦର୍ଶନ ହୁଏ । ମାଆର ସନ୍ତାନ ଉପରେ ଟାଣ, ସତୀ ସ୍ତ୍ରୀର ସ୍ୱାମୀ ଉପରେ ଟାଣ, ଆଉ ବିଷୟୀର ବିଷୟ ଉପରେ ଟାଣ ।

"ଠିକ୍ ଭକ୍ତର ଲକ୍ଷଣ ଅଛି । ଗୁରୁଙ୍କର ଉପଦେଶ ଶୁଣି ସ୍ଥିର ହୋଇ ରହେ । ବେହେଲା ଗୀତ ପାଖରେ ଜାତିଆ ସାପ ସ୍ଥିର ହୋଇ ଶୁଣେ; କିନ୍ତୁ ଡମ୍ପ ନୁହେଁ । ଆଉ ଗୋଟିଏ ଲକ୍ଷଣ, ଠିକ୍ ଭକ୍ତର ଧାରଣାଶକ୍ତି ହୁଏ । ଖାଲି କାଚ ଉପରେ ଛବିର ଦାଗ ରହେ ନାହିଁ, କିନ୍ତୁ କାଳିବୋଳା କାଚ ଉପରେ ଛବି ଉଠେ; ଯେପରି ଫଟୋଗ୍ରାଫ୍ । ଭକ୍ତିରୂପକ କାଳି ।

"ଆଉ ଗୋଟିଏ ଲକ୍ଷଣ । ଠିକ୍ ଭକ୍ତ ଜିତେନ୍ଦ୍ରିୟ ହୁଏ, କାମଜୟୀ ହୁଏ । **ଗୋପୀମାନଙ୍କର କାମ ନ ଥିଲା ।**

ତୁମେମାନେ ସଂସାରରେ ରହିଛ, ତାହା ହେଲେ ବା ! ଏଥିରେ ସାଧନର ଆହୁରି ସୁବିଧା, ଯେପରି କିଲ୍ଲାରୁ ଯୁଦ୍ଧ କରିବା । ଯେତେବେଳେ ଶବସାଧନ କରନ୍ତି, ମଝିରେ ମଝିରେ ଶବଟା ଆଁ କରି ଭୟ ଦେଖାଏ । ତେଣୁ ଚାଉଳ ବୁଟଭଜା ରଖିବାକୁ ହୁଏ । ତା' ପାଟିରେ ମଝିରେ ମଝିରେ ଦେବାକୁ ହୁଏ । ଶବଟା ଥଣ୍ଡା ହେଲେ ତେବେ ନିଶ୍ଚିନ୍ତ ହୋଇ ଜପ କରିପାରିବ । ତେଣୁ ସ୍ତ୍ରୀମାନଙ୍କୁ ଥଣ୍ଡା ରଖିବାକୁ ହୁଏ । ତାଙ୍କର ଖାଇବା ପିଇବା ଯୋଗାଡ଼ କରିଦେବାକୁ ହୁଏ, ତେବେ ସାଧନଭଜନର ସୁବିଧା ହୁଏ ।

"ଯେଉଁମାନଙ୍କର ଭୋଗ ଟିକିଏ ବାକି ଅଛି, ସେମାନେ ସଂସାରରେ ରହି ତାଙ୍କୁ ଡାକିବେ । ନିତାଇଙ୍କର ବ୍ୟବସ୍ଥା ଥିଲା, 'ମାଗୁର ମାଛର ଝୋଳ, ଯୁବତୀ ନାରୀର କୋଳ, ବୋଲ ହରିବୋଲ ।'

"ଠିକ୍‌ଠିକ୍ ତ୍ୟାଗୀର ଅଲଗା କଥା । ମହୁମାଛି ଫୁଲ ଛଡ଼ା ଆଉ କୌଣସିଥିରେ ବସେ ନାହିଁ । ଚାତକ ପାଖରେ ସବୁପାଣି ଖାରିଆ; କୌଣସି ପାଣି ପିଇବ ନାହିଁ; କେବଳ ସ୍ୱାତୀନକ୍ଷତ୍ରର ବୃଷ୍ଟି ପାଇଁ ଆଁ କରି ଚାହିଁ ରହିଛି । ଠିକ୍ ଠିକ୍ ତ୍ୟାଗୀ ଅନ୍ୟ କୌଣସି ଆନନ୍ଦ ନେବେ ନାହିଁ, କେବଳ ଈଶ୍ୱରଙ୍କର ଆନନ୍ଦ । ମହୁମାଛି କେବଳ ଫୁଲରେ ବସେ । ଠିକ୍ ଠିକ୍ ତ୍ୟାଗୀ ସାଧୁ ଯେପରି

ମହୁମାଛି । ଗୃହୀଭକ୍ତ ଯେପରି ସାଧାରଣ ମାଛି, ସନ୍ଦେଶରେ ବସେ, ପୁଣି ପଚା ଘାଆରେ ମଧ୍ୟ ବସେ ।

"ତୁମେମାନେ ଏତେ କଷ୍ଟ କରି ଏଠାକୁ ଆସିଛ, ତୁମେମାନେ ଈଶ୍ୱରଙ୍କୁ ଖୋଜି ବୁଲୁଛ । ସବୁଲୋକ ଉଦ୍ୟାନ ଦେଖି ସନ୍ତୁଷ୍ଟ; ଉଦ୍ୟାନର ମାଲିକଙ୍କୁ ଖୋଜନ୍ତି ଜଣେ ଦୁଇଜଣ । ଜଗତ୍‌ର ସୌନ୍ଦର୍ଯ୍ୟ ହିଁ ଦେଖନ୍ତି, କର୍ତ୍ତାଙ୍କୁ ଖୋଜନ୍ତି ନାହିଁ ।"

**ହଠଯୋଗ, ରାଜଯୋଗ ଓ ବେଲଘର ଭକ୍ତ—ଷଡ଼ଚକ୍ରଭେଦ ଓ ସମାଧି**

ଶ୍ରୀରାମକୃଷ୍ଣ (ଗାୟକଙ୍କୁ ଦେଖାଇ)—ଏ ଷଡ଼ଚକ୍ରର ଗୀତ ଗାଇଲେ । ସେସବୁ ଯୋଗର କଥା । ହଠଯୋଗ ଆଉ ରାଜଯୋଗ । ହଠଯୋଗୀ ଶରୀରର କେତେଗୁଡ଼ିଏ କସରତ୍ କରେ; ଉଦ୍ଦେଶ୍ୟ ସିଦ୍ଧି ଲାଭ; ଦୀର୍ଘ ଆୟୁ ହେବ, ଅଷ୍ଟସିଦ୍ଧି ହେବ—ଏହିସବୁ ଉଦ୍ଦେଶ୍ୟ । ରାଜଯୋଗର ଉଦ୍ଦେଶ୍ୟ ଭକ୍ତି, ପ୍ରେମ, ଜ୍ଞାନ, ବୈରାଗ୍ୟ । ରାଜଯୋଗ ହିଁ ଭଲ ।

"ବେଦାନ୍ତର ସପ୍ତଭୂମି ଆଉ ଯୋଗଶାସ୍ତ୍ରର ଷଡ଼ଚକ୍ର ପ୍ରାୟ ମିଶିଯାଏ । ବେଦର ପ୍ରଥମ ତିନି ଭୂମି, ଆଉ ସେମାନଙ୍କର ମୂଳାଧାର, ସ୍ୱାଧିଷ୍ଠାନ, ମଣିପୁର । ଏହି ତିନି ଭୂମିରେ—ଗୁହ୍ୟ, ଲିଙ୍ଗ, ନାଭିରେ—ମନର ବାସ । ମନ ଯେତେବେଳେ ଚତୁର୍ଥ ଭୂମିକୁ ଉଠେ, ଅର୍ଥାତ୍ ଅନାହତ ପଦ୍ମକୁ—ଜୀବାତ୍ମାକୁ ଶିଖା ପରି ଦର୍ଶନ କରେ । ଆଉ ଜ୍ୟୋତିଃ ଦର୍ଶନ ହୁଏ । ସାଧକ କହେ—'ଏ କଅଣ ! ଏ କଅଣ !'

"ପଞ୍ଚମ ଭୂମିକୁ ମନ ଉଠିଲେ କେବଳ ଈଶ୍ୱରଙ୍କର କଥା ଶୁଣିବାକୁ ଇଚ୍ଛା ହୁଏ । ଏଠାରେ ବିଶୁଦ୍ଧ ଚକ୍ର । ଷଷ୍ଠ ଭୂମି ଆଉ ଆଜ୍ଞାଚକ୍ର ଏକ । ସେଠାକୁ ମନ ଗଲେ ଈଶ୍ୱର ଦର୍ଶନ ହୁଏ । କିନ୍ତୁ ଯେପରି ଲଣ୍ଠନ ଭିତରେ ଆଲୁଅ—ଛୁଇଁପାରେ ନାହିଁ—ମଝିରେ କାଚ ବ୍ୟବଧାନ ଅଛି ବୋଲି ।

"ଜନକ ରାଜା ପଞ୍ଚମ ଭୂମିରୁ ବ୍ରହ୍ମଜ୍ଞାନର ଉପଦେଶ ଦେଉଥିଲେ । ସେ କେତେବେଳେ ପଞ୍ଚମ ଭୂମି, କେତେବେଳେ ବା ଷଷ୍ଠ ଭୂମିରେ ରହୁଥିଲେ ।

"ଷଡ଼ଚକ୍ରଭେଦ ପରେ ସପ୍ତମ ଭୂମି । ସେଠାକୁ ଗଲେ ମନର ଲୟ ହୁଏ । ଜୀବାତ୍ମା ପରମାତ୍ମା ଏକ ହୋଇଯାଏ, **ସମାଧି ହୁଏ** । ଦେହବୁଦ୍ଧି ଚାଲିଯାଏ, ବାହ୍ୟଶୂନ୍ୟ ହୁଏ, ନାନା ଜ୍ଞାନ ଚାଲିଯାଏ, ବିଚାର ବନ୍ଦ ହୋଇଯାଏ ।

"ତ୍ରୈଲଙ୍ଗ ସ୍ୱାମୀ କହିଥିଲେ—ବିଚାରରେ ଅନେକ ବୋଧ ହେଉଛି, ନାନା ବୋଧ ହେଉଛି । ସମାଧି ପରେ ଶେଷରେ ଏକୋଇଶ ଦିନରେ ମୃତ୍ୟୁ ହୁଏ ।

"କିନ୍ତୁ କୁଳକୁଣ୍ଡଳିନୀ ଜାଗ୍ରତ ନ ହେଲେ ଚୈତନ୍ୟ ହୁଏ ନାହିଁ ।

**ଈଶ୍ୱର ଦର୍ଶନର ଲକ୍ଷଣ**

"ଯେ ଈଶ୍ୱରଙ୍କୁ ଲାଭ କରିଛି, ତା'ର ଲକ୍ଷଣ ଅଛି । ସେ ହୁଏ—ବାଳକବତ୍, ଉନ୍ମାଦବତ୍, ଜଡ଼ବତ୍, ପିଶାଚବତ୍ । ଆଉ ତା'ର ଠିକ୍ ବୋଧ ହୁଏ,

'ମୁଁ ଯନ୍ତ୍ର ଆଉ ସେ ଯନ୍ତ୍ରୀ; ସେ ହିଁ କର୍ତ୍ତା, ଆଉ ସମସ୍ତ ଅକର୍ତ୍ତା ।' ଶିଖମାନେ ଯେପରି କହିଥିଲେ, 'ପତ୍ରଟି ହଲୁଛି, ତାହା ମଧ୍ୟ ଈଶ୍ୱରଙ୍କ ଇଚ୍ଛା ।' ରାମଙ୍କର ଇଚ୍ଛାରେ ହିଁ ସବୁ ହେଉଛି, ଏହି ବୋଧ । ତନ୍ତୀ ଯେପରି କହିଥିଲା, 'ରାମଙ୍କ ଇଚ୍ଛାରେ ଲୁଗାର ଦାମ୍ ଏକଟଙ୍କା ଛଅଅଣା; ରାମଙ୍କ ଇଚ୍ଛାରେ ହିଁ ଡକାଇତ ଧରା ପଡ଼ିଲା । ରାମଙ୍କ ଇଚ୍ଛାରେ ମୋତେ ପୁଲିସ୍ ନେଇଗଲା; ପୁଣି ରାମଙ୍କ ଇଚ୍ଛାରେ ହିଁ ମୋତେ ଛାଡ଼ିଦେଲା ।''

ସନ୍ଧ୍ୟା ଆଗତ ପ୍ରାୟ; ଠାକୁର ଥରେ ମଧ୍ୟ ବିଶ୍ରାମ କରିନାହାନ୍ତି, ଭକ୍ତଙ୍କ ସହିତ ଅବିଶ୍ରାନ୍ତ ହରିକଥା ଚାଲିଛି । ଏଥର ମଣିରାମପୁର ଓ ବେଲଘରର ଭକ୍ତମାନେ ଓ ଅନ୍ୟାନ୍ୟ ଭକ୍ତଗଣ ତାଙ୍କୁ ଭୂମିଷ୍ଠ ପ୍ରଣାମ କରି, ମନ୍ଦିରରେ ଦେବଦେବୀମାନଙ୍କୁ ଦର୍ଶନ କରି ନିଜ ନିଜ ସ୍ଥାନକୁ ପ୍ରତ୍ୟାଗମନ କରୁଛନ୍ତି ।

## ସପ୍ତବିଂଶ ପରିଚ୍ଛେଦ

### (ଦକ୍ଷିଣେଶ୍ୱରରେ ଦଶହରା ଦିବସରେ ଗୃହସ୍ଥାଶ୍ରମ କଥାପ୍ରସଙ୍ଗ)

### (୧)

### ରାଖାଲ, ଅଧର, ମାଷ୍ଟର, ରାଖାଲଙ୍କ ବାପା, ବାପାଙ୍କର ଶ୍ୱଶୁର ପ୍ରଭୃତି

ଆଜି ଦଶହରା, ଜ୍ୟେଷ୍ଠ ଶୁକ୍ଳା ଦଶମୀ, ଶୁକ୍ରବାର, ୧୫ ଜୁନ୍ ୧୮୮୩ । ଭକ୍ତମାନେ ଶ୍ରୀରାମକୃଷ୍ଣଙ୍କୁ ଦର୍ଶନ କରିବାକୁ ଦକ୍ଷିଣେଶ୍ୱର କାଳୀମନ୍ଦିରକୁ ଆସିଛନ୍ତି । ଅଧର, ମାଷ୍ଟର ଦଶହରା ଉପଲକ୍ଷେ ଛୁଟି ପାଇଛନ୍ତି ।

ରାଖାଲଙ୍କର ବାପା ଓ ତାଙ୍କ ବାପାଙ୍କର ଶ୍ୱଶୁର ଆସିଛନ୍ତି । ବାପା ଦ୍ୱିତୀୟ ସଂସାର କରିଥିଲେ । ଶ୍ୱଶୁର ଠାକୁରଙ୍କ ନାମ ବହୁଦିନରୁ ଶୁଣିଛନ୍ତି । ସେ ସାଧକ ଲୋକ, ଶ୍ରୀରାମକୃଷ୍ଣଙ୍କୁ ଦର୍ଶନ କରିବାକୁ ଆସିଛନ୍ତି । ଠାକୁର ଆହାର ପରେ ଛୋଟ ଖଟଟିରେ ବସିଛନ୍ତି । ରାଖାଲଙ୍କ ବାପାଙ୍କ ଶ୍ୱଶୁରଙ୍କୁ ଥରେ ଥରେ ଦେଖୁଛନ୍ତି । ଭକ୍ତମାନେ ତଳେ ବସିଛନ୍ତି ।

ଶ୍ୱଶୁର—ମହାଶୟ, ଗୃହସ୍ଥାଶ୍ରମରେ କ'ଣ ଭଗବାନ ଲାଭ ହୁଏ ?

ଶ୍ରୀରାମକୃଷ୍ଣ (ସହାସ୍ୟ)—କାହିଁକି ହେବ ନାହିଁ ? ପଙ୍କୁଆ ମାଛ ପରି ରହ । ସେ ପଙ୍କରେ ଥାଏ, କିନ୍ତୁ ଦେହରେ ପଙ୍କ ନାହିଁ । ଆଉ ବିଟପୀ ପରି ରହ । ସେ ଘରର ସମସ୍ତ କାର୍ଯ୍ୟ କରେ, କିନ୍ତୁ ମନ ଉପପତି ଉପରେ ପଡ଼ିଥାଏ । ଈଶ୍ୱରଙ୍କ ଉପରେ ମନ ପକାଇ ରଖି ସଂସାରର ସବୁ କାର୍ଯ୍ୟ କର । କିନ୍ତୁ ଅତ୍ୟନ୍ତ କଠିନ । ମୁଁ ବ୍ରହ୍ମଜ୍ଞାନୀମାନଙ୍କୁ କହିଥିଲି, ଯେଉଁ ଘରେ ତେନ୍ତୁଳି ଆଚାର ଆଉ ପାଣି ମାଠିଆ ସେହି ଘରେ ବିକାରରୋଗୀ ! କିପରି ରୋଗ ଭଲ ହେବ ? ପୁଣି ତେନ୍ତୁଳିକୁ ଭାବିଲେ ପାଟିରୁ ଲାଳ ଗଡ଼େ । ପୁରୁଷ ପକ୍ଷରେ ସ୍ତ୍ରୀଲୋକ ତେନ୍ତୁଳି ଆଚାର ପରି । ଆଉ ବିଷୟତୃଷ୍ଣା ସର୍ବଦା ଲାଗି ରହିଛି; ଏହିଟି ପାଣିମାଠିଆ, ତୃଷ୍ଣାର ଶେଷ ନାହିଁ । ବିକାରରୋଗୀ କହେ, 'କୁଣ୍ଡେ ପାଣି ପିଇବି ।' ଖୁବ୍ କଠିନ । ସଂସାରରେ ନାନା ଗୋଳ । 'ଏଣେ ଯିବୁ କୌଁସ୍ତା[୧] ଫିଙ୍ଗି ମାରିବି ! ତେଣେ ଗଲେ ଛାଞ୍ଚୁଣି ଫିଙ୍ଗି ମାରିବି; ଏଣେ ଗଲେ ଜୋତାରେ ମାରିବି ।' ଆଉ ନିର୍ଜନ ନ ହେଲେ ଈଶ୍ୱରଚିନ୍ତା ହୁଏ ନାହିଁ । ସୁନା ତରଳାଇ ଗହଣା ଗଢ଼ିବି; ଯଦି ତରଳାଇବାବେଳେ ପାଞ୍ଚଥର ଡକାଯାଏ, ତାହା ହେଲେ ସୁନା କିପରି ତରଳା ହେବ ? ଚାଉଳ କାଣ୍ଡୁଛ, ଏକଲା ବସି କାଣ୍ଡିବାକୁ ହୁଏ । ମଝିରେ ମଝିରେ ଚାଉଳକୁ ହାତରେ ନେଇ ଦେଖିବାକୁ ହୁଏ, କିପରି ସଫା ହେଲା । କାଣ୍ଡୁ କାଣ୍ଡୁ ଯଦି କେହି ପାଞ୍ଚଥର ଡାକେ, କିପରି ଭଲ କଣ୍ଡା ହେବ ?

୧. କୌଁସ୍ତା—ଏକପ୍ରକାର ଝାଡୁ ।

**ଉପାୟ—ତୀବ୍ର ବୈରାଗ୍ୟ; ପୂର୍ବକଥା—ଗଙ୍ଗାପ୍ରସାଦ ସହିତ ଦେଖା**

ଜଣେ ଭକ୍ତ—ଆଜ୍ଞା, ଏବେ ଉପାୟ କଅଣ ?

ଶ୍ରୀରାମକୃଷ୍ଣ—ଅଛି । ଯଦି **ତୀବ୍ର ବୈରାଗ୍ୟ** ହୁଏ, ତାହା ହେଲେ ହୁଏ । ଯାହା ମିଥ୍ୟା ବୋଲି ଜାଣୁଛ, ଜିଦ୍ କରି ତତ୍କ୍ଷଣାତ୍ ତ୍ୟାଗ କର । ଯେତେବେଳେ ମୋର ଖୁବ୍ ବେମାର, ଗଙ୍ଗାପ୍ରସାଦ ସେନ୍‌ଙ୍କ ପାଖକୁ ନେଇଗଲେ । ଗଙ୍ଗାପ୍ରସାଦ କହିଲେ—'ସ୍ୱର୍ଣ୍ଣପର୍ପଟି' ଖାଇବାକୁ ହେବ, କିନ୍ତୁ ପାଣି ପିଇପାରିବ ନାହିଁ, ବେଦନାରସ ଖାଇପାର । ସମସ୍ତେ ଭାବିଲେ, ପାଣି ନ ପିଇ ମୁଁ କିପରି ରହିବି ! ମୁଁ ସଂକଳ୍ପ କଲି ଯେ, ପାଣି ପିଇବି ନାହିଁ । 'ପରମହଂସ' ! ମୁଁ ତ ପାତିହଂସ ନୁହେଁ, ରାଜହଂସ ! ଦୁଧ ପିଇବି ।

''କିଛିଦିନ ନିର୍ଜନରେ ରହିବାକୁ ହୁଏ । ବୁଢ଼ୀକୁ ଛୁଇଁ ଦେଲେ ଆଉ ଭୟ ନାହିଁ । ସୁନା ହେଲେ ତାହା ପରେ ଯେଉଁଠାରେ ରହନା କାହିଁକି । ନିର୍ଜନରେ ରହି ଯଦି ଭକ୍ତିଲାଭ ହୁଏ, ଯଦି ଈଶ୍ୱରଲାଭ ହୁଏ, ତାହା ହେଲେ ସଂସାରରେ ମଧ୍ୟ ରହିପାର । (ରାଖାଲଙ୍କ ବାପାଙ୍କ ପ୍ରତି) ସେଥିପାଇଁ ତ ଯୁବକମାନଙ୍କୁ ରହିବାକୁ କହେ । କାରଣ, ଏଠାରେ କିଛିଦିନ ରହିଲେ ଈଶ୍ୱରଙ୍କଠାରେ ଭକ୍ତି ହେବ । ସେତେବେଳେ ବେଶ୍ ସଂସାରରେ ଯାଇ ରହିପାରିବେ ।''

**ପାପପୁଣ୍ୟ—ସଂସାର-ବ୍ୟାଧିର ମହୌଷଧି ସନ୍ନ୍ୟାସ**

ଜଣେ ଭକ୍ତ—ଯଦି ଈଶ୍ୱର ସବୁ କରୁଛନ୍ତି, ତେବେ ଭଲମନ୍ଦ, ପାପପୁଣ୍ୟ—ଏସବୁ କହନ୍ତି କାହିଁକି ? ପାପ ମଧ୍ୟ ତା'ହେଲେ ତାଙ୍କର ଇଚ୍ଛା !

ରାଖାଲଙ୍କ ବାପାଙ୍କର ଶ୍ୱଶୁର—ତାଙ୍କର ଇଚ୍ଛା ଆମେମାନେ କିପରି ବୁଝିବୁ ? 'Thou great First Cause least understood'—Pope

ଶ୍ରୀରାମକୃଷ୍ଣ—ପାପପୁଣ୍ୟ ଅଛି, କିନ୍ତୁ ସେ ନିଜେ ନିର୍ଲିପ୍ତ । ବାୟୁରେ ସୁଗନ୍ଧ ଦୁର୍ଗନ୍ଧ ସବୁ ପ୍ରକାର ଅଛି, କିନ୍ତୁ ବାୟୁ ନିଜେ ନିର୍ଲିପ୍ତ । ତାଙ୍କର ସୃଷ୍ଟି ଏହିପରି; ଭଲମନ୍ଦ, ସତ୍-ଅସତ୍; ଯେପରି ଗଛ ଭିତରେ କେଉଁଟା ଆମ୍ବଗଛ, କେଉଁଟା ପଣସଗଛ, କେଉଁଟା ଆମ୍ବଡ଼ା ଗଛ । ଦେଖ ନା, ଦୁଷ୍ଟ ଲୋକର ମଧ୍ୟ ପ୍ରୟୋଜନ ଅଛି । ଯେଉଁ ତାଲୁକର ପ୍ରଜାମାନେ ଦୁର୍ଦ୍ଦାନ୍ତ, ସେ ତାଲୁକକୁ ଜଣେ ଦୁଷ୍ଟ ଲୋକ ପଠାଇବାକୁ ହୁଏ, ତେବେ ତାଲୁକରେ ଶାସନ ହୁଏ ।

ପୁଣି ଗୃହସ୍ଥାଶ୍ରମ କଥା ପଡ଼ିଲା ।

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି)—କଅଣ ଜାଣ, ସଂସାର କଲେ ମନର ବାଜେ ଖରଚ ହୁଏ । ଏହି ବାଜେ ଖରଚ ହେବାରେ ମନର ଯେଉଁ କ୍ଷତି ହୁଏ, ସେହି କ୍ଷତିପୂରଣ ପୁଣି ହୁଏ, ଯଦି କେହି **ସନ୍ନ୍ୟାସ** ନିଏ । ବାପା ପ୍ରଥମ ଜନ୍ମ ଦିଅନ୍ତି, ତାହା ପରେ ଦ୍ୱିତୀୟ ଜନ୍ମ ଉପନୟନ ସମୟରେ । ଆଉ ଥରେ ଜନ୍ମ ହୁଏ

ସନ୍ନ୍ୟାସବେଳେ ।[୧] କାମିନୀ ଓ କାଞ୍ଚନ ଏହି ଦୁଇଟି ବିଘ୍ନ । ସ୍ତ୍ରୀଲୋକଠାରେ ଆସକ୍ତି ଈଶ୍ୱରଙ୍କ ପଥରୁ ବିମୁଖ କରିଦିଏ । କିପରି ପତନ ହୁଏ, ପୁରୁଷ ଜାଣିପାରେ ନାହିଁ । ଯେତେବେଳେ କିଲ୍ଲା ଭିତରେ ଯାଉଛି, ଟିକିଏ ବି ବୁଝିପାରିଲି ନାହିଁ ଯେ, ଗଡ଼ାଣିଆ ରାସ୍ତା ଦେଇ ଯାଉଛି । କିଲ୍ଲା ଭିତରେ ଗାଡ଼ି ପହଞ୍ଚିବା ପରେ ଦେଖିଲି କେତେ ତଳକୁ ଆସିଛି । ଆହା, ଆସକ୍ତି ପୁରୁଷମାନଙ୍କୁ ବୁଝିବାକୁ ଦିଏ ନାହିଁ । କପ୍ତାନ କହେ, ମୋର ସ୍ତ୍ରୀ ଜ୍ଞାନୀ ! ଯାହାକୁ ଭୂତ ଲାଗେ, ସେ ଜାଣିପାରେ ନାହିଁ ଯେ, ତାକୁ ଭୂତ ଲାଗିଛି ! ସେ କହେ ବେଶ୍ ଅଛି ! (ସମସ୍ତେ ନିସ୍ତବ୍ଧ)

''ସଂସାରରେ କେବଳ ଯେ କାମର ଭୟ, ତାହା ନୁହେଁ । ପୁଣି କ୍ରୋଧ ଅଛି । କାମନା-ପଥରେ କଣ୍ଟା ପଡ଼ିଲେ ହିଁ କ୍ରୋଧ ।''

ମାଷ୍ଟର—ମୋ ପତ୍ରରୁ ବିରାଡ଼ି ପଞ୍ଝା ବଢ଼ାଇ ମାଛ ନେବାକୁ ଆସେ; ମୁଁ କିଛି କହିପାରେ ନାହିଁ ।

ଶ୍ରୀରାମକୃଷ୍ଣ—କାହିଁକି ! ମାରିଦେଲ ବା ଥରେ, ସେଥିରେ ଦୋଷ କଅଣ ? ସଂସାରୀ ଫଁ କରିବ । ବିଷ ଢାଳିବା ଉଚିତ ନୁହେଁ । ପ୍ରକୃତରେ କାହାରି ଅନିଷ୍ଟ ଯେପରି ନ ହୁଏ । କିନ୍ତୁ ଶତ୍ରୁଙ୍କ ହାତରୁ ରକ୍ଷା ପାଇବା ପାଇଁ କ୍ରୋଧର ଆକାର ଦେଖାଇବାକୁ ହୁଏ । ନୋହିଲେ, ଶତ୍ରୁମାନେ ଆସି ଅନିଷ୍ଟ କରିବେ । ତ୍ୟାଗୀର ଫଁ କରିବା ଦରକାର ନାହିଁ ।

ଜଣେ ଭକ୍ତ—ଆଜ୍ଞା, ସଂସାରରେ ତାଙ୍କୁ ପାଇବା ତ ଖୁବ୍ କଷ୍ଟକର ମନେହେଉଛି । କେତେଜଣ ଲୋକ ସେପରି ହୋଇପାରନ୍ତି ? କାହିଁ ଦେଖିବାକୁ ତ ପାଏ ନାହିଁ !

ଶ୍ରୀରାମକୃଷ୍ଣ—କାହିଁକି ହେବ ନାହିଁ ? ସେ ଦେଶରେ ଶୁଣିଛି, ଜଣେ ଡେପୁଟି, ଖୁବ୍ ଲୋକ—ପ୍ରତାପ ସିଂ; ଦାନ, ଧ୍ୟାନ, ଭଗବଦ୍‌ଭକ୍ତି, ବହୁ ଗୁଣ ଅଛି । ମୋତେ ନେବାକୁ ଲୋକ ପଠାଇଥିଲା । ଏପରି ଲୋକ ନିଶ୍ଚୟ ଅଛନ୍ତି ।

## (୨)

## ସାଧନାର ପ୍ରୟୋଜନ—ଗୁରୁବାକ୍ୟରେ ବିଶ୍ୱାସ—ବ୍ୟାସଙ୍କର ବିଶ୍ୱାସ

ଶ୍ରୀରାମକୃଷ୍ଣ—**ସାଧନା ଦରକାର** । ସାଧନା କଲେ ହେବ ନାହିଁ କାହିଁକି ? ଯଦି ଠିକ୍ ଠିକ୍ ବିଶ୍ୱାସ ହୁଏ, ତାହା ହେଲେ ଆଉ ବେଶୀ ଖଟିବାକୁ ହୁଏ ନାହିଁ । **ଗୁରୁବାକ୍ୟରେ ବିଶ୍ୱାସ** ।

୧. ''Except ye be born again you cannot enter into the Kingdom of Heaven.'' —Christ

ବ୍ୟାସଦେବ ଯମୁନା ପାରିହେବେ, ଗୋପୀମାନେ ଆସି ଉପସ୍ଥିତ । ଗୋପୀମାନେ ମଧ୍ୟ ପାରି ହେବେ, କିନ୍ତୁ ଡଙ୍ଗା ମିଳୁ ନାହିଁ । ଗୋପୀମାନେ କହିଲେ, 'ମହାରାଜ ! ଏବେ କଅଣ ହେବ ?' ବ୍ୟାସଦେବ କହିଲେ, 'ଆଚ୍ଛା, ତୁମକୁ ପାରି କରାଇଦେଉଛି, କିନ୍ତୁ ମୋତେ ଭାରୀ ଭୋକ ହେଉଛି, କିଛି ଅଛି ?' ଗୋପୀମାନଙ୍କ ପାଖରେ ଦୁଧ, କ୍ଷୀର, ଲହୁଣୀ ଅନେକ ଥିଲା, ସବୁ ସେ ଖାଇଲେ । ଗୋପୀମାନେ କହିଲେ, 'ମହାରାଜ ! ଆରପାରିକି ଯିବା କଅଣ ହେଲା ?' ବ୍ୟାସଦେବ ସେତେବେଳେ କୂଳରେ ଯାଇ ଠିଆ ହେଲେ, କହିଲେ, 'ହେ ଯମୁନେ, ଯଦି ମୁଁ ଆଜି କିଛି ଖାଇ ନ ଥାଏ, ତୁମର ଜଳ ଦୁଇଭାଗ ହୋଇଯିବ, ଆଉ ଆମେସବୁ ସେହି ପଥଦେଇ ପାର ହୋଇଯିବୁ ।' କହୁ ନ କହୁଣୁ ଜଳ ଦୁଇଭାଗ ହୋଇଗଲା । ଗୋପୀମାନେ ଅବାକ୍; ଭାବିଲେ ଏ ବର୍ତ୍ତମାନ ଏତେ ଖାଇଲେ ! ପୁଣି କହୁଛନ୍ତି, 'ଯଦି ମୁଁ କିଛି ଖାଇ ନ ଥାଏ !'

''ଏତେ ଦୃଢ଼ ବିଶ୍ୱାସ । ମୁଁ ନୁହେଁ, ହୃଦୟ ମଧ୍ୟରେ ନାରାୟଣ—ସେ ଖାଇଛନ୍ତି ।

''ଶଙ୍କରାଚାର୍ଯ୍ୟ ଏଡ଼େ ବ୍ରହ୍ମଜ୍ଞାନୀ ! କିନ୍ତୁ ପ୍ରଥମେ ପ୍ରଥମେ ଭେଦବୁଦ୍ଧି ମଧ୍ୟ ଥିଲା । ସେପରି ବିଶ୍ୱାସ ନ ଥିଲା । ଚଣ୍ଡାଳ ମାସଂଭାର ନେଇ ଆସୁଛି, ସେ ଗଙ୍ଗାସ୍ନାନ କରି ଉଠୁଛନ୍ତି । ଚଣ୍ଡାଳ ଦେହରେ ଦେହ ଲାଗିଯାଇଛି । କହିଉଠିଲେ, 'ଆରେ ! ତୁ ମୋତେ ଛୁଇଁଲୁ !' ଚଣ୍ଡାଳ କହିଲା, 'ପ୍ରଭୁ ! ତୁମେ ମୋତେ ଛୁଇଁ ନାହଁ, କି ମୁଁ ମଧ୍ୟ ତୁମକୁ ଛୁଇଁ ନାହିଁ ! ଯେ ଶୁଦ୍ଧ ଆତ୍ମା, ସେ ଶରୀର ନୁହେଁ, ପଞ୍ଚଭୂତ ନୁହେଁ, ଚତୁର୍ବିଂଶତି ତତ୍ତ୍ୱ ନୁହେଁ ।' ସେତେବେଳେ ଶଙ୍କରଙ୍କର ଜ୍ଞାନ ହୋଇଗଲା ।

''ଜଡ଼ଭରତ ରାଜା ରହୁଗଣଙ୍କ ପାଲିଙ୍କି ବୋହୁ ବୋହୁ ଯେତେବେଳେ ଆତ୍ମଜ୍ଞାନର କଥା କହିଲେ, ରାଜା ପାଲିଙ୍କିରୁ ତଳକୁ ଆସି କହିଲେ, 'ତୁମେ କିଏ ?' ଜଡ଼ଭରତ କହିଲେ, 'ମୁଁ ନେତି, ନେତି, ଶୁଦ୍ଧ ଆତ୍ମା ।' ଏକାବେଳକେ ଠିକ୍ ବିଶ୍ୱାସ—ମୁଁ ଶୁଦ୍ଧ ଆତ୍ମା ।

**ଠାକୁର ଶ୍ରୀରାମକୃଷ୍ଣ ଓ ଯୋଗତତ୍ତ୍ୱ—ଜ୍ଞାନଯୋଗ ଓ ଭକ୍ତିଯୋଗ**

'' 'ମୁଁ ହିଁ ସେ', 'ମୁଁ ଶୁଦ୍ଧ ଆତ୍ମା'—ଏହା ଜ୍ଞାନୀମାନଙ୍କର ମତ । ଭକ୍ତମାନେ କହନ୍ତି—ଏସବୁ ଭଗବାନଙ୍କର ଐଶ୍ୱର୍ଯ୍ୟ । ଐଶ୍ୱର୍ଯ୍ୟ ନ ଥିଲେ ଧନୀକୁ କିଏ ଜାଣିବ ? ତେବେ ସାଧକର ଭକ୍ତି ଦେଖି ସେ ଯେତେବେଳେ କହିବେ, 'ମୁଁ ଯାହା, ତୁ ବି ତାହା', ସେତେବେଳେ ଅନ୍ୟ କଥା । ରାଜା ବସିଛନ୍ତି, ଖାନ୍‌ସାମା ଯଦି ରାଜାଙ୍କ ଆସନରେ ଯାଇ ବସେ, ଆଉ କହେ, 'ରାଜା, ତୁମେ ଯାହା, ମୁଁ ମଧ୍ୟ ତାହା', ଲୋକେ ପାଗଳ ବୋଲି କହିବେ । ତେବେ ଖାନ୍‌ସାମାର ସେବାରେ ସନ୍ତୁଷ୍ଟ ହୋଇ ରାଜା ଯଦି କେଉଁ ଦିନ କହନ୍ତି, 'ଆରେ, ତୁ ମୋ ପାଖରେ ବସ୍,

ସେଥିରେ ଦୋଷ ନାହିଁ; ତୁ ଯାହା, ମୁଁ ବି ତାହା !' ସେତେବେଳେ ଯଦି ସେ ଯାଇ ବସେ, ସେଥିରେ ଦୋଷ ହୁଏ ନାହିଁ । ସାମାନ୍ୟ ଜୀବମାନେ ଯଦି କହନ୍ତି, 'ମୁଁ ସେହି'—ସେଇଟା ଭଲ ନୁହେଁ । ଜଳର ହିଁ ତରଙ୍ଗ; ତରଙ୍ଗର କଅଣ ଜଳ ହୁଏ ?

''କଥାଟା ଏହି—ମନ ସ୍ଥିର ନ ହେଲେ, ଯୋଗ ହୁଏ ନାହିଁ, ଯେଉଁ ପଥରେ ଯାଅନା କାହିଁକି । **ମନ ଯୋଗୀର ବଶ । ଯୋଗୀ ମନର ବଶ ନୁହେଁ ।**

''ମନ ସ୍ଥିର ହେଲେ ବାୟୁ ସ୍ଥିର ହୁଏ—କୁମ୍ଭକ ହୁଏ । ଏହି କୁମ୍ଭକ ଭକ୍ତି ଯୋଗରେ ମଧ୍ୟ ହୁଏ; ଭକ୍ତିରେ ବାୟୁ ସ୍ଥିର ହୋଇଯାଏ । 'ନିତାଇ ମୋର ମତ୍ତ ହାତୀ, ନିତାଇ ମୋର ମତ୍ତ ହାତୀ !' —ଏହି କଥା କହୁ କହୁ ଯେତେବେଳେ ଭାବ ହୋଇଯାଏ, ସବୁ କଥାଗୁଡ଼ିକ କହିପାରେ ନାହିଁ; କେବଳ 'ହାତୀ !' 'ହାତୀ !'—ତା'ପରେ କେବଳ 'ହା'-ଭାବରେ ବାୟୁ ସ୍ଥିର ହୁଏ, କୁମ୍ଭକ ହୁଏ ।

''ଜଣେ ଝାଡ଼ୁ ଦେଉଛି; ଜଣେ ଲୋକ ଆସି କହିଲା, 'ଆହେ, ଅମୁକ ମରିଗଲା !' ସେ ଝାଡ଼ୁ ଦେଉଛି, ତା'ର ଯଦି ନିଜର ଲୋକ ନ ହୁଏ, ସେ ଝାଡ଼ୁ ଦେଉଥାଏ ଆଉ ମଝିରେ ମଝିରେ କହେ, 'ଆହା, ଲୋକଟା ମରିଗଲା ! ଭଲ ଲୋକଟିଏ ଥିଲା !' ଏଣେ ଝାଡ଼ୁ ମଧ୍ୟ ଚାଲିଛି ! ଆଉ ଯଦି ଆପଣାର ଲୋକ ହୁଏ, ତାହା ହେଲେ ଝାଡ଼ୁ ହାତରୁ ପଡ଼ିଯାଏ, ଆଉ 'ହାୟ' କହି ବସିପଡ଼େ । ସେତେବେଳେ ବାୟୁ ସ୍ଥିର ହୋଇଯାଇଛି; କୌଣସି କାର୍ଯ୍ୟ ବା ଚିନ୍ତା କରିପାରେ ନାହିଁ । ସ୍ତ୍ରୀମାନଙ୍କ ଭିତରେ ଦେଖି ନାହଁ ? ଯଦି କେହି ଅବାକ୍ ହୋଇ ଗୋଟାଏ ଜିନିଷ ଦେଖେ ବା ଗୋଟାଏ କଥା ଶୁଣେ, ସେତେବେଳେ ଅନ୍ୟ ସ୍ତ୍ରୀମାନେ କହନ୍ତି, 'ତୋର କଅଣ ଭାବ ହୋଇଛି କିଲୋ !' ଏଠାରେ ମଧ୍ୟ ବାୟୁ ସ୍ଥିର ହୋଇଛି, ତେଣୁ ଅବାକ୍ ହୋଇ ହାଁ କରି ରହେ ।

### ଜ୍ଞାନୀର ଲକ୍ଷଣ—ସାଧନସିଦ୍ଧ ଓ ନିତ୍ୟସିଦ୍ଧ

''ଖାଲି ସୋଽହଂ ସୋଽହଂ କଲେ ହୁଏ ନାହିଁ । ଜ୍ଞାନୀର ଲକ୍ଷଣ ଅଛି । ନରେନ୍ଦ୍ରର ଚକ୍ଷୁ ଆଗକୁ ଠେଲି ହୋଇ ଆସିଛି । ଏହାର କପାଳ ଓ ଆଖିର ଲକ୍ଷଣ ଭଲ ।

''ଆଉ ସମସ୍ତଙ୍କର ସମାନ ଅବସ୍ଥା ନୁହେଁ । ଜୀବ ଚାରିପ୍ରକାର ବୋଲି କହନ୍ତି—ବଦ୍ଧ ଜୀବ, ମୁମୁକ୍ଷୁ ଜୀବ, ମୁକ୍ତ ଜୀବ, ନିତ୍ୟ ଜୀବ । ସମସ୍ତଙ୍କୁ ଯେ ସାଧନ କରିବାକୁ ହୁଏ, ତାହା ନୁହେଁ । ନିତ୍ୟସିଦ୍ଧ ଆଉ ସାଧନାସିଦ୍ଧ । କେହି ଅନେକ ସାଧନ କରି ଈଶ୍ୱରଙ୍କୁ ପାଏ; କେହି ଜନ୍ମରୁ ସିଦ୍ଧ, ଯେପରି ପ୍ରହ୍ଲାଦ । ହୋମା ପକ୍ଷୀ ଆକାଶରେ ରହେ । ଡିମ୍ବ ଦେଲେ ଡିମ୍ବ ପଡୁଥାଏ । ପଡୁ ପଡୁ ଡିମ୍ବ ଫୁଟେ । ଛୁଆଟା ବାହାରି ପୁଣି ପଡୁଥାଏ । ବର୍ତ୍ତମାନ ମଧ୍ୟ ଏତେ ଉଚ୍ଚରେ ଯେ, ପଡୁ ପଡୁ ଡେଣା କଅଁଳେ । ଯେତେବେଳେ ପୃଥିବୀ ନିକଟକୁ ଆସିଯାଏ, ପକ୍ଷୀଟା ଦେଖିପାରେ; ସେତେବେଳେ ବୁଝିପାରେ ଯେ, ମାଟିରେ ପଡ଼ିଲେ ଚୁରମାର୍

ହୋଇଯିବ । ସେତେବେଳେ ମା' ପାଖକୁ ଏକାବେଳକେ ସିଧା ଦୌଡ଼ମାରେ— କେଉଁଠାରେ ମା' ! କେଉଁଠାରେ ମା' !

''ପ୍ରହ୍ଲାଦାଦି ନିତ୍ୟସିଦ୍ଧଙ୍କର ସାଧନ-ଭଜନ ପରେ । ସାଧନ ଆଗରୁ ଈଶ୍ୱରଲାଭ । ଯେପରି ଲାଉ-କଖାରୁର ଆଗେ ଫଳ, ତା'ପରେ ଫୁଲ । (ରାଖାଲଙ୍କ ବାପାଙ୍କ ଆଡ଼କୁ ଚାହିଁ) ନୀଚ ବଂଶରେ ମଧ୍ୟ ଯଦି ନିତ୍ୟସିଦ୍ଧ ଜାତ ହୁଏ, ସେ ତାହା ହିଁ ହୁଏ, ଆଉକିଛି ହୁଏ ନାହିଁ । ବୁଟ ବିଷ୍ଠାଗଦାରେ ପଡିଲେ ମଧ୍ୟ ବୁଟଗଛ ହିଁ ହୁଏ !

**ଶକ୍ତିବିଶେଷ ଓ ବିଦ୍ୟାସାଗର—କେବଳ ପାଣ୍ଡିତ୍ୟ**

''ସେ କାହାକୁ ବେଶୀ ଶକ୍ତି, କାହାକୁ କମ୍ ଶକ୍ତି ଦେଇଛନ୍ତି । କେଉଁଠାରେ ଗୋଟିଏ ଦୀପ ଜଳୁଛି ତ କେଉଁଠାରେ ଗୋଟିଏ ମଶାଲ ଜଳୁଛି । ବିଦ୍ୟାସାଗରଙ୍କର ଗୋଟିଏ କଥାରେ ତାଙ୍କୁ ଚିହ୍ନିଛି, କେତେ ଦୂର ବୁଦ୍ଧିର ଦୌଡ଼ । ଯେତେବେଳେ କହିଲି ଶକ୍ତିବିଶେଷ, ସେତେବେଳେ ବିଦ୍ୟାସାଗର କହିଲେ, 'ତେବେ କଅଣ ସେ କାହାରିକୁ ବେଶୀ, କାହାକୁ କମ୍ ଶକ୍ତି ଦେଇଛନ୍ତି ?' ମୁଁ ସଙ୍ଗେ ସଙ୍ଗେ କହିଲି, 'ତାହା ନୁହେଁ ତ ଆଉ କଅଣ ! ଶକ୍ତି କମ୍ ବେଶୀ ନ ହେଲେ ତୁମର ନାମ ଏତେ ହେବ କାହିଁକି ? ତୁମର ବିଦ୍ୟା, ତୁମର ଦୟା, ଏହିସବୁ ଶୁଣି ତ ଆମେମାନେ ଆସିଛୁ । ତୁମର ତ ଦୁଇଟା ଶିଙ୍ଗ ବାହରି ନାହିଁ !' ବିଦ୍ୟାସାଗରଙ୍କର ଏତେ ବିଦ୍ୟା, ଏତେ ନାମ; କିନ୍ତୁ ଏପରି କଞ୍ଚା କଥା କହି ପକାଇଲେ, 'ସେ କ'ଣ କାହାରିକୁ ବେଶୀ, କାହାରିକୁ କମ୍ ଶକ୍ତି ଦେଇଛନ୍ତି ?' କଅଣ ଜାଣ, ଜାଲରେ ପ୍ରଥମେ ପ୍ରଥମେ ବଡ଼ ବଡ଼ ମାଛ ପଡ଼ନ୍ତି; ରୋହି, ଭାକୁଡ଼ । ତା'ପରେ କେଉଟମାନେ ପଙ୍କକୁ ପାଦରେ ଘାଣ୍ଟି ଦିଅନ୍ତି, ସେତେବେଳେ ଚୁନା ପଙ୍କୁଆ ମାଛ ସବୁ ବାହାରନ୍ତି— ଟିକିଏ ଦେଖୁ ଦେଖୁ ଧରା ପଡ଼ନ୍ତି । ଈଶ୍ୱରଙ୍କୁ ନ ଜାଣିଲେ କ୍ରମଶଃ ଭିତରର ଚୁନାମାଛ ବାହାରି ପଡ଼ନ୍ତି । ଖାଲି ପଣ୍ଡିତ ହେଲେ କଅଣ ହେବ ?''

## (୩)

(ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱରଠାରେ ଭକ୍ତସଙ୍ଗରେ)

## ତାନ୍ତ୍ରିକ ଭକ୍ତ ଓ ସଂସାର—ନିର୍ଲିପ୍ତର ମଧ୍ୟ ଭୟ

ଠାକୁର ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱର ମନ୍ଦିରରେ ନିଜ ଘରେ ଆହାରାନ୍ତେ କିଞ୍ଚିତ୍ ବିଶ୍ରାମ କରୁଛନ୍ତି । ଅଧର ଓ ମାଷ୍ଟର ଆସି ପ୍ରଣାମ କଲେ । ଜଣେ ତାନ୍ତ୍ରିକ ଭକ୍ତ ମଧ୍ୟ ଆସିଛନ୍ତି । ରାଖାଲ, ହାଜରା, ରାମଲାଲ ପ୍ରଭୃତି ଠାକୁରଙ୍କ ପାଖରେ ଆଜିକାଲି ରହନ୍ତି । ଆଜି ରବିବାର, ୧୭ ଜୁନ୍ ୧୮୮୩, ଜ୍ୟେଷ୍ଠ ଶୁକ୍ଳା ଦ୍ୱାଦଶୀ ।

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି)—ସଂସାରରେ ହେବ ନାହିଁ କାହିଁକି ? ତେବେ ଖୁବ୍ କଠିନ । ଜନକାଦି ଜ୍ଞାନ ଲାଭ କରି ସଂସାରକୁ ଆସିଥିଲେ । ତଥାପି ଭୟ ! ନିଷ୍କାମ ସଂସାରୀଙ୍କର ମଧ୍ୟ ଭୟ । ଭୈରବୀକୁ ଦେଖି ଜନକ ମୁହଁ ତଳକୁ ପୋତିଥିଲେ—ସ୍ତ୍ରୀ-ଦର୍ଶନରେ ସଙ୍କୋଚ ହୋଇଛି । ଭୈରବୀ କହିଲେ, 'ଜନକ ! ତୁମର ଦେଖୁଛି, ଏବେ ବି ଜ୍ଞାନ ହୋଇନାହିଁ; ତୁମର ଏବେ ମଧ୍ୟ ସ୍ତ୍ରୀ-ପୁରୁଷ ବୋଧ ରହିଛି ।

"ଅଳନ୍ଧୁ ଘରେ ଯେତେ ସିଆଣା (ହୁସିଆର) ହୁଅନା କାହିଁକି, ଟିକିଏ ନା ଟିକିଏ ଦାଗ ଦେହରେ ଲାଗିବ ।

"ଦେଖିଛି, ସଂସାରୀ ଭକ୍ତ ଯେତେବେଳେ ମଠା ପିନ୍ଧି ପୂଜା କରୁଛି, ସେତେବେଳେ ବେଶ୍ ଭାବଟି । ଏପରି କି ଜଳ-ଯୋଗ ପର୍ଯ୍ୟନ୍ତ ସମାନ ଭାବ । ତାହାପରେ ନିଜର ମୂର୍ତ୍ତି; ପୁଣି ରଜଃ, ତମଃ ।

"ସତ୍ତ୍ୱ ଗୁଣରେ ଭକ୍ତି ହୁଏ । କିନ୍ତୁ ଭକ୍ତିର ସତ୍ତ୍ୱ, ଭକ୍ତିର ତମଃ ଅଛି । ଭକ୍ତିର ସତ୍ତ୍ୱ ବିଶୁଦ୍ଧ ସତ୍ତ୍ୱଃ; ଏହା ହେଲେ ଈଶ୍ୱରଙ୍କ ଛଡ଼ା ଆଉ କୌଣସିଥିରେ ମନ ରହେ ନାହିଁ, କେବଳ ଦେହଟା ଯେଉଁଥିରେ ରକ୍ଷା ହୁଏ, ସେହି ଟିକକ ଦେହ ଉପରେ ମନ ଥାଏ ।

**ପରମହଂସ ତ୍ରିଗୁଣାତୀତ ଓ କର୍ମଫଳର ଅତୀତ,**
**ପାପପୁଣ୍ୟର ଅତୀତ—କେଶବ ସେନ୍ ଓ ଦଳ**

"ପରମହଂସ ତିନିଗୁଣର ଅତୀତ ।[୧] ତାଙ୍କ ଭିତରେ ତିନିଗୁଣ ଅଛି, ପୁଣି ନାହିଁ । ଠିକ୍ ବାଳକ; କୌଣସି ଗୁଣର ବଶ ନୁହେଁ । ତେଣୁ ଛୋଟ ଛୋଟ ପିଲାମାନଙ୍କୁ ପରମହଂସମାନେ ପାଖକୁ ଆସିବାକୁ ଦିଅନ୍ତି, ସେମାନଙ୍କର ସ୍ୱଭାବ ଆରୋପ କରିବେ ବୋଲି ।

"ପରମହଂସ ସଞ୍ଚୟ କରିପାରନ୍ତି ନାହିଁ । ଏହା ସଂସାରୀମାନଙ୍କ ପକ୍ଷରେ ନୁହେଁ, ସେମାନଙ୍କର ସ୍ତ୍ରୀ ପିଲାପିଲିଙ୍କ ପାଇଁ ସଞ୍ଚୟ କରିବାକୁ ହୁଏ ।"

ତାନ୍ତ୍ରିକ ଭକ୍ତ—ପରମହଂସଙ୍କର କ'ଣ ପାପପୁଣ୍ୟ ବୋଧ ରହେ ?

ଶ୍ରୀରାମକୃଷ୍ଣ—କେଶବ ସେନ୍ ଏହି କଥା ପଚାରିଥିଲା । ମୁଁ କହିଲି, 'ଆଉ ବେଶୀ କହିଲେ ତୁମର ଦଳ ରହିବ ନାହିଁ ।' କେଶବ କହିଲେ, 'ତେବେ ଥାଉ, ଆଜ୍ଞା !'

"ପାପପୁଣ୍ୟ କଅଣ ଜାଣ ? ପରମହଂସ ଅବସ୍ଥାରେ ଦେଖେ, ସେ ହିଁ ସୁମତି ଦିଅନ୍ତି, ସେ ହିଁ କୁମତି ଦିଅନ୍ତି । ପିତା ମିଠା ଫଳ କଅଣ ନାହିଁ ? କେଉଁ

---

୧. ମାଞ୍ଚ ଯୋଽବ୍ୟଭିଚାରେଣ ଭକ୍ତିଯୋଗେନ ସେବତେ ।
ସଗୁଣାନ୍ ସମତୀତ୍ୟୈତାନ ବ୍ରହ୍ମଭୂୟାୟ କଳ୍ପତେ ॥ —ଗୀତା, ୧୪/୨୬

ଗଛରେ ମିଠା ଫଳ, କେଉଁ ଗଛରେ ପିତା ଫଳ ବା ଖଟା ଫଳ । ସେ ମିଠା ଆମ୍ବଗଛ ମଧ୍ୟ କରିଛନ୍ତି । ପୁଣି ଖଟା ଆମ୍ବଡ଼ା ଗଛ ମଧ୍ୟ କରିଛନ୍ତି ।''

ତାନ୍ତ୍ରିକ ଭକ୍ତ — ଆଜ୍ଞା ହଁ, ପାହାଡ଼ ଉପରେ ଦେଖାଯାଏ, ଗୋଲାପ-କ୍ଷେତ । ଯେତେଦୂର ଆଖି ପାଏ କେବଳ ଗୋଲାପର କ୍ଷେତ !

ଶ୍ରୀରାମକୃଷ୍ଣ — ପରମହଂସ ଦେଖନ୍ତି, ଏସବୁ ତାଙ୍କ ମାୟାର ଐଶ୍ୱର୍ଯ୍ୟ । ସତ୍-ଅସତ୍, ଭଲ-ମନ୍ଦ, ପାପ-ପୁଣ୍ୟ । ଏସବୁ ବହୁ ଦୂରର କଥା ! ସେ ଅବସ୍ଥାରେ ଦଳ-ଫଳ ରହେ ନାହିଁ ।

**ତନ୍ତ୍ରିକ ଭକ୍ତ ଓ କର୍ମଫଳ — ପାପପୁଣ୍ୟ**

ତାନ୍ତ୍ରିକ ଭକ୍ତ — ତେବେ କର୍ମଫଳ ଅଛି ?

ଶ୍ରୀରାମକୃଷ୍ଣ — ତାହା ବି ଅଛି । ଭଲ କର୍ମ କଲେ ସୁଫଳ, ମନ୍ଦ କର୍ମ କଲେ କୁଫଳ । ଲଙ୍କା ଖାଇଲେ ରାଗ ଲାଗିବ ନାହିଁ ? ଏସବୁ ତାଙ୍କର ଲୀଳା-ଖେଳା ।

ତାନ୍ତ୍ରିକ ଭକ୍ତ — ଆମମାନଙ୍କର ଉପାୟ କଅଣ ? କର୍ମର ଫଳ ତ ଅଛି ?

ଶ୍ରୀରାମକୃଷ୍ଣ — ଥିଲେ ମଧ୍ୟ ତାଙ୍କ ଭକ୍ତଙ୍କର ଅଲଗା କଥା । ଏହା କହି ଠାକୁରେ ଗାଉଛନ୍ତି —

''ମନରେ କୃଷି କାଜ୍ ଜାନନା ।
ଏମନ ମାନବ ଜମିନ୍ ରଇଲ ପତିତ ଆବାଦ କର୍‌ଲେ ଫଲତୋ ସୋନା ॥
କାଲୀ ନାମେ ଦାଓରେ ବେଡ଼ା, ଫସଲେ ତଛରୂପ ହବେ ନା ।
ସେ ଯେ ମୁକ୍ତକେଶୀର ଶକ୍ତ ବେଡ଼ା, ତାର କାଛେତେ ଯମ ଘେଁସେ ନା ॥
ଗୁରୁଦତ୍ତ ବୀଜ ରୋପଣ କରେ, ଭକ୍ତିବାରି ସେଁଚେ ଦେନା ।
ଏକା ଯଦି ନା ପାରିସ୍ ମନ, ରାମପ୍ରସାଦକେ ସଙ୍ଗେ ନେନା ॥''

ପୁଣି ଗାଉଛନ୍ତି —

''ଶମନ ଆସିବାର ପଥ ଘୁଁଚେଛେ, ଆମାର ମନେର ସନ୍ଦ ଘୁଁଚେଗେଛେ ।
(ଓରେ) ଆମାର ଘରେର ନବଦ୍ୱାର ଚାରି ଶିବ ଚୌକି ରୟେଛେ ॥...

''**କାଶୀରେ** ବ୍ରାହ୍ମଣ ମରୁ ବା ବେଶ୍ୟା ମରୁ, **ଶିବ** ହେବ । ଯେତେବେଳେ ହରି ନାମରେ, କାଳୀ ନାମରେ, ରାମ ନାମରେ ଆଖିରୁ ଲୁହ ଗଡ଼େ, ସେତେବେଳେ ସନ୍ଧ୍ୟା କବଚାଦିର ଆଉ କିଛି ପ୍ରୟୋଜନ ନାହିଁ । କର୍ମତ୍ୟାଗ ହୋଇଯାଏ । କର୍ମର ଫଳ ତା' ପାଖକୁ ଯାଏ ନାହିଁ ।''

ଠାକୁର ପୁଣି ଗାଉଛନ୍ତି —

''ଭାବିଲେ ଭାବେର ଉଦୟ ହୟ ।...

''ତ୍ରିସନ୍ଧ୍ୟା ଯେ ବଲେ କାଲୀ, ପୂଜା ସନ୍ଧ୍ୟା ସେ କି ଚାୟ
ସନ୍ଧ୍ୟା ତାର ସନ୍ଧାନେ ଫିରେ କଭୁ ସନ୍ଧି ନାହିଁ ପାୟ ।...

''ତାଙ୍କଠାରେ ମଗ୍ନ ହେଲେ ଆଉ ଅସତ୍‌ବୁଦ୍ଧି, ପାପବୁଦ୍ଧି ରହେ ନାହିଁ ।''

ତାନ୍ତ୍ରିକ ଭକ୍ତ—ଆପଣ କହିଛନ୍ତି, 'ବିଦ୍ୟାର ମୁଁ' ରହେ ।

ଶ୍ରୀରାମକୃଷ୍ଣ—ବିଦ୍ୟାର ମୁଁ, ଭକ୍ତିର ମୁଁ, ଦାସ ମୁଁ, ଭଲ ମୁଁ ରହେ; 'ବଜ୍ଜାତ୍ ମୁଁ' ଚାଲିଯାଏ । (ହାସ୍ୟ)

ତାନ୍ତ୍ରିକ ଭକ୍ତ—ଆଜ୍ଞା, ଆମମାନଙ୍କର ଅନେକ ସଂଶୟ ଚାଲିଗଲା ।

ଶ୍ରୀରାମକୃଷ୍ଣ—ଆତ୍ମାର ସାକ୍ଷାତ୍କାର ହେଲେ ସବୁ ସନ୍ଦେହ ଭଞ୍ଜନ ହୁଏ ।[୧]

**ତାନ୍ତ୍ରିକ ଭକ୍ତ ଓ ଭକ୍ତିର ତମଃ—ନିର୍ବୋଧର ସଂଶୟ—ଅଷ୍ଟସିଦ୍ଧି**

''ଭକ୍ତିର ତମଃ ଆଣ । କହ—କଅଣ ! ରାମ କହିଛି, କାଳୀ କହିଛି, ମୋର ପୁଣି ବନ୍ଧନ, ମୋର ପୁଣି କର୍ମଫଳ !''

ଠାକୁର ପୁଣି ଗାଉଛନ୍ତି—

''ଆମି ଦୁର୍ଗା ଦୁର୍ଗା ବଲେ ମା' ଯଦି ମରି ।...''

ଶ୍ରୀରାମକୃଷ୍ଣ ପୁଣି କହୁଛନ୍ତି, ''ବିଶ୍ୱାସ, ବିଶ୍ୱାସ, ବିଶ୍ୱାସ ! ଗୁରୁ କହିଦେଇଛନ୍ତି—ରାମ ହିଁ ସବୁ ହୋଇଛନ୍ତି, 'ଓହି ରାମ ଘଟ୍ ଘଟ୍‌ମେଁ ଲେଟା ।' କୁକୁର ରୁଟି ଖାଇଯାଉଛି । ଭକ୍ତ କହୁଛି, 'ରାମ ! ରହ ରହ ! ରୁଟିରେ ଘିଅ ଲଗାଇଦିଏ ।' ଏପରି ଗୁରୁବାକ୍ୟରେ ବିଶ୍ୱାସ ।

''ନିର୍ବୋଧ ଲୋକମାନଙ୍କର ବିଶ୍ୱାସ ହୁଏ ନାହିଁ ! ସର୍ବଦା ହିଁ ସଂଶୟ ! ଆତ୍ମାର ସାକ୍ଷାତ୍କାର ନ ହେଲେ ସବୁ ସଂଶୟ ଯାଏ ନାହିଁ ।

''ଶୁଦ୍ଧା ଭକ୍ତି, କୌଣସି କାମନା ରହିବ ନାହିଁ, ସେହି ଭକ୍ତିଦ୍ୱାରା ତାଙ୍କୁ ଶୀଘ୍ର ଲାଭ କରାଯାଏ ।

''ଅଣିମାଦି ସିଦ୍ଧି—ଏସବୁ କାମନା । ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଥିଲେ, 'ଭାଇ, ଅଣିମାଦି ସିଦ୍ଧିରୁ ଗୋଟିଏ ବି ରହିଲେ ଈଶ୍ୱରଲାଭ ହୁଏ ନାହିଁ; ଟିକିଏ ଶକ୍ତି ବଢ଼ିପାରେ' ।''

ତାନ୍ତ୍ରିକ ଭକ୍ତ—ଆଜ୍ଞା, ତାନ୍ତ୍ରିକ କ୍ରିୟା ଆଜିକାଲି କାହିଁକି ଫଳେ ନାହିଁ ?

ଶ୍ରୀରାମକୃଷ୍ଣ—ସର୍ବାଙ୍ଗୀନ ହୁଏ ନାହିଁ, ଆଉ ଭକ୍ତିପୂର୍ବକ ହୁଏ ନାହିଁ; ତେଣୁ ଫଳେ ନାହିଁ ।

ଏଥର ଠାକୁର କଥା ଶେଷ କରୁଛନ୍ତି । କହୁଛନ୍ତି, ''**ଭକ୍ତି ହିଁ ସାର**; ଠିକ୍ ଭକ୍ତର କୌଣସି ଭୟ ଭାବନା ନାହିଁ । ମାଆ ସବୁ ଜାଣନ୍ତି । ବିରାଡ଼ି ମୂଷାକୁ ଏକପ୍ରକାର କରି ଧରେ; କିନ୍ତୁ ନିଜର ପିଲାକୁ ଆଉ ଏକ ପ୍ରକାର କରି ଧରେ ।''

---

୧. 'ଛିଦ୍ୟନ୍ତେ ସର୍ବସଂଶୟାଃ...ତସ୍ମିନ୍ ଦୃଷ୍ଟେ ପରାବରେ ।' —ମୁଣ୍ଡକ ଉପ. ୨/୨/୮

# ଅଷ୍ଟାବିଂଶ ପରିଚ୍ଛେଦ

## (୧)

## ଠାକୁର ଶ୍ରୀରାମକୃଷ୍ଣ ପାଣିହାଟୀ ମହୋତ୍ସବ କ୍ଷେତ୍ରରେ ରାଖାଲ, ରାମ, ମାଷ୍ଟର, ଭବନାଥ ପ୍ରଭୃତି ଭକ୍ତଙ୍କ ସଙ୍ଗରେ

ଶ୍ରୀରାମକୃଷ୍ଣ ପାଣିହାଟୀ ମହୋତ୍ସବ କ୍ଷେତ୍ରରେ ବହୁଲୋକ-ସମାକୀର୍ଣ୍ଣ ରାଜପଥରେ ସଂକୀର୍ତ୍ତନ-ଦଳ ମଧ୍ୟରେ ନୃତ୍ୟ କରୁଛନ୍ତି । ସମୟ ଦିନ ଗୋଟାଏ । ଆଜି ସୋମବାର, ଜ୍ୟେଷ୍ଠ ଶୁକ୍ଳା ତ୍ରୟୋଦଶୀ, ୧୮ ଜୁନ୍ ୧୮୮୩ ।

ସଂକୀର୍ତ୍ତନ ମଧ୍ୟରେ ଠାକୁରଙ୍କୁ ଦର୍ଶନ କରିବା ପାଇଁ ଲୋକେ ଭରପୂର ହୋଇ ଠିଆ ହୋଇଛନ୍ତି । ଠାକୁର ପ୍ରେମରେ ମତୁଆଲା ହୋଇ ନାଚୁଛନ୍ତି । କେହି କେହି ଭାବୁଛନ୍ତି — କ'ଣ ଶ୍ରୀଗୌରାଙ୍ଗ ପୁଣି ପ୍ରକଟ ହେଲେ ! ଚତୁର୍ଦ୍ଦିଗରେ ହରିଧ୍ୱନି ସମୁଦ୍ରକଲ୍ଲୋଳ ପରି ବଢୁଛି । ଚତୁର୍ଦ୍ଦିଗରୁ ପୁଷ୍ପବୃଷ୍ଟି ଓ ହରିଲୁଟ୍ ହେଉଛି ।

ନବଦ୍ୱୀପ ଗୋସ୍ୱାମୀ ପ୍ରଭୁ ସଂକୀର୍ତ୍ତନ କରୁ କରୁ ରାଘବ ମନ୍ଦିରାଭିମୁଖେ ଯାଉଥିଲେ; ଏପରି ସମୟରେ ଠାକୁର କେଉଁଠାରୁ ତୀରବେଗରେ ଆସି ସଂକୀର୍ତ୍ତନଦଳ ମଧ୍ୟରେ ନୃତ୍ୟ କରୁଛନ୍ତି ।

ଏହିଟି ରାଘବ ପଣ୍ଡିତଙ୍କର 'ଚୁଡ଼ା ମହୋତ୍ସବ' । ଶୁକ୍ଳପକ୍ଷ ତ୍ରୟୋଦଶୀ ତିଥିରେ ପ୍ରତିବର୍ଷ ହୁଏ । ଦାସ ରଘୁନାଥ ପ୍ରଥମେ ଏହି ମହୋତ୍ସବ କରିଥିଲେ । ରାଘବ ପଣ୍ଡିତ ତାହା ପରେ ବର୍ଷକୁ ବର୍ଷ କରିଥିଲେ । ଦାସ ରଘୁନାଥଙ୍କୁ ନିତ୍ୟାନନ୍ଦ କହିଥିଲେ, ''ଆରେ ଚୋର, ତୁ ଘରୁ କେବଳ ପଳାଇ ପଳାଇ ଆସୁଛୁ, ଆଉ ଚୋରି କରି ପ୍ରେମ ଆସ୍ୱାଦନ କରୁଛୁ — ଆମେ କେହି ଜାଣିପାରୁ ନାହୁଁ ! ଆଜି ତୋତେ ଦଣ୍ଡ ଦେବି, ତୁ 'ଚୁଡ଼ା ମହୋତ୍ସବ' କରି ଭକ୍ତମାନଙ୍କର ସେବା କର !''

ଠାକୁର ପ୍ରତିବର୍ଷ ପ୍ରାୟ ଆସନ୍ତି, ଆଜି ମଧ୍ୟ ଏଠାକୁ ରାମ ପ୍ରଭୃତି ଭକ୍ତଙ୍କ ସହିତ ଆସିବାର କଥା ଥିଲା । ରାମ ସକାଳେ କଲିକତାରୁ ମାଷ୍ଟରଙ୍କ ସହିତ ଦକ୍ଷିଣେଶ୍ୱରକୁ ଆସିଥିଲେ । ସେଠାକୁ ଆସି ଠାକୁରଙ୍କୁ ଦର୍ଶନ ଓ ପ୍ରଣାମାନ୍ତର ଉତ୍ତରର ବାରଣ୍ଡାରେ ଆସି ପ୍ରସାଦ ପାଇଲେ । ରାମ କଲିକତାରୁ ଯେଉଁ ଗାଡ଼ିରେ ଆସିଥିଲେ ସେହି ଗାଡ଼ିରେ ଠାକୁରଙ୍କୁ ପାଣିହାଟୀକୁ ଅଣାହେଲା । ସେହି ଗାଡ଼ିରେ ରାଖାଲ, ମାଷ୍ଟର, ରାମ, ଭବନାଥ, ଆଉ ଜଣେ ଦୁଇଜଣ ଭକ୍ତ — ସେମାନଙ୍କ ମଧ୍ୟରୁ ଜଣେ ଛାତରେ ବସିଥିଲେ ।

ଗାଡ଼ି ମାଗାଜିନ ରୋଡ୍ ଦେଇ ଚାଣକର ବଡ଼ ରାସ୍ତାରେ (ଗ୍ରାଣ୍ଡଟ୍ରଙ୍କ ରୋଡ୍‌ରେ) ଯାଉ ଯାଉ ଠାକୁର ଯୁବକ ଭକ୍ତମାନଙ୍କ ସହିତ ଅନେକ ଥଟ୍ଟା ପରିହାସ କରିବାକୁ ଲାଗିଲେ ।

ପାଣିହାଟୀ ମହୋତ୍ସବ କ୍ଷେତ୍ରରେ ଗାଡ଼ି ପହଞ୍ଚିବା ମାତ୍ରକେ ରାମ ପ୍ରଭୃତି ଭକ୍ତମାନେ ଦେଖି ଅବାକ୍ ହୋଇଗଲେ—ଠାକୁର ବର୍ତ୍ତମାନ ଗାଡ଼ିରେ ଆନନ୍ଦ କରୁଥିଲେ, ହଠାତ୍ ଏକାକୀ ଓହ୍ଲାଇ ତୀରପରି ଦୌଡ଼ୁଛନ୍ତି ! ସେମାନେ ବହୁ ଖୋଜା ଖୋଜି କରି ଦେଖିଲେ ଯେ, ନବଦ୍ୱୀପ ଗୋସ୍ୱାମୀଙ୍କର ସଂକୀର୍ତ୍ତନ-ଦଳ ମଧ୍ୟରେ ଠାକୁର ନୃତ୍ୟ କରୁଛନ୍ତି ଓ ମଝିରେ ମଝିରେ ସମାଧିସ୍ଥ ହେଉଛନ୍ତି । କାଳେ ପଡ଼ିଯିବେ, ଶ୍ରୀଯୁକ୍ତ ନବଦ୍ୱୀପ ଗୋସ୍ୱାମୀ ସମାଧିସ୍ଥ ଦେଖି ତାଙ୍କୁ ଅତି ଯତ୍ନରେ ଧାରଣ କରୁଛନ୍ତି । ଆଉ ଚତୁର୍ଦ୍ଦିଗରୁ ଭକ୍ତମାନେ ହରିଧ୍ୱନି କରି ତାଙ୍କ ଚରଣରେ ପୁଷ୍ପ ଓ ଫେଣି ନିକ୍ଷେପ କରୁଛନ୍ତି ଓ ଥରେ ଦର୍ଶନ କରିବା ପାଇଁ ଠେଲାଠେଲି କରୁଛନ୍ତି ।

ଠାକୁର ଅର୍ଦ୍ଧବାହ୍ୟଦଶାରେ ନୃତ୍ୟ କରୁଛନ୍ତି । ବାହ୍ୟଦଶାରେ ଗାଉଛନ୍ତି—

''ଯାଦେର ହରି ବଲ୍‌ତେ ନୟନ ଝରେ,
ଐ ତାରା ତାରା ଦୁଭାଇ ଏସେଛେ ରେ !
ଯାରା ଆପନି ନେଚେ ଜଗତ୍ ନାଚାୟ,
ତାରା ତାରା ଦୁଭାଇ ଏସେଛେ ରେ !
(ଯାରା ଆପନି କେଁଦେ ଜଗତ୍ କାଁଦାୟ)
(ଯାରା ମାର୍ ଖେୟେ ପ୍ରେମ ଯାଚେ)''

ଠାକୁରଙ୍କ ସଙ୍ଗରେ ସମସ୍ତେ ଉନ୍ମତ୍ତ ହୋଇ ନାଚୁଛନ୍ତି, ଆଉ ବୋଧ କରୁଛନ୍ତି, 'ଗୌର ନିତାଇ ଆମମାନଙ୍କ ସମ୍ମୁଖରେ ନାଚୁଛନ୍ତି !'

ଠାକୁର ପୁଣି ଗାଇଲେ—

''ନଦେ ଟଲମଲ କରେ ଟଲମଲ କରେ—
ଗୌର ପ୍ରେମେର ହିଲ୍ଲୋଲେ ରେ !''

ସଂକୀର୍ତ୍ତନ-ତରଙ୍ଗ ରାଘବମନ୍ଦିର ଅଭିମୁଖରେ ଅଗ୍ରସର ହେଉଛି । ସେଠାରେ ପରିକ୍ରମଣ ଓ ନୃତ୍ୟ କରି ଶ୍ରୀରାଧାକୃଷ୍ଣଙ୍କ ବିଗ୍ରହ ସମ୍ମୁଖରେ ପ୍ରଣାମ କରି ଗଙ୍ଗାକୂଳରେ ବାବୁମାନଙ୍କ ଦ୍ୱାରା ପ୍ରତିଷ୍ଠିତ ଶ୍ରୀଶ୍ରୀରାଧାକୃଷ୍ଣଙ୍କ ଘର ଆଡ଼କୁ ଏହି ତରଙ୍ଗାୟିତ ଜନସ୍ରୋତ ଅଗ୍ରସର ହେଉଛି ।

ଶ୍ରୀଶ୍ରୀରାଧାକୃଷ୍ଣଙ୍କର ଅଙ୍ଗନରେ ସଂକୀର୍ତ୍ତନଦଳର କିୟଦଂଶ ପ୍ରବେଶ କରୁଛି—ଅଧିକାଂଶ ଲୋକ ପ୍ରବେଶ କରିପାରୁ ନାହାନ୍ତି । କେବଳ ଦ୍ୱାରଦେଶରେ ଠେଲାଠେଲି କରି ଉଙ୍କି ମାରୁଛନ୍ତି ।

ଠାକୁର ଶ୍ରୀଶ୍ରୀରାଧାକୃଷ୍ଣଙ୍କ ଅଗଣାରେ ପୁଣି ନୃତ୍ୟ କରୁଛନ୍ତି । କୀର୍ତ୍ତନାନନ୍ଦରେ ଗର୍ଗର ମତୁଆଲା ! ମଝିରେ ମଝିରେ ସମାଧିସ୍ଥ ହେଉଛନ୍ତି । ଆଉ ଚତୁର୍ଦ୍ଦିଗରୁ ପୁଷ୍ପ ଓ ଫେଣି ଚରଣ ତଳେ ପଡୁଛି । ଅଗଣାଭିତରେ ହରିନାମର ରୋଳ ମୁହୁର୍ମୁହୁଃ ଉଠୁଛି । ସେହି ଧ୍ୱନି ରାଜପଥରେ ପହଞ୍ଚି ସହସ୍ର କଣ୍ଠରେ ପ୍ରତିଧ୍ୱନିତ

ହେବାକୁ ଲାଗିଲା । ଭାଗୀରଥୀବକ୍ଷରେ ଯେଉଁ ସମସ୍ତ ନୌକା ଯାତାୟାତ କରୁଥିଲା, ସେଗୁଡ଼ିକର ଆରୋହୀଗଣ ଅବାକ୍ ହୋଇ ଏହି ସମୁଦ୍ର କଲ୍ଲୋଳପରି ହରିଧ୍ୱନି ଶୁଣିବାକୁ ଲାଗିଲେ ଓ ନିଜେ ମଧ୍ୟ 'ହରିବୋଲ' 'ହରିବୋଲ' ଧ୍ୱନି ଦେବାକୁ ଲାଗିଲେ ।

ପାଣିହାଟୀର ମହୋତ୍ସବରେ ସମବେତ ସହସ୍ର ସହସ୍ର ନରନାରୀ ଭାବୁଛନ୍ତି, ଏହି ମହାପୁରୁଷଙ୍କ ଭିତରେ ନିଶ୍ଚୟ ଶ୍ରୀଗୌରାଙ୍ଗଙ୍କ ଆବିର୍ଭାବ ହୋଇଛି । ଜଣେ ଦୁଇଜଣ ଭାବୁଛନ୍ତି, ଏ କ'ଣ ସାକ୍ଷାତ୍ ସେହି ଶ୍ରୀଗୌରାଙ୍ଗ ।

କ୍ଷୁଦ୍ର ଅଗଣାରେ ବହୁଲୋକ ସମବେତ ହୋଇଛନ୍ତି । ଭକ୍ତମାନେ ଅତି ସନ୍ତର୍ପଣରେ ଠାକୁର ଶ୍ରୀରାମକୃଷ୍ଣଙ୍କୁ ବାହାରକୁ ଆଣିଲେ ।

ଠାକୁର ଭକ୍ତଙ୍କ ସଙ୍ଗରେ ଶ୍ରୀଯୁକ୍ତ ମଣି ସେନ୍‌ଙ୍କର ବୈଠକଖାନାକୁ ଆସି ଉପବେଶନ କଲେ । ଏହି ସେନ୍ ପରିବାରଙ୍କର ହିଁ ପାଣିହାଟୀରେ ଶ୍ରୀଶ୍ରୀରାଧାକୃଷ୍ଣଙ୍କର ସେବା । ସେମାନେ ହିଁ ବର୍ତ୍ତମାନ ପ୍ରତିବର୍ଷ ମହୋତ୍ସବର ଆୟୋଜନ କରନ୍ତି ଓ ଠାକୁରଙ୍କୁ ନିମନ୍ତ୍ରଣ କରନ୍ତି ।

ଠାକୁର ଟିକିଏ ବିଶ୍ରାମ କଲାପରେ ମଣି ସେନ୍ ଓ ତାଙ୍କର ଗୁରୁଦେବ ନବଦ୍ୱୀପ ଗୋସ୍ୱାମୀ ଠାକୁରଙ୍କୁ କକ୍ଷାନ୍ତରକୁ ନେଇଯାଇ ପ୍ରସାଦ ଆଣି ସେବା କରାଇଲେ । ଟିକିଏପରେ ରାମ, ରାଖାଲ, ମାଷ୍ଟର, ଭବନାଥ ପ୍ରଭୃତି ଭକ୍ତମାନଙ୍କୁ ଆଉ ଗୋଟିଏ ଘରେ ବସାଇ ଦିଆହେଲା । ଠାକୁର ଭକ୍ତବତ୍ସଳ—ନିଜେ ଠିଆ ହୋଇ ଆନନ୍ଦ କରୁ କରୁ ସେମାନଙ୍କୁ ଖୁଆଉଛନ୍ତି ।

## (୨)

### (ଶ୍ରୀଯୁକ୍ତ ନବଦ୍ୱୀପ ଗୋସ୍ୱାମୀଙ୍କ ପ୍ରତି ଉପଦେଶ)

## ଶ୍ରୀଗୌରାଙ୍ଗଙ୍କର ମହାଭାବ, ପ୍ରେମ ଓ ତିନିଦଶା

ଅପରାହ୍ଣ । ରାଖାଲ, ରାମ ପ୍ରଭୃତି ଭକ୍ତଙ୍କ ସଙ୍ଗରେ ଠାକୁର ମଣି ସେନ୍‌ଙ୍କର ବୈଠକଖାନାରେ ବସିଛନ୍ତି । ନବଦ୍ୱୀପ ଗୋସ୍ୱାମୀ ପ୍ରସାଦ ପାଇବା ପରେ ଅଣ୍ଡା ହୋଇ ବୈଠକଖାନାରେ ଆସି ଠାକୁରଙ୍କ ପାଖରେ ବସିଛନ୍ତି ।

ଶ୍ରୀଯୁକ୍ତ ମଣିସେନ୍ ଠାକୁରଙ୍କର ଗାଡ଼ିଭଡ଼ା ଦେବାକୁ ଚାହିଁଲେ । ଠାକୁର ସେତେବେଳେ ବୈଠକଖାନାରେ ଗୋଟିଏ ଚଉକିରେ ବସିଛନ୍ତି, ଏବଂ କହୁଛନ୍ତି, "ଗାଡ଼ିଭଡ଼ା ସେମାନେ (ରାମ ପ୍ରଭୃତି) ନେବେ କାହିଁକି ? ସେମାନେ ରୋଜଗାର କରନ୍ତି ।"

ଏଥର ଠାକୁର ନବଦ୍ୱୀପ ଗୋସ୍ୱାମୀଙ୍କ ସହିତ ଈଶ୍ୱରୀୟ କଥା କହୁଛନ୍ତି ।

ଶ୍ରୀରାମକୃଷ୍ଣ (ନବଦ୍ୱୀପଙ୍କ ପ୍ରତି)—ଭକ୍ତି ପାଚିଲେ ଭାବ—ତାହାପରେ ମହାଭାବ—ତା'ପରେ ପ୍ରେମ—ତା'ପରେ ବସ୍ତୁଲାଭ (ଈଶ୍ୱରଲାଭ) ।

''ଗୌରାଙ୍ଗଙ୍କର —ମହାଭାବ, ପ୍ରେମ ।

''ଏହି ପ୍ରେମ ହେଲେ ଜଗତ୍ ତ ଭୁଲ ହୋଇଯାଏ, ପୁଣି ନିଜର ଦେହ ଯେ ଏତେ ପ୍ରିୟ, ତାହା ମଧ୍ୟ ଭୁଲ ହୋଇଯାଏ ! ଗୌରାଙ୍ଗଙ୍କର ଏହି ପ୍ରେମ ହୋଇଥିଲା । ସମୁଦ୍ର ଦେଖି ଯମୁନା ଭାବି ଡେଇଁ ପଡ଼ିଥିଲେ !

''ଜୀବର ମହାଭାବ ବା ପ୍ରେମ ହୁଏ ନାହିଁ—ସେମାନଙ୍କର ଭାବ ପର୍ଯ୍ୟନ୍ତ । ଆଉ ଗୌରାଙ୍ଗଙ୍କର ତିନୋଟି ଅବସ୍ଥା ହୋଇଥିଲା । ନୁହେଁ ?''

ନବଦ୍ୱୀପ—ଆଜ୍ଞା ହଁ । ଅନ୍ତର୍ଦ୍ଦଶା, ଅର୍ଦ୍ଧବାହ୍ୟଦଶା ଏବଂ ବାହ୍ୟଦଶା ।

ଶ୍ରୀରାମକୃଷ୍ଣ—ଅନ୍ତର୍ଦ୍ଦଶାରେ ସେ ସମାଧିସ୍ଥ ରହୁଥିଲେ । ଅର୍ଦ୍ଧବାହ୍ୟଦଶାରେ କେବଳ ନୃତ୍ୟ କରିପାରୁଥିଲେ । ବାହ୍ୟଦଶାରେ ନାମ ସଂକୀର୍ତ୍ତନ କରୁଥିଲେ ।

ନବଦ୍ୱୀପ ତାଙ୍କର ପୁଅଟିକୁ ଆଣି ଠାକୁରଙ୍କ ସହ ପରିଚୟ କରାଇଦେଲେ । ପୁଅଟିର ଯୁବକ ବୟସ—ଶାସ୍ତ୍ର ଅଧ୍ୟୟନ କରନ୍ତି । ସେ ଠାକୁରଙ୍କୁ ପ୍ରଣାମ କଲେ ।

ନବଦ୍ୱୀପ—ଘରେ ଶାସ୍ତ୍ର ପଢ଼େ । ଏ ଦେଶରେ ବେଦ ପ୍ରାୟ ମିଳୁ ନ ଥିଲା । ମାକ୍ସମୁଲାର ଛପାଇଲେ, ତେଣୁ ଲୋକମାନେ ପଢୁଛନ୍ତି ।

**ପାଣ୍ଡିତ୍ୟ ଆଉ ଶାସ୍ତ୍ର—ଶାସ୍ତ୍ରର ସାର ଜାଣି ନେବାକୁ ହୁଏ**

ଶ୍ରୀରାମକୃଷ୍ଣ—ବେଶୀ ଶାସ୍ତ୍ର ପଢ଼ାରେ ଅଧିକ ହାନି ହୁଏ ।

''ଶାସ୍ତ୍ରର ସାର ଜାଣି ନେବାକୁ ହୁଏ । ତାହା ପରେ ଆଉ ଗ୍ରନ୍ଥର କ'ଣ ଦରକାର ? ''ସାରଟିକକ ଜାଣି ବୁଡ଼ିବାକୁ ହୁଏ—ଈଶ୍ୱରଲାଭ ପାଇଁ ।

''ମୋର ମାଆ ଜଣାଇ ଦେଇଛନ୍ତି ବେଦାନ୍ତର ସାର—ବ୍ରହ୍ମ ସତ୍ୟ, ଜଗତ୍ ମିଥ୍ୟା । ଗୀତାର ସାର—ଦଶଥର 'ଗୀତା' କହିଲେ ଯାହା ହୁଏ, ଅର୍ଥାତ୍ 'ତ୍ୟାଗୀ' 'ତ୍ୟାଗୀ' ।''

ନବଦ୍ୱୀପ—'ତ୍ୟାଗୀ' ଠିକ୍ ହୁଏ ନାହିଁ, 'ତାଗୀ' ହୁଏ । ତାହାହେଲେ ମଧ୍ୟ ସମାନ ଅର୍ଥ । ତଗ୍ ଧାତୁରେ ଘଢ଼୍ = ତାଗ, ତା'ପରେ ଇନ୍ ପ୍ରତ୍ୟୟ—ତାଗୀ । 'ତ୍ୟାଗୀ' ଅର୍ଥ ଯାହା 'ତାଗୀ' ଅର୍ଥ ମଧ୍ୟ ତାହା ।

ଶ୍ରୀରାମକୃଷ୍ଣ—ଗୀତାର ସାର ଅର୍ଥ—ହେ ଜୀବ, ସବୁ ତ୍ୟାଗ କରି ଭଗବାନଙ୍କୁ ପାଇବା ପାଇଁ ସାଧନା କର ।

ନବଦ୍ୱୀପ—ତ୍ୟାଗ କରିବା ପାଇଁ ମନ ହେଉଛି କାହିଁ ?

ଶ୍ରୀରାମକୃଷ୍ଣ—ତୁମେମାନେ ଗୋସ୍ୱାମୀ, ତୁମମାନଙ୍କର ଦେବସେବା ଅଛି—ତୁମମାନଙ୍କର ସଂସାରତ୍ୟାଗ କଲେ ଚଳିବ ନାହିଁ । ତାହା ହେଲେ ଦିଅଁଙ୍କ ସେବା କିଏ କରିବ ? ତୁମେମାନେ ମନରେ ତ୍ୟାଗ କରିବ ।

''ସେ ଲୋକଶିକ୍ଷା ପାଇଁ ତୁମମାନଙ୍କୁ ସଂସାରରେ ରଖିଛନ୍ତି—ତୁମେ ହଜାରେ ଭାବ, ତ୍ୟାଗ କରିପାରିବ ନାହିଁ—ସେ ଏପରି ପ୍ରକୃତି ତୁମକୁ ଦେଇଛନ୍ତି ଯେ, ତୁମକୁ ସଂସାରର କାର୍ଯ୍ୟ କରିବାକୁ ହେବ ।

''ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ କହିଥିଲେ — ତୁମେ ଯୁଦ୍ଧ କରିବ ନାହିଁ ବୋଲି କଅଣ କହୁଛ ? — ତୁମେ ଇଚ୍ଛା କଲେ ମଧ୍ୟ ଯୁଦ୍ଧରୁ ନିବୃତ୍ତ ହୋଇପାରିବ ନାହିଁ ! ତୁମର ପ୍ରକୃତି ତୁମକୁ ଯୁଦ୍ଧ କରାଇବ ।

**ସମାଧିସ୍ଥ ଶ୍ରୀରାମକୃଷ୍ଣ — ଗୋସ୍ୱାମୀଙ୍କର ଯୋଗ ଓ ଭୋଗ**

''ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କ ସହିତ କଥା କହୁଛନ୍ତି'' — ଏହି କଥା କହୁ କହୁ ଠାକୁର ପୁଣି ସମାଧିସ୍ଥ ହେଉଛନ୍ତି ! ଦେଖୁ ଦେଖୁ ସମସ୍ତ ସ୍ଥିର ! — ଚକ୍ଷୁ ପଲକଶୂନ୍ୟ — ନିଃଶ୍ୱାସ ବହୁଛି କି ନ ବହୁଛି, ବୁଝାଯାଉ ନାହିଁ !

ନବଦ୍ୱୀପ ଗୋସ୍ୱାମୀ, ତାଙ୍କର ପୁତ୍ର ଓ ଭକ୍ତଗଣ ଅବାକ୍ ହୋଇ ଦେଖୁଛନ୍ତି ।

କିଞ୍ଚିତ୍ ପ୍ରକୃତିସ୍ଥ ହୋଇ ଠାକୁର ନବଦ୍ୱୀପଙ୍କୁ କହୁଛନ୍ତି —

''**ଯୋଗ, ଭୋଗ** । ତୁମେମାନେ ଗୋସ୍ୱାମୀ ବଂଶ, ତୁମମାନଙ୍କର ଦୁଇଟାଯାକ ଅଛି । ବର୍ତ୍ତମାନ କେବଳ ତାଙ୍କୁ ପ୍ରାର୍ଥନା କର, ଆନ୍ତରିକ ପ୍ରାର୍ଥନା — 'ହେ ଈଶ୍ୱର, ତୁମର ଏହି ଭୁବନମୋହିନୀ ମାୟାର ଐଶ୍ୱର୍ଯ୍ୟ ମୁଁ ଚାହେଁ ନାହିଁ — ମୁଁ ତୁମକୁ ଚାହେଁ !'

''ସେ ତ ସର୍ବଭୂତରେ ଅଛନ୍ତି — ତେବେ ଭକ୍ତ କାହାକୁ କହନ୍ତି ? ଯେ ତାଙ୍କଠାରେ ଥାଏ — ଯାହାର ମନ-ପ୍ରାଣ-ଅନ୍ତରାତ୍ମା ସବୁ ତାଙ୍କଠାରେ ଗତ ହୋଇଛି ।''

ଠାକୁର ଏଥର ସହଜାବସ୍ଥା ପ୍ରାପ୍ତ ହୋଇଛନ୍ତି । ନବଦ୍ୱୀପଙ୍କୁ କହୁଛନ୍ତି —

''ମୋର ଏହି ଯେ ଅବସ୍ଥାଟା ହୁଏ (ସମାଧି ଅବସ୍ଥା), କେହି କେହି କହନ୍ତି ରୋଗ । ମୁଁ କହେ, ଯାହାଙ୍କର ଚୈତନ୍ୟରେ ଜଗତ ଚୈତନ୍ୟମୟ ହୋଇ ରହିଛି — ତାଙ୍କୁ ଚିନ୍ତା କରି କେହି କ'ଣ ଅଚୈତନ୍ୟ ହୁଏ ?''

ଶ୍ରୀଯୁକ୍ତ ମଣି ସେନ୍ ଅଭ୍ୟାଗତ ବ୍ରାହ୍ମଣ ଓ ବୈଷ୍ଣବମାନଙ୍କୁ ବିଦାୟ ଦେଉଛନ୍ତି — କାହାକୁ ଟଙ୍କାଏ, କାହାକୁ ଦୁଇଟଙ୍କା — ଯେ ଯେପରି ବ୍ୟକ୍ତି ।

ଠାକୁରଙ୍କୁ ପାଞ୍ଚଟଙ୍କା ଦେବାକୁ ଆସିଲେ । ଶ୍ରୀରାମକୃଷ୍ଣ କହିଲେ — ''ମୋର ଟଙ୍କା ନେବାର ନୁହେଁ ।'' ମଣି ସେନ୍ ତଥାପି ଛାଡୁନାହାନ୍ତି ।

ଠାକୁର ସେତେବେଳେ କହିଲେ, ''ଯଦି ଦିଅ ତୁମକୁ ଗୁରୁଙ୍କ ରାଣ ।'' ମଣି ସେନ୍ ପୁଣି ଦେବାକୁ ଆସିଲେ । ଯେତେବେଳେ ଠାକୁର ଯେପରି ଅଧୈର୍ଯ୍ୟ ହୋଇ ମାଷ୍ଟରଙ୍କୁ କହୁଛନ୍ତି — ''କିପରି ନେବି ହେ ?'' ମାଷ୍ଟର ଘୋରତର ଆପତ୍ତି କରି କହିଲେ — ''ଆଜ୍ଞା ନା, କେବେହେଲେ ନେବେ ନାହିଁ ।

ଶ୍ରୀଯୁକ୍ତ ମଣି ସେନ୍‌ଙ୍କର ଲୋକମାନେ ସେତେବେଳେ ଆମ୍ବ, ସନ୍ଦେଶ କିଣିବା ପାଇଁ ରାଖାଲଙ୍କ ହାତରେ ଟଙ୍କା ଦେଲେ ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି) — ମୁଁ ଗୁରୁଙ୍କ ରାଣ ପକାଇଛି ! ମୁଁ ବର୍ତ୍ତମାନ ଖଲାସ । ରାଖାଲ ନେଇଛି, ଏବେ ସେ ବୁଝୁ !

ଠାକୁର ଶ୍ରୀରାମକୃଷ୍ଣ ଭକ୍ତଙ୍କ ସଙ୍ଗରେ ଗାଡ଼ିରେ ଆରୋହଣ କଲେ— ଦକ୍ଷିଣେଶ୍ୱର ମନ୍ଦିରକୁ ଫେରିଯିବେ ।

**ନିରାକାର ଧ୍ୟାନ ଓ ଠାକୁର ଶ୍ରୀରାମକୃଷ୍ଣ**

ରାସ୍ତାରେ ମତିଶୀଲଙ୍କର ଦେବ-ମନ୍ଦିର । ଠାକୁର ମାଷ୍ଟରଙ୍କୁ ଅନେକ ଦିନ ହେଲା କହୁଛନ୍ତି—ଏକ ସଙ୍ଗରେ ଆସି ଏହି ମନ୍ଦିରର ଜଳାଶୟ ଦର୍ଶନ କରିବେ— ନିରାକାର ଧ୍ୟାନ କିପରି ଆରୋପ କରିବାକୁ ହୁଏ, ତାହା ଶିଖାଇଦେବେ ।

ଠାକୁରଙ୍କର ଖୁବ୍ ସର୍ଦ୍ଦି ହୋଇଛି । ତଥାପି ଭକ୍ତଙ୍କ ସଙ୍ଗରେ ମନ୍ଦିର ଦେଖିବା ପାଇଁ ଗାଡ଼ିରୁ ଅବତରଣ କଲେ ।

ମନ୍ଦିରରେ ଶ୍ରୀଗୌରାଙ୍ଗଙ୍କର ସେବା ଅଛି । ସନ୍ଧ୍ୟା ହେବାକୁ ଏବେ ବି ଅଳ୍ପ ଡେରି ଅଛି । ଠାକୁର ଭକ୍ତଙ୍କ ସଙ୍ଗରେ ଶ୍ରୀଗୌରାଙ୍ଗବିଗ୍ରହ ସମ୍ମୁଖରେ ଭୂମିଷ୍ଠ ହୋଇ ପ୍ରଣାମ କଲେ ।

ଏଥର ମନ୍ଦିରର ପୂର୍ବାଂଶରେ ଯେଉଁ ଜଳାଶୟ ଅଛି, ତାହାର ଘାଟକୁ ଆସି ଜଳାଶୟ ଓ ମତ୍ସ୍ୟ ଦର୍ଶନ କରୁଛନ୍ତି । କେହି ମାଛଗୁଡ଼ିକୁ ହିଂସା କରନ୍ତି ନାହିଁ । ମୁଢ଼ି ଇତ୍ୟାଦି ଖାଇବା ଜିନିଷ କିଛି ଦେଲେ ବଡ଼ ବଡ଼ ମାଛ ଦଳେ ଦଳେ ସମ୍ମୁଖକୁ ଆସି ଭକ୍ଷଣ କରନ୍ତି—ତା'ପରେ ନିର୍ଭୟରେ ଆନନ୍ଦରେ ଲୀଳା କରୁ କରୁ ଜଳ ମଧ୍ୟରେ ବିଚରଣ କରନ୍ତି ।

ଠାକୁର ମାଷ୍ଟରଙ୍କୁ କହୁଛନ୍ତି, ''ଏଇ ଦେଖ, ମାଛସବୁ କିପରି ପହଁରୁଛନ୍ତି ! ଏହିପରି ଚିଦାନନ୍ଦ-ସାଗରରେ ମାଛ ପରି ଆନନ୍ଦରେ ବିଚରଣ କରିବ ।''

# ଊନତ୍ରିଂଶ ପରିଚ୍ଛେଦ

## (୧)

## ଶ୍ରୀରାମକୃଷ୍ଣ ବଳରାମଙ୍କ ମନ୍ଦିରରେ ରାଖାଲ, ମାଷ୍ଟର ପ୍ରଭୃତିଙ୍କ ସଙ୍ଗରେ

ଠାକୁର ଶ୍ରୀରାମକୃଷ୍ଣ ଆଜି କଲିକତାର ବଳରାମଙ୍କ ଘରକୁ ଶୁଭାଗମନ କରିଛନ୍ତି । ମାଷ୍ଟର ପାଖରେ ବସିଛନ୍ତି, ରାଖାଲ ମଧ୍ୟ ଅଛନ୍ତି । ଠାକୁରଙ୍କର ଭାବାବେଶ ହୋଇଛି । ଆଜି ଜ୍ୟେଷ୍ଠ କୃଷ୍ଣା ପଞ୍ଚମୀ, ସୋମବାର, ୨୫ ଜୁନ୍ ୧୮୮୩ । ସମୟ ପ୍ରାୟ ୫ଟା ।

ଶ୍ରୀରାମକୃଷ୍ଣ (ଭାବାବିଷ୍ଟ)—ଦେଖ, ଆନ୍ତରିକ ଡାକିଲେ ସ୍ୱ-ସ୍ୱରୂପକୁ ଦେଖାଯାଏ । କିନ୍ତୁ ଯେଉଁଟିକକ ବିଷୟଭୋଗର ବାସନା ଥାଏ, ସେହି ଟିକକ କମ୍ ପଡ଼ିଯାଏ ।

ମାଷ୍ଟର—ଆଜ୍ଞା, ଆପଣ ଯେପରି କହନ୍ତି, ଝାମ୍ପ ଦେବାକୁ ହୁଏ ।

ଶ୍ରୀରାମକୃଷ୍ଣ—(ଆନନ୍ଦିତ ହୋଇ)—ଇୟାଃ !

ସମସ୍ତେ ନୀରବ । ଠାକୁର ପୁଣି କଥା କହୁଛନ୍ତି ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)—ଦେଖ, ସମସ୍ତଙ୍କର **ଆତ୍ମଦର୍ଶନ** ହୋଇପାରେ ।

ମାଷ୍ଟର—ଆଜ୍ଞା, ତେବେ ଈଶ୍ୱର କର୍ତ୍ତା; ସେ ଯେଉଁ ଘରେ ଯେପରି କରାଇଛନ୍ତି । କାହାକୁ ଚୈତନ୍ୟ ଦେଉଛନ୍ତି, କାହାକୁ ଅଜ୍ଞାନ କରି ରଖିଛନ୍ତି ।

### ସ୍ୱ-ସ୍ୱରୂପଦର୍ଶନ, ଈଶ୍ୱରଦର୍ଶନ ବା ଆତ୍ମଦର୍ଶନର ଉପାୟ—ଆନ୍ତରିକ ପ୍ରାର୍ଥନା—ନିତ୍ୟଲୀଳା ଯୋଗ

ଶ୍ରୀରାମକୃଷ୍ଣ—ନା । ତାଙ୍କୁ ବ୍ୟାକୁଳ ହୋଇ ପ୍ରାର୍ଥନା କରିବାକୁ ହୁଏ । **ଆନ୍ତରିକ ହେଲେ ସେ ପ୍ରାର୍ଥନା ଶୁଣିବେ ହିଁ ଶୁଣିବେ ।**

ଜଣେ ଭକ୍ତ—ଆଜ୍ଞା ହଁ, 'ମୁଁ' ଯେ ରହିଛି, ତେଣୁ ପ୍ରାର୍ଥନା କରିବାକୁ ହେବ ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)—ଲୀଳା ଧରି ଧରି ନିତ୍ୟକୁ ଯିବାକୁ ହୁଏ, ଯେପରି ସିଡ଼ି ଧରି ଧରି ଛାତକୁ ଉଠିବା । ନିତ୍ୟଦର୍ଶନ ପରେ ନିତ୍ୟରୁ ଆସି ଲୀଳାରେ ରହିବାକୁ ହୁଏ, ଭକ୍ତି-ଭକ୍ତ ନେଇ । ଏହିଟି ପକ୍କା ମତ ।

"ତାଙ୍କର ନାନା ରୂପ, ନାନା ଲୀଳା—ଈଶ୍ୱରଲୀଳା, ଦେବଲୀଳା, ନରଲୀଳା, ଜଗତ୍‌ଲୀଳା । ସେ ମନୁଷ୍ୟ ହୋଇ, ଅବତାର ହୋଇ ଯୁଗେ ଯୁଗେ ଆସନ୍ତି, ପ୍ରେମ ଭକ୍ତି ଶିଖାଇବା ପାଇଁ । ଦେଖନା, **ଚୈତନ୍ୟଦେବ** । ଅବତାରଙ୍କ

ଭିତରେ ତାଙ୍କର ପ୍ରେମ ଭକ୍ତି ଆସ୍ୱାଦନ କରାଯାଏ । ତାଙ୍କର ଅନନ୍ତଲୀଳା — କିନ୍ତୁ ମୋର ଦରକାର ପ୍ରେମ ଭକ୍ତି । ମୋର କ୍ଷୀର ଟିକକ ଦରକାର । ଗାଭୀର ଚିର ଦେଇ କ୍ଷୀର ଆସେ । **ଅବତାର ଗାଭୀର ଚିର ।"**

ଠାକୁର କ'ଣ କହୁଛନ୍ତି ଯେ — ମୁଁ ଅବତୀର୍ଣ୍ଣ ହୋଇଛି ମୋତେ ଦର୍ଶନ କଲେ ଈଶ୍ୱରଦର୍ଶନ ହୁଏ ! ଚୈତନ୍ୟଦେବଙ୍କ କଥା କହି ଠାକୁର କଅଣ ନିଜର କଥା ଇଙ୍ଗିତ କରୁଛନ୍ତି ?

## (୨)

## ନାନାଭାବରେ ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱରରେ ଓ ଭକ୍ତମନ୍ଦିରରେ

ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱରର ଦେବାଳୟରେ, ଶିବମନ୍ଦିରର ସିଡ଼ିରେ ବସିଛନ୍ତି । ଜ୍ୟେଷ୍ଠ ମାସ, ୧୮୮୩ । ଖୁବ୍ ଗରମ ପଡ଼ିଛି । ଟିକିଏ ପରେ ସନ୍ଧ୍ୟା ହେବ । ବରଫ ଇତ୍ୟାଦି ନେଇ ମାଷ୍ଟର ଆସିଛନ୍ତି ଓ ଠାକୁରଙ୍କୁ ପ୍ରଣାମ କରି ତାଙ୍କ ପାଦତଳେ ଶିବମନ୍ଦିରର ସିଡ଼ିରେ ବସିଲେ ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)—ମଣି ମଲ୍ଲିକଙ୍କର ନାତୁଣୀଜ୍ୱାଇଁ ଆସିଥିଲା । ସେ କଅଣ ବହିରେ ପଢ଼ିଛି, ଈଶ୍ୱରଙ୍କୁ ଯେପରି ଜ୍ଞାନୀ, ସର୍ବଜ୍ଞ ବୋଲି ବୋଧ ହୁଏ ନାହିଁ । ତାହା ହେଲେ ଏତେ ଦୁଃଖ କାହିଁକି ? ଆଉ ଜୀବର ଯେ ମୃତ୍ୟୁ ହୁଏ, ଏକାବେଳକେ ମାରି ପକାଇଲେ ତ ହୁଏ, କ୍ରମେ କ୍ରମେ ଅନେକ କଷ୍ଟ ଦେଇ ମାରିବା କାହିଁକି ? ଯେ ବହି ଲେଖିଛି ସେ କୁଆଡ଼େ କହିଛି ଯେ, ମୁଁ ହେଲେ ଏହାଠାରୁ ଭଲ ସୃଷ୍ଟି କରିପାରିଥାନ୍ତି !

ମାଷ୍ଟର ହଁ କରି ଠାକୁରଙ୍କ କଥା ଶୁଣୁଛନ୍ତି ଓ ଚୁପ୍ କରି ରହିଛନ୍ତି । ଠାକୁର ପୁଣି କଥା କହୁଛନ୍ତି ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି)—ତାଙ୍କୁ କ'ଣ ବୁଝାଯାଏ ହେ ! ମୁଁ ମଧ୍ୟ କେତେବେଳେ ତାଙ୍କୁ ଭାବେ ଭଲ, କେତେବେଳେ ଭାବେ ମନ୍ଦ । ତାଙ୍କର ମହାମାୟା ଭିତରେ ଆମମାନଙ୍କୁ ରଖିଛନ୍ତି । କେତେବେଳେ ସେ ହୋସ୍‌ରେ ରଖନ୍ତି, ଆଉ କେତେବେଳେ ଅଜ୍ଞାନରେ । ଥରେ ଥରେ ଅଜ୍ଞାନଟା ଚାଲିଯାଏ, ପୁଣି ଘେରିଯାଏ । ଯେପରି ପୋଖରୀ ଦଳରେ ଲୁଚି ଯାଇଛି, ଢେଲା ମାରିଲେ କିଛିଟା ପାଣି ଦେଖାଯାଏ । କିନ୍ତୁ ଟିକିଏ ପରେ ଦଳ ନାଚି ନାଚି ଆସି ସେହି ପାଣିକୁ ଘୋଡ଼ାଇ ପକାଏ ।

"ଯେପର୍ଯ୍ୟନ୍ତ **ଦେହବୁଦ୍ଧି,** ସେପର୍ଯ୍ୟନ୍ତ ସୁଖଦୁଃଖ, ଜନ୍ମମୃତ୍ୟୁ, ରୋଗଶୋକ । ଦେହର ହିଁ ଏହିସବୁ, ଆତ୍ମାର ନୁହେଁ । ଦେହର ମୃତ୍ୟୁ ପରେ ସେ ହୁଏତ ଭଲ ଜାଗାକୁ ନେଇଯାଉଛନ୍ତି — ଯେପରି ପ୍ରସବ-ବେଦନା ପରେ ସନ୍ତାନ ଲାଭ । **ଆତ୍ମଜ୍ଞାନ ହେଲେ** ସୁଖଦୁଃଖ, ଜନ୍ମମୃତ୍ୟୁ ସ୍ୱପ୍ନବତ୍ ବୋଧ ହୁଏ ।

"ଆମେ କଅଣ ବୁଝିବା ! ସେରିକିଆ ଢାଳରେ କଅଣ ଦଶ ସେର ଦୁଧ ଧରେ ? ଲୁଣର ପିତୁଳା ସମୁଦ୍ର ମାପିବାକୁ ଯାଇ ଆଉ ଖବର ଦିଏ ନାହିଁ । ମିଳେଇ ମିଶିଯାଏ ।" **'ଛିଦ୍ୟନ୍ତେ ସର୍ବସଂଶୟାଃ ତସ୍ମିନ୍ ଦୃଷ୍ଟେ ପରାବରେ'**

ସନ୍ଧ୍ୟା ହେଲା; ମନ୍ଦିରରେ ଆଳତି ହେଉଛି । ଠାକୁର ଶ୍ରୀରାମକୃଷ୍ଣ ନିଜ ଘରେ ଛୋଟ ଖଟଟିରେ ବସି ଜଗନ୍ମାତାଙ୍କର ଚିନ୍ତା କରୁଛନ୍ତି । ରାଖାଲ, ଲାଟୁ, ରାମଲାଲ, କିଶୋରୀ ଗୁପ୍ତ ପ୍ରଭୃତି ଭକ୍ତମାନେ ଅଛନ୍ତି । ମାଷ୍ଟର ଆଜି ରାତିରେ ରହିବେ । ଘରର ଉତ୍ତରପଟ ଛୋଟ ବାରଣ୍ଡାରେ ଠାକୁର ଜଣେ ଭକ୍ତଙ୍କ ସହିତ ନିଭୃତରେ କଥା କହୁଛନ୍ତି । କହୁଛନ୍ତି, "ପ୍ରତ୍ୟୁଷରେ ଓ ଶେଷ ରାତିରେ ଧ୍ୟାନ କରିବା ଭଲ ଓ ପ୍ରତ୍ୟହ ସନ୍ଧ୍ୟା ପରେ ।" କିପରି ଧ୍ୟାନ କରିବାକୁ ହୁଏ — ସାକାର ଧ୍ୟାନ, ଅରୂପ ଧ୍ୟାନ, ସେସବୁ କହୁଛନ୍ତି ।

କିଛି ସମୟ ପରେ ଠାକୁର ପଶ୍ଚିମରେ ଗୋଲ ବାରଣ୍ଡାରେ ବସିଛନ୍ତି, ରାତି ୯ଟା ହେବ । ମାଷ୍ଟର ପାଖରେ ବସିଛନ୍ତି; ରାଖାଲ ପ୍ରଭୃତି ଥରେ ଥରେ ଘର ଭିତରକୁ ଯାତାୟାତ କରୁଛନ୍ତି ।

ଶ୍ରୀରାମକୃଷ୍ଣ (ମାଷ୍ଟରଙ୍କ ପ୍ରତି) — ଦେଖ, ଏଠାକୁ ଯେଉଁମାନେ ଆସିବେ ସମସ୍ତଙ୍କର ସଂଶୟ ଦୂର ହୋଇଯିବ, କଅଣ କହୁଛ ?

ମାଷ୍ଟର — ଆଜ୍ଞା ହଁ ।

ଏପରି ସମୟରେ ଗଙ୍ଗାବକ୍ଷରେ ଅନେକ ଦୂରରେ ନାଉରୀ ନୌକା ନେଇ ଯାଉଛି ଓ ଗୀତ ଗାଉଛି । ସେହି ଗୀତଧ୍ୱନି ମଧୁର ଅନାହତ ଧ୍ୱନିପରି ଅନନ୍ତ ଆକାଶ ଭିତର ଦେଇ ଗଙ୍ଗାର ପ୍ରଶସ୍ତ ବକ୍ଷ ଯେପରି ସ୍ପର୍ଶକରି ଠାକୁରଙ୍କର କର୍ଣ୍ଣକୁହରରେ ପ୍ରବେଶ କଲା । ଠାକୁର ସଙ୍ଗେ ସଙ୍ଗେ ଭାବାବିଷ୍ଟ ହେଲେ ! ସମସ୍ତ ଶରୀର କଣ୍ଟକିତ । ଠାକୁର ମାଷ୍ଟରଙ୍କ ହାତ ଧରି କହୁଛନ୍ତି, "ଦେଖ ଦେଖ, ମୋର ରୋମାଞ୍ଚ ହେଉଛି ! ମୋର ଦେହରେ ହାତ ଦେଇ ଦେଖ !" ସେ ସେହି ପ୍ରେମାବିଷ୍ଟ କଣ୍ଟକିତ ଦେହ ସ୍ପର୍ଶ କରି ଅବାକ୍ ହୋଇ ରହିଲେ । 'ପୁଲକପୂରିତ ଅଙ୍ଗ !' ଉପନିଷଦ୍‌ରେ ଅଛି ଯେ ସେ ବିଶ୍ୱରେ ଆକାଶରେ 'ଓତଃପ୍ରୋତ' ହୋଇ ରହିଛନ୍ତି । ସେ ହିଁ କଅଣ ଶବ୍ଦରୂପରେ ଶ୍ରୀରାମକୃଷ୍ଣଙ୍କୁ ସ୍ପର୍ଶ କରୁଛନ୍ତି ? ଏହି କ'ଣ ଶବ୍ଦବ୍ରହ୍ମ ?'[୧]

କିଛି ସମୟ ପରେ ଠାକୁର ପୁଣି କହୁଛନ୍ତି ।

ଶ୍ରୀରାମକୃଷ୍ଣ — ଯେଉଁମାନେ ସବୁ ଏଠାକୁ ଆସନ୍ତି ସେମାନଙ୍କର ସଂସ୍କାର ଅଛି; କଅଣ କହୁଛ ?

ମାଷ୍ଟର — ଆଜ୍ଞା ହଁ ।

---

୧...ଏତସ୍ମିନ୍ନୁ ଖଲୁ ଅକ୍ଷରେ ଗାର୍ଗି ଆକାଶ ଓତଶ୍ଚ ପ୍ରୋତଶ୍ଚ ।— ବୃହ. ଉପ. ୮/୧୧
...ଶବ୍ଦ ଖେ ପୌରୁଷଂ ନୃଷୁ । — ଗୀତା, ୭/୮

ଶ୍ରୀରାମକୃଷ୍ଣ—ଅଧରଙ୍କର ସଂସ୍କାର ଥିଲା ?

ମାଷ୍ଟର—ତାହା ପୁଣି କହିବାକୁ ହେବ !

ଶ୍ରୀରାମକୃଷ୍ଣ—ସରଳ ହେଲେ ଈଶ୍ୱରଙ୍କୁ ଶୀଘ୍ର ଲାଭ କରାଯାଏ । ଆଉ ଦୁଇଟା ପଥ ଅଛି—ସତ୍, ଅସତ୍ । ସତ୍ ପଥ ଦେଇ ଚାଲିଯିବାକୁ ହୁଏ ।

ମାଷ୍ଟର—ଆଜ୍ଞା ହଁ, ସୂତାରେ ଟିକିଏ ଆଁଶୁ ରହିଲେ ଛୁଞ୍ଚି ଭିତରେ ଯିବ ନାହିଁ ।

**ସର୍ବତ୍ୟାଗୀ କାହିଁକି**

ଶ୍ରୀରାମକୃଷ୍ଣ—ଖାଇବାବେଳେ ଜିଭରେ ବାଳ ଲାଗିଲେ ପାଟିରୁ ସବୁତକ ଖାଦ୍ୟ ପକାଇଦିଅନ୍ତି ।

ମାଷ୍ଟର—ତେବେ ଆପଣ ଯେପରି କହନ୍ତି—ଭଗବାନଙ୍କୁ ଯେ ଦର୍ଶନ କରିଛନ୍ତି, ଅସତ୍‌ସଙ୍ଗ ତାଙ୍କର କିଛି କରିପାରିବ ନାହିଁ । ଖୁବ୍ ଜ୍ଞାନାଗ୍ନିରେ କଦଳୀ ଗଛ ମଧ୍ୟ ଜଳିଯାଏ !

## (୩)

## ଶ୍ରୀରାମକୃଷ୍ଣ ଓ ଶ୍ରୀକବିକଙ୍କଣ—ଅଧରଙ୍କ ଘରେ ଚଣ୍ଡୀପାଠ

ଆଉଦିନେ ଠାକୁର କଲିକତାର ବେନେଟୋଲାରେ ଅଧରଙ୍କ ଘରକୁ ଆସିଛନ୍ତି । ଆଷାଢ଼, ଶୁକ୍ଳା ଦଶମୀ, ୧୪ ଜୁଲାଇ ୧୮୮୩, ଶନିବାର । ଅଧର ଠାକୁରଙ୍କୁ ରାଜନାରାୟଣଙ୍କର ଚଣ୍ଡୀପାଠ ଶୁଣାଉଛନ୍ତି । ରାଖାଲ, ମାଷ୍ଟର ପ୍ରଭୃତି ସଙ୍ଗରେ ଅଛନ୍ତି । ଦିଅଁଙ୍କ ମଣ୍ଡପରେ ପାଠ ହେଉଛି । ରାଜନାରାୟଣ ଗୀତ ଗାଇଲେ—

'ଅଭୟ ପଦେ ପ୍ରାଣ ସଁପେଛି,
ଆମି ଆର କି ଯମେର ଭୟ ରେଖେଛି !...'

ଠାକୁରେ ଟିକିଏ ଶୁଣୁ ଶୁଣୁ ଭାବାବିଷ୍ଟ, ଠିଆ ହୋଇଛନ୍ତି ଓ ସଂପ୍ରଦାୟ ସହିତ ଯୋଗଦେଇ ଗୀତ ଗାଉଛନ୍ତି ।

ଠାକୁର ଆଖର ଦେଉଛନ୍ତି, ''ଓମା, ରାଖ ମା !'' ଆଖର ଦେଉ ଦେଉ ଏକାବେଳକେ **ସମାଧିସ୍ଥ** ! ବାହ୍ୟଶୂନ୍ୟ, ନିସ୍ପନ୍ଦ । ଠିଆ ହୋଇ ରହିଛନ୍ତି ! ପୁଣି ଗାୟକ ଗାଉଛନ୍ତି —

'ରଣେ ଏସେଛେ କାର କାମିନୀ !
ସଜଲ ଜଲଦ ଜିନିୟା କାୟ ଦର୍ଶନେ ପ୍ରକାଶେ ଦାମିନୀ !...

ଠାକୁର ପୁଣି ସମାଧିସ୍ଥ !

ଗୀତ ସମାପ୍ତ ହେଲାରୁ ମଣ୍ଡପରୁ ଯାଇ ଠାକୁର ଅଧରଙ୍କ ଦ୍ୱିତଳ ବୈଠକ ଖାନାରେ ଭକ୍ତଙ୍କ ସଙ୍ଗରେ ବସିଲେ । ନାନା ଈଶ୍ୱରୀୟ ପ୍ରସଙ୍ଗ ଚାଲିଛି । କୌଣସି

କୌଣସି ଭକ୍ତ ଅନ୍ତଃସାର ଫଲ୍‌ଗୁନଦୀ, ଉପରେ ଭାବର କୌଣସି ପ୍ରକାଶ ନାହିଁ, ଏସବୁ କଥା ମଧ୍ୟ ହେଉଛି ।

## (୪)

## ଠାକୁର ଶ୍ରୀରାମକୃଷ୍ଣ କଲିକତା ରାଜପଥରେ ଭକ୍ତଙ୍କ ସଙ୍ଗରେ

ଶ୍ରୀରାମକୃଷ୍ଣ ଗାଡ଼ିରେ ଦକ୍ଷିଣେଶ୍ୱର କାଳୀମନ୍ଦିରରୁ ବାହାରି କଲିକତା ଅଭିମୁଖରେ ଆସୁଛନ୍ତି । ସଙ୍ଗରେ ରାମଲାଲ ଓ ଜଣେ ଦୁଇଜଣ ଭକ୍ତ । ଫାଟକରୁ ବାହାରି ଦେଖିଲେ ଯେ, ଚାରୋଟି ଫଜ୍‌ଲି ଆମ୍ବ ହାତରେ ଧରି ମଣି ପଦବ୍ରଜରେ ଆସୁଛନ୍ତି । ମଣିଙ୍କୁ ଦେଖି ଗାଡ଼ି ରଖିବାକୁ କହିଲେ । ମଣି ଗାଡ଼ି ଉପରେ ମୁଣ୍ଡ ରଖି ପ୍ରଣାମ କଲେ ।

ଶନିବାର, ୨୧ ଜୁଲାଇ ୧୮୮୩, ଆଷାଢ଼ କୃଷ୍ଣା ପ୍ରତିପଦା, ସମୟ ଚାରିଟା । ଠାକୁର ଅଧରଙ୍କ ଘରକୁ ଯିବେ, ତା' ପରେ ଶ୍ରୀଯୁକ୍ତ ଯଦୁ ମଲ୍ଲିକଙ୍କର ଘର ଓ ସର୍ବଶେଷରେ ଖେଲାତ୍ ଘୋଷଙ୍କ ଘରକୁ ଯିବେ ।

ଶ୍ରୀରାମକୃଷ୍ଣ (ମଣିଙ୍କ ପ୍ରତି, ସହାସ୍ୟ)—ତୁମେ ବି ଆସନା ! ଆମେ ସବୁ ଅଧରଙ୍କ ଘରକୁ ଯାଉଛୁ । ମଣି 'ଯେ ଆଜ୍ଞା' କହି ଗାଡ଼ିରେ ଉଠିଲେ ।

ମଣି ଇଂରାଜୀ ପଢ଼ିଛନ୍ତି, ତେଣୁ ସଂସ୍କାର ମାନନ୍ତି ନାହିଁ କିନ୍ତୁ କିଛିଦିନ ତଳେ ଠାକୁରଙ୍କ ନିକଟରେ ସ୍ୱୀକାର କରିଛନ୍ତି ଯେ ଅଧରଙ୍କର ସଂସ୍କାର ଥିବାରୁ ଠାକୁରଙ୍କୁ ସେ ଏତେ ଭକ୍ତି କରନ୍ତି । ଘରକୁ ଫେରି ଭାବି ଦେଖିଲେ ଯେ, ସଂସ୍କାର ସମ୍ବନ୍ଧରେ ବର୍ତ୍ତମାନ ମଧ୍ୟ ତାଙ୍କର ପୂର୍ଣ୍ଣ ବିଶ୍ୱାସ ହୋଇ ନାହିଁ । ତେଣୁ ଏକଥା କହିବା ସକାଶେ ଆଜି ଠାକୁରଙ୍କୁ ଦର୍ଶନ କରିବାକୁ ଆସିଛନ୍ତି । ଠାକୁର କଥା କହୁଛନ୍ତି ।

ଶ୍ରୀରାମକୃଷ୍ଣ—ଆଚ୍ଛା, ଅଧରଙ୍କୁ ତୁମର କିପରି ବୋଧ ହୁଏ ?

ମଣି—ଆଜ୍ଞା, ତାଙ୍କର ଖୁବ୍ ଅନୁରାଗ ।

ଶ୍ରୀରାମକୃଷ୍ଣ—ଅଧର ମଧ୍ୟ ତୁମର ଖୁବ୍ ପ୍ରଶଂସା କରେ ।

ମଣି କିଛି ସମୟ ଚୁପ୍ ରହିବା ପରେ ପୂର୍ବଜନ୍ମର ସଂସ୍କାରର କଥା ଉତ୍‌ଥାପନ କରୁଛନ୍ତି ।

**କିଛି ବୁଝାଯାଏ ନାହିଁ—ଅତି ଗୁହ୍ୟ କଥା**

ମଣି ମୋର 'ପୂର୍ବଜନ୍ମ' ଓ 'ସଂସ୍କାର' ଏସବୁଥିରେ ଯେପରି ବିଶ୍ୱାସ ନାହିଁ ଏଥିରେ କ'ଣ ମୋର ଭକ୍ତିରେ କିଛି ହାନି ହେବ ?

ଶ୍ରୀରାମକୃଷ୍ଣ—ତାଙ୍କର ସୃଷ୍ଟିରେ ସବୁ ହୋଇପାରେ—ଏହି ବିଶ୍ୱାସ ରହିଲେ ହେଲା । ମୁଁ ଯାହା ଭାବୁଛି, ତାହା ହିଁ ସତ୍ୟ, ଆଉ ସମସ୍ତଙ୍କର ମତ ମିଥ୍ୟା—ଏପରି ଭାବ ଆସିବାକୁ ଦିଅ ନାହିଁ । ତାହା ପରେ ସେ ହିଁ ବୁଝାଇଦେବେ ।

''ତାଙ୍କର କାଣ୍ଡ ମଣିଷ କଅଣ ବୁଝିବ ? ଅନନ୍ତ କାଣ୍ଡ । ତେଣୁ ମୁଁ ସେସବୁ ଆଦୌ ବୁଝିବାକୁ ଚେଷ୍ଟା କରେ ନାହିଁ । ଶୁଣିଛି, ତାଙ୍କ ସୃଷ୍ଟିରେ ସବୁ ହୋଇପାରେ । ତେଣୁ ସେସବୁ ଚିନ୍ତା ନ କରି ମୁଁ କେବଳ ତାଙ୍କରି ଚିନ୍ତା କରେ । ଜଣେ ହନୁମାନଙ୍କୁ ପଚାରିଥିଲା, 'ଆଜି କି ତିଥି ?' ହନୁମାନ କହିଥିଲେ, 'ମୁଁ ତିଥି ନକ୍ଷତ୍ର ଜାଣେ ନାହିଁ, କେବଳ ଏକ **ରାମ** ଚିନ୍ତା କରେ ।''

''ତାଙ୍କର କାଣ୍ଡ କଅଣ କିଛି ବୁଝାଯାଏ ହେ ! ସେ ଅତି ନିକଟରେ— ଅଥଚ ବୁଝିବାର ଶକ୍ତି ନାହିଁ । ବଳରାମ କୃଷ୍ଣଙ୍କୁ ଭଗବାନ ବୋଲି ଜାଣି ନ ଥିଲେ ।''

ମଣି—ଆଜ୍ଞା ହଁ ! ଆପଣ ଭୀଷ୍ମଦେବଙ୍କର କଥା ଯେପରି କହିଥିଲେ ।

ଶ୍ରୀରାମକୃଷ୍ଣ—ହଁ, ହଁ, କଅଣ କହିଥିଲି କହିଲ ଦେଖି ।

ମଣି—ଭୀଷ୍ମଦେବ ଶରଶଯ୍ୟାରେ କାନ୍ଦୁଥିଲେ । ପାଣ୍ଡବମାନେ ଶ୍ରୀକୃଷ୍ଣଙ୍କୁ କହିଲେ, 'କି ଆଶ୍ଚର୍ଯ୍ୟ ! ପିତାମହ ଏତେ ଜ୍ଞାନୀ, ଅଥଚ ମୃତ୍ୟୁ କଥା ଭାବି କାନ୍ଦୁଛନ୍ତି !' ଶ୍ରୀକୃଷ୍ଣ କହିଲେ, 'ତାଙ୍କୁ ପଚାର ନା କାହିଁକି କାନ୍ଦୁଛନ୍ତି ।' ଭୀଷ୍ମଦେବ କହିଲେ, 'ଏହା ଭାବି କାନ୍ଦୁଛି ଯେ, ଭଗବାନଙ୍କର କାର୍ଯ୍ୟ କିଛି ବୁଝିପାରିଲି ନାହିଁ ! ହେ କୃଷ୍ଣ, ତୁମେ ଏହି ପାଣ୍ଡବଙ୍କ ସଙ୍ଗେ ସଙ୍ଗେ ବୁଲୁଛ, ପଦେ ପଦେ ରକ୍ଷା କରୁଛ ତଥାପି ଏମାନଙ୍କର ବିପଦର ଶେଷ ନାହିଁ !'

ଶ୍ରୀରାମକୃଷ୍ଣ—ତାଙ୍କ ମାୟାରେ ସବୁ ଘୋଡ଼ାଇରଖିଛନ୍ତି—କିଛି ଜାଣିବାକୁ ଦିଅନ୍ତି ନାହିଁ । **କାମିନୀ-କାଞ୍ଚନ ମାୟା** । ଏହି ମାୟାକୁ ଯେ ଆଡ଼େଇ ତାଙ୍କୁ ଦର୍ଶନ କରେ, ସେ ହିଁ ତାଙ୍କୁ ଦେଖିପାରେ । ଜଣକୁ ବୁଝାଉ ବୁଝାଉ (ଈଶ୍ୱର ଗୋଟିଏ ଆଶ୍ଚର୍ଯ୍ୟ ଘଟଣା) ଦେଖାଇଲେ—ହଠାତ୍ ସମ୍ମୁଖରେ ଦେଖିଲି ଗ୍ରାମର (କାମାରପୁକୁରର) ଗୋଟିଏ ପୋଖରୀ; ଜଣେ ଲୋକ ଦଳକୁ ଆଡ଼େଇ ସେଥିରୁ ପାଣି ପିଇଲା । ସ୍ଫଟିକ ପରି । ଦେଖାଇଲେ ଯେ, ସେହି **ସଚ୍ଚିଦାନନ୍ଦ** ମାୟାରୂପ ଦଳରେ ଆବୃତ—ଯେ ଆଡ଼େଇ ପାଣି ପିଏ, ସେହି ପାଏ ।

''ଶୁଣ, ତୁମକୁ ଅତି ଗୁହ୍ୟକଥା କହୁଛି ! ଝାଉଁତଳ ଆଡ଼େ ଝାଡ଼ା ଫେରୁ ଫେରୁ ଦେଖିଲି—ଚୋର-କୋଠରୀର ଦରଜା ପରି ଗୋଟାଏ ସାମନାରେ, କୋଠରୀ ଭିତରେ କଅଣ ଅଛି ଦେଖିପାରୁ ନାହିଁ । ମୁଁ ନହୁରୁଣୀ ଦେଇ କଣା କରିବାକୁ ଲାଗିଲି, କିନ୍ତୁ ପାରିଲି ନାହିଁ । କଣା କରେ, କିନ୍ତୁ ବୁଜି ହୋଇଯାଏ ! ତା'ପରେ ଆଉ ଥରେ ଏତେ ବଡ଼ ଗର୍ତ୍ତ ହେଲା ।

ଠାକୁର ଶ୍ରୀରାମକୃଷ୍ଣ ଏହି କଥା କହି ମୌନାବଲମ୍ବନ କଲେ । ଏଥର ପୁଣି କଥା କହୁଛନ୍ତି—''ଏସବୁ ବଡ଼ ଉଚ୍ଚ କଥା !—ଏହି ଦେଖ ମୋର ପାଟି ଯେପରି କିଏ ଚାପିଧରୁଛି ।

''ଯୋନିରେ ବାସ ସ୍ୱଚକ୍ଷୁରେ ଦେଖିଲି ।—କୁକୁର-କୁକୁରୀର ମୈଥୁନ ସମୟରେ ଦେଖିଲି ।

ତାଙ୍କର ଚୈତନ୍ୟରେ ଜଗତର ଚୈତନ୍ୟ । ଥରେ ଥରେ ଦେଖେ, ଛୋଟ ଛୋଟ ମାଛ ଭିତରେ ସେହି ଚୈତନ୍ୟ କିଲ୍‌ବିଲ୍ କରୁଛନ୍ତି ।''

ଗାଡ଼ି ଶୋଭାବଜାରର ଛକ ଦରମାହାଟ ନିକଟରେ ଉପସ୍ଥିତ ହେଲା । ଠାକୁର ପୁଣି କହୁଛନ୍ତି—

''ଥରେ ଥରେ ଦେଖେ—ବର୍ଷାରେ ଯେପରି ପୃଥିବୀ ଜରି ରହିଥାଏ, ସେପରି ଏହି ଚୈତନ୍ୟରେ ଜଗତ୍ ଭରି ରହିଛି ।

''କିନ୍ତୁ ଏତେ ତ ଦେଖା ହେଉଛି, ମୋର କିନ୍ତୁ ଅଭିମାନ ହୁଏ ନାହିଁ ।''

ମଣି (ସହାସ୍ୟ)—ଆପଣଙ୍କର ପୁଣି ଅଭିମାନ !

ଶ୍ରୀରାମକୃଷ୍ଣ—ରାଣ ଅଛି, ମୋର ଯଦି ଟିକିଏ ଅଭିମାନ ହୁଏ !

ମଣି —ଗ୍ରୀସ୍ ଦେଶରେ ଜଣେ ଲୋକ ଥିଲେ, ତାଙ୍କର ନାଁ ସକ୍ରେଟିସ୍ । ଦୈବବାଣୀ ହେଲା ଯେ ସମସ୍ତ ଲୋକଙ୍କ ମଧ୍ୟରେ ସେ ଜ୍ଞାନୀ । ସେ ବ୍ୟକ୍ତି ଅବାକ୍ ହୋଇଗଲେ । ସେତେବେଳେ ନିର୍ଜ୍ଜନରେ ବହୁକ୍ଷଣ ଚିନ୍ତାକରି ବୁଝିପାରିଲେ । ସେତେବେଳେ ସେ ବନ୍ଧୁମାନଙ୍କୁ କହିଲେ, 'ମୁଁ କେବଳ ବୁଝୁଛି ଯେ ମୁଁ କିଛି ଜାଣେ ନାହିଁ ।' କିନ୍ତୁ ଅନ୍ୟାନ୍ୟ ସମସ୍ତ ଲୋକ କହନ୍ତି, 'ଆମର ବେଶ୍ ଜ୍ଞାନ ହୋଇଛି ।' କିନ୍ତୁ ବସ୍ତୁତଃ ସମସ୍ତେ ଅଜ୍ଞାନ ।

ଶ୍ରୀରାମକୃଷ୍ଣ—ମୁଁ ଥରେ ଥରେ ଭାବେ ଯେ, ମୁଁ କଅଣ ଜାଣେ ଯେ ଏତେ ଲୋକ ଆସନ୍ତି ! ବୈଷ୍ଣବଚରଣ ଖୁବ୍ ପଣ୍ଡିତ ଥିଲା । କହୁଥିଲା, 'ତୁମେ ଯେଉଁସବୁ କଥା କହ ସବୁ ଶାସ୍ତ୍ରରେ ଅଛି, ତେବେ ତୁମ ପାଖକୁ କାହିଁକି ଆସେ ଜାଣ ? ତୁମ ମୁହଁରୁ ସେହିଗୁଡ଼ିକ ଶୁଣିବାକୁ ଆସେ ।'

ମଣି—ସବୁକଥା ଶାସ୍ତ୍ର ସହିତ ମିଶିଯାଏ । ନବଦ୍ୱୀପ ଗୋସ୍ୱାମୀ ମଧ୍ୟ ସେଦିନ ପାଣିହାଟୀରେ ଏହି କଥା କହିଥିଲେ । ଆପଣ କହିଲେ ଯେ, 'ଗୀତା' 'ଗୀତା' କହୁ କହୁ 'ତ୍ୟାଗୀ ତ୍ୟାଗୀ ' ହୋଇଯାଏ । ବସ୍ତୁତଃ 'ତାଗୀ' ହୁଏ କିନ୍ତୁ ନବଦ୍ୱୀପ ଗୋସ୍ୱାମୀ କହିଲେ, 'ତାଗୀ' ମାନେ ଯାହା 'ତ୍ୟାଗୀ' ମାନେ ମଧ୍ୟ ତାହା; 'ତଗ୍' ଧାତୁ ଗୋଟିଏ ଅଛି, ସେଥିରୁ 'ତ୍ୟାଗୀ' ହୁଏ ।

ଶ୍ରୀରାମକୃଷ୍ଣ—ମୋ ସଙ୍ଗରେ କଅଣ ଆଉ କାହାର ମିଳେ ? କୌଣସି ପଣ୍ଡିତ କି ସାଧୁ ସହିତ ?

ମଣି—ଆପଣଙ୍କୁ ଈଶ୍ୱର ସ୍ୱୟଂ ହାତରେ ଗଢ଼ିଛନ୍ତି । ଅନ୍ୟ ଲୋକଙ୍କୁ କଳରେ ପକାଇ ତିଆରି କରିଛନ୍ତି—ଯେପରି ଆଇନ୍ ଅନୁସାରେ ସବୁ ସୃଷ୍ଟି ହେଉଛି ।

ଶ୍ରୀରାମକୃଷ୍ଣ (ସହାସ୍ୟ, ରାମଲାଲ ଆଡ଼କୁ) —ଆରେ, କଅଣ କହୁଛି ଶୁଣ !

ଠାକୁରଙ୍କର ହାସ୍ୟ ଆଉ ବନ୍ଦ ନ ହୁଏ ! ଅବଶେଷରେ କହୁଛନ୍ତି— ''ରାଣ ଖାଉଛି, ମୋର ଯଦି ଟିକିଏ ବି ଅଭିମାନ ହୁଏ !''

ମଣି— ବିଦ୍ୟାରେ ଗୋଟିଏ ଉପକାର ହୁଏ, ଏହି ବୋଧହୁଏ ଯେ ମୁଁ କିଛି ଜାଣେ ନାହିଁ— ଆଉ ମୁଁ କିଛି ନୁହେଁ ।

ଶ୍ରୀରାମକୃଷ୍ଣ— ଠିକ୍ ଠିକ୍ । ମୁଁ କିଛି ନୁହେଁ ! —ମୁଁ କିଛି ନୁହେଁ ! —ଆଚ୍ଛା, ତୁମର ଇଂରାଜୀ ଜ୍ୟୋତିଷରେ ବିଶ୍ୱାସ ଅଛି ?

ମଣି— ସେମାନଙ୍କର ନିୟମ ଅନୁସାରେ ନୂତନ ଆବିଷ୍କ୍ରିୟା ହୋଇପାରେ —ଇଉରାନସ୍ ଗ୍ରହର ଏପଟ ସେପଟ ଗତି ଦେଖି ଦୂରବୀକ୍ଷଣ ଯନ୍ତ୍ରରେ ସନ୍ଧାନ କରି ଦେଖିଲେ ଯେ ଆହୁରି ଗୋଟିଏ ଗ୍ରହ ରହିଛି— ନେପ୍‌ଚ୍ୟୁନ୍ । ପୁଣି ଗ୍ରହଣର ଗଣନା ହୋଇପାରେ ।

ଶ୍ରୀରାମକୃଷ୍ଣ —ତାହା ଅବଶ୍ୟ ହୋଇପାରେ ।

ଗାଡ଼ି ଚାଲୁଛି, ପ୍ରାୟ ଅଧରଙ୍କର ଘର ନିକଟକୁ ଆସିଲେ । ଠାକୁର ମଣିଙ୍କୁ କହୁଛନ୍ତି—

**''ସତ୍ୟରେ ରହିବ, ତାହାହେଲେ ଈଶ୍ୱରଲାଭ ହେବ ।''**

ମଣି— ଆଉ ଗୋଟିଏ କଥା ଆପଣ ନବଦ୍ୱୀପ ଗୋସ୍ୱାମୀଙ୍କୁ କହିଥିଲେ, 'ହେ ଈଶ୍ୱର ! ମୁଁ ତୁମକୁ ଚାହେଁ ! ଦେଖ, ଯେପରି ତୁମର ଭୁବନମୋହିନୀ ମାୟାର ଐଶ୍ୱର୍ଯ୍ୟରେ ମୁଗ୍ଧ ନ କର— ମୁଁ ତୁମକୁ ଚାହେଁ ।'

ଶ୍ରୀରାମକୃଷ୍ଣ— ହଁ, ଏହିଟି ଆନ୍ତରିକ କହିବାକୁ ହେବ ।

## (୫)

## ଶ୍ରୀଯୁକ୍ତ ଅଧର ସେନଙ୍କ ଗୃହରେ କୀର୍ତ୍ତନାନନ୍ଦ

ଠାକୁର ଶ୍ରୀରାମକୃଷ୍ଣ ଅଧରଙ୍କ ଘରକୁ ଆସିଛନ୍ତି । ରାମଲାଲ, ମାଷ୍ଟର, ଅଧର ଏବଂ ଅନ୍ୟାନ୍ୟ ଭକ୍ତଗଣ ତାଙ୍କ ପାଖରେ ଅଧରଙ୍କ ବୈଠକଖାନାରେ ବସିଛନ୍ତି । ପାହିର ଦୁଇଚାରିଜଣ ଲୋକ ଠାକୁରଙ୍କୁ ଦେଖିବାକୁ ଆସିଛନ୍ତି । ରାଖାଲଙ୍କ ପିତା କଲିକତାରେ ଅଛନ୍ତି— ରାଖାଲ ସେଠାରେ ଅଛନ୍ତି ।

ଶ୍ରୀରାମକୃଷ୍ଣ (ଅଧରଙ୍କ ପ୍ରତି)— ରାଖାଲକୁ କଅଣ ଖବର ଦେଇନ ?

ଅଧର— ଆଜ୍ଞା ହଁ, ତାଙ୍କୁ ଖବର ଦେଇଛି ।

ରାଖାଲଙ୍କ ପାଇଁ ଠାକୁରଙ୍କୁ ବ୍ୟସ୍ତ ଦେଖି ଅଧର ଦ୍ୱିରୁକ୍ତି ନ କରି ରାଖାଲଙ୍କୁ ଆଣିବା ପାଇଁ ନିଜ ଗାଡ଼ିରେ ଗୋଟିଏ ଲୋକକୁ ପଠାଇଦେଲେ ।

ଅଧର ଠାକୁରଙ୍କ ପାଖରେ ବସିଲେ । ଆଜି ଠାକୁରଙ୍କର ଦର୍ଶନ ପାଇଁ ଅଧର ବ୍ୟାକୁଳ ହୋଇଥିଲେ । ଠାକୁର ଏଠାକୁ ଆସିବା କଥା ପୂର୍ବରୁ ଠିକ୍ ହୋଇ ନ ଥିଲା । ଈଶ୍ୱରଙ୍କ ଇଚ୍ଛାରେ ସେ ହଠାତ୍ ଆସି ପହଞ୍ଚିଛନ୍ତି ।

ଅଧର — ଆପଣ ବହୁଦିନ ହେଲା ଆସି ନାହାନ୍ତି । ମୁଁ ଆଜି ଡାକୁଥିଲି — ଆଖିରୁ ଲୁହ ବୋହି ଆସିଥିଲା ।

ଶ୍ରୀରାମକୃଷ୍ଣ (ପ୍ରସନ୍ନ ହୋଇ, ସହାସ୍ୟ) — କଅଣ କହୁଛ !

ସନ୍ଧ୍ୟା ହୋଇଛି । ବୈଠକଖାନାରେ ଆଲୁଅ ଜଳା ହେଲା । ଠାକୁର ହାତଯୋଡ଼ି ଜଗନ୍ମାତାଙ୍କୁ ପ୍ରଣାମ କରି ନିଃଶବ୍ଦରେ ବୋଧହୁଏ ମୂଳମନ୍ତ୍ର ଜପ କଲେ । ତା'ପରେ ମଧୁର ସ୍ୱରରେ ନାମ କରୁଛନ୍ତି । କହୁଛନ୍ତି, **ଗୋବିନ୍ଦ, ଗୋବିନ୍ଦ, ସଚ୍ଚିଦାନନ୍ଦ, ହରିବୋଲ, ହରିବୋଲ** ! ନାମ କଲାବେଳେ ଯେପରି ମଧୁ ବର୍ଷିତ ହେଉଛି । ଭକ୍ତମାନେ ନୀରବ ସ୍ତବ୍ଧତାରେ ସେହି ନାମ-ସୁଧା ପାନ କରୁଛନ୍ତି । ଶ୍ରୀଯୁକ୍ତ ରାମଲାଲ ଗାଇଲେ —

'ଭୁବନ ଭୁଲାଇଲୁ ମା, ହରମୋହିନୀ ।
ମୂଳାଧାରେ ମହୋତ୍ପଳେ ବୀଣାବାଦ୍ୟ-ବିନୋଦିନୀ ।...'

ପୁଣି ଗାଇଲେ —

'ଭବଦାରା ଭୟହରା ନାମ ଶୁଣିଛି ତୁମର
ତେଣୁ ଦେଇଛି ଏଥର ଭାର, ତାର ତାର ନ ତାର ମା !...'

**ନିରାକାର ସଚ୍ଚିଦାନନ୍ଦ-ଦର୍ଶନ — ଷଡ଼ଚକ୍ରଭେଦ — ନାଦଭେଦ ଓ ସମାଧି**

ଶ୍ରୀଯୁକ୍ତ ରାମଲାଲ ଯେତେବେଳେ ଗାଉଛନ୍ତି —

'ତଦୂର୍ଦ୍ଧ୍ୱେ ରହିଛି ମାଗୋ ନାମ କଣ୍ଠସ୍ଥଳ,
ଧୂମ୍ରବର୍ଣ୍ଣର ପଦ୍ମ ତାହାର ଷୋଡ଼ଶଦଳ ।
ସେହି ପଦ୍ମ ମଧ୍ୟେ ଅଛି ଅମ୍ବୁଜେ ଆକାଶ,
ସେ ଆକାଶ ରୁଦ୍ଧ ହେଲେ ସମସ୍ତ ଆକାଶ ।'

ସେତେବେଳେ ଠାକୁର ଶ୍ରୀରାମକୃଷ୍ଣ ମାଷ୍ଟରଙ୍କୁ କହୁଛନ୍ତି —

''ଏଇ ଶୁଣ, ଏହାର ନାମ ନିରାକାର **ସଚ୍ଚିଦାନନ୍ଦ-ଦର୍ଶନ** । ବିଶୁଦ୍ଧଚକ୍ର ଭେଦ ହେଲେ **ସବୁକିଛି ଆକାଶ** ।

ମାଷ୍ଟର — ଆଜ୍ଞା ହଁ ।

ଶ୍ରୀରାମକୃଷ୍ଣ — ଏହି ମାୟା-ଜୀବ-ଜଗତ୍ ଅତିକ୍ରମ କଲେ ଯାଇ ନିତ୍ୟରେ ପହଞ୍ଚିବ । ନାଦଭେଦ ହେଲେ **ସମାଧି** ହୁଏ । ଓଁକାର ସାଧନ କରୁ କରୁ ନାଦଭେଦ ହୁଏ ଏବଂ ସମାଧି ହୁଏ ।

## (୬)

## ଯଦୁ ମଲ୍ଲିକଙ୍କର ଘର—ସିଂହବାହିନୀ ସମ୍ମୁଖରେ—ସମାଧିମନ୍ଦିରରେ

ଅଧର ତାଙ୍କ ଘରେ ଠାକୁରଙ୍କୁ ଫଳମୂଳ ମିଷ୍ଟାନ୍ନାଦି ଦେଇ ସେବା କଲେ । ଠାକୁର କହିଲେ, ''ଆଜି ଯଦୁ ମଲ୍ଲିକର ଘରକୁ ଯିବାକୁ ହେବ ।''

ଠାକୁର ଯଦୁ ମଲ୍ଲିକଙ୍କ ଘରକୁ ଆସିଛନ୍ତି । ଆଷାଢ଼ କୃଷ୍ଣ ପ୍ରତିପଦ, ରାତ୍ରି ଜ୍ୟୋସ୍ନାମୟୀ । ଯେଉଁ ଘରେ ସିଂହବାହିନୀଙ୍କର ନିତ୍ୟ ସେବା ହେଉଛି ଠାକୁର ସେହି ଘରେ ଭକ୍ତଙ୍କ ଗହଣରେ ପହଞ୍ଚିଲେ । ମା ସଚନ୍ଦନ ପୁଷ୍ପ ଓ ଫୁଲମାଳରେ ଅର୍ଚ୍ଚିତ ହୋଇ ଅପୂର୍ବ ଶୋଭା ଧାରଣ କରିଛନ୍ତି । ସମ୍ମୁଖରେ ପୁରୋହିତ ଉପବିଷ୍ଟ । ପ୍ରତିମା ସମ୍ମୁଖରେ ଆଲୁଅ ଜଳୁଛି । ସାଙ୍ଗୋପାଙ୍ଗୋଙ୍କ ମଧ୍ୟରୁ ଜଣକୁ ପ୍ରଣାମୀ ଦେଇ ମୁଣ୍ଡିଆ ମାରିବାକୁ ଠାକୁର କହିଲେ । କାରଣ ଦିଅଁଙ୍କ ପାଖକୁ ଆସିଲେ କିଛି ପ୍ରଣାମୀ ଦେବାକୁ ହୁଏ ।

ଠାକୁର ସିଂହବାହିନୀ ଆଗରେ ହାତ ଯୋଡ଼ି ଠିଆ ହୋଇଛନ୍ତି । ପଛରେ ଭକ୍ତଗଣ ହାତ ଯୋଡ଼ି ଠିଆ ହୋଇଛନ୍ତି ।

ଠାକୁର ବହୁ ସମୟ ଧରି ଦର୍ଶନ କରୁଛନ୍ତି ।

ଭକ୍ତମାନେ ଆଶ୍ଚର୍ଯ୍ୟ ହୋଇ ଦେଖୁଛନ୍ତି—ଦର୍ଶନ କରୁ କରୁ ଠାକୁରେ ସମ୍ପୂର୍ଣ୍ଣ ସମାଧିସ୍ଥ । ପ୍ରସ୍ତର ମୂର୍ତ୍ତି ଭଳି ନିସ୍ତବ୍‌ଧ ଭାବରେ ଦଣ୍ଡାୟମାନ ! ଚକ୍ଷୁ ପଲକଶୂନ୍ୟ ।

ବହୁ ସମୟ ପରେ ଦୀର୍ଘ ନିଃଶ୍ୱାସ ଛାଡ଼ିଲେ । ସମାଧି ଭଙ୍ଗ ହେଲା । ଯେପରି ନିଶାରେ ମାତାଲ ହୋଇ କହୁଛନ୍ତି, **'ମା ଆସୁଛି ଗୋ !'**

କିନ୍ତୁ ଚାଲିପାରୁ ନାହାନ୍ତି—ସେହି ଗୋଟିଏ ଭାବରେ ଠିଆ ହୋଇଛନ୍ତି ।

ସେତେବେଳେ ରାମଲାଲକୁ କହୁଛନ୍ତି, ''ତୁମେ ଏଇଟା ଗାଅ—ତେବେ ମୁଁ ଭଲ ହେବି ।'' ରାମଲାଲ ଗାଉଛନ୍ତି, 'ଭୁବନ ଭୁଲାଇଲୁ ମା ହରମୋହିନୀ ।'

ଗୀତ ସରିଲା ।

ଠାକୁର ବୈଠକଖାନା ଆଡ଼କୁ ଆସୁଛନ୍ତି—ଭକ୍ତଙ୍କ ଗହଣରେ । ଆସିବା ବେଳେ ମଝିରେ ମଝିରେ ଥରେ କହୁଛନ୍ତି, ''ମା, ମୋର ହୃଦୟରେ ରହ ମା !''

ଶ୍ରୀଯୁକ୍ତ ଯଦୁମଲ୍ଲିକ ସ୍ୱଜନଙ୍କ ସହ ବୈଠକଖାନାରେ ବସିଛନ୍ତି । ଠାକୁର ଭାବରେ ହିଁ ରହିଛନ୍ତି, ସେଠାରେ ପହଞ୍ଚି ଗାଉଛନ୍ତି ।

''ଗୋ ଆନନ୍ଦମୟୀ ହୋଇ ମୋତେ ନିରାନନ୍ଦ କରନା ।...''

ଗୀତଟି ଗାଇସାରି ଭାବୋନ୍ମତ ହୋଇ ଯଦୁଙ୍କୁ କହୁଛନ୍ତି, ''କଅଣ ବାବୁ, କଅଣ ଗାଇବି ? 'ମା ଆମି କି ଆଟାଶେ ଛେଲେ' — ଏ ଗୀତଟି ଗାଇବି କି ?'' ଏହା କହି ଠାକୁର ଗାଉଛନ୍ତି ।

''ମା ଆମି କି ଆଟାଶେ ଛେଲେ
ଆମି ଭୟ କରିନେ ଚୋଖ ରାଙ୍ଗାଲେ ।।...
ଆମି କ୍ଷାନ୍ତ ହବ ଯଖନ ଆମାୟ ଶାନ୍ତ କରେ ଲବେ କୋଲେ ।''

ଭାବ ଉପଶମ ହେବାପରେ କହୁଛନ୍ତି, ''ମୁଁ ମାର ପ୍ରସାଦ ଖାଇବି ।''

ସିଂହବାହିନୀଙ୍କ ପ୍ରସାଦ ଆଣି ଠାକୁରଙ୍କୁ ଦିଆଗଲା ।

ଶ୍ରୀଯୁକ୍ତ ଯଦୁ ମଲ୍ଲିକ ବସିଛନ୍ତି । ପାଖରେ ଚଉକି ଉପର କେତେଜଣ ବନ୍ଧୁବାନ୍ଧବ ବସିଛନ୍ତି ସେମାନଙ୍କ ମଧ୍ୟରେ କେତେଜଣ ତୋଷାମଦକାରୀ ଅଛନ୍ତି ।

ଯଦୁ ମଲ୍ଲିକଙ୍କ ଆଡ଼କୁ ଠାକୁର ଚଉକିରେ ବସିଛନ୍ତି ଓ ହସି ହସି କଥା କହୁଛନ୍ତି । ଠାକୁରଙ୍କ ସଙ୍ଗୀ ଭକ୍ତ କେହି କେହି ପାଖ ଘରେ ମାଷ୍ଟର ଓ ଜଣେ ଦୁଇଜଣ ଭକ୍ତ ଠାକୁରଙ୍କ ପାଖରେ ବସିଛନ୍ତି ।

ଶ୍ରୀରାମକୃଷ୍ଣ (ସହାସ୍ୟ) — ଆଚ୍ଛା ତୁମେ ଭାଣ୍ଡ (ବିଦୂଷକ) କାହିଁକି ରଖିଛ ?

ଯଦୁ (ସହାସ୍ୟ) — ଭାଣ୍ଡ ହେଲେ ବୋଲି କଅଣ ତୁମେ ଉଦ୍ଧାର କରିବ ନାହିଁ ?

ଶ୍ରୀରାମକୃଷ୍ଣ (ସହାସ୍ୟ) — ଗଙ୍ଗା ମଦର କୂଅକୁ ପାରେ ନାହିଁ ।

**ସତ୍ୟକଥା ଓ ଶ୍ରୀରାମକୃଷ୍ଣ — 'ପୁରୁଷର ଜବାବ ଏକ'**

ଯଦୁ ଠାକୁରଙ୍କ ନିକଟରେ ଅଙ୍ଗୀକାର କରିଥିଲେ ଯେ ଘରେ 'ଚଣ୍ଡୀଙ୍କର ସଙ୍ଗୀତ' ଅନୁଷ୍ଠାନ କରିବେ । ବହୁଦିନ ବିତିଗଲାଣି, ମାତ୍ର ତାହା ହୋଇ ନାହିଁ ।

ଶ୍ରୀରାମକୃଷ୍ଣ — କାହିଁ ହେ, ତୁମର ଚଣ୍ଡୀ-ସଙ୍ଗୀତ ?

ଯଦୁ — ବିଭିନ୍ନ କାମରେ ଅଟକି ଯାଇଛି ।

ଶ୍ରୀରାମକୃଷ୍ଣ — ଇଏ କଅଣ ! ପୁରୁଷର ଏକ ଜବାବ ।

''ମରଦ୍ କି ବାତ୍, ହାତୀ କି ଦାନ୍ତ — ପୁରୁଷର ଜବାବ୍ ଜବାବ୍ — କଅଣ କହୁଛ ?''

ଯଦୁ (ସହାସ୍ୟ) — ଠିକ୍ କଥା ।

ଶ୍ରୀରାମକୃଷ୍ଣ — ତୁମେ ହିସାବୀ ଲୋକ । ବହୁ ପ୍ରକାର ହିସାବ କରି କାମ କର — ବ୍ରାହ୍ମଣର ଗେଡ଼ୀ ଗାଈ, ଖାଇବ କମ୍, ନାଦିବ ବେଶୀ, ହୁଡ୍ ହୁଡ୍ କରି ଦୁଧ ଦେବ । (ସମସ୍ତଙ୍କର ହାସ୍ୟ)

ଠାକୁର ଟିକିଏ ପରେ ପୁଣି ଯଦୁଙ୍କୁ କହୁଛନ୍ତି, "ବୁଝିଛି, ତୁମେ ରାମଜୀବନପୁରର ଶୀଲବାବୁଙ୍କ ପରି—ଅଧେ ଗରମ, ଅଧେ ଥଣ୍ଡା । ତୁମର ଈଶ୍ୱରଙ୍କଠାରେ ମନ ଅଛି, ପୁଣି ସଂସାରରେ ବି ମନ ଅଛି ।

ଠାକୁର ଜଣେ ଦୁଇଜଣ ଭକ୍ତଙ୍କ ସହିତ ଯଦୁଙ୍କ ଘରେ କ୍ଷୀର ପ୍ରସାଦ, ଫଳମୂଳ ଓ ମିଠା ଖାଇଲେ । ଏଥରକ ଖେଲାତ୍ ଘୋଷଙ୍କ ଘରକୁ ଯିବେ ।

(୭)

## ଖେଲାତ୍ ଘୋଷଙ୍କ ଗୃହକୁ ଶୁଭାଗମନ—ବୈଷ୍ଣବଙ୍କୁ ଶିକ୍ଷା

ଠାକୁର ଶ୍ରୀରାମକୃଷ୍ଣ ଖେଲାତ୍ ଘୋଷଙ୍କ ଘରକୁ ପ୍ରବେଶ କରୁଛନ୍ତି । ରାତି ୧୦ଟା ହେବ । ଘର ଓ ଘରର ବିରାଟ ଅଗଣା ଜହ୍ନ-ଆଲୁଅରେ ଆଲୋକିତ । ଘରେ ପ୍ରବେଶ କରୁ କରୁ ଠାକୁର ଭାବାବିଷ୍ଟ ହୋଇଛନ୍ତି । ସାଙ୍ଗରେ ରାମଲାଲ, ମାଷ୍ଟର ଏବଂ ଜଣେ ଦୁଇଜଣ ଭକ୍ତ । ବୈଠକଖାନାଟି ବେଶ୍ ବଡ଼ । ଦୁଇମହଲାକୁ ଉଠି ବାରଣ୍ଡାରେ ବହୁତ ବାଟ ଦକ୍ଷିଣକୁ ଯାଇ, ତା' ପରେ ପୂର୍ବଦିଗ ଓ ପରେ ଉତ୍ତରକୁ ବହୁତ ବାଟ ଗଲେ ଅନ୍ତଃପୁର ପଡ଼ିବ ।

ସେହିବାଟେ ଆସିଲା ବେଳେ ମନେହେଲା ଯେପରି ଘରେ କେହି ନାହାନ୍ତି, କେବଳ କେତେଗୁଡ଼ିଏ ବଡ଼ ବଡ଼ ଘର ଓ ଆଗରେ ଲମ୍ବା ବାରଣ୍ଡା ।

ଉତ୍ତର-ପୂର୍ବର ଗୋଟିଏ ଘରେ ଠାକୁରଙ୍କୁ ବସାହେଲା, ଏବେ ମଧ୍ୟ ଭାବସ୍ଥ । ଘରର ଯେଉଁ ଭକ୍ତ ଜଣକ ତାଙ୍କୁ ଡାକି ଆଣିଛନ୍ତି, ସେ ଆସି ଅଭ୍ୟର୍ଥନା କଲେ । ସେ ବୈଷ୍ଣବ, ଦେହରେ ତିଳକାଦିର ଛାପ ଓ ହାତରେ ହରିନାମର ଝୁଲି । ଭକ୍ତ ଜଣକ ବୟସ୍କ । ସେ ଖେଲାତ୍ ଘୋଷଙ୍କ ସମ୍ପୁର୍ଦ୍ଦି । ସେ ଦକ୍ଷିଣେଶ୍ୱରକୁ ଯାଇ ଠାକୁରଙ୍କୁ ମଝିରେ ମଝିରେ ଦର୍ଶନ କରୁଥିଲେ । କିନ୍ତୁ କେହି କେହି ବୈଷ୍ଣବ ଅତି ସଂକୀର୍ଣ୍ଣ । ସେମାନେ ଶାକ୍ତ ବା ଜ୍ଞାନୀମାନଙ୍କୁ ଖୁବ୍ ନିନ୍ଦା କରିଥାଆନ୍ତି । ଠାକୁର ଏବେ କଥା କହୁଛନ୍ତି ।

### ଠାକୁରଙ୍କର ସର୍ବଧର୍ମ-ସମନ୍ୱୟ—ପ୍ରେମର ଧର୍ମ

ଶ୍ରୀରାମକୃଷ୍ଣ (ବୈଷ୍ଣବ ଭକ୍ତ ଓ ଅନ୍ୟ ଭକ୍ତମାନଙ୍କୁ)—ମୋର ଧର୍ମ ଠିକ୍, ଆଉ ଅନ୍ୟମାନଙ୍କର ଭୁଲ—ଏ ମତ ଭଲ ନୁହେଁ । ଜଣେ ମାତ୍ର ଈଶ୍ୱର, ଦୁଇ ନାହିଁ । ତାଙ୍କୁ ଭିନ୍ନ ଭିନ୍ନ ନାମରେ ଭିନ୍ନ ଭିନ୍ନ ଲୋକମାନେ ଡାକନ୍ତି । କିଏ କହେ ଗଡ୍, କେହି କହେ ଆଲ୍ଲା, କେହି କହେ କୃଷ୍ଣ, କେହି କହେ ଶିବ, କେହି କହେ ବ୍ରହ୍ମ । ଯେପରି ପୋଖରୀରେ ପାଣି ରହିଛି—ଗୋଟିଏ ଘାଟରେ ଲୋକମାନେ କହୁଛନ୍ତି ଜଳ, ଆଉ ଗୋଟିଏ ଘାଟରେ କହୁଛନ୍ତି ଓ୍ୱାଟର୍, ଆଉ ଗୋଟିଏ ଘାଟରେ କହୁଛନ୍ତି ପାନି । କିନ୍ତୁ ବସ୍ତୁ ଗୋଟିଏ । ମତ—ପଥ । ଗୋଟିଏ ଗୋଟିଏ

ଧର୍ମର ମତ, ଗୋଟିଏ ଗୋଟିଏ ପଥ — ଈଶ୍ୱରଙ୍କ ଆଡ଼କୁ ନେଇଯାଏ । ଯେପରି ନଦୀ ନାନା ଦିଗରୁ ଆସି ସାଗରସଙ୍ଗମରେ ମିଳିତ ହୁଅନ୍ତି ।

ବେଦ-ପୁରାଣ-ତନ୍ତ୍ରର ପ୍ରତିପାଦ୍ୟ ଏକମାତ୍ର ସଚ୍ଚିଦାନନ୍ଦ । ବେଦରେ ସଚ୍ଚିଦାନନ୍ଦ (ବ୍ରହ୍ମ) । ପୁରାଣରେ ମଧ୍ୟ ସଚ୍ଚିଦାନନ୍ଦ (କୃଷ୍ଣ, ରାମ ପ୍ରଭୃତି) । ତନ୍ତ୍ରରେ ମଧ୍ୟ ସଚ୍ଚିଦାନନ୍ଦ (ଶିବ) । ସଚ୍ଚିଦାନନ୍ଦ ବ୍ରହ୍ମ, ସଚ୍ଚିଦାନନ୍ଦ କୃଷ୍ଣ, ସଚ୍ଚିଦାନନ୍ଦ ଶିବ ।''

ସମସ୍ତେ ନୀରବରେ ବସିଛନ୍ତି ।

ବୈଷ୍ଣବଭକ୍ତ — ଆଜ୍ଞା, ଈଶ୍ୱରଙ୍କୁ କାହିଁକି ଭାବିବୁ ?

**ବୈଷ୍ଣବଙ୍କୁ ଶିକ୍ଷା — କିଏ ଜୀବନ୍ମୁକ୍ତ ? କିଏ ଉତ୍ତମ ଭକ୍ତ ?**
**ଈଶ୍ୱରଦର୍ଶନର ଲକ୍ଷଣ**

ଶ୍ରୀରାମକୃଷ୍ଣ — ଏପରି ବୋଧ ଥିଲେ ତ ଜୀବନ୍ମୁକ୍ତ । କିନ୍ତୁ ସମସ୍ତଙ୍କର ତ ଏପରି ବୋଧ ନାହିଁ । କେବଳ ମୁହଁରେ କହନ୍ତି । ଭଗବାନ ଅଛନ୍ତି, ତାଙ୍କର ଇଚ୍ଛାରେ ଏ ସମସ୍ତ ହେଉଛି, ବିଷୟୀ ଲୋକମାନେ ଏହା ଶୁଣନ୍ତି — କିନ୍ତୁ ବିଶ୍ୱାସ କରନ୍ତି ନାହିଁ ।

''**ବିଷୟୀର ଈଶ୍ୱର କିପରି ଜାଣ ?** ଖୁଡ଼ୀ — ଜେଠେଇଙ୍କର କଜିଆ ଶୁଣି ପିଲାମାନେ ଯେପରି କଳି କରୁ କରୁ କହନ୍ତି, ମୋର ଈଶ୍ୱର ଅଛନ୍ତି ।

''**ସମସ୍ତେ କଅଣ ତାଙ୍କୁ ଧରି ପାରନ୍ତି ?** ସେ ଭଲ ଲୋକ କରିଛନ୍ତି, ମନ୍ଦ ଲୋକ କରିଛନ୍ତି, ଭକ୍ତ କରିଛନ୍ତି, ଅଭକ୍ତ କରିଛନ୍ତି — ବିଶ୍ୱାସୀ କରିଛନ୍ତି, ଅବିଶ୍ୱାସୀ କରିଛନ୍ତି । ତାଙ୍କର ଲୀଳାରେ ସବୁ ବିଚିତ୍ର, ତାଙ୍କର ଶକ୍ତି କେଉଁଠାରେ ବେଶୀ ପ୍ରକାଶିତ, କେଉଁଠାରେ କମ୍ ପ୍ରକାଶିତ । ସୂର୍ଯ୍ୟାଲୋକ ମାଟି ଅପେକ୍ଷା ପାଣିରେ ବେଶୀ ପ୍ରକାଶିତ, ପୁଣି ପାଣି ଅପେକ୍ଷା ଦର୍ପଣରେ ବେଶୀ ପ୍ରକାଶ ।

''ପୁଣି ଭକ୍ତମାନଙ୍କ ମଧ୍ୟରେ ଥାକ ଥାକ ଅଛି, ଉତ୍ତମ ଭକ୍ତ, ମଧ୍ୟମ ଭକ୍ତ । ଗୀତାରେ ଏସବୁ ଅଛି ।''

ବୈଷ୍ଣବଭକ୍ତ — ଆଜ୍ଞା ହଁ ।

ଶ୍ରୀରାମକୃଷ୍ଣ — ଅଧମ ଭକ୍ତ କହେ, ଈଶ୍ୱର ଅଛନ୍ତି — ସେହି ଆକାଶ ଭିତରେ ବହୁତ ଦୂରରେ । ମଧ୍ୟମ ଭକ୍ତ କହେ, ଈଶ୍ୱର ସର୍ବଭୂତରେ ଚୈତନ୍ୟ ରୂପରେ — ପ୍ରାଣରୂପରେ ରହିଛନ୍ତି । ଉତ୍ତମ ଭକ୍ତ କହେ, ଈଶ୍ୱର ନିଜେ ସବୁ ହୋଇଛନ୍ତି, ଯାହା କିଛି ଦେଖୁଛ ଈଶ୍ୱରଙ୍କର ଗୋଟିଏ ଗୋଟିଏ ରୂପ । ସେ ହିଁ ମାୟା, ଜୀବ, ଜଗତ୍ ସବୁ ହୋଇଛନ୍ତି — ତାଙ୍କ ଛଡ଼ା ଆଉ କିଛି ନାହିଁ ।

ବୈଷ୍ଣବଭକ୍ତ — ଏପରି ଅବସ୍ଥା କଅଣ କାହାର ହୁଏ ?

ଶ୍ରୀରାମକୃଷ୍ଣ — ତାଙ୍କୁ ଦର୍ଶନ ନ କଲେ ଏପରି ଅବସ୍ଥା ହୁଏ ନାହିଁ, କିନ୍ତୁ ଦର୍ଶନ କରିଛି କି ନାହିଁ ତାହାର ଲକ୍ଷଣ ଅଛି । ସେ କେତେବେଳେ ଉନ୍ମାଦବତ୍ —

ହସେ କାନ୍ଦେ ନାଚେ ଗାଏ । କେତେବେଳେ ବା ବାଳକବତ୍—ପାଞ୍ଚ ବର୍ଷର ବାଳକର ଅବସ୍ଥା ! ସରଳ ଉଦାର, ଅହଂକାର ନାହିଁ, କୌଣସି ଜିନିଷରେ ଆସକ୍ତି ନାହିଁ, କୌଣସି ଗୁଣର ବଶ ନୁହେଁ, ସଦା ଆନନ୍ଦମୟ । କେତେବେଳେ ପିଶାଚବତ୍—ଶୁଚି-ଅଶୁଚି ଭେଦବୁଦ୍ଧି ନ ଥାଏ, ଆଚାର-ଅନାଚାର ସମାନ ହୋଇଯାଏ । କେତେବେଳେ ବା ଜଡ଼ବତ୍, କଅଣ ଯେପରି ଦେଖୁଛି ! ତେଣୁ କୌଣସି କର୍ମ କରିପାରେ ନାହିଁ—କୌଣସି ଚେଷ୍ଟା କରିପାରେ ନାହିଁ ।

ଠାକୁର ଶ୍ରୀରାମକୃଷ୍ଣ କଅଣ ନିଜର ଅବସ୍ଥା ସମସ୍ତ ଇଙ୍ଗିତ କରୁଛନ୍ତି ।

ଶ୍ରୀରାମକୃଷ୍ଣ (ବୈଷ୍ଣବଭକ୍ତଙ୍କୁ)—'ତୁମେ ଏବଂ ତୁମର'—ଏହା ହିଁ ଜ୍ଞାନ । 'ମୁଁ ଏବଂ ମୋର'—ଏହା ଅଜ୍ଞାନ ।

''ହେ ଈଶ୍ୱର ! ତୁମେ କର୍ତ୍ତା, ମୁଁ ଅକର୍ତ୍ତା—ଏହା ହିଁ ଜ୍ଞାନ । ହେ ଈଶ୍ୱର ! ଏ ସମସ୍ତ ତୁମର—ଦେହ, ମନ, ଗୃହ, ପରିବାର, ଜୀବ, ଜଗତ—ଏସବୁ ତୁମର, ମୋର କିଛି ନୁହେଁ—ଏହାର ନାମ ଜ୍ଞାନ ।

''ଯେ ଅଜ୍ଞାନ—ସେ କହେ, ଈଶ୍ୱର 'ସେଠାରେ ସେଠାରେ'—ବହୁ ଦୂରରେ । ଯେ ଜ୍ଞାନୀ, ସେ ଜାଣେ ଈଶ୍ୱର 'ଏଠାରେ ଏଠାରେ' —ଅତି ନିକଟରେ, ହୃଦୟ ମଧ୍ୟରେ ଅନ୍ତର୍ଯ୍ୟାମୀ ରୂପରେ, ପୁଣି ନିଜେ ଗୋଟିଏ ଗୋଟିଏ ରୂପ ଧରି ରହିଛନ୍ତି ।''

# ତ୍ରିଂଶ ପରିଚ୍ଛେଦ

## (୧)

## (ଦକ୍ଷିଣେଶ୍ୱର କାଳୀମନ୍ଦିରରେ ଭକ୍ତମାନଙ୍କ ସହିତ ବ୍ରହ୍ମତତ୍ତ୍ୱ ଓ ଆଦ୍ୟାଶକ୍ତି ବିଷୟରେ କଥୋପକଥନ — ବିଦ୍ୟାସାଗର ଓ କେଶବ ସେନ୍‌ଙ୍କ କଥା)

### ଜ୍ଞାନଯୋଗ ଓ ନିର୍ବାଣମତ

ଆଷାଢ଼ କୃଷ୍ଣା ତୃତୀୟା ତିଥି, ୨୨ ଜୁଲାଇ ୧୮୮୩ । ଆଜି ରବିବାର । ଭକ୍ତମାନେ ଶ୍ରୀଶ୍ରୀପରମହଂସଦେବଙ୍କୁ ଦର୍ଶନ କରିବାକୁ ଆସିଛନ୍ତି । ଅନ୍ୟ ବାରମାନଙ୍କରେ ସେମାନେ ପ୍ରାୟ ଆସିପାରନ୍ତି ନାହିଁ । ରବିବାର ଦିନ ସେମାନେ ଅବସର ପାଆନ୍ତି । ଅଧର, ରାଖାଲ, ମାଷ୍ଟର କଲିକତାରୁ ଖଣ୍ଡେ ଗାଡ଼ିରେ ଆସି ଦିନ ଗୋଟାଏ ଦୁଇଟାବେଳେ କାଳୀମନ୍ଦିରରେ ପହଞ୍ଚିଲେ । ଠାକୁର ଶ୍ରୀରାମକୃଷ୍ଣ ଆହାରାନ୍ତେ ଟିକିଏ ବିଶ୍ରାମ କରୁଛନ୍ତି । ଘରେ ମଣି ମଲ୍ଲିକାଦି ଓ ଆଉ କେତେଜଣ ଭକ୍ତ ବସିଛନ୍ତି ।

ରାସମଣିଙ୍କ ପ୍ରତିଷ୍ଠିତ କାଳୀମନ୍ଦିରର ବୃହତ୍ ପ୍ରାଙ୍ଗଣର ପୂର୍ବାଂଶରେ ଶ୍ରୀଶ୍ରୀରାଧାକାନ୍ତଙ୍କର ମନ୍ଦିର ଓ ଶ୍ରୀଶ୍ରୀଭବତାରିଣୀଙ୍କର ମନ୍ଦିର । ପଶ୍ଚିମାଂଶରେ ଦ୍ୱାଦଶ ଶିବମନ୍ଦିର । ଧାଡ଼ି ଧାଡ଼ି ଶିବମନ୍ଦିରମାନଙ୍କର ଠିକ୍ ଉତ୍ତରରେ ଶ୍ରୀଶ୍ରୀପରମହଂସଦେବଙ୍କର ଘର । ଘରର ପଶ୍ଚିମରେ ଅର୍ଦ୍ଧ ମଣ୍ଡଳାକାର ବାରଣ୍ଡା । ସେଠାରେ ସେ ଠିଆ ହୋଇ ପଶ୍ଚିମାଭିମୁଖ ହୋଇ ଗଙ୍ଗା ଦର୍ଶନ କରନ୍ତି । ଗଙ୍ଗାର ବନ୍ଧ ଓ ବାରଣ୍ଡା ମଧ୍ୟବର୍ତ୍ତୀ ସ୍ଥାନରେ ମନ୍ଦିରର ପୁଷ୍ପୋଦ୍ୟାନ । ଏହି ପୁଷ୍ପୋଦ୍ୟାନ ବହୁଦୂରବ୍ୟାପୀ, ଦକ୍ଷିଣକୁ ଉଦ୍ୟାନର ସୀମା ପର୍ଯ୍ୟନ୍ତ । ଉତ୍ତରରେ ପଞ୍ଚବଟୀ ପର୍ଯ୍ୟନ୍ତ — ଯେଉଁଠାରେ ଠାକୁର ଶ୍ରୀରାମକୃଷ୍ଣ ତପସ୍ୟା କରିଥିଲେ ଓ ପୂର୍ବରେ ଉଦ୍ୟାନରେ ଦୁଇଟି ପ୍ରବେଶଦ୍ୱାର ପର୍ଯ୍ୟନ୍ତ । ପରମହଂସଦେବଙ୍କର ଘର ନିକଟରେ ଗୋଟିଏ ଦୁଇଟି କୃଷ୍ଣଚୂଡ଼ାର ଗଛ । ନିକଟରେ ଗନ୍ଧରାଜ, କୋକିଳାକ୍ଷ, ଶ୍ୱେତ ଓ ରକ୍ତ କରବୀ । ଘରର କାନ୍ଥରେ ଦେବଦେବୀଙ୍କର ଛବି । ତନ୍ମଧ୍ୟରେ ପିଟର୍ ଜଳରେ ବୁଡ଼ୁଛନ୍ତି ଓ ଯୀଶୁ ତାଙ୍କର ହାତ ଧରି ଉଠାଉଛନ୍ତି — ଏ ଛବି ମଧ୍ୟ ଅଛି । ଆଉ ଗୋଟିଏ ବୁଦ୍ଧଦେବଙ୍କର ପ୍ରସ୍ତର-ମୂର୍ତ୍ତି ମଧ୍ୟ ଅଛି । ଖଟ ଉପରେ ସେ ଉତ୍ତରାଭିମୁଖ ହୋଇ ବସିଛନ୍ତି । ଭକ୍ତମାନେ ତଳେ କେହି ମସିଣା କେହି ଆସନରେ ଉପବିଷ୍ଟ । ସମସ୍ତେ ମହାପୁରୁଷଙ୍କର ଆନନ୍ଦମୂର୍ତ୍ତି ଏକ ଦୃଷ୍ଟିରେ ଦେଖୁଛନ୍ତି । ଘରର ଅନତିଦୂରରେ ବନ୍ଧର ପଶ୍ଚିମଭାଗରେ ପୂତସଲିଳା ଗଙ୍ଗା ଦକ୍ଷିଣବାହିନୀ ହୋଇ ପ୍ରବାହିତ ହେଉଛନ୍ତି । ବର୍ଷାକାଳରେ ଖରସ୍ରୋତା ଗଙ୍ଗା ଯେପରି ସାଗରସଙ୍ଗମରେ

ପହଞ୍ଚିବା ପାଇଁ ଅତ୍ୟନ୍ତ ବ୍ୟଗ୍ର । ପଥରେ କେବଳ ମହାପୁରୁଷଙ୍କର ଧ୍ୟାନମନ୍ଦିର ଥରେ ଦର୍ଶନ-ସ୍ପର୍ଶନ କରି ଚାଲିଯାଉଛନ୍ତି ।

ଶ୍ରୀଯୁକ୍ତ ମଣି ମଲ୍ଲିକ ଜଣେ ପୁରାତନ ବ୍ରାହ୍ମଭକ୍ତ । ବୟସ ଷାଠିଏ ପଞ୍ଚଷଠି ହେବ । ସେ କିଛିଦିନ ପୂର୍ବେ କାଶୀଧାମ ଦର୍ଶନ କରିବାକୁ ଯାଇଥିଲେ । ଆଜି ଠାକୁରଙ୍କୁ ଦର୍ଶନ କରିବାକୁ ଆସିଛନ୍ତି ଓ ତାଙ୍କୁ କାଶୀପର୍ଯ୍ୟଟନର ବୃତ୍ତାନ୍ତ କହୁଛନ୍ତି ।

ମଣି ମଲ୍ଲିକ — ଆଉ ଜଣେ ସାଧୁଙ୍କୁ ଦେଖିଲି । ସେ କହିଲେ, ଇନ୍ଦ୍ରିୟସଂଯମ ନ ହେଲେ କିଛି ହେବ ନାହିଁ । କେବଳ ଈଶ୍ୱର ଈଶ୍ୱର କଲେ କ'ଣ ହେବ ?

ଶ୍ରୀରାମକୃଷ୍ଣ — ଏମାନଙ୍କର ମତ କଅଣ ଜାଣ ? ଆଗେ ସାଧନା ଦରକାର — ଶମ, ଦମ, ତିତିକ୍ଷା ଦରକାର । ଏମାନେ ନିର୍ବାଣ ପାଇଁ ଚେଷ୍ଟା କରୁଛନ୍ତି । ଏମାନେ ବେଦାନ୍ତବାଦୀ, କେବଳ ବିଚାର କରନ୍ତି — 'ବ୍ରହ୍ମ ସତ୍ୟ, ଜଗତ୍ ମିଥ୍ୟା ।' ଅତ୍ୟନ୍ତ କଠିନ ପଥ । ଜଗତ୍ ମିଥ୍ୟା ହେଲେ ତୁମେ ମଧ୍ୟ ମିଥ୍ୟା, ଯେ କହୁଛନ୍ତି ସେ ମଧ୍ୟ ମିଥ୍ୟା, ତାଙ୍କର କଥା ମଧ୍ୟ ସ୍ୱପ୍ନବତ୍ । ବହୁ ଦୂରର କଥା ।

''କିପରି ଜାଣ ? ଯେପରି କର୍ପୂର ପୋଡ଼ିଗଲେ କିଛି ବାକି ରହେ ନାହିଁ । କାଠ ପୋଡ଼ିଲେ ତ କିଛି ପାଉଁଶ ରହିଯାଏ । ଶେଷ ବିଚାର ପରେ ସମାଧି ହୁଏ । ସେତେବେଳେ 'ମୁଁ', 'ତୁମେ', 'ଜଗତ୍' ଏ ସବୁର ଖବର ନ ଥାଏ ।

**ପଣ୍ଡିତ ପଦ୍ମଲୋଚନ ଓ ଜ୍ଞାନଯୋଗ**

''ପଦ୍ମଲୋଚନ ଭାରୀ ଜ୍ଞାନୀ ଥିଲା କିନ୍ତୁ ମୁଁ ମା' ମା' କରୁଥିଲି, ତଥାପି ମୋତେ ଖୁବ୍ ମାନୁଥିଲା । ପଦ୍ମଲୋଚନ ବର୍ଦ୍ଧମାନ ରାଜାଙ୍କର ସଭାପଣ୍ଡିତ ଥିଲା । କଲିକତାକୁ ଆସିଥିଲା; ଆସି କାମାରହାଟୀ ପାଖରେ ଗୋଟିଏ ବଗିଚାରେ ଥିଲା । ମୋର ପଣ୍ଡିତକୁ ଦେଖିବା ପାଇଁ ଇଚ୍ଛା ହେଲା । ହୃଦୁକୁ ପଠାଇଦେଲି ଜାଣିବାକୁ, ଅଭିମାନ ଅଛି କି ନାହିଁ ? ଶୁଣିଲି ପଣ୍ଡିତର ଅଭିମାନ ନାହିଁ । ମୋ ସଙ୍ଗେ ଦେଖା ହେଲା । ଏଡ଼େ ଜ୍ଞାନୀ ଓ ପଣ୍ଡିତ, ତଥାପି ମୋ ମୁହଁରୁ ରାମପ୍ରସାଦର ଗୀତ ଶୁଣି କାନ୍ଦିଲା ! କଥା କହି ଏପରି ସୁଖ କେଉଁଠି ପାଇ ନାହିଁ । ମୋତେ କହିଲା, 'ଭକ୍ତଙ୍କ ସଙ୍ଗ କରିବାର କାମନା ତ୍ୟାଗ କର, ନଚେତ୍ ନାନା ପ୍ରକାରର ଲୋକ ଆସି ତୁମକୁ ପତିତ କରିବେ ।' ବୈଷ୍ଣବଚରଣ ତା'ର ଗୁରୁ ଉତ୍ସବାନନ୍ଦଙ୍କ ସହିତ ଲେଖି ବିଚାର କରିଥିଲା । ମୋତେ କହିଲା, 'ଆପଣ ଟିକିଏ ଶୁଣନ୍ତୁ ।' ଗୋଟିଏ ସଭାରେ ବିଚାର ହେଉଥିଲା — ଶିବ, ବଡ଼, ବା ବ୍ରହ୍ମା ବଡ଼ । ଶେଷରେ ବ୍ରାହ୍ମଣ ପଣ୍ଡିତମାନେ ପଦ୍ମଲୋଚନକୁ ପଚାରିଲେ । ପଦ୍ମଲୋଚନ ଏପରି ସରଳ, ସେ କହିଲା, 'ମୋ ଚଉଦ ପୁରୁଷ ଶିବଙ୍କୁ ଦେଖି ନାହାନ୍ତି କି ବ୍ରହ୍ମାଙ୍କୁ ମଧ୍ୟ ଦେଖି ନାହାନ୍ତି ।' କାମିନୀକାଞ୍ଚନ ତ୍ୟାଗ ଶୁଣି ମୋତେ ଦିନେ କହିଲା, 'ସେସବୁ ତ୍ୟାଗ କରିଛ କାହିଁକି ? ଏଇଟା ଟଙ୍କା, ଏଇଟା ମାଟି, ଏହି ଭେଦବୁଦ୍ଧି ତ ଅଜ୍ଞାନରୁ

ହୁଏ ।' ମୁଁ କଅଣ କହିବି ? କହିଲି—'କେଜାଣି, ମୋତେ ଟଙ୍କାପଇସା ସବୁ ଭଲ ଲାଗେ ନାହିଁ ।'

**କେବଳ ପାଣ୍ଡିତ୍ୟ ଓ ବିଦ୍ୟାସାଗର**

''ଜଣେ ପଣ୍ଡିତର ଭାରୀ ଅଭିମାନ ଥିଲା । ଈଶ୍ୱରଙ୍କ ରୂପ ମାନୁ ନ ଥିଲା । କିନ୍ତୁ ଈଶ୍ୱରଙ୍କର କାର୍ଯ୍ୟ କିଏ ବୁଝିବ ? ସେ ଆଦ୍ୟାଶକ୍ତି ରୂପରେ ଦେଖା ଦେଲେ । ପଣ୍ଡିତ ବହୁ ସମୟ ବେହୋସ୍ ହୋଇ ରହିଲା । ଟିକିଏ ହୋସ୍ ହେବା ପରେ 'କା ! କା ! କା !' (ଅର୍ଥାତ୍ କାଳୀ) କେବଳ ଏହି ଶବ୍ଦ କରିବାକୁ ଲାଗିଲା ।''

ଜଣେ ଭକ୍ତ—ଆଜ୍ଞା, ବିଦ୍ୟାସାଗରଙ୍କୁ ଦେଖିଛନ୍ତି, କିପରି ବୋଧ ହେଲା ?

ଶ୍ରୀରାମକୃଷ୍ଣ—ବିଦ୍ୟାସାଗରର ପାଣ୍ଡିତ୍ୟ ଅଛି, ଦୟା ଅଛି, କିନ୍ତୁ ଅନ୍ତର୍ଦୃଷ୍ଟି ନାହିଁ । ଅନ୍ତରରେ ସୁନା ଲୁଚି ରହିଛି, ଯଦି ସେହି ସୁନାର ସନ୍ଧାନ ସେ ପାଆନ୍ତା, ତାହା ହେଲେ ଏତେ ବାହାରର କାମ ଯାହା କରୁଛି ସେସବୁ କମ୍ ପଡ଼ିଯାଆନ୍ତା, ଶେଷରେ ଏକାବେଳକେ ତ୍ୟାଗ ହୋଇଯାଆନ୍ତା । ଅନ୍ତରରେ, ହୃଦୟ ମଧ୍ୟରେ ଈଶ୍ୱର ଅଛନ୍ତି, ଏକଥା ଜାଣିପାରିଲେ କେବଳ ତାଙ୍କରି ଧ୍ୟାନଚିନ୍ତାରେ ମନ ରହନ୍ତା । କାହାରି କାହାରି ନିଷ୍କାମ କର୍ମ ଅନେକ ଦିନ କରି କରି ଶେଷରେ ବୈରାଗ୍ୟ ହୁଏ, ଆଉ ସେହି ଆଡ଼କୁ ମନ ଯାଏ, ଈଶ୍ୱରଙ୍କଠାରେ ମନ ଲିପ୍ତ ହୁଏ ।

''ଈଶ୍ୱର ବିଦ୍ୟାସାଗର ଯେଉଁସବୁ କାମ କରୁଛି ତାହା ଖୁବ୍ ଭଲ । ଦୟା ଖୁବ୍ ଭଲ । ଦୟା ଆଉ ମାୟା ଭିତରେ ଅନେକ ତଫାତ୍ । ଦୟା ଭଲ, ମାୟା ଭଲ ନୁହେଁ । ମାୟା ଆତ୍ମୀୟମାନଙ୍କୁ ଭଲ ପାଇବା, ସ୍ତ୍ରୀ, ପୁତ୍ର, ଭାଇ, ଭଗିନୀ, ପୁତୁରା, ଭଣଜା, ବାପା, ମା ଏମାନଙ୍କୁ ଭଲ ପାଇବା । ଦୟା ସର୍ବଭୂତରେ ସମାନ ପ୍ରେମ ।''

## (୨)

## 'ଗୁଣତ୍ରୟବ୍ୟତିରିକ୍ତଂ ସଚ୍ଚିଦାନନ୍ଦସ୍ୱରୂପଃ ।'

## ''ବ୍ରହ୍ମ ତ୍ରିଗୁଣାତୀତ—ମୁହଁରେ କୁହାଯାଏ ନାହିଁ ।''

ମାଷ୍ଟର—ଦୟା ବି କଅଣ ଗୋଟିଏ ବନ୍ଧନ ?

ଶ୍ରୀରାମକୃଷ୍ଣ—ସେ ବହୁଦୂରର କଥା । ଦୟା ସତ୍ତ୍ୱଗୁଣରୁ ହୁଏ । ସତ୍ତ୍ୱଗୁଣରେ ପାଳନ । ରଜୋଗୁଣରେ ସୃଷ୍ଟି । ତମୋଗୁଣରେ ସଂହାର । କିନ୍ତୁ ବ୍ରହ୍ମ ସତ୍ତ୍ୱ, ରଜଃ, ତମଃ ତିନି ଗୁଣର ଅତୀତ । ପ୍ରକୃତିର ଅତୀତ ।

''ଯେଉଁଠାରେ ଠିକ୍ ଠିକ୍ ସେଠାରେ ଗୁଣ ପହଞ୍ଚିପାରେ ନାହିଁ । ଚୋର ଯେପରି ଠିକ୍ ଜାଗାକୁ ଯାଇପାରେ ନାହିଁ, ଭୟ ହୁଏ, କାଳେ ଧରାପଡ଼ିଯିବ । ସତ୍ତ୍ୱରଜସ୍ତମଃ ତିନି ଗୁଣଯାକ ଚୋର । ଗୋଟିଏ ଗଳ୍ପ କହୁଛି ଶୁଣ—

''ଜଣେ ଲୋକ ଜଙ୍ଗଲରାସ୍ତା ଦେଇ ଯାଉଥିଲା । ଏତିକିବେଳେ ତିନିଜଣ ଡକାଇତ ଆସି ତାକୁ ଧରିଲେ । ସେମାନେ ତା'ର ସର୍ବସ୍ୱ କାଢ଼ି ନେଲେ । ଜଣେ ଚୋର କହିଲା, 'ଆଉ ଏ ଲୋକକୁ ରଖି କଅଣ ହେବ ?' ଏହି କଥା କହି ଖଣ୍ଡାରେ କାଟିବାକୁ ଆସିଲା । ସେତେବେଳେ ଆଉ ଜଣେ ଚୋର କହିଲା, 'ନା ହେ —କାଟି କଅଣ ହେବ ? ଏହାର ହାତଗୋଡ଼ ବାନ୍ଧି ଏଠାରେ ପକାଇଦେଇ ଯାଅ ।' ସେତେବେଳେ ତା'ର ହାତଗୋଡ଼ ବାନ୍ଧି ତାକୁ ସେଠାରେ ପକାଇଦେଇ ଚୋରମାନେ ଚାଲିଗଲେ । କିଛି ସମୟ ପରେ ସେମାନଙ୍କ ଭିତରୁ ଜଣେ ଫେରି ଆସି କହିଲା, 'ଆହା, ତୁମକୁ ଭାରୀ ବାଧୁଛି, ନା ? ମୁଁ ତୁମର ବନ୍ଧନ ଖୋଲି ଦେଉଛି ।' ଏହା କହି ତା'ର ବନ୍ଧନ ଖୋଲିଦେଇ ଚୋରଟି କହିଲା, 'ମୋ ସଙ୍ଗେ ସଙ୍ଗେ ଆସ, ତୁମକୁ ସଦର ରାସ୍ତାରେ ନେଇ ଛାଡ଼ିଦେବି ।' କିଛି ସମୟ ପରେ ସଦର ରାସ୍ତାକୁ ଆସି କହିଲା, 'ଏହି ରାସ୍ତା ଧରି ଯାଅ, ସେଇ ତୁମର ଘର ଦେଖାଯାଉଛି ।' ସେତେବେଳେ ଲୋକଟି ଚୋରକୁ କହିଲା, 'ଆଜ୍ଞା, ମୋର ଅନେକ ଉପକାର କଲେ, ଆପଣ ମଧ୍ୟ ମୋ ସହିତ ଆସନ୍ତୁ ମୋ ଘର ପର୍ଯ୍ୟନ୍ତ ଯିବେ ।' ଚୋର କହିଲା, 'ମୋର ସେଠାକୁ ଯିବାର ଉପାୟ ନାହିଁ, ପୋଲିସ୍ ସନ୍ଧାନ ପାଇବ ।'

'ସଂସାର ହିଁ ଅରଣ୍ୟ । ଏହି ବଣରେ ସତ୍ତ୍ୱରଜସ୍ତମଃ ତିନିଗୁଣଯାକ ଡକାୟତ, ଜୀବର ତତ୍ତ୍ୱଜ୍ଞାନ କାଢ଼ିନିଅନ୍ତି । ତମୋଗୁଣ ଜୀବର ବିନାଶ କରେ । ରଜୋଗୁଣ ସଂସାରରେ ବଦ୍ଧ କରେ । କିନ୍ତୁ ସତ୍ତ୍ୱଗୁଣ ରଜସ୍ତମଃ ଗୁଣ କବଳରୁ ବଞ୍ଚାଏ । ସତ୍ତ୍ୱଗୁଣର ଆଶ୍ରୟ ପାଇଲେ କାମକ୍ରୋଧ ଏହିସବୁ ତମୋଗୁଣରୁ ରକ୍ଷାମିଳେ । ସତ୍ତ୍ୱଗୁଣ ମଧ୍ୟ ଜୀବର ସଂସାର-ବନ୍ଧନ ମୋଚନ କରେ । କିନ୍ତୁ ସତ୍ତ୍ୱଗୁଣ ମଧ୍ୟ ଚୋର, ତତ୍ତ୍ୱଜ୍ଞାନ ଦେଇପାରେ ନାହିଁ । କିନ୍ତୁ ସେହି ପରମଧାମକୁ ଯିବାପଥରେ ପହଞ୍ଚାଇଦିଏ । ପହଞ୍ଚାଇ ଦେଇ କହେ— ହେଇ, ଦେଖ, ତୁମର ଘର ଦେଖାଯାଉଛି । ଯେଉଁଠାରେ ବ୍ରହ୍ମଜ୍ଞାନ, ସେଠାରୁ ସତ୍ତ୍ୱଗୁଣ ମଧ୍ୟ ବହୁ ଦୂରରେ ।

''ବ୍ରହ୍ମ କଅଣ ତାହା ମୁଖରେ କୁହାଯାଇପାରେ ନାହିଁ । ଯାହାର ହୁଏ ସେ ଖବର ଦେଇପାରେ ନାହିଁ । ଗୋଟିଏ କଥା ଅଛି— କଳାପାଣିକୁ ଜାହାଜ ଗଲେ ଆଉ ଫେରେ ନାହିଁ ।

''ଚାରିବନ୍ଧୁ ଭ୍ରମଣ କରୁ କରୁ ପାଚେରୀଘେରା ଗୋଟିଏ ଜାଗା ଦେଖିବାକୁ ପାଇଲେ । ଖୁବ୍ ଉଚ୍ଚ ପାଚେରୀ । ଭିତରେ କଅଣ ଅଛି ଦେଖିବା ପାଇଁ ସମସ୍ତେ ଭାରୀ ଉତ୍ସୁକ ହେଲେ । ପାଚେରୀରେ ଜଣେ ଚଢ଼ିଲା । ଉଙ୍କିମାରି ଯାହା ଦେଖିଲା, ସେଥିରେ ଅବାକ୍ ହୋଇ ''ହା ହା ହା ହା'' କହି ଭିତରେ ପଡ଼ିଗଲା । ଆଉ

କୌଣସି ଖବର ଦେଲା ନାହିଁ । ଯିଏ ଚଢ଼ି ଦେଖେ ସେ ''ହା ହା ହା ହା'' କରି ପଡ଼ିଯାଏ । ସେତେବେଳେ ଖବର ଆଉ କିଏ ଦେବ ?

### ଜଡ଼ଭରତ, ଦତ୍ତାତ୍ରେୟ, ଶୁକଦେବ ଏମାନଙ୍କର ବ୍ରହ୍ମଜ୍ଞାନ

''ଜଡ଼ଭରତ, ଦତ୍ତାତ୍ରେୟ ଏମାନେ ବ୍ରହ୍ମଦର୍ଶନ କରି ଆଉ ଖବର ଦେଇ ପାରି ନାହାନ୍ତି । ବ୍ରହ୍ମଜ୍ଞାନ ହୋଇ ସମାଧି ହେଲେ ଆଉ 'ମୁଁ' ରହେ ନାହିଁ । ତେଣୁ ରାମପ୍ରସାଦ କହିଛନ୍ତି, 'ମନ ଯଦି ନ ପାରୁ ନିଜେ, ରାମପ୍ରସାଦକୁ ସାଥେ ନେଏ ନା !' ମନର ଲୟ ହେବା ଦରକାର, ଆଉ 'ରାମପ୍ରସାଦ'ର ଅର୍ଥାତ୍ ଅହଂସତ୍ତ୍ୱର ଲୟ ହେବା ଦରକାର ତେବେ ସେହି ବ୍ରହ୍ମଜ୍ଞାନ ହୁଏ ।''

ଜଣେ ଭକ୍ତ — ମହାଶୟ, ଶୁକଦେବଙ୍କର କଅଣ ଜ୍ଞାନ ହୋଇ ନ ଥିଲା ?

ଶ୍ରୀରାମକୃଷ୍ଣ — କେହି କେହି କହନ୍ତି, ଶୁକଦେବ ବ୍ରହ୍ମସମୁଦ୍ରର ଦର୍ଶନ ସ୍ପର୍ଶନ ମାତ୍ର କରିଥିଲେ, ଓହ୍ଲାଇ ବୁଡ଼ି ନାହାନ୍ତି । ତେଣୁ ଫେରି ଆସି ଏତେ ଉପଦେଶ ଦେଇଛନ୍ତି । ଆଉ କେହି କେହି କହନ୍ତି, ବ୍ରହ୍ମଜ୍ଞାନ ପରେ ସେ ଫେରି ଆସିଥିଲେ — ଲୋକଶିକ୍ଷା ପାଇଁ । ପରୀକ୍ଷିତଙ୍କୁ ଭାଗବତ କହିଲେ, ''ଆହୁରି କେତେ ଲୋକଶିକ୍ଷା ଦେବେ, ସେଥିପାଇଁ ଈଶ୍ୱର ତାଙ୍କର ସବୁ 'ମୁଁ' ଲୟ କରି ନ ଥିଲେ । ବିଦ୍ୟାର 'ମୁଁ' ଟିକିଏ ରଖି ଦେଇଥିଲେ ।''

### ଦଳ (ସାଂପ୍ରଦାୟିକତା) ଭଲ ନୁହେଁ — କେଶବଙ୍କୁ ଶିକ୍ଷା

ଜଣେ ଭକ୍ତ — ବ୍ରହ୍ମଜ୍ଞାନ ହେଲେ କ'ଣ ଦଳ ଇତ୍ୟାଦି ରହେ ?

ଶ୍ରୀରାମକୃଷ୍ଣ — କେଶବ ସେନ୍ ସହିତ ବ୍ରହ୍ମଜ୍ଞାନ ସମ୍ବନ୍ଧରେ କଥା ହେଉଥିଲା । କେଶବ କହିଲା, 'ଆହୁରି କହନ୍ତୁ ।' ମୁଁ କହିଲି, 'ଆଉ କହିଲେ ଦଳ ଇତ୍ୟାଦି ରହିବ ନାହିଁ ।' ସେତେବେଳେ କେଶବ କହିଲା, 'ତେବେ ଥାଉ ଆଜ୍ଞା !' (ସମସ୍ତଙ୍କର ହାସ୍ୟ) । ତେବେ ମୁଁ କେଶବଙ୍କୁ କହିଲି — 'ମୁଁ' 'ମୋର' ଏଇଟି ଅଜ୍ଞାନ । 'ମୁଁ କର୍ତ୍ତା' ଆଉ 'ମୋର ଏଇସବୁ ସ୍ତ୍ରୀ, ପୁତ୍ର, ବିଷୟ, ମାନ, ସଂଭ୍ରମ' ଏହି ଭାବ ଅଜ୍ଞାନ ନ ହେଲେ ହୁଏ ନାହିଁ । ସେତେବେଳେ କେଶବ କହିଲା, 'ଆଜ୍ଞା, 'ମୁଁ' ତ୍ୟାଗ କଲେ ଆଉ କିଛି ରହେ ନାହିଁ ଯେ !' ମୁଁ କହିଲି, 'କେଶବ, ତୁମକୁ ସବୁ 'ମୁଁ' ତ୍ୟାଗ କରିବା ପାଇଁ କହୁନାହିଁ, ତୁମେ କଞ୍ଚା ମୁଁ ତ୍ୟାଗ କର । 'ମୁଁ କର୍ତ୍ତା', 'ମୋର ସ୍ତ୍ରୀ ପୁତ୍ର', 'ମୁଁ ଗୁରୁ' — ଏସବୁ ଅଭିମାନ 'କଞ୍ଚା ମୁଁ' — ଏହା ତ୍ୟାଗ କରି 'ପାଚିଲା ମୁଁ' ହୋଇ ରହ । 'ମୁଁ ତାଙ୍କର ଦାସ, ମୁଁ ଅକର୍ତ୍ତା, ସେ କର୍ତ୍ତା' ।'

### ଈଶ୍ୱରଙ୍କର ଆଦେଶ ଓ ଧର୍ମପ୍ରଚାର

ଜଣେ ଭକ୍ତ — ପାଚିଲା 'ମୁଁ' କଅଣ ଦଳ ଗଢ଼ିପାରେ ?

ଶ୍ରୀରାମକୃଷ୍ଣ — ମୁଁ କେଶବ ସେନ୍‌କୁ କହିଲି — 'ମୁଁ ଦଳପତି', 'ମୁଁ ଦଳ କରିଛି', 'ମୁଁ ଲୋକଶିକ୍ଷା ଦେଉଛି', ଏହି 'ମୁଁ' 'କଞ୍ଚା ମୁଁ' । ମତ ପ୍ରଚାର ଅତ୍ୟନ୍ତ କଠିନ । ଈଶ୍ୱରଙ୍କ ଆଜ୍ଞା ବ୍ୟତୀତ ହୁଏ ନାହିଁ । ତାଙ୍କର ଆଦେଶ ଦରକାର; ଯେପରି ଶୁକଦେବ ଭାଗବତ କହିବା ପାଇଁ ଆଦେଶ ପାଇଥିଲେ । ଯଦି ଈଶ୍ୱରଙ୍କର ସାକ୍ଷାତ୍‌କାର କରି କେହି ଆଦେଶ ପାଏ, ସେ ଯଦି ପ୍ରଚାର କରେ, ଲୋକଶିକ୍ଷା ଦିଏ, ତାହା ହେଲେ ଦୋଷ ନାହିଁ । ତାହାର 'ମୁଁ' 'କଞ୍ଚା ମୁଁ' ନୁହେଁ, 'ପାଚିଲା ମୁଁ'।

''ମୁଁ କେଶବକୁ କହିଥିଲି, 'କଞ୍ଚା ମୁଁ' ତ୍ୟାଗ କର । 'ଦାସ ମୁଁ', 'ଭକ୍ତ ମୁଁ', ଏଥିରେ କୌଣସି ଦୋଷ ନାହିଁ ।

''ତୁମେ ଦଳ ଦଳ କରୁଛ ! ତୁମ ଦଳରୁ ଲୋକେ ଭାଙ୍ଗି ଭାଙ୍ଗି ଯାଉଛନ୍ତି । କେଶବ କହିଲା, 'ଆଜ୍ଞା, ତିନିବର୍ଷ ଏହି ଦଳରେ ଥାଇ ପୁଣି ସେହି ଦଳକୁ ଗଲା ! ଯିବା ବେଳେ ପୁଣି ମୋତେ ଗାଳିଗୁଲଜ କରି ଗଲା ।' ମୁଁ କହିଲି, 'ତୁମେ ଲକ୍ଷଣ ଦେଖିନାହଁ, କାହିଁକି, ଯାହାକୁ ତାହାକୁ ଚେଲା କଲେ କ'ଣ ଚଳେ ?'

**କେଶବଙ୍କୁ ଶିକ୍ଷା — ଆଦ୍ୟାଶକ୍ତିଙ୍କୁ ମାନ**

''ଆଉ କେଶବଙ୍କୁ କହିଲି, 'ତୁମେ ଆଦ୍ୟାଶକ୍ତିଙ୍କୁ ମାନ । ବ୍ରହ୍ମ ଆଉ ଶକ୍ତି ଅଭେଦ — ଯେ ବ୍ରହ୍ମ ସେ ହିଁ ଶକ୍ତି । ଯେପର୍ଯ୍ୟନ୍ତ ଦେହବୁଦ୍ଧି, ସେପର୍ଯ୍ୟନ୍ତ ଦୁଇଟି ବୋଲି ବୋଧହୁଏ । କହିବାକୁ ଗଲେ ହିଁ ଦୁଇ ଆସିବ ।' କେଶବ କାଳୀ (ଶକ୍ତି) ମାନିଥିଲା ।

''ଦିନେ କେଶବ ଶିଷ୍ୟମାନଙ୍କ ସଙ୍ଗରେ ଏଠାକୁ ଆସିଥିଲା । ମୁଁ କହିଲି, 'ତୁମର ଲେକ୍‌ଚର୍ ଶୁଣିବି ।' ଚଉତରାରେ ବସି ଲେକ୍‌ଚର ଦେଲା । ତା'ପରେ ଘାଟରେ ଆସି ବସି ଅନେକ କଥାବାର୍ତ୍ତା ହେଲା । ମୁଁ କହିଲି, 'ଯେ ଭଗବାନ, ସେ ହିଁ ଏକରୂପରେ ଭକ୍ତ, ସେ ହିଁ ଏକ ରୂପରେ ଭାଗବତ । ତୁମେମାନେ କହ ଭାଗବତ-ଭକ୍ତ-ଭଗବାନ ! ଯେତେବେଳେ କହିଲି କହ 'ଗୁରୁ-କୃଷ୍ଣ-ବୈଷ୍ଣବ', ସେତେବେଳେ କେଶବ କହିଲା, 'ଆଜ୍ଞା, ବର୍ତ୍ତମାନ ଏତେଦୂର ନୁହେଁ, ତାହା ହେଲେ ଲୋକେ ଧର୍ମାନ୍ଧ କହିବେ ।'

''ତ୍ରିଗୁଣାତୀତ ହେବା କାଠିକର ପାଠ । ଈଶ୍ୱରଲାଭ ନ କଲେ ହୁଏ ନାହିଁ । ଜୀବ ମାୟା-ରାଜ୍ୟରେ ବାସ କରେ । ଏହି ମାୟା ଈଶ୍ୱରଙ୍କୁ ଜାଣିବାକୁ ଦିଏ ନାହିଁ । ଏହି ମାୟା ମନୁଷ୍ୟକୁ ଅଜ୍ଞାନ କରି ରଖିଛି । ହୃଦୁ ଗୋଟିଏ ଅଣ୍ଡିରା ବାଛୁରୀ ଆଣିଥିଲା । ଦିନେ ଦେଖିଲି, ତାକୁ ବଗିଚାରେ ବାନ୍ଧି ଦେଇଛି ଘାସ ଖୁଆଇବା ପାଇଁ । ମୁଁ ପଚାରିଲି, 'ହୃଦୁ, ସେଇଟାକୁ ରୋଜ୍ ସେଠାରେ ବାନ୍ଧି ରଖୁଛୁ କାହିଁକି ?' ହୃଦୁ କହିଲା, 'ମାମୁଁ, ଅଣ୍ଡିରାଟିକୁ ଦେଶକୁ ପଠାଇ ଦେବି । ବଡ଼ ହେଲେ ଲଙ୍ଗଳ ଟାଣିବ ।' ଯେତେବେଳେ ଏକଥା ଶୁଣିଲି, ମୁଁ ମୂର୍ଚ୍ଛିତ ହୋଇ ପଡ଼ିଗଲି ! ମନେ ହେଲା, କି ମାୟାର ଖେଳ ! କେଉଁଠାରେ କାମରପୁକୁର ସିଓଡ଼,

କେଉଁଠାରେ କଲିକତା ! ଏହି ବାଛୁରୀଟି ଯିବ, ଏତେ ଦୂର ! ସେଠାରେ ବଡ଼ ହେବ ! ତା'ପରେ କେତେଦିନ ଗଲେ ଲଙ୍ଗଳ ଟାଣିବ ! ଏହାର ନାମ ସଂସାର, ଏହାର ନାମ ମାୟା ! ବହୁ ସମୟ ପରେ ମୂର୍ଚ୍ଛା ଭାଙ୍ଗିଥିଲା ।''

## (୩)

## ସମାଧି–ମନ୍ଦିରରେ

ଶ୍ରୀରାମକୃଷ୍ଣ ଅହର୍ନିଶି ସମାଧିସ୍ଥ ! ଦିନରାତି କେତେବେଳେ ଚାଲିଯାଉଛି ହୋସ୍ ନାହିଁ । କେବଳ ଭକ୍ତମାନଙ୍କ ସଙ୍ଗରେ ଥରେ ଥରେ ଈଶ୍ୱରୀୟ କଥା ବା କୀର୍ତ୍ତନ କରନ୍ତି । ତିନିଟା ଚାରିଟାବେଳେ ମାଷ୍ଟର ଦେଖିଲେ ଠାକୁର ଛୋଟ ଖଟଟିରେ ବସିଛନ୍ତି । ଭାବାବିଷ୍ଟ । ଟିକିଏ ପରେ ମାଆଙ୍କ ସଙ୍ଗରେ କଥା କହୁଛନ୍ତି ।

ମାଆଙ୍କ ସଙ୍ଗରେ  କଥା କହୁ କହୁ କହିଲେ, ''ମାଆ, ତାକୁ ଗୋଟିଏ କଳା କାହିଁକି ଦେଲୁ ?'' ଠାକୁର କିଛି ସମୟ ନିସ୍ତବ୍ଧ ହୋଇ ରହିଲେ । ତା'ପରେ କହିଲେ, ''ମାଆ, ବୁଝିଛି, ଗୋଟିଏ କଳାରେ ହିଁ ଯଥେଷ୍ଟ ହେବ । ଗୋଟାଏ କଳାରେ ତୋର କାମ ହେବ, ଜୀବଶିକ୍ଷା ହେବ ।''

ଠାକୁର କଅଣ ସାଙ୍ଗୋପାଙ୍ଗଙ୍କ ଭିତରେ ଏହିରୂପେ ଶକ୍ତି ସଞ୍ଚାର କରୁଛନ୍ତି ? ଏସବୁ କଅଣ ଆୟୋଜନ ହେଉଛି ଯେ ପରେ ସେମାନେ ଜୀବଶିକ୍ଷା ଦେବେ ? ମାଷ୍ଟରଙ୍କ ଛଡ଼ା ଘରେ ରାଖାଲ ମଧ୍ୟ ବସିଛନ୍ତି । ଠାକୁର ଏବେ ମଧ୍ୟ ଭାବାବିଷ୍ଟ । ରାଖାଲଙ୍କୁ କହୁଛନ୍ତି, ''ତୁ ରାଗିଥିଲୁ ? ତୋତେ ରଗେଇଲି କାହିଁକି, ଏହାର ଅର୍ଥ ଅଛି । ଔଷଧ ଠିକ୍ ପଡ଼ିବ ବୋଲି । ପ୍ଲୀହାର ମୁହଁ ବାହାରିଲେ ମନସା ପତ୍ରଫତ୍ର ଦେବାକୁ ହୁଏ ।''

କିଛି ସମୟ ପରେ କହୁଛନ୍ତି, ''ହାଜରାକୁ ଦେଖିଲି ଶୁଖିଲା କାଠ । ତେବେ ଏଠାରେ ରହେ କାହିଁକି ? ତାହାର ଅର୍ଥ ଅଛି, ଜଟିଳା–କୁଟିଳା ରହିଲେ ଲୀଳା 'ପୋଷ୍ଟାଇ' ହୁଏ ।

(ମାଷ୍ଟରଙ୍କ ପ୍ରତି) ''ଈଶ୍ୱରଙ୍କ ରୂପ ମାନିବାକୁ ହୁଏ ! ଜଗଦ୍ଧାତ୍ରୀ ଅର୍ଥ କଅଣ ଜାଣ ? ଯେ ଜଗତକୁ ଧାରଣ କରିଛନ୍ତି । ସେ ନ ଧରିଲେ, ସେ ପାଳନ ନ କଲେ ଜଗତ ପଡ଼ିଯାଏ, ନଷ୍ଟ ହୋଇଯାଏ । ମନ–ହାତୀକୁ ଯେ ବଶ କରିପାରେ, ତାହାର ହୃଦୟରେ ଜଗଦ୍ଧାତ୍ରୀ ଉଦୟ ହୁଅନ୍ତି ।''

ରାଖାଲ — 'ମନ–ମତ୍ତ–କରୀ ।'

ଶ୍ରୀରାମକୃଷ୍ଣ — ସିଂହବାହିନୀର ସିଂହ ସେହି ହେତୁ ହାତୀକୁ ଜବତ କରିଛି ।

ସନ୍ଧ୍ୟା ପରେ ମନ୍ଦିରରେ ଆଳତି ହେଲା । ସନ୍ଧ୍ୟା ସମାଗମ ପରେ ଠାକୁର ଶ୍ରୀରାମକୃଷ୍ଣ ନିଜ ଘରେ ଈଶ୍ୱରଙ୍କ ନାମ କରୁଛନ୍ତି । ଘରେ ଝୁଣା ଦିଆଗଲା । ଠାକୁର ବଦ୍ଧାଞ୍ଜଳି ହୋଇ ଛୋଟ ଖଟଟି ଉପରେ ବସି ମାଆଙ୍କର ଚିନ୍ତା କରୁଛନ୍ତି ।

ବେଲଘରର ଶ୍ରୀଯୁକ୍ତ ଗୋବିନ୍ଦ ଚାଟାର୍ଜି ଓ ତାଙ୍କର ବନ୍ଧୁଗଣ ଆସି ପ୍ରଣାମ କରି ତଳେ ବସିଲେ । ମାଷ୍ଟର ମଧ୍ୟ ବସିଛନ୍ତି । ରାଖାଲ ମଧ୍ୟ ବସିଛନ୍ତି ।

ବାହାରେ ଜହ୍ନ ଉଠିଛି । ଜଗତ ନିଃଶବ୍ଦରେ ହସୁଛି । ଘର ଭିତରେ ସମସ୍ତେ ନିଃଶବ୍ଦରେ ବସି ଠାକୁରଙ୍କର ଶାନ୍ତ ମୂର୍ତ୍ତି ଦେଖୁଛନ୍ତି । ଠାକୁର ଭାବାବିଷ୍ଟ । କିଛି ସମୟ ପରେ କଥା କହିଲେ । ଏବେ ମଧ୍ୟ ଭାବାବିଷ୍ଟ ।

**ଶ୍ୟାମାରୂପ — ପୁରୁଷପ୍ରକୃତି — ଯୋଗମାୟା — ଶିବକାଳୀ ଓ ରାଧାକୃଷ୍ଣ ରୂପର ବ୍ୟାଖ୍ୟା — ଉତ୍ତର ଭକ୍ତ — ବିଚାରପଥ**

ଶ୍ରୀରାମକୃଷ୍ଣ — ତୁମମାନଙ୍କର ଯାହା ସବୁ ସଂଶୟ ପଚାର । ମୁଁ ଉତ୍ତର ଦେବି । ଗୋବିନ୍ଦ ଓ ଅନ୍ୟାନ୍ୟ ଭକ୍ତମାନେ ଭାବିବାକୁ ଲାଗିଲେ ।

ଗୋବିନ୍ଦ — ଆଜ୍ଞା, ଶ୍ୟାମା ଏ ରୂପଟି କାହିଁକି ହେଲା ?

ଶ୍ରୀରାମକୃଷ୍ଣ — ସେ ଦୂରରେ ବୋଲି । ପାଖକୁ ଗଲେ କୌଣସି ରଙ୍ଗ ନାହିଁ । ହ୍ରଦର ଜଳ ଦୂରରୁ କଳା ଦେଖାଯାଏ; ପାଖକୁ ଯାଇ ହାତରେ ଉଠାଇ ଦେଖ, କୌଣସି ରଙ୍ଗ ନାହିଁ । ଆକାଶ ଦୂରରୁ ନୀଳବର୍ଣ୍ଣ ଦେଖାଯାଏ; ପାଖରେ ଆକାଶକୁ ଦେଖ, କୌଣସି ରଙ୍ଗ ନାହିଁ । ଈଶ୍ୱରଙ୍କୁ ପାଖକୁ ଯେତେ ଯିବ, ସେତେ ଧାରଣା ହେବ ଯେ, ତାଙ୍କର ନାମ ରୂପ ନାହିଁ । ପଛେଇ ଟିକିଏ ଦୂରକୁ ଆସିଲେ ପୁଣି 'ମୋର ଶ୍ୟାମା ମା !' ଯେପରି ଘାସ-ଫୁଲର ରଙ୍ଗ ।

''ଶ୍ୟାମା ପୁରୁଷ ନା ପ୍ରକୃତି ? ଜଣେ ଭକ୍ତ ପୂଜା କରୁଥିଲା । ଜଣେ ଦର୍ଶନ କରିବାକୁ ଆସି ଦେଖେ, ଦେବୀଙ୍କ କାନ୍ଧରେ ପଇତା ରହିଛି । ସେ କହିଲା, 'ତୁମେ ମାଆଙ୍କୁ ପଇତା ପିନ୍ଧାଇଛ ?' ଭକ୍ତଟି କହିଲା, 'ଭାଇ, ତୁମେ ହିଁ ଚିହ୍ନିଛ ! ମୁଁ ଏବେ ବି ସୁଦ୍ଧା ଚିହ୍ନିପାରି ନାହିଁ — ସେ ପୁରୁଷ ନା ପ୍ରକୃତି ! ତେଣୁ ପଇତା ପିନ୍ଧାଇଛି ।'

''ଯେ ଶ୍ୟାମା, ସେ ହିଁ ବ୍ରହ୍ମ । ଯାହାଙ୍କର ରୂପ, ସେ ହିଁ ଅରୂପ । ଯେ ସଗୁଣ ସେ ହିଁ ନିର୍ଗୁଣ । ବ୍ରହ୍ମ ଶକ୍ତି — ଶକ୍ତି ବ୍ରହ୍ମ । ଅଭେଦ । ସଚ୍ଚିଦାନନ୍ଦମୟ ପୁଣି ସଚ୍ଚିଦାନନ୍ଦମୟୀ ।

ଗୋବିନ୍ଦ — ଯୋଗମାୟା କାହିଁକି କହନ୍ତି ?

ଶ୍ରୀରାମକୃଷ୍ଣ — ଯୋଗମାୟା ଅର୍ଥାତ୍ ପୁରୁଷ-ପ୍ରକୃତିର ଯୋଗ । ଯାହାକିଛି ଦେଖୁଛ ସବୁ କେବଳ ପୁରୁଷ-ପ୍ରକୃତିର ଯୋଗ । ଶିବକାଳୀଙ୍କର ମୂର୍ତ୍ତି, ଶିବଙ୍କ ଉପରେ କାଳୀ ଠିଆ ହୋଇଛନ୍ତି । ଶିବ ଶବ ହୋଇ ପଡ଼ିରହିଛନ୍ତି । କାଳୀ ଶିବଙ୍କ ଆଡ଼କୁ ଚାହିଁଛନ୍ତି । ଏହି ସମସ୍ତ ହିଁ ପୁରୁଷ-ପ୍ରକୃତିର ଯୋଗ । ପୁରୁଷ ନିଷ୍କ୍ରିୟ, ତେଣୁ ଶିବ ଶବ ହୋଇ ପଡ଼ିଛନ୍ତି । ପୁରୁଷ-ଯୋଗରେ ପ୍ରକୃତି ସମସ୍ତ କାର୍ଯ୍ୟ କରୁଛନ୍ତି, ସୃଷ୍ଟି ସ୍ଥିତି ପ୍ରଳୟ କରୁଛନ୍ତି ।

''ରାଧାକୃଷ୍ଣ ଯୁଗଳମୂର୍ତ୍ତିର ମଧ୍ୟ ସେହି ଏକା ଅର୍ଥ । ଏହି ଯୋଗ ସକାଶେ ବଙ୍କିମ ଭାବ । ସେହି ଯୋଗ ଦେଖିବା ପାଇଁ ଶ୍ରୀକୃଷ୍ଣଙ୍କର ନାକରେ ମୁକ୍ତା, ଶ୍ରୀମତୀଙ୍କର ନାକରେ ନୀଳ ପଥର । ଶ୍ରୀମତୀଙ୍କର ଗୌର ବର୍ଣ୍ଣ ମୁକ୍ତାପରି ଉଜ୍ଜ୍ୱଳ । ଶ୍ରୀକୃଷ୍ଣଙ୍କର ଶ୍ୟାମ ବର୍ଣ୍ଣ, ତେଣୁ ଶ୍ରୀମତୀଙ୍କର ନୀଳ ପଥର । ଆଉ ଶ୍ରୀକୃଷ୍ଣ ପୀତ ବସନ ଓ ଶ୍ରୀମତୀ ନୀଳ ବସନ ପିନ୍ଧିଛନ୍ତି ।

''ଉତ୍ତମ ଭକ୍ତ କିଏ ? ଯିଏ ବ୍ରହ୍ମଜ୍ଞାନ ପରେ ଦେଖେ, ସେ ହିଁ ଜୀବଜଗତ୍, ଚତୁର୍ବିଂଶତି ତତ୍ତ୍ୱ ହୋଇଛନ୍ତି । ପ୍ରଥମେ 'ନେତି' 'ନେତି' ବିଚାର କରି ଛାତରେ ପହଞ୍ଚିବାକୁ ହୁଏ । ତାହା ପରେ ସେ ଦେଖେ, ଛାତ ଯେଉଁ ଜିନିଷରେ ତିଆରି — ପାହାଚ ମଧ୍ୟ ସେହି ଜିନିଷରେ ତିଆରି । ସେତେବେଳେ ଦେଖେ ବ୍ରହ୍ମ ହିଁ ଜୀବ-ଜଗତ୍ ସମସ୍ତ ହୋଇଛନ୍ତି ।

''ଖାଲି ବିଚାର ! ଥୁ ଥୁ ! ଦରକାର ନାହିଁ । (ଠାକୁର ମୁଖାମୃତ ପକାଇଲେ ।)

''କାହିଁକି ବିଚାର କରି ଶୁଷ୍କ ହୋଇ ରହିବି ? ଯେପର୍ଯ୍ୟନ୍ତ ! 'ମୁଁ, ତୁମେ' ଅଛି, ସେପର୍ଯ୍ୟନ୍ତ ଯେପରି ତାଙ୍କ ପାଦପଦ୍ମରେ ଶୁଦ୍ଧା ଭକ୍ତି ରହେ ।''

(ଗୋବିନ୍ଦଙ୍କ ପ୍ରତି) ''କେତେବେଳେ କହେ — 'ତୁମେ ହିଁ ମୁଁ, ମୁଁ ହିଁ ତୁମେ ।' ପୁଣି କେତେବେଳେ 'ତୁମେ ହିଁ ତୁମେ' ହୋଇଯାଏ ! ସେତେବେଳେ 'ମୁଁ' ଖୋଜି ପାଏ ନାହିଁ ।

**''ଶକ୍ତିର ହିଁ ଅବତାର ।** ଏକ ମତରେ ରାମ ଓ କୃଷ୍ଣ ଚିଦାନନ୍ଦ-ସାଗରର ଦୁଇଟି ଢେଉ !

''ଅଦ୍ୱୈତଜ୍ଞାନ ପରେ ଚୈତନ୍ୟଲାଭ ହୁଏ । ସେତେବେଳେ ଦେଖେ ସର୍ବଭୂତରେ ସେ ଚୈତନ୍ୟରୂପରେ ରହିଛନ୍ତି । ଚୈତନ୍ୟଲାଭ ପରେ ଆନନ୍ଦ । ଅଦ୍ୱୈତ, ଚୈତନ୍ୟ, ନିତ୍ୟାନନ୍ଦ ।

**ଈଶ୍ୱରଙ୍କ ରୂପ — ଭୋଗବାସନା ଗଲେ ବ୍ୟାକୁଳତା**

(ମାଷ୍ଟରଙ୍କ ପ୍ରତି) — ''ଆଉ ତୁମକୁ କହୁଛି, ରୂପ, ଈଶ୍ୱରୀୟ ରୂପ ଅବିଶ୍ୱାସ କର ନାହିଁ । ରୂପ ଅଛି, ବିଶ୍ୱାସ କର ! ତା' ପରେ ଯେଉଁ ରୂପଟି ଭଲ ଲାଗେ, ସେହି ରୂପ ଧ୍ୟାନ କର ।

(ଗୋବିନ୍ଦଙ୍କ ପ୍ରତି) — ''କଅଣ ଜାଣ, ଯେପର୍ଯ୍ୟନ୍ତ ଭୋଗବାସନା ରହିଛି, ସେପର୍ଯ୍ୟନ୍ତ ଈଶ୍ୱରଙ୍କୁ ଜାଣିବାକୁ ବା ଦର୍ଶନ କରିବାକୁ ପ୍ରାଣ ବ୍ୟାକୁଳ ହୁଏ ନାହିଁ । ପିଲା ଖେଳନା ନେଇ ଭୁଲି ରହିଥାଏ । ସନ୍ଦେଶ ଦେଇ ଭୁଲାଅ, ଟିକିଏ ସନ୍ଦେଶ ଖାଇବ । ଯେତେବେଳେ ଖେଳ ଭଲ ଲାଗେ ନାହିଁ, ସନ୍ଦେଶ ମଧ୍ୟ ଭଲ ଲାଗେ ନାହିଁ, ସେତେବେଳେ କହେ, 'ମା ଯିବି ।' ଆଉ ସନ୍ଦେଶ ଚାହେଁ ନାହିଁ । ଯାହାକୁ ଚିହ୍ନେ ନାହିଁ, କେବେହେଲେ ଦେଖି ବି ନାହିଁ, ସେ ଯଦି କହେ, 'ଆ,

ମାଆ ପାଖକୁ ନେଇଯିବି', ତା'ର ସଙ୍ଗରେ ଯିବ । ଯେ କୋଳ କରି ନେଇଯିବ, ତା' ସଙ୍ଗରେ ଯିବ ।

''ସଂସାର-ଭୋଗ ହୋଇଗଲେ ଈଶ୍ୱରଙ୍କ ପାଇଁ ପ୍ରାଣ ବ୍ୟାକୁଳ ହୁଏ । ସେତେବେଳେ କିପରି ତାଙ୍କୁ ପାଇବି, କେବଳ ଏହା ଚିନ୍ତା ହୁଏ । ଯେ ଯାହା କହେ, ତାହା ଶୁଣେ ।''

ମାଷ୍ଟର(ସ୍ୱଗତଃ)—ଭୋଗବାସନା ଗଲେ ଈଶ୍ୱରଙ୍କ ପାଇଁ ପ୍ରାଣ ବ୍ୟାକୁଳ ହୁଏ !

## (୪)

## ବଳରାମଙ୍କ ମନ୍ଦିରରେ ଈଶ୍ୱରଦର୍ଶନ କଥା—ଜୀବନର ଉଦ୍ଦେଶ୍ୟ

ଆଉ ଦିନେ, ୧୮ ଅଗଷ୍ଟ ୧୮୮୩, ୨ ଭାଦ୍ର ଶନିବାର, ଉପର ଓଳି । ଶ୍ରୀରାମକୃଷ୍ଣ ବଳରାମଙ୍କ ଘରକୁ ଆସିଛନ୍ତି । ଠାକୁର ଅବତାର-ତତ୍ତ୍ୱ ବୁଝାଉଛନ୍ତି ।

ଶ୍ରୀରାମକୃଷ୍ଣ (ଭକ୍ତମାନଙ୍କ ପ୍ରତି)—ଅବତାର ଲୋକଶିକ୍ଷା ପାଇଁ ଭକ୍ତି-ଭକ୍ତ ନେଇ ରହନ୍ତି, ଯେପରି ଛାତକୁ ଉଠି ସିଢ଼ିରେ ଯିବାଆସିବା କରିବା ! ସାଧାରଣ ମନୁଷ୍ୟ ଛାତକୁ ଉଠିବା ପାଇଁ ଭକ୍ତି-ପଥରେ ରହିବେ, ଯେପର୍ଯ୍ୟନ୍ତ ଜ୍ଞାନଲାଭ ନ ହୁଏ, ଯେପର୍ଯ୍ୟନ୍ତ ସବୁ ବାସନା ନ ଯାଏ । ସବୁ ବାସନା ଚାଲିଗଲେ ଛାତକୁ ଉଠାଯାଏ । ଦୋକାନଦାର ଯେପର୍ଯ୍ୟନ୍ତ ହିସାବ ନ ସରେ, ସେପର୍ଯ୍ୟନ୍ତ ଶୁଏ ନାହିଁ । ଖାତାର ହିସାବ ଠିକ୍ କରି ତେବେ ଶୋଇବାକୁ ଯାଏ ।

(ମାଷ୍ଟରଙ୍କ ପ୍ରତି)—''ଝାମ୍ପ ଦେଲେ ହେବ ହିଁ ହେବ ! ଝାମ୍ପ ଦେଲେ ହେବ ହିଁ ହେବ !

''ଆଚ୍ଛା, କେଶବ ସେନ୍, ଶିବନାଥ, ଏମାନେ ଯେଉଁ ଉପାସନା କରନ୍ତି, ତୁମର କିପରି ବୋଧହୁଏ ?''

ମାଷ୍ଟର—ଆଜ୍ଞା, ଆପଣ ଯେପରି କହନ୍ତି, ସେମାନେ ବଗିଚାର ବର୍ଣ୍ଣନା ହିଁ କରନ୍ତି, କିନ୍ତୁ ବଗିଚାର ମାଲିକଙ୍କୁ ଦର୍ଶନ କରିବା କଥା ଖୁବ୍ କମ୍ କହନ୍ତି । ପ୍ରାୟ ବଗିଚାର ବର୍ଣ୍ଣନାରେ ଆରମ୍ଭ, ସେଥିରେ ହିଁ ଶେଷ ।

ଶ୍ରୀରାମକୃଷ୍ଣ—ଠିକ୍ ! ଉଦ୍ୟାନର ମାଲିକଙ୍କୁ ଖୋଜିବା ଆଉ ତାଙ୍କ ସଙ୍ଗରେ ଆଳାପ କରିବା ଏହା ହିଁ କାର୍ଯ୍ୟ । ଈଶ୍ୱରଦର୍ଶନ ହିଁ ଜୀବନର ଉଦ୍ଦେଶ୍ୟ ।[୧]

### ଅଧରଙ୍କ ଘରେ କୀର୍ତ୍ତନାନନ୍ଦ ଓ ଅଧରଙ୍କ ପ୍ରତି ଉପଦେଶ

କୀର୍ତ୍ତନାନ୍ତେ ଠାକୁରେ ଭାବାବିଷ୍ଟ ହୋଇ ବସିଛନ୍ତି । ରାଖାଲଙ୍କୁ କହୁଛନ୍ତି, ''ଏଠାରେ ଶ୍ରାବଣ ମାସର ଜଳ ନୁହେଁ । ଶ୍ରାବଣ ମାସର ବର୍ଷାଜଳ ସୁଅ ପରି ମାଡ଼ି

---

୧. ଆତ୍ମା ବା ଅରେ ଦ୍ରଷ୍ଟବ୍ୟଃ ଶ୍ରୋତବ୍ୟୋ ମନ୍ତବ୍ୟୋ ନିଦିଧ୍ୟାସିତବ୍ୟଃ ।'
—ବୃହଦାରଣ୍ୟକ ଉପ. ୨/୪/୫

ଆସେ, ପୁଣି ଚାଲିଯାଏ । ଏଠାରେ ପାତାଳଫୁଟା ଶିବ, ଥାପିବା ଶିବ ନୁହେଁ । ତୁ ରାଗି କରି ଦକ୍ଷିଣେଶ୍ୱରରୁ ଚାଲିଆସିଲୁ; ମୁଁ ମାଆଙ୍କୁ କହିଲି—ମା, ଏହାର ଅପରାଧ ନିଅ ନାହିଁ ।''

ଶ୍ରୀରାମକୃଷ୍ଣ କ'ଣ ଅବତାର ? ପାତାଳଫୁଟା ଶିବ ?

ପୁଣି ଅଧରଙ୍କୁ ଭାବାବିଷ୍ଟ ହୋଇ କହୁଛନ୍ତି, ''ବାବୁ ! ତୁମେ ଯେଉଁ ନାମ କରିଥିଲ, ସେହି ଧ୍ୟାନ କର ।''

ଏହା କହି ଅଧରଙ୍କର ଜିହ୍ୱା ଅଙ୍ଗୁଳି ଦ୍ୱାରା ସ୍ପର୍ଶ କଲେ ଓ ଜିହ୍ୱାରେ କଅଣ ଲେଖିଦେଲେ । ଏହା ହିଁ କ'ଣ ଅଧରଙ୍କର ଦୀକ୍ଷା ?

## (୫)

## ଆଦ୍ୟାଶକ୍ତି ଓ ଅବତାରତତ୍ତ୍ୱ

ଆଉ ଦିନେ ଠାକୁର ଦକ୍ଷିଣେଶ୍ୱର ମନ୍ଦିରରେ ଦକ୍ଷିଣ-ପୂର୍ବ ବାରଣ୍ଡାରେ ସିଡ଼ିରେ ବସିଛନ୍ତି । ସଙ୍ଗରେ ରାଖାଲ, ମାଷ୍ଟର, ହାଜରା । ଠାକୁର ରହସ୍ୟ କରୁ କରୁ ପିଲାଦିନର କେତେ କଥା କହୁଛନ୍ତି ।

### ଜଗନ୍ମାତାଙ୍କ ସହିତ ଶ୍ରୀରାମକୃଷ୍ଣଙ୍କ କଥା

ଠାକୁର ସମାଧିସ୍ଥ । ସନ୍ଧ୍ୟା ହୋଇଛି । ନିଜ ଘରେ ଛୋଟ ଖଟଟିରେ ବସିଛନ୍ତି ଓ ଜଗନ୍ମାତାଙ୍କ ସହିତ କଥା କହୁଛନ୍ତି । କହୁଛନ୍ତି, ''ମା ଏତେ ହେଙ୍ଗାମା କାହିଁକି କରୁଛ ? ମା, ସେଠାକୁ କ'ଣ ଯିବି ? ମା ମୋତେ ନେଇଯିବୁ ତ ଯିବି ।''

ଠାକୁରଙ୍କର କୌଣସି ଭକ୍ତଘରକୁ ଯିବାର କଥା ହୋଇଥିଲା । ତେଣୁ କ'ଣ ଜଗନ୍ମାତାଙ୍କର ଆଜ୍ଞା ପାଇଁ ଏପରି କହୁଛନ୍ତି ?

ଜଗନ୍ମାତାଙ୍କ ସଙ୍ଗରେ ଶ୍ରୀରାମକୃଷ୍ଣ ପୁଣି କଥା କହୁଛନ୍ତି । ଏଥର କୌଣସି ଅନ୍ତରଙ୍ଗ ଭକ୍ତ ପାଇଁ ବୋଧହୁଏ ପ୍ରାର୍ଥନା କରୁଛନ୍ତି । କହୁଛନ୍ତି—''ମା, ତାକୁ ନିଖାଦ କର । ଆଚ୍ଛା ମା, ତାକୁ ଗୋଟିଏ କଳା ଦେଲୁ କାହିଁକି ?''

ଠାକୁର ଟିକିଏ ଚୁପ୍ ରହିଲେ । ପୁଣି କହୁଛନ୍ତି, ''ଓଃ ! ବୁଝିଛି, ଏଥିରେ ହିଁ ତୋର କାମ ହୋଇଯିବ !''

ଷୋଳକଳାରୁ ଏକକଳା ଶକ୍ତିରେ ତୋର କାର୍ଯ୍ୟ ଅର୍ଥାତ୍ ଲୋକଶିକ୍ଷା ହେବ, ଏହି କଥା କଅଣ ଠାକୁର କହୁଛନ୍ତି ?

ଏଥର ଭାବାବିଷ୍ଟ ଅବସ୍ଥାରେ ମାଷ୍ଟର ପ୍ରଭୃତିଙ୍କୁ ଆଦ୍ୟାଶକ୍ତି ଓ ଅବତାରତତ୍ତ୍ୱ କହୁଛନ୍ତି ।

**''ଯେ ବ୍ରହ୍ମ ସେ ହିଁ ଶକ୍ତି । ତାଙ୍କୁ ହିଁ ମା ବୋଲି ଡାକେ ।** ଯେତେବେଳେ ସେ ନିଷ୍କ୍ରିୟ, ସେତେବେଳେ ତାଙ୍କୁ ବ୍ରହ୍ମ କହେ; ପୁଣି ଯେତେବେଳେ ସୃଷ୍ଟି-ସ୍ଥିତି-ସଂହାର କାର୍ଯ୍ୟ କରନ୍ତି, ସେତେବେଳେ ତାଙ୍କୁ ଶକ୍ତି କହେ । ଯେପରି ସ୍ଥିର

ଜଳ, ଆଉ ଜଳରେ ଢେଉ ହୋଇଛି ! ଶକ୍ତିଲୀଳାରେ ହିଁ ଅବତାର । ଅବତାର ପ୍ରେମଭକ୍ତି ଶିଖାଇବାକୁ ଆସନ୍ତି । ଅବତାର ଯେପରି ଗାଭୀର ତିର । ତିରରୁ ହିଁ ଦୁଗ୍ଧ ବାହାରେ ।

"**ମନୁଷ୍ୟ ରୂପରେ ସେ ଅବତୀର୍ଣ୍ଣ ହୁଅନ୍ତି** । ଯେପରି ମୁଗୁରା ଭିତରେ ମାଛ ଆସି ଜମନ୍ତି ।"

ଭକ୍ତମାନେ କେହି କେହି ଭାବୁଛନ୍ତି, ଶ୍ରୀରାମକୃଷ୍ଣ କଅଣ ଅବତାର-ପୁରୁଷ ? ଯେପରି ଶ୍ରୀକୃଷ୍ଣ, ଚୈତନ୍ୟଦେବ, ଯୀଶୁଖ୍ରୀଷ୍ଟ ?